# ଝାଁଟି ମାଟି ଟାଙ୍ଗର

ରୋହିତ କୁମାର ପଟେଲ

ଯାଦବାନନ୍ଦ ପଟେଲ

ପ୍ରକାଶିକା :

ଶ୍ରୀମତୀ ଶୋଭାରାଣୀ ପଟେଲ

କରମଣ୍ଡଳ-୭୭୦୦୦୧

ଯୋଗାଯୋଗ :

ରୋହିତ କୁମାର ପଟେଲ, ଶିକ୍ଷକ

ବୀରମିତ୍ରପୁର-୭୭୦୦୩୩

ସୁନ୍ଦରଗଡ଼ : ଓଡ଼ିଶା

ଉପନ୍ୟାସ—ଝାଟି ମାଟି ଟାଙ୍ଗର
ରୋହିତ କୁମାର ପଟେଲ
ଯାଦବାନନ୍ଦ ପଟେଲ
କରମଡିହି, ସୁନ୍ଦରଗଡ଼-୭୭୦୦୦୨
ପ୍ରକାଶିକା : ସ୍ୱତ୍ତ୍ୱାଧିକାରୀ :
ଶ୍ରୀମତୀ ଶୋଭାରାଣୀ ପଟେଲ
ସୁଜାତା ପ୍ରକାଶନୀ
କରମଡିହି, ସୁନ୍ଦରଗଡ଼-୭୭୦୦୦୨
ଶୁଭ ପ୍ରକାଶ : ଶ୍ରୀପଞ୍ଚମୀ ୪–୨–୧୯୯୫
ପ୍ରଚ୍ଛଦ : ବିଦ୍ୟାଧର ମୁଦୁଲି
ରଚନା ସମୟ : ୧୭।୧୧।୯୨ ରୁ ୧୯।୧୦।୯୪
ମୁଦ୍ରାକର : କେଶବ ଚରଣ ରଥ
ପ୍ରକାଶ ପ୍ରିଣ୍ଟର୍ସ, ବାଙ୍କିବଜାର, କଟକ-୭୫୩୦୦୯
ମୂଲ୍ୟ—ଷାଠିଏ ଟଙ୍କା

JHATI MATI TANGAR : (Oriya Novel)
By ROHITT KUMAR PATEL
& Jadabananda Patel
Karamdihi-770002
Sundargarh : Orissa

Publishers & Copy write :
Smt. Sobharani Patel
Sujata Prakashani
Karamdihi-770002
Sundargarh, Orissa

First Edition : 4th February 1995
Art by Bidyadhar Muduli
Printers : Keshab Charan Rath
Prakash Printers, Cuttack-753009
Sixty Rupees

# ସଦିଚ୍ଛା

'ଝାଟି ମାଟି ଝାଙ୍ଗର' ଉପନ୍ୟାସ ଶ୍ରୀମାନ୍ ରୋହିତ କୁମାର ପଟେଲ, ଶିକ୍ଷକ ଓ ଯାଦବାନନ୍ଦ ପଟେଲଙ୍କର ରଚିତ ଗଳ୍ପ, ଉପନ୍ୟାସ ଓ କାବ୍ୟ ମଧ୍ୟରୁ ଏକତମ । ପ୍ରଥମ ଜଣକ କଥାକାର, ଔପନ୍ୟାସିକ ଓ ଅନ୍ୟ ଜଣକ କାବ୍ୟକାର ଅଟନ୍ତି । ବଣ ଜଙ୍ଗଲ, ନଦୀ ଝରଣା, ଖଣି ଖାଦାନରେ ଭରପୂର ସୁନ୍ଦର ଏହି ସୁନ୍ଦରଗଡ଼ ଜିଲ୍ଲା । ଲେଖକ ଏହାର ଅଧିବାସୀଙ୍କ ସଂସ୍କୃତି ପରମ୍ପରା ସହିତ ଓତଃପ୍ରୋତ ଭାବରେ ଜଡ଼ିତ—ଜନ-ଜୀବନ ସହିତ ଅତ୍ୟନ୍ତ ପରିଚିତ—ତେଣୁ ପ୍ରତ୍ୟେକ ସାମାଜିକ ପ୍ରଥା, ପର୍ବପର୍ବାଣୀ, ଗୀତ-ନାଚର ଏକ ନିଗୂଢ଼ ଚିତ୍ର ସେମାନେ ଉପନ୍ୟାସଟିରେ ପ୍ରକାଶ କରିଛନ୍ତି । ଯାହା ଉପନ୍ୟାସର ବିଷୟବସ୍ତୁ । ଜନ-ଜୀବନର ନିଖୁଣ ଚିତ୍ର ପ୍ରଦାନ କରେ । ଯାହାସବୁ ଏ ଅଞ୍ଚଳର ଏକାନ୍ତ ନିଜର, ସ୍ୱତନ୍ତ୍ର, ଯାହା ଝାଟି ମାଟି ଝାଙ୍ଗର ଭୂଇଁର ବିଶେଷତ୍ୱ । ମଦନ, ସୁମାନୀ, ଦହଲୁ, ଟେହଲୀଙ୍କ ପରି ସରଳ ନିରୀହ ଝାଟି ମାଟି ଝାଙ୍ଗର ଭୂଇଁର ବିନ୍ୟାସ ଓ ଅଧିବାସୀଙ୍କ ଜୀବନ କାହାଣୀ ଜନ୍ମ ମାଟିର ସଂସ୍କୃତି, ପରମ୍ପରାର ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । ଏମାନେ ମାନବବାଦର ପ୍ରତୀକ, ସୌନ୍ଦର୍ଯ୍ୟ ଓ ସତ୍ୟର ସନ୍ଧାନୀ । ଯାହା ପୁସ୍ତକର ପଦେ ପଦେ ପ୍ରମାଣିତ ।

ପ୍ରସିଦ୍ଧ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କର 'ପରଜା' ପରେ 'ଝାଟି ମାଟି ଝାଙ୍ଗର'ର ରଚନା ଏକ ସାହସିକ ପଦକ୍ଷେପ । ରୋହିତ ବାବୁଙ୍କର ଓଡ଼ିଆ ସାହିତ୍ୟକୁ ଏହା ଏକ ମୂଲ୍ୟବାନ ଅବଦାନ ।

ଉପନ୍ୟାସର ପ୍ରଥମ ପାଠିକା ହେବାର ସୌଭାଗ୍ୟ ନେଇଛି । ମୁଁ ତାଙ୍କର ସାରସ୍ୱତ ସାଧନାକୁ ସ୍ୱାଗତ କରି ଉତ୍ତରୋତ୍ତର ଉନ୍ନତି କାମନା କରୁଅଛି ।

ବାସନ୍ତୀ ମିଶ୍ର

ଶିକ୍ଷା ମଣ୍ଡଳାଧୀଶ
ସୁନ୍ଦରଗଡ଼

୧୦ । ୧୨ । ୯୪

# କିଛି କହିବି

ଗେହ୍ଲୀ, ମୋର ସର୍ବାଧିକ ପ୍ରିୟ ଚରିତ୍ର । ବ୍ୟକ୍ତି ଜୀବନରେ ତା'ର ଅବସାଦ ଆସିଥାଇ ପାରେ । ଭବିଷ୍ୟତ କର୍ମ ନିର୍ବାଚନ ଯଦି ପରଘରେ ମୁଣ୍ଡ ଗୁଞ୍ଜି ସେ ରହିବ ତେବେ ଜୀବନରେ ପୂର୍ଣ୍ଣତା ପ୍ରାପ୍ତି ପାଇ ନ ପାରେ । ଦହିଲୁର ବିଶାଳ ବକ୍ଷର ହୃତ୍‌କମ୍ପନର ଆହ୍ୱାନ ଭିତରେ ସେ ଦେଖିଛି ପରିବର୍ତ୍ତନ, ନିଜ ଭିତରେ ଜାଗ୍ରତ ଫଟକ କରି ଗୋଟିଏ ସ୍ୱରରେ ଝଙ୍କାର ଝାଣିଲେ । ଶିବରାତ୍ରୀ ମେଳାରୁ ପ୍ରତ୍ୟାବର୍ତ୍ତନ ପରେ ସେମାନେ ଜାଣିଥିଲେ ସେମାନଙ୍କ ସାମାଜିକ ସ୍ୱୀକୃତ ରହିବ ନାହିଁ ଏବଂ ରହିଲା ନାହିଁ ମଧ୍ୟ । ତେଣୁ ସେମାନେ ଗୋଟିଏ ବାହ୍ୟ ପରିବେଶର ଭିନ୍ନ ମଣିଷ ହୋଇଗଲେ । ବହେଁ କିଛି ସମୟ ପାଇଁ ଚୂନା ଭଟା ଭିତରେ ପ୍ରବେଶ କଲେ । ବିରାଟ ସ୍ମୃତିର ଧ୍ୱଂସାବଶେଷ ଭିତରେ ନିଜେ ଯେ ଧ୍ୱଂସ ପାଇଯିବେ, ତେଣୁ ବଞ୍ଚିବାର ପ୍ରତିଜ୍ଞା କେବଳ ସେଇଠି ହେଲା । ପ୍ରତିଜ୍ଞାର ପୁନଃରବ ମଧ୍ୟରେ ଗେହ୍ଲୀ ପାରିଦେଲା ତା'ର ପରିଚିତ କାନିଟିକିକ । ଦହିଲୁର କମ୍ପନ ସ୍ତମ୍ଭିତ ହେବାଯାଏ ବହେଁ ମନର ପ୍ରତିଜ୍ଞା ମାପୁଥିଲେ, ଯାହା ଜନଜୀବନ ନୁହେଁ ବ୍ୟକ୍ତି ଜୀବନ ମାତ୍ର । ଚରିତ୍ରର ପରିବର୍ତ୍ତନ କେବଳ ଏପରି ଏକ ପରିବର୍ତ୍ତନ ଯୁବ ମାନସକୁ ପଥ ନିର୍ଦ୍ଦେଶ କରିପାରେ । ଚରିତ୍ର ଭିତରେ ପରିବର୍ତ୍ତନ ଓ ପ୍ରଗତି ଆଶ୍ରିତ ରହି ଆଗେଇ ଆସେ । ଯାହା ଉପନ୍ୟାସର ପ୍ରତି ଚରିତ୍ରରେ ପ୍ରତିଫଳିତ ।

ଚରିତ୍ର ଭିତରେ ପରିବର୍ତ୍ତନ ହିଁ ମୋର ଗଳ୍ପକାର ଓ ଔପନ୍ୟାସିକ ଜୀବନର ଧ୍ୟେୟ । ବିନା ପରିବର୍ତ୍ତନରେ ପ୍ରଗତି ଅସମ୍ଭବ । ଚରିତ୍ର ସବୁ ଭିତରେ ଘଟଣା ପ୍ରବାହ ବା ଅନ୍ୟ କିଛି କଳ୍ପନା କରିନାହିଁ । କୌଣସି ରାଜନୈତିକ ପରିବେଶ, ଧର୍ମଧାରଣା ବିନ୍ୟାସ କରିନାହିଁ । ଧର୍ମ ଓ ରାଜନୀତି ଯଦିଓ ବିଷୟବସ୍ତୁର ଅଙ୍ଗ ନ ହେଲେ ମଧ୍ୟ ଚରିତ୍ର ଭିତରେ ତାହା ମୁଁ ଖୋଜିନାହିଁ । ଖୋଜିଥିଲେ ବିଷୟବସ୍ତୁର ଗତି ଭିନ୍ନ କରି ପାରିଥାନ୍ତି । ସାଧାରଣ ଜୀବନରେ ସେ ସବୁ ଆବଶ୍ୟକ ମଣିନାହିଁ । ନିଷ୍ପାପ ଚରିତ୍ର ସବୁ ନିଜ ପରିଧି ଭିତରେ ରହି ସ୍ୱକୀୟ ସଂସ୍କୃତି ଖୋଜିଛନ୍ତି । ଝାଟି ମାଟି ଝାଙ୍ଗର ହିଁ ପଶ୍ଚିମ ଓଡ଼ିଶାର ପ୍ରାକୃତିକ ବିନ୍ୟାସ ଓ ବ୍ୟବଚ୍ଛେଦ । ଯଉଁଠି ସରଳ ଚରିତ୍ର ସବୁ କର୍ମମୁଖର ଥାଆନ୍ତି । ବିଷୟବସ୍ତୁର ପୃଷ୍ଠଭୂମି ପାଇଁ ସୁନ୍ଦରଗଡ଼ ଜିଲ୍ଲାକୁ ନେଇଛି । ଏ ଅଞ୍ଚଳର ଝାଟି ମାଟି ଝାଙ୍ଗର

ସବୁର ବିସ୍ତୃତ ବିନ୍ୟାସ ଆବଶ୍ୟକ କରେ । ମୋର ଜନ୍ମ ସେଇ ମାଟି ହୋଇ ଥିବାରୁ ପ୍ରତ୍ୟେକ ଅନୁଭୂତି ଦେବାକୁ ସମର୍ଥ ହୋଇଛି । କଳ୍ପନାବାଦ କରିବାକୁ ଉପନ୍ୟାସରେ ଚେଷ୍ଟିତ ରହିଛି ।

ଗେହ୍ଲୀକୁ ମୁଁ ଭିନ୍ନ ପ୍ରକାରେ ଚଳଣ କରିଥାନ୍ତି । ଅନ୍ତରଙ୍ଗ ସୃଷ୍ଟି କରିଥାନ୍ତି । ଶଗଡ଼ରେ ବସି ମେଳା ଦେଖି ଯାଇଥାନ୍ତି । ପୂର୍ଣ୍ଣ ସ୍ୱାଧୀନ, ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ମେଳା ପଡ଼ିଆରେ ତୁମେ ବିଚରଣ କରିଥାନ୍ତ । ତୁମ ଭିତରେ ଉନ୍ମାଦ ଭର୍ତ୍ତି କରି ଦେଇଥାନ୍ତି । କିନ୍ତୁ ସେ ଦିନର ବୈଶ୍ୱ ଦୁର୍ଘଟଣା ଏଯାଏଁ ବିସ୍ମୃତ ହୋଇନାହିଁ । ଚେଷ୍ଟାନବେ ମସିହା ଫେବ୍ରୁୟାରୀ ଊଣେଇଶ ତାରିଖ ଶିବରାତ୍ରୀ । ମୁଁ ଯେ ଔପନ୍ୟାସିକ, ତୁମେ ମୋର ଚରିତ, କଳ୍ପନା । ତୁମ ସହିତ ମେଳା ଥିବା କେଡ଼େ ବଡ଼ ସୌଭାଗ୍ୟ ଥିଲା । ଏଥିପାଇଁ ଲୋକଙ୍କ ବନ୍ଧୁଗଙ୍କ ପଦ ବି ଲେଖି ସାରିଥାଏ । କିନ୍ତୁ ପ୍ରାତଃ ସକାଳର ଝଞ୍ଜା ମୋତେ ବ୍ୟତିବ୍ୟସ୍ତ କରିଗଲା । ଝଞ୍ଜା ପବନରେ ଦାବାଗ୍ନି ଥିଲା । ଯାହା ମୋର ଗଳ୍ପ ସବୁ ପୋଡ଼ି ଦେଉଥିଲା । ଆଧୁନିକ ବଳର ବୃଦ୍ଧି କ୍ଷୀଣ । ତେଣୁ ଗଳ୍ପ ସବୁର ମୂଳ ପାଣ୍ଡୁଲିପି ପୋଡ଼ିଗଲା; ମାତ୍ର ସମ୍ପାଦିତ ପାଣ୍ଡୁଲିପି ସବୁ ବଞ୍ଚିଗଲା ପ୍ରକାଶ ପାଇବା ପାଇଁ । ତୁମେ ସେଦିନ ମୋ ପାଖରେ ନ ଥିଲେ ଗଳ୍ପକାର ହୁଏତ ବଞ୍ଚି ନ ଥାନ୍ତା । ତୁମେ ମୋର ସେ ଦିନର ପ୍ରେରଣା ଓ ଆଶ୍ରୟଦାତ୍ରୀ । ତୁମ ସହିତ ମେଳା ବୁଲିଛି, ତଥାପି ଘଟଣା ସବୁ ମୋତେ ଏମିତି ଘାଣ୍ଟି ଚକଟି ଦେଲା ଯେ ମେଳା ପଡ଼ିଆରେ ତୁମ ସହିତ ନା ବିଷୟବସ୍ତୁ ସହିତ ଭାରସାମ୍ୟ ରଖିପାରି ନ ଥିଲି । ତୁମର ଯାହା ବର୍ଣ୍ଣନା ସେଦିନ କରି ପାରିଲି ନାହିଁ । ସଦ୍ୟ, ସଜାଗ ଅନୁଭୂତି ପରେ ସ୍ମୃତିଚିତ୍ରଣ କରିଛି । ତୁମେ ଚରିତ ହେଲେ ବି ମୋର ବାଗ୍‌ଦେବୀ । ପରେ ପ୍ରକୃତରେ ତୁମକୁ ଉପସ୍ଥାପନା କରିଛି କି ନାହିଁ, ତାହା ତୁମେ ହିଁ କହିବ ଓ ପାଠକଗଣ ସମୀକ୍ଷା କରିବେ ।

ଉପନ୍ୟାସରେ ଔପନ୍ୟାସିକଙ୍କ ମାନସିକ ଦ୍ୱନ୍ଦ୍ୱ ଯାହା ଥାଉ ନା କାହିଁକି : ଚରିତ ସବୁଙ୍କ ଦ୍ୱନ୍ଦ୍ୱ, ଦ୍ୱିଧା ଉପସ୍ଥାପନା କରିଛି । ଉପନ୍ୟାସର ମଦନ, ଭୁବନ, ସୁମାନୀ ଚରିତର ସ୍ରଷ୍ଟା ମୋର ପୂଜ୍ୟ ବଡ଼ ଭାଇ କବି ଯାଦବାନନ୍ଦ ପଟେଲ ଅଟନ୍ତି । ଏକାନ୍ତରେ ସେ ଏପରି ଉପନ୍ୟାସର କଳ୍ପନା କରୁଥିଲେ । ବାସ୍ତବରୁ ସ୍ୱର ସହିତ ମୋ ସ୍ୱର ସମ୍ମିଳିତ ହୋଇଛି । ତେଣୁ ଆମେ 'ଝାଟି ମାଟି ଟାଙ୍ଗର' ଉପନ୍ୟାସର ଯୁଗ୍ମ ଔପନ୍ୟାସିକ ।

ଏକ ଜନ ଜୀବନକୁ ବିନ୍ୟାସ କରିବା ବଡ଼ କଷ୍ଟସାଧ୍ୟ । ଝାଟି ମାଟି ଟାଙ୍ଗରର ପୃଷ୍ଠା···ଏଠି ସମାପ୍ତି ଘଟିନାହିଁ । ସୁନ୍ଦରଗଡ଼ ଜିଲ୍ଲା ପୃଷ୍ଠଭୂମିର ଜନ

ଜୀବନକୁ ମୋର ପରବର୍ତ୍ତୀ ରଚନା 'ଶଗଡ଼ରୁ ଡାମ୍ପର' ଉପନ୍ୟାସରେ ଶେଷ କରିପାରେ । ଗାଁ, ଭୂମି ଓ ଭୂମି ସମ୍ପର୍କ, ତଥା ଅରଣ୍ୟ ଓ ଅରଣ୍ୟାନୀକୁ ଶଗଡ଼ ପର୍ଯ୍ୟାୟ ଓ ଖଣି, ଖାଦାନ, ଶିଳ୍ପ ସଂସ୍କୃତିକୁ ଡାମ୍ପର ପର୍ଯ୍ୟାୟରେ ଉପସ୍ଥାପିତ କରିବି । ପ୍ରତିଜ୍ଞା ପାଇଁ ବାଗ୍‌ଦେବୀଙ୍କ ସଦିଚ୍ଛାକୁ ଅପେକ୍ଷା କରିଛି ।

ଗୋଟିଏ ଜନଜୀବନ ଉପରେ ନିର୍ଭର କରୁଥିବା ଚରିତ୍ର ମୁଖରୁ ନିଃସୃତ ଶବ୍ଦ ବ୍ୟବହାର କରିଛି । ଓଡ଼ିଆ ଶବ୍ଦ ଭଣ୍ଡାରକୁ ସେ ସବୁ ସମୃଦ୍ଧ କରିବ । ଯାହା ସ୍ୱାଗତଯୋଗ୍ୟ ହେବା ଉଚିତ । ସମଗ୍ର ଉପନ୍ୟାସକୁ କେତେକ ଅଧ୍ୟାୟ କରାଯାଇ ପାରିଥାନ୍ତା । କିନ୍ତୁ ଚରିତ୍ର ସଜ୍ଜିତ ଗତିବିଧି ଆପେ ସେ ସବୁ ସୂଚାଇ ଦେଉଥିବା ମନେହୁଏ । କୌଣସି ଏକ ମୌଳିକ ଚିନ୍ତାଧାରା, ଚରିତ୍ରର ଉପସ୍ଥାପନା ପ୍ରତି ସ୍ୱାଧୀନ ଆଗ୍ରହ ରହିଛି । ତେଣୁ 'ଝାଟି ମାଟି ଟାଙ୍ଗର' କୌଣସି ଔପନ୍ୟାସିକଙ୍କ ଛାୟା, ଅନୁକରଣ ମୋର ପ୍ରତିବାଦର ବିଷୟ । ମୌଳିକ ସୃଷ୍ଟି ଓ ସ୍ରଷ୍ଟାଙ୍କ ଭୂମିକା ନିଶ୍ଚୟ ନେବ । ଯଥେଷ୍ଟ ଅନୁଭୂତ ହିଁ ଉପନ୍ୟାସଟିର ସଠିକ ପ୍ରମାଣ ।

ଶିକ୍ଷା ଓ ପରିବର୍ଦ୍ଧିତ ସଂସ୍କୃତିର ଅନେକ ବର୍ତ୍ତିକା ୰ ବୈରାଗୀ ମିଶ୍ର ଏହି ଜିଲ୍ଲାରେ ଦେଖାଇ ଥିଲେ । ସମ୍ଭବତଃ ଛଷଠୀ ମସିହା କଥା । କଲେଜ ଛାତ୍ରମାନଙ୍କ ହରତାଳ ସମୟରେ ସ୍ଲୋଗାନରେ ରାଜରାସ୍ତା ପ୍ରକମ୍ପିତ ହେଉଥିଲା । ମୁଁ ତାଙ୍କ ପାଖେ ବସି ମୋର 'ସଙ୍ଗୀନ୍' ନାଟକର ପାଣ୍ଡୁଲିପି ପଢ଼ୁଥାଏ । ଏକ ବୟସ୍କ-ବନ୍ଧୁର କଣ୍ଠସ୍ୱର ଛାତ୍ରଙ୍କ ପ୍ରତି ସମବେଦନା ଜଣାଇଥିଲେ ସେ ମହାଶୟ । ଶିକ୍ଷାର କର୍ଣ୍ଣଧାରଙ୍କୁ ଛାତ୍ରଙ୍କ ଅଭାବନୀୟ ପରିସ୍ଥିତି ଅସହ୍ୟ ଯନ୍ତ୍ରଣା ଦେଉଥିଲା । ସେହି ମହାଶୟଙ୍କ ପୁତ୍ରବଧୂ ଶ୍ରୀମତୀ ବାସନ୍ତୀ ମିଶ୍ର, ଶିକ୍ଷା ମଣ୍ଡଳାଧୀଶ, ସୁନ୍ଦରଗଡ 'ଝାଟି ମାଟି ଟାଙ୍ଗର' ଉପନ୍ୟାସର ପ୍ରଥମ ପାଠିକା ଅଟନ୍ତି । ପ୍ରଥମ ପାଠିକା କରିବା ଅନୁରୋଧକୁ ସେ ଅତି ଆଗ୍ରହରେ ଗ୍ରହଣ କରି ଆମ ପ୍ରତି ତାଙ୍କ ସଦିଚ୍ଛା ଜଣାଇଛନ୍ତି । ସାଧୁବାଦ ଜଣାଉଛି ତାଙ୍କୁ ।

ଶ୍ରୀମତୀ ଶୋଭାରାଣୀ ପଟେଲ, ସୁଜାତା ପ୍ରକାଶନୀର ପ୍ରକାଶିକା । ୧୯୯୪ ମସିହାରେ 'ଶୂନ୍ୟ ଛାଉଣୀର ଅତୀତ', 'ସୂର୍ଯ୍ୟ କନ୍ୟା', ଯାଦବାନନ୍ଦ ପଟେଲଙ୍କ କାବ୍ୟ ଗ୍ରନ୍ଥାବଳୀ ପ୍ରକାଶ କରିଛନ୍ତି । ଏକ ପ୍ରକାଶନୀ ବଞ୍ଚାଇ ରଖିବା ତାଙ୍କର ଏକମାତ୍ର ଅଲଙ୍କାର ଅଟେ । ପୁସ୍ତକ ସବୁ ସୁନ୍ଦରଗଡ଼ ଜିଲ୍ଲାର ସମସ୍ତ ଉଚ୍ଚ ବିଦ୍ୟାଳୟ, ତଥା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସବୁ ଆଗ୍ରହ ସହକାରେ ନିଜ ପାଠାଗାର ପାଇଁ ନେଇ ଆର୍ଥିକ ସାହାଯ୍ୟ କରିଛନ୍ତି । ତେଣୁ ସମସ୍ତେ ଅଗ୍ରପୂଜ୍ୟ ।

ସୁନ୍ଦରଗଡ଼, ବଣେଇ, ରାଉରକେଲା ଶିକ୍ଷା ଜିଲ୍ଲା ନିରୀକ୍ଷକ ତଥା କର୍ମଚାରୀଗଣଙ୍କ ସାହାଯ୍ୟ 'ଝାଟି ମାଟି ଝାଙ୍ଗର'ର ପ୍ରକାଶନକୁ ତ୍ୱରାନ୍ୱିତ କରିଛି । ଏହି ପ୍ରକାଶନ ପାଇଁ ମୋର ଭବିଷ୍ୟନିଧି ଜମା ହିଁ ମୋତେ ପ୍ରୋତ୍ସାହିତ କରେ ।

ଶ୍ରୀଯୁକ୍ତ କେଶବ ଚରଣ ରଥ, ପ୍ରକାଶ ପ୍ରିଣ୍ଟର୍ସ, କଟକ-୯ଙ୍କ ଏକାନ୍ତ ଆଗ୍ରହପୂର୍ଣ୍ଣ ମୁଦ୍ରଣ ସମୟୋପଯୋଗୀ । ପାଣ୍ଡୁଲିପି ଓ ଅର୍ଥ ମୁଁ ଦିଏଁ ସିନା ସେ ଠିକ୍ ସମୟରେ ପ୍ରକାଶ କରି ପାରନ୍ତି । ତେଣୁ ମୁଁ ତାଙ୍କୁ କେଉଁ ଗୁଣରେ କୃତଜ୍ଞତା ଜଣାଇବି, ଜାଣିପାରୁ ନାହିଁ । ସେ ମୋର ନମସ୍ୟ ହୋଇ ରହିଥାନ୍ତୁ ।

ପାଣ୍ଡୁଲିପିର ପ୍ରଗତି, ପ୍ରକାଶନ ଜନିତ ଅଗ୍ରଗତି ଅନୁଧ୍ୟାନ କରୁଥିବା ଅଧ୍ୟାପକ ବନ୍ଧୁ ହରିହର ମହାନ୍ତିଙ୍କ ଉତ୍ସାହ, ପ୍ରେରଣା କଲମ ଧରିବାକୁ ପଛଘୁଞ୍ଚା ଦେଉନାହିଁ ।

ମିକି, ପିଂକିଙ୍କ 'ବଡ଼ମା' ଶ୍ରୀମତୀ ଆଶା ପଟେଲ, ବିଜ୍ଞାନ ସ୍ନାତକ ସମ୍ମାନ, ସ୍ନାତକୋତ୍ତର ଶିକ୍ଷା : ସିଏ କି ମୋର ସର୍ବାଧିକ ସ୍ନେହରଞ୍ଜିଣୀ ଭଗ୍ନୀ ତାଙ୍କୁ 'ଝାଟି ମାଟି ଝାଙ୍ଗର' ଉପନ୍ୟାସକୁ 'ଉତ୍ସର୍ଗ' କରି ରହୁଛି । ଏହି ଜିନ ଜୀବନର ଉତ୍ତରାଧିକାରୀ ଦିନେ ସେ ହେବେ । ପଥହରା ଔପନ୍ୟାସିକ ଅନ୍ୟ କିଛି ତାଙ୍କୁ ଦେଉନାହିଁ । ଶକ୍ତି ହସ୍ତରେ ବାଣୀ ବନ୍ଦନାର ପୂଜା ସମ୍ଭାର 'ଝାଟି ମାଟି ଝାଙ୍ଗର'ଟିକୁ ତାଙ୍କ ହାତକୁ ବଢ଼ାଇ ଦେଉଛି । ପୂଜାର୍ଚ୍ଚନାର ବ୍ୟବସ୍ଥା ସେ ହିଁ କରିବେ ।

**ରୋହିତ କୁମାର ପଟେଲ**

ଶ୍ରୀପଞ୍ଚମୀ
୪ । ୨ । ୧୯୯୫
ଖାରସିଂହପୁର

ମଦନର ପରିବାରଟି ବଢ଼ି ଯାଉଛି ।

ଏବେ ମଦନକୁ ବେଶି ଖଟିବାକୁ ପଡ଼େ । ମଦନ କୁକୁଡ଼ା ଡାକ ଆଗରୁ ଉଠେ । ତା' ଘର ପିଣ୍ଡାରେ ରଖା ହୋଇଥିବା କାଠ ଭାରଟି ସେ ବୋହିଗଲେ ଦିନେ ଛଡ଼ା ଦିନେ ସୁନ୍ଦରଗଡ଼ ବଜାରରେ । ଚିରା ଧୋତିର କାନିରେ ତା'ର ସଞ୍ଚିତ ଟଙ୍କା ଦୁଇଟା ଅତି ଯତନରେ ବାନ୍ଧିଥାଏ । ମଝିରେ ମଝିରେ ରାସ୍ତା କଡ଼ରେ କାଠ ଭାରଟି କାନ୍ଧରୁ ଉତାରି ଦେଇ ସେ ଥକା ମାରେ । ସନ୍ଦେହଭରା ଆଖିରେ ଦେଖିନିଏ ସେ ବନ୍ଧା ହୋଇଥିବା ନିଜର ଟଙ୍କା ଦୁଇଟାକୁ । ଭଗବାନଙ୍କୁ ମୁଣ୍ଡିଆ ମାରେ । ମା' ସମଲେଇଙ୍କୁ ଜୁହାର କରେ । ଆଜି ତା'ର କାଠ ଭାରଟି ବିକି ହୋଇଯାଉ । ଘରେ କାଠର ଦାମ ଦୁଇ ଟଙ୍କା ପନ୍ଦର ପଇସାରେ ଗୁଡ଼ିଲ ଦେଢ଼ସେର କିଛି ତେଲ ଲୁଣ କିଣା ହୋଇ ତା'ର ଛୋଟିଆ ପରିବାର କମନ୍ତେ ଦୁଇ ଦିନର ଅଡ଼ୁଆ ହୋଇଯିବ । କପଡ଼ା-ଲତା, ଭଲ-ମନ୍ଦ ପାଇଁ କିଛି ପଇସା ରଖିଥିବ ।

ଆଜି ମଦନ ଧରା ପଡ଼ି ଯାଇଛି । ସୁନ୍ଦରଗଡ଼ ସହରର ବନରକ୍ଷୀ ବାବୁ ତାକୁ ଦୁଇ ଟଙ୍କା ଦଣ୍ଡ ଦେଇଛନ୍ତି । ତା'ର କାଠଗାଡ଼ି ଜବତ କରାଯାଇଛି । ମଦନ ବହୁତ ଗୁଲ୍‌ଗୁଲ୍ ହୋଇ କହି ଦେଖିଲା—ଘରେ ତା'ର ଦୁଇ ମାସର ଛୋଟିଆ ଶିଶୁଟାଏ—ବଡ଼ଟିର ସମୁଦାୟ ବୟସ ଦୁଇବର୍ଷ ନଅ ମାସ । ସ୍ତ୍ରୀ ଦେହରେ ବଳ ନାହିଁ । ସେ ଯଦି ଆଜି ଗୁଡ଼ିଲ କିଛି ନ ନିଏ କାଲି ହୁଏତ ପୁଅ ଦୁଇଟିର ମା' ବଞ୍ଚିଯିବ ନାହିଁ ମଦନ ।

ବନରକ୍ଷୀ ବାବୁ ଏ ଅଞ୍ଚଳର ଲୋକ । ସେ କଥାଟା ବୁଝିଥିଲେ । ତାଙ୍କର ମତ ଯେ କାଠଟା ଜବତ କରାଯାଇ ଅର୍ଥଦଣ୍ଡ ଦିଆ ନ ଗଲେ ଲୋକଟା ଦୁଇ ଟଙ୍କାରେ କିଛି କଣାକିଣି କରି ଘରକୁ ଫେରିଯାନ୍ତା । କାଠଟା ଜବତ କରାଗଲେ ଭବିଷ୍ୟତରେ ମଦନ ଆଉ ଭାର କାଠ ବିକିବା ଧନ୍ଦା ଛାଡ଼ିଦେଇ ଅଲଗା କିଛି ଗୋଟାଏ ରୋଜଗାରର ପନ୍ଥା ଧରନ୍ତା ।

କିନ୍ତୁ ବନପାଳ ବାବୁଙ୍କ ଧାରଣା ଅଲଗା ହେଲା । ଏକେତ ସେ ନୂଆ ଲୋକ । କାଠଟା ତାଙ୍କ ପାଇଁ ମଦନର କାଠପରି ଶସ୍ତା ନୁହେଁ । ମଦନ ପରି ଲୋକେ କାଠ ବିକି ବହୁତ ରୋଜଗାର କରନ୍ତି । ନ ହେଲେ ସେ ଦୁଇ ଟଙ୍କା ସଞ୍ଚୟ କରି ରଖିଥାନ୍ତା କିପରି । କାଠ ବିକା ଏମାନଙ୍କର ବେଶ୍ ଉପାର୍ଜନ କରିବାର ଏକ ସହଜ ପନ୍ଥା । ମଦନ ଆଗରୁ ଜାଣେ ଯେ ସେ ଯଦି ଧରାପଡ଼େ ତାକୁ ଅର୍ଥଦଣ୍ଡ ଭୋଗିବାକୁ ପଡ଼ିବ । ତବେ କାଠ ପାଇଁ ଦୁଇଟି ଟଙ୍କା ତା' ପାଇଁ କିଛି ନୁହେଁ । ଯେ ଦୁଇଟଙ୍କା ଆଣିଛି ଏବଂ ଜୋରିମାନା ଦେଇଛି । ଏମାନଙ୍କୁ କଠୋର ଦଣ୍ଡ ଦିଆ ନ ଗଲେ ଏମାନେ ଜାତୀୟ ସମ୍ପଦକୁ ନଷ୍ଟ କରିଦେବେ ।

'ଜାତୀୟ ସମ୍ପଦ' ଆଗରେ ବନରକ୍ଷୀ ବାବୁ ଦବିଗଲେ । ସେ ମଦନର ଆଖିରୁ ଝରି ପଡ଼ୁଥିବା ମଣିମୁକ୍ତା ସବୁ ଗୋଟାଇବାକୁ ଚେଷ୍ଟା କରୁଥିଲେ, କିନ୍ତୁ ପାରିଲେ ନାହିଁ । ସେ ସବୁ ସକାଳର ମେଘ ଫାଙ୍କରେ ଆସୁଥିବା ସାଧାରଣ ଉଷ୍ମ ସୂର୍ଯ୍ୟ କିରଣରେ ବି ବାଷ୍ପ ହୋଇ ମିଳେଇ ଗଲା ।

ମଦନ ଏସବୁ କିଛି ବୁଝି ପାରିଲା ନାହିଁ । ଶୁଖିଲା କାଠ କ'ଣ ଗୋଟାଏ ଜାତୀୟ ସମ୍ପଦ । ତା' ମୁଣ୍ଡ ବିନ୍ଧିଗଲା । ବନପାଳ ବାବୁଙ୍କ ମୁହଁକୁ ଚାହିଁଲା । ଦେଖିଲା ତାଙ୍କର ଆଖି ଦୁଇଟି ଅତ୍ୟନ୍ତ ଶୀତଳ ତଥାପି ହୁ-ହୁ ଜଳୁଛି । ବନରକ୍ଷୀ ବାବୁ ମୁଣ୍ଡ ଅବନତ ଦେଇଛନ୍ତି ଟଙ୍କା ଦୁଇଟା ତା'ର ଅଣ୍ଟା କାନିର ଗଣ୍ଠିରୁ ବାହାର କରି ବନପାଳ ବାବୁଙ୍କୁ ବଢ଼ାଇ ଦେଲା ।

ମଦନ ନିଜ ଘରକୁ ଫେରି ଆସିବା କଥା; କିନ୍ତୁ ଫେରି ପାରୁନି । ତା' ଆଖିରେ ସୁମାନିର ଛୋଟ ଛୋଟ ଆଖି ଦୁଇଟି ଦେଖାଯାଉଛି । ଆଖିର ନିରାଡ଼ମ୍ବର ଗୃହିଣୀ ଆଉ ଚିର ଦୁଃସ୍ଥ ଛବିଟା ତାକୁ ଭାବନା ରାଜ୍ୟ ଆଡ଼କୁ ନେଇ ଯାଉଛି ।

ମଦନ ଠିକ୍ କଲା ସେ ଏ ବାଟେ ଜଙ୍ଗଲକୁ ଚାଲିଯିବ । କିଛି କୁଲୁରୁ ଫଳ ସଂଗ୍ରହ କରି ତା'ର ଭୋକିଲା ସ୍ତ୍ରୀ'କୁ ଖାଇବାକୁ ଦେବ । ଏଇ ଭାଦୋ ମାସରେ ପିଲାଦିନେ ସେ ଅନେକ ଦିନ ପେଟେ କୁଲୁରୁ ଖାଇ ଖୁବ୍ ଖୁସିରେ ଦିନ କାଟି ଦେଇଛି ।

ଏଇଥିରେ ସୁମାନୀର ଭୋକଟା ସିନା ଉଡ଼ିଯିବ—ଛୋଟ ଛୁଆଟି ମା'ର ଦୁଧ ପିଇ ଚଳିଯିବ—ସମରୁ ପାଇଁ ଟିକିଏ ହେଲେ ଥିର୍ ଦରକାର । କୁଲୁରୁରେ ତା'ର ଆଦରର ସମରୁ ସନ୍ତୋଷ ଲାଭକରି ପାରିବ ନାହିଁ । ସେତେବେଳେ ସେ ଆଉ ସମ୍ଭାଳି ପାରିବନି । ସୁମାନୀକୁ ବାଧିବ । ତା'ର ଛୋଟ ଘରଟି ଯନ୍ତ୍ରଣାରେ ହତାଶ ହୋଇ ଉଠିବ ।

ମଦନ ସହରର ଅନେକ ଲୋକଙ୍କୁ କାଠ ଦିଏ । ମଦନର କାଠକୁ ସମସ୍ତେ ପସନ୍ଦ କରନ୍ତି । ମଦନ ଯେତିକି କାଠ ସେମାନଙ୍କୁ ଦିଏ, ସେତିକି କାଠ ପାଇଁ ସେମାନଙ୍କୁ ପାଞ୍ଚ ଟଙ୍କା ଦେବାକୁ ପଡ଼ନ୍ତା । ସହରର ଅତ୍ୟାବଶ୍ୟକ ଜିନିଷ-ଗୁଡ଼ିକର ଦର ବଢ଼ି ଚାଲିଛି, ମଦନର କାଠ ଜନ୍ମ ସେମାନଙ୍କୁ ଅଶ୍ୱାସନା ଦିଏ । ମଦନକୁ ସେମାନେ ଆଦର କରନ୍ତି । ମଦନ ମନେ ମନେ ଠିକ୍‌କଲା ସେମାନଙ୍କ ପାଖକୁ ଯିବ । ନିଜର ଦୁଃଖ କଥା କହିବ । ସେମାନଙ୍କଠୁ କିଛି ଟଙ୍କା ଆଣିବ । ତା'ର ଖୋଜିଲା ପରିବାରକୁ ଥରେ ଟିକିଏ ଦେବ । ମଦନର ମନ ଚଞ୍ଚଳ ହୋଇ ଉଠିଲା ।

ମଦନର ମନ ଖୁସି ପଡ଼ିଛି । ଗୁଡ଼ିଆ ଦୋକାନୀଟି କହିଲା, ତା'ର ବଡ଼ ଭାଇ ନାହିଁ, ଝାରସୁଗୁଡ଼ା ଯାଇଛି ସଉଦା ଆଣିବା ପାଇଁ । କାଲିର ବନ୍ଦୀ ପଇସାତକ ସେ ନେଇ ଯାଇଛି । ଆଜି ବିକ୍ରୀବଟା ଏତେ ବେଶୀ ନାହିଁ । ଯାହା ଅଛି ଶାଗସବ୍‌ଜି କିଣିବାକୁ ନିଅଣ୍ଟ । ମଦନ ଦେଖିଲା ! ଏ ଗୁଡ଼ିଆ ଦୋକାନୀ କାଠ ରଖେ ପଇସା ଦିଏ । ମଦନକୁ ସେ ଚିହ୍ନେ । ମଦନ ଆଉ ବେଶି କିଛି କହି ପାରିଲା ନାହିଁ । କାଳେ ଦୋକାନୀର ମନରେ ଦୁଃଖ ଆସିବ । ତା'ଠୁ ଆଉ କାଠ ରଖିବ ନାହିଁ ।

ମଦନ ଚାଲିଗଲା କଲ୍ୟାଣୀ ବାବୁ ଘରକୁ । ବାବୁଆଣୀ କହିଲେ; ବାବୁ କଚେରୀକୁ ଚାଲିଗଲେଣି । ବାକ୍‌ସର ଚାବି ବାବୁଙ୍କ ପାଖରେ । ସେ ଥିଲେ ତାକୁ କିଛି ନା କିଛି ପଇସା ମିଳି ଯାଇଥାନ୍ତା । ମଦନର ସରଳ ମନକୁ କଥାଟା ପସନ୍ଦ ଲାଗିଲା । ସେ ଯେବେ ବି କାଠ ଆଣେ, ବାବୁ ଥାଆନ୍ତି । ସେ ଘର ଭିତରେ କାଠ ଗୁଡ଼ିକ ରଖିଦିଏ । ବାବୁଆଣୀ ପଇସା ଦିଅନ୍ତି । ବାବୁ ବି ଭଲ କାଠ ଆଉଥରକୁ ଆଣି ଦେବାକୁ କହିଥାନ୍ତି । ମଦନ ହଁ ଭରେ । ଭଲ ପାଉଥିଲେ ତିନି ଚାରିଦିନ ଭିତରେ ସେ ଶୁଖା କାଠ ଆଉଥରକୁ ଆଣି ଦେବାକୁ ରାଜି ହୁଏ ।

ମଦନ ବିଷଣ୍ଣ ମନରେ ଫେରି ଆସୁଛି । ତାକୁ କିଏ ଜଣେ ଡାକ ପକାଇବାରୁ ଚମକି ପଡ଼ିଲା । ରଘୁ କଚେରୀରେ ସେବକ କାମ କରେ । ସେ କେବେ କେମିତି ମଦନଠାରୁ କାଠ ରଖେ । ଅନେକ ଦିନଠାରୁ ସେ ମଦନକୁ ଦେଖି ନ ଥିଲା । ତେଣୁ ସେ ଡାକ ଦେଇଛି । ମଦନ ରଘୁ ପାଖକୁ ଯାଇ ନିଜର ଦୁଃଖ କଥା କହୁଛି ।

ରଘୁର କାର୍ଯ୍ୟାଳୟରେ କାମଥିବା ଜଣେ ଭଦ୍ରଲୋକଙ୍କ କାମ ହୋଇ ଯାଇ ଥିବାରୁ ସେ ଟଙ୍କାଟିଏ ପାଇଥିଲା । ସେଥିରୁ ସେ ଆଳୁ ଅଧକିଲୋଗ୍ରାମ ଏବଂ ଭଙ୍ଗ ପାଞ୍ଚ ପଇସାର କିଣି ସାରିଛି । କାର୍ଯ୍ୟାଳୟର ବଡ଼ବାବୁ ପାନ ଦୁଇଖଣ୍ଡ

ପାଇଁ ତାକୁ ପଠାଇଛନ୍ତି । ଏଇ ଅବସରରେ ସେ ଅନ୍ତତଃ ଘରେ ରହିଦେବ ଓ ମୁଠାଏ ଭାତ ଖାଇ କାର୍ଯ୍ୟାଳୟକୁ ଚାଲିଯିବ । ଚାଳିଶ ଚାଳିଶ ପଇସାରେ ସେ ପାନ ଝଣ୍ଡେ ଦୁଇଝଣ୍ଡେ, ବିଡ଼ି କପଟିଏ ପାଇଯିବ । କିନ୍ତୁ ମଦନର ଦୁଃଖ ତାକୁ ବାଧୁଛି ।

ରଘୁ ମଦନକୁ କହିଲା; ସେ ଗତ ରବିବାର ଦିନ ପାଖ ଜଙ୍ଗଲକୁ ସାଇକଲର ପଛପଟେ ଲଦି ଦେଇ କିଛି କାଠ ଆଣି ସାରିଛି । ଏଇ ସପ୍ତାହରେ ତାକୁ କାଠ ଆଉ ଦରକାର ପଡ଼ିବ ନାହିଁ । ସେ ତ କାଠ କିଣାକିଣି ବେଶି କରେନାହିଁ । ମାହର ପହିଲା ସପ୍ତାହରେ ଧାର ଉଧାର ପରିଶୋଧ କରି କିଛି ଟଙ୍କା ଥିଲେ ଘରେ ଅଧେ କାଠ ସେ କିଣି ପକାଏ । ମାଙ୍ଗୁଡ଼ି ମଦନ ଚାଳିଶ ପଇସା ନେଇଯାଉ ଏବଂ ମାହର ପ୍ରଥମ ସପ୍ତାହରେ କାଠ ଘରେ ଆଣି ଦେଇ ବାକି ପଇସା ସାଙ୍ଗା ନେଇଯିବ ।

ମଦନ ଟିକିଏ ଆଶ୍ୱସ୍ତ ହେଲା । ପାଏ ଚାଉଳ ଆଉ କିଛି ଲୁଣ ହୋଇ-ଯିବ । କିନ୍ତୁ ସରକାରୀ ଖୁଚୁରା ଦୋକାନରେ ଚାଉଳ ନ ଥିଲେ ହେହି ଚାଉଳକୁ ସେ ଚାଳିଶ ପଇସାରେ ପାଇବନି—ଲୁଣ ତ ଦୂରରେ କଥା । ତଥାପି ଦମ୍ଭନେଲା । ତା' ଗାଆଁ ମାନମୁଣ୍ଡା । ସୁନ୍ଦରଗଡ଼ରୁ ଷୋହଳ କିଲୋମିଟର । ମଝିରେ ଅନେକ ଗୁଡ଼ିଏ ଖୁଚୁରା ଦୋକାନ । ପୋଡ଼ାଗଳଙ୍ଗାରୁ ଖୁଚୁରା ଦୋକାନୀ ଭାରି ଭଲଲୋକ । ତାଠି ସବୁବେଳେ ଚାଉଳ ଥାଏ । କିଛି ଅସୁବିଧା ହେବନାହିଁ ।

ମଦନ ସହର ରାସ୍ତାରେ ଭେଟିଛି ଖେଡୁକୁ । ଖେଡୁ କାଖରେ ନୂଆ ଶାଢ଼ୀଟିଏ ଯାକଯୁକ ବଡ଼ ଖୁସିରେ ଆସୁଛି । ଖେଡୁ ମଦନକୁ ଜୁହାର କଲା । ମଦନ ଖେଡୁକୁ ଚିହ୍ନେ । ଖେଡୁ ଖେରେପଡ଼ାର ଲୋକ । ସେ ବି ଝଟି ଖାଏ । କେବେ କେମିତି ଭାରି କାଠ ଆଣୁଥିବା ସମୟରେ କିମ୍ବା ସହରରେ ବିକୁଥିବା ସମୟରେ ସେମାନେ ଉଭୟେ ଉଭୟଙ୍କୁ ଭେଟିଥାନ୍ତି ।

ମଦନ ଶାଢ଼ୀଟା ସମ୍ବନ୍ଧରେ ପଚାରିଲା । ଏବେ ସେ ଶାଢ଼ୀଟା କ'ଣ କରିବ ? କେତେ ଟଙ୍କାରେ ସେ କିଣିଲା ?

ଖେଡୁର ଭଉଣୀଟିଏ ଅଛି । ଭଉଣୀଟା ତା'ର ବଡ଼ଶୋଘରେ ପଡ଼ିଛି । ତା' ଘର କାଠ ଘର ହେଲେ ବି ତ ଭଉଣୀର ଗୋଟାଏ ଆଶ୍ରା ଅଛି । ତା'ର ଭାଇଟିଏ ଅଛି—ଭଲମନ୍ଦ ସୁଖ ଦୁଃଖରେ ଠିଆହେବ । ତା' ଶାଶୁଘରେ ତାକୁ ଅନ୍ୟାୟରେ ଆଣ୍ଡକରି କେହି କଥାପଦେ କହିଲେ ତା' ଭାଇର କଥା କହିବ । ଭଉଣୀଟି ଭାଇ ଜିମ୍‌ତିଆ ଉପାସ କରିବାକୁ ଆସିବ । ଖେଡୁ ପାଇଁ ଧୋତିଟାଏ ନ ହେଲେ ବି ଅଙ୍ଗଛଟାଏ ଆଣିବ । ଦଶହରା ମାସଟି ପାଖେଇ ଆସିଲାଣି । ଉଜ୍ଜ୍ୱଳ ପକ୍ଷ ସପ୍ତମୀ କିମ୍ବା ଅଷ୍ଟମୀ ତିଥିରେ ଭାଇଜିମ୍‌ତିଆ ଉପାସ ପଡ଼େ । ଏ ଅଞ୍ଚଳରେ ସମସ୍ତ

ଭଉଣୀ ଝିଅମାନଙ୍କ ମଙ୍ଗଳ କାମନା କରି ଉପବାସ କରିବେ । ଅବିବାହିତା ଭଉଣୀମାନେ ପିତା ଘରେ ଅଛନ୍ତି । ବିବାହିତା ଭଉଣୀମାନେ ଶାଶୁଘରେ । ସେମାନଙ୍କୁ ଆଣିବାକୁ ପଡ଼ିବ । ମାଁ ଘର ଗାଁରେ ସେମାନଙ୍କର କୁମାରୀ ଜୀବନର ଅଭିନବ ସମାବେଶ ହୁଏ । ପରିବାର ଗୁଣ୍ଡିକରେ ପୁରାତନ ପରିବେଶ ମଧ୍ୟରେ ଏକ ନୂତନତ୍ୱ ଫୁଟିଉଠେ । ନବ ବିବାହିତା ଭଉଣୀର ସ୍ୱାମୀ ପ୍ରଥମଥର ପାଇଁ ଆସିବ ବିବାହ ପରେ ଶ୍ୱଶୁର ଘରକୁ । ତାଙ୍କ ସାଙ୍ଗରେ ଥିବେ ତା'ର ସାଙ୍ଗ ସାଥୀମାନେ । ଏଇ ଭେଟିଆ ପ୍ରଥାରେ ଭାବ ବିନିମୟ ହେବ ତାଙ୍କ ଏବଂ ଶ୍ୱଶୁର ଘର ଗାଁର ଲୋକଙ୍କ ମଧ୍ୟରେ । ତାଙ୍କ ପରିଚିତ ହେବ ତା'ର ଅନାମୀ ସ୍ୱଜନଗୁଡ଼ିକ ନିମନ୍ତେ ଜୀବନର ଏକ ନୂତନ ପର୍ଯ୍ୟାୟରେ ଉପନୀତ ହୋଇ ଯାଉଥିବା ବ୍ୟକ୍ତି-ମାନଙ୍କ ନିକଟରେ । ଗାଁ ଘରେ ପଚରା ଉଚୁରା ଚାଲେ କାହାର ଭାଇ କାହାକୁ ନେବାକୁ ଆସିଲାଣି କି ନାହିଁ । କିଏ କେବେ ଯିବ । ଏଇ ନିମ୍ବଜିଆ ଉପାସ ପରେ ବିବାହିତା ଭଉଣୀମାନେ ଶାଶୁ ଘରକୁ ଫେରିଗଲେ କାହାର ଭାଇ କ'ଣ ଦେଇଛି କି ଦେଇନାହିଁ ଆଲୋଚନା ଚାଲେ । କେତେ କଥା ପଡ଼େ ।

ଖେଡ଼ୁ ନିଜର ଭଉଣୀ ପାଇଁ ତେର ଟଙ୍କାରେ ଶାଢ଼ୀ ଖଣ୍ଡିଏ କିଣିଛି । ଆଜି ବୁଧବାର । ସୁନ୍ଦରଗଡ଼ରେ ଗୋଟିଏ ହାଟ ପାଳି । ହାଟ ପାଳି ଦିନ ମାଡ୍ରାସୀ ଟଙ୍କା ଦିଏ । ଧୋତି ଶାଢ଼ୀ ଦିଏ । ଖେଡ଼ୁ ଅଢ଼େଇ ଟଙ୍କା ଲେଖାଏଁ ଦେଇଛି । ଆଉ ସାଢ଼େ ପାଞ୍ଚଟଙ୍କା ନଗଦ ଆଣିଛି । ତା' ଭଉଣୀକୁ ନେବାକୁ ଯିବାବେଳେ ଭଣଜାଭାଣିଜୀମାନଙ୍କ ନିମନ୍ତେ କିଛି ପକୋଡ଼ି ଜିଲେବି ବାଟ ଦେଖା ଦେଇଦେବ । ଭଉଣୀ ଶାଶୁ ଘରକୁ ଫେରିବା ସମୟରେ କିଛି ପଇସା ବାଟ ଖରଚ ନିମନ୍ତେ ଦେବ । ପୁଅ ହୋଇଥିଲେ ସେ ତ ପୁଣି ଏ ଘରୁ ଗୋଟିଏ ଭାଗ ପାଇଥାନ୍ତା ।

ମାଡ୍ରାସୀ ଟଙ୍କା କଥା ଶୁଣି ମଦନର ମନଟି ଖଟ୍ଟେ ହୋଇଗଲା । ସୁମାନର ଦେହ ଭଲ ନ ଥିଲା । ଔଷଧ କିଣିବାପାଇଁ ସେ ସେତେବେଳେ ଆଠ ଟଙ୍କା ଆଣିଥିଲା । ଲେଖାଏଁ ଟଙ୍କାଟିଏ ଦେଲା । ଦଶ ସପ୍ତାହ ଯାଏଁ ଗୋଟିଏ ଲେଖାଏଁ ଟଙ୍କା ପରିଶୋଧ କଲା । ତାକୁ ବାଧିଥିଲା । ବର୍ଷକରେ ଶହେ ଟଙ୍କା ମୂଳରେ ତିନିଶହ ଦଶ ଟଙ୍କା ସମୂଳ ଧନ । ଏହା ବୋଧହୁଏ ସଂସାରର ସର୍ବୋଚ୍ଚ ଶୋଷଣ । ସେ ଆଉ ଶୋଷି ହେବନାହିଁ । କାହାକୁ ଏକଥା କହିବ । ନିଜର ବଳିଷ୍ଠ ବାହୁ ଦୁଇଟି ଅର୍ଜନ କରି ଚାଲିବ ଅଥଚ ମନକୁ କଷ୍ଟ ହେବ । ତା' ଝାଳ୍ କ'ଣ ପଇସାର କିଛି ଅଂଶ ନୁହେଁ । ନିର୍ଯ୍ୟାତନାରେ ତା' ଶରୀର କମ୍ପି ଉଠିଲା । ଖେଡ଼ୁ ବୁଝା ହୋଇନାହିଁ । ସେ ଉପାର୍ଜନ ଓ ସୁଧ ଭିତରେ ଥିବା ତାରତମ୍ୟ ବୁଝିନି । ବୁଝିଯିବ ।

ମଦନ ହତାଶ ହୋଇ ଯାଇଛି । ରିଙ୍ଗାଚକା ଚକରୁ ପୋଡ଼ାକଳଙ୍କ ଅଭିମୁଖେ ଗୋଡ଼ ବଢ଼େଇଛି । ଗ୍ରାଲଣ ପଇସାରେ ଚଳନ୍ତି ତା'ର କଟିମାଙ୍କି । ସୁମାନୀ ଆଉ ଆଦରର ସମରୁ ତାକୁ ଚାହିଁ ବସିଥିବେ । ଘରେ ପାଏ ହେଲେ ବି ଚାଉଳ ପହଞ୍ଚୁ ଯାଉ । କାଲିପାଇଁ କାଠ ଆଣିବ । ଜଙ୍ଗଲକୁ ଯିବାକୁ ପଡ଼ିବ । ଭଗବାନ ଭୋକରେ ଉଠାଇବେ ସିନା ଭୋକରେ ଶୁଆଇବେ ନାହିଁ । ମଦନର ମୁହଁଟି ଉଜ୍ଜ୍ୱଳ ହୋଇଯାଏ ।

ମଦନ ଭେଟିଛି ରାମେଶ୍ୱରକୁ । ସେ ଭାରି ଖୁସି ଜଣା ପଡୁଥାଏ । ମଦନ ରାମେଶ୍ୱରକୁ ଜୁହାର କଲା । ରାମେଶ୍ୱର ପଚାରୁଛି : ସେ କୁଆଡ଼େ ଆସିଛି, ତା'ର ପୁଅଝିଅ କେତୋଟି ।

ମଦନ କହୁଛି : ବଡ଼ ପୁଅ ସମରୁକୁ ଦୁଇ ବର୍ଷ ନଅ ମାସ ଆଉ ଦୁଇ-ମାସ ହେବ ଛୋଟ ପିଲାଟିକୁ ।

ରାମେଶ୍ୱର ମଦନଠୁଁ ବଡ଼ । ମଦନକୁ ତା' ମନର କଥା ଖୋଲି କହି-ଦେବ । ସେ ବୁଝିଗଲେ ତା'ର କିଛି ଗୋଟାଏ ଲାଭ ହୋଇଯିବ । ମଦନଟି ଦୁଃଖରୁ ତରିଯିବ । ତାର ସଂସାରଟି ସୁଖୀ ହେବ ।

ରାମେଶ୍ୱରର ମାମୁଁର ପୁଅ ସୁନ୍ଦରଗଡ଼ କଲେଜରେ ପଢ଼େ । ରାମେଶ୍ୱରକୁ ସେ ଭଲପାଏ । ତା'ର ଦୁଇ ପୁଅ ଝିଅ । ପାହାଡ଼ ତଳିଆ ଜମିରେ ତା'ର ଫସଲ ବରଷେ ବରଷେ ହାନି ହୋଇଯାଏ । ଛୁଆମାନେ ବଡ଼ ହେବାରେ ଲାଗିଛନ୍ତି । ଖାଦ୍ୟ ନଅଣ୍ଟ ହୁଏ । ମାମୁଁ ଘରେ ଚଳାଇ ନଅନ୍ତି । ବାପା ନାହାନ୍ତି । ମା' ବୁଢ଼ୀ ହେଲେଣି । ସେ ଅଣ୍ଡିଆ କେତେ ଖଟିବେ । ରାମେଶ୍ୱର ମାମୁଁ ପୁଅ ଭାଇର କଥା ମାନି ନେଇଛି । ତା' ସଙ୍ଗେ ସୁନ୍ଦରଗଡ଼ ଆସିଛି । ଆଜି ସୁନ୍ଦରଗଡ଼ ଡାକ୍ତରଖାନାରେ ଜନ୍ମ ନିୟନ୍ତ୍ରଣ କରିବା ନିମନ୍ତେ ଅସ୍ତ୍ରୋପଚାରର ଦିନ । ରାମେଶ୍ୱର ଅସ୍ତ୍ରୋପଚାର କରାଇଛି । ତାକୁ ସତର ଟଙ୍କା ପଚାଶ ପଇସା ମିଳିଛି ଆଉ ତା' ମାମୁଁ ପୁଅ ଭାଇକୁ ମିଳିଥିବା ପଇସାଯାକ ବି ତାକୁ ମିଳିଛି । ସେ କଷ୍ଟ ଅନୁଭବ କରିନାହିଁ । ବର୍ତ୍ତମାନ ଖୁସିରେ ଅଛି ।

ମଦନ ରାମେଶ୍ୱରକୁ ଆଉ ବେଶି କହିବାକୁ ଦେଇନାହିଁ । ବାଧା ଦେଇ ପଚାରୁଛି କେତେ ଟଙ୍କା ମିଳିଛି ।

ଅଢ଼େଇ ଟଙ୍କା କମ ଏକକୋଡ଼ି ଟଙ୍କା । ରାମେଶ୍ୱର କହିଲା ।

ମଦନର ଆଖିରୁ ଆଁଶୁ ଝରିଲା । ଝାପ୍‌ସା ଆଖିରେ ତା'ର ଦେଖା ଦେଇଛି ସୁମାନୀ । ଛିଣ୍ଡା ଖଟରେ ଶୋଇଛି । ନବଜାତ ଛୁଆଟି ମା'ର ଦୁଧ

ପିଉଛି । ସମରୁ ତା'ର ବଣା ଗିନା ଝଣ୍ଟିକୁ ଗ୍ରେଟିଆ ବାଡ଼ିଟିରେ ପିଟୁଛି । କର୍ମ-ରତ ଅନାନନ୍ଦ ମନାକାଂକ୍ଷୀର ଶ୍ରମିକ ପରି ମୁଖ-ମଣ୍ଡଳରେ ଦାର୍ଶନିକର ଭାବନା ରାଜ୍ୟର ଆଭା ଅଥଚ କର୍ମଶୂନ୍ୟ—ନିଷ୍କ୍ରିୟ ।

ତିନୋଟି ଅସହାୟ ମଣିଷର କେବଳ ଭରଷା ଏକମାତ୍ର ମଦନ । ସୁମାଙ୍କର ବାପା ମା' ନାହାନ୍ତି । ଭାଇଟିଏ ଥିଲା । ବାହା ହୋଇ ଥିଲାଣି । ଦୁଇ ବର୍ଷ ତଳେ ମାଘ ମାସରେ ବାହା ହୋଇଥିଲା । ଆଷାଢ଼ ମାସର ରାତିରେ ଘରେ ଭୂଇଁରେ ଶୋଇଥିଲା । ସାପ କାମୁଡ଼ି ଦେଇଛି । ଗୁଣିଆମାନେ ରାତିସାରା ମନ୍ତ୍ର ପଢ଼ିଲେ । କୁଚିଆଠାରୁ ଦାରୁ ଆଣି ଖୁବ୍ ପିଇବାକୁ ଦିଆଗଲା । ହେଲେ ଜୀବନ ଉଡ଼ିଗଲା । ଏ ଅଞ୍ଚଳର ସାପ କାମୁଡ଼ାର ଔଷଧ ବିଶାରଦ ସନାତନ ପହଞ୍ଚି ପାରିଲେ ନାହିଁ । ତାଙ୍କ ଔଷଧ ସାପ କାମୁଡ଼ାର ମୃତ୍ୟୁ ସଞ୍ଜିବନୀ ପ୍ରୟୋଗ କରାଯାଇ ପାରିଲା ନାହିଁ । ଭାଇବୋହୂ ଅଳକୁ ନଅମାସ ହେବ ଅନ୍ୟ ଘର କରିବାକୁ ଚାଲିଯାଇଛି ।

ମଦନର ବାହା ପରେ ପଞ୍ଚମ ବର୍ଷ ଚାଲିଛି । ବାହା କରାଇଛନ୍ତି ତା'ର ମାଆ । ସମରୁକୁ କୋଳରେ ଧରି ସେ କେତେ ଯେ ଗୀତ ଗାଇଛନ୍ତି । ସମରୁର ମନେ ଥିଲେ ଥିବ । ମଦନ ତା' ମା' ମୁହଁରେ ଗୀତ ଅଛି ଜାଣି ନ ଥିଲା । ସେ ଆଉ ନାହାନ୍ତି ।

ମଦନର ଘରଟି ହିନା ମାନମୁଣ୍ଡା ଗାଆଁର ଜମିରେ, ହେଲେ ସେ ବସବାସ କରେ ଟିକିଏ ଦୂରରେ । ଘର ପାଖରେ ତା'ର ଆଉ ଦୁଇଟି ପରିବାର । ତାଙ୍କର ପାଣି ଚଳେନାହିଁ । ଲୁଚି ଛପାରେ କେବେ କେମିତି ଥର୍ ଚାଲିଯାଏ । କିନ୍ତୁ କ'ଣ କରାଯିବ, ମଦନଠୁ ସେମାନେ ଭରସା ଚାହାନ୍ତି । ମଦନ ସେମାନଙ୍କ ଆଖିରେ ପୁଞ୍ଜିଆଳା ଲୋକ । ଅଭାବ ଅସୁବିଧାରେ ମଦନ ଚଳାଇ ନିଏ ।

ମଦନ ତା' ବାପା ମାଆର ଗୋଟିଏ ପୁଅ । ବାପା ମାଆ ଆଉ ପୁଅ ଖୋଜି ନାହାନ୍ତି । ମଦନର ମାଆ ବେଳେବେଳେ କହୁଥିଲେ ଝିଅଟାଏ ଥିଲେ ଭଲ ହୋଇଥାନ୍ତା । ମଦନର ସୁଖ ଦୁଃଖରେ ଦୌଡ଼ି ଆସିଥାନ୍ତା । ହେଲେ ପର ଘର କଥା ତ । ଯାହାହେଉ ମଦନ ତ ମାନି ଧୋନି ଚଳେ । ନ ମାନୁଥିଲେ ବୁଢ଼ାବୁଢ଼ୀ ହେଲେ ଝିଅକୁ ଅବା ଆଶ୍ରା କରିଥାନ୍ତେ ।

ମଦନର ତ ଦୁଇଟି ପୁଅ । ସମରୁ ତା'ର ଡାକୁ ମାନବ । ଗ୍ରେଟିଏ ବି ତ ଅଛି । ଦୁଇ ଭାଇକୁ ସେ ଏପରି ଗଢ଼ିବ ଯେ କାନ୍ଦ ତ ଦୁଇ ମୁହଁରେ କାନ୍ଦ, ହସ ତ ଦୁଇ ମୁହଁରେ ହସ ।

ମଦନର ଆଉ ଚିନ୍ତା ନାହିଁ । ରାମେଶ୍ୱରଙ୍କୁ ସେ କହିବ ତାକୁ ସାଙ୍ଗ ଦେବାକୁ । ସେ ଡାକ୍ତରଖାନା କେବେ ଯାଇନାହିଁ । ଦେଖିଛି ଦୂରରୁ, ସଡ଼କରୁ । ରାମେଶ୍ୱର ହଁ ଭରିଲେ ଏଇ କେତେଦିନ ଭୋକରେ ରହିବା କଥା ନ ଥିବ । ଆଉ ଭବିଷ୍ୟତ··· । ଭବିଷ୍ୟତ କଥା ତ ସେ ଚିନ୍ତା କରିବ ।

ରାମେଶ୍ୱର ଖୁସି ହୋଇଗଲା । ମଦନ ନୀରବତା ଭାଙ୍ଗି ଯେତେବେଳେ ସମ୍ମତ ହୋଇଛି । ମଦନ ତ ନିଜେ ରାଜି ହୋଇ ଯାଇଛି । ତାକୁ ବା ଦୋଷ ଦେବ କିଏ ?

ଅସ୍ତ୍ରୋପଚାର ପରେ ମଦନ ଓ ରାମେଶ୍ୱର ଫେରି ଆସିଛନ୍ତି । ମଦନ ସହରରୁ ପାଇଁ ପେଣ୍ଟିଏ କିଣିଛି ଏକ ଟଙ୍କା ଚାରିଶ ପଇସାରେ । ପକୁଡ଼ି କୋଡ଼ିଏ ପଇସାର ବି କିଣିଛି । ବାଟରେ ମୁଢ଼ି କଠାଏ କିଣିବ । ସେ ଯେ ବଳମ୍ବରେ ପହଞ୍ଚିବ । ସୁମାଣି ମୁଢ଼ି ମାଠାଏ ଖାଇ ଦେଇ ଅନ୍ଧାନ ଦେବ । ଆଉ ସେ— ସେ ତ ଚଳି ଆସୁଛି ।

ବଡ଼ ପସାପାଲିରେ କୁଚିଆ ଦୋକାନ । କିନ୍ତୁ ଫୁଲି ଦାରୁ ପିଇଦେଲେ ବାଟ ଜଣାପିବ ନାହିଁ । ମଦନକୁ ପସନ୍ଦ ଲାଗିଲାନି । ଖାଲି ପେଟରେ ରାମେଶ୍ୱର ନ ପିଉ ମଦନର ଇଚ୍ଛା ।

ମଦନ ଦାରୁ ପିଏନାହିଁ । ପର୍ବ ଦିନମାନଙ୍କରେ ଦେ ଦେବତାମାନଙ୍କ ପୂଜା ହୁଏ । ପିତୃ ପିତାଙ୍କ ଆରାଧନା ହୁଏ । କୁଷନା ତର୍ପଣ ଦିଆଯାଏ । ସେ କିଛି ପିଏ । ଦେ ଦେବତା, ପିତୃପିତା ସନ୍ତୋଷ ହେବେ । ବନ୍ଧୁ ବାନ୍ଧବ ଆସନ୍ତି । ସେମାନଙ୍କୁ ମଦ ଦେଇ ସତ୍କାର କରେ । ସେମାନେ ବନ୍ଧୁର ପ୍ରଶଂସା କରନ୍ତି । ମଦନକୁ ପିଇବାକୁ ସେମାନେ ବାଧ୍ୟ କରନ୍ତି ନାହିଁ ।

ମଦନକୁ ସାତ ଆଠ ବର୍ଷ ହୋଇଥାଏ । ଖରାଦିନ । ମଦନର ବାପା ଜଙ୍ଗଲକୁ ଯାଇଥାନ୍ତି । କାଠ ଆଣିବେ । ଘରେ କାଠ ନାହିଁ । ସେ ମଦ ନ ପିଇ ଦିନଟିଏ ବି କାଟନ୍ତି ନାହିଁ । ସେଦିନ ସେ କିଛି ଖାଇ ନ ଥାନ୍ତି । ସକାଳୁ ପସାର ଦାରୁ ଏକ ପଇଠି ପିଇଦେଇ ଚାଲି ଯାଇଥିଲେ । ଫେରିଲେ ଥରେ ପିଇବେ । ଭୀଷଣ ଖରା । କାଠ କାଟି କାଟି ସେ ହାଲିଆ ହୋଇଗଲେ । ଶୋଷ ଲାଗିଲା । କାଠଯାକ ଥୋଇ ପର୍ବତ ଖୋଲ ଆଡ଼କୁ ସେ ଜଳର ଅନୁସନ୍ଧାନରେ ଗଲେ । କେଉଁଠି ବା ପାଣି ଥିବ । ଟିକିଏ ପିଇଦେବେ ।

ପର୍ବତ ଖୋଲରେ ସୁଶୀତଳ ଛାୟା ମିଳେ । ଓଦାଳିଆ ମାଟିର ଧାସୁଆ ଶଯ୍ୟା ମିଳେ । କ୍ଳାନ୍ତ ବନୁଆଁ ଚଢ଼େଇର କ୍ଳାନ୍ତିହର କାକଳି ଶୁଣିବାକୁ ମିଳେ । ମିଳେ ସୁଶୀତଳ ଧୀର ପବନ । ଜନ ପଦରୁ ବିଦାୟ ନେଇ ଅନ୍ୟଆଡ଼େ

ଗ୍ଭଲିବାକୁ ବସନ୍ତ ଏଠାରେ ପ୍ରସ୍ତୁତ ହେଉଥାଏ । ଭୂମି ବସନ୍ତର ବିଦାୟ-କାଳୀନ ଅଶ୍ରୁରେ ଓଦାଳିଆ ହୋଇଯାଏ । ଚନ୍ଦ୍ରର ପାଣି ଝୋଳିଲେ । ନିରାଶାରେ ଆଶା ମିଳିନାହିଁ ।

ପର୍ବତର ଉଚ୍ଚ ସ୍ଥାନଗୁଡ଼ିକର ଗଛ ସବୁର ପତ୍ର ଝଡ଼ି ଯାଇଥାଏ । ସେ ଗୁଡ଼ିକର ସବୁଜିମା ଠୁଳ ହୋଇଥାଏ ପର୍ବତର ଖୋଲରେ । ଗୁଳୁ ଥିଉ ନିବିକାର ଦେହରେ । ମଦନର ବାପାଙ୍କ ଆଖିରେ ସେସବୁ ଦିଶୁନାହିଁ । ତାଙ୍କର ସବୁଯାକ ଇନ୍ଦ୍ରିୟ ଜଳର ଆଶାରେ ଏକ ହୋଇ ଯାଇଛନ୍ତି ।

ମଦନର ବାପା ସହିପାରିଲେ ନାହିଁ । ତଣ୍ଟି ଶୁଖିଗଲା । ଟଳି ପଡ଼ିଲେ ।

ତା'ପରେ ମଦନକୁ ପାଳିଛନ୍ତି ତା'ର ମା' । ସେ ଆଉ ମଦ ଛୁଇଁନାହିଁ । ତର୍ପଣ ସେ ପିଇଛି । ସେ ତ ତାଙ୍କର ଯୁଗ ଯୁଗର ପ୍ରସାଦ । ମଣିଷ ଆଉ ଦେବତାର ଯେଉଁ ଦିନରୁ ସମ୍ପର୍କ ତର୍ପଣ ସେଇ ଦିନରୁ ଦେବତା ପ୍ରତି ମଣିଷର ଉଲ୍ଲାସର ନିବେଦନ । ଏଇ ଧାରଣାରେ ସେ ମଦନକୁ ପ୍ରସାଦ ଦିଏ । ଦେ ଦେବତା, ପିତୃପିତା ମଦନକୁ ଶୀଘ୍ର କମିହିଁ। କରନ୍ତୁ, ଏହା ହିଁ ତାଙ୍କର କାମନା । ମଦନକୁ ତାଙ୍କର କେବଳ ଗୋଟିଏ ହିଁ ଉପଦେଶ···ମଦନ ଦାରୁ ନ ପିଉ । ଦାରୁ ତାଙ୍କ ସଂସାରକୁ ଭାଙ୍ଗି ଦେଇଛି ।

ମଦନର ମା' ଆଉ ନାହିଁ । କିନ୍ତୁ କଥା ସିବନାହିଁ । ଖାଉ ନୁହେଁ ସେ ପଚାସିବ । ମଦନର କୁସୁନା କମ୍ପା ଦାରୁରେ ଡୁବି ନାହିଁ ।

ସମେଶ୍ୱର ନିଜ ବାଟରେ ଗ୍ଭଲି ଯାଇଛି । ମଦନ ପାଖରେ ଆଉ ଷୋହଳ ଟଙ୍କା ଗ୍ଭଳିଶ ପଇସା । ସେ ଏତେ ଟଙ୍କା ଏକାଥରକେ କେବେ ପାଇ ନ ଥିଲା । ଏହାକୁ ଖର୍ଚ୍ଚ କରିବ କେମିତି ?

ସେ ଠିକ୍ କଲା କିଣିବ ଦଶସେର ଗ୍ଭଉଳ । ଦୁଇ କଠା ଲୁଣ । କିଛି ତେଲ, ହଳଦୀ, ଲଙ୍କା ଓ ଧନିଆଁ । ପଚିଶ ପଇସାର ସୋଡ଼ା ଖାର । ତିରିଶ ପଇସାରେ ଏକ କଠା ମୁଢ଼ି । ଆଉ ପାଖରେ ଏକ ଟଙ୍କା ପଞ୍ଚସ୍ତରୀ ପଇସା ରଖି-ଥିବ । ଦୁଇ ତିନିଦିନ ବିଶ୍ରାମ ନେବ । ଶେଷଦିନ କପଡ଼ା ଲତା ସବୁ ସଫା କରିଦେବ । ଖୁବ୍ ଦିନ ହେଲା ସେସବୁ ମଇଳା ହୋଇଯାଇଛି । ଗାଧୋଇଲା-ବେଳେ ଯାହା କଚ୍ଚି ଯାଉଛି । ଅଧିକ ଖାର ପାଇଁ ସାହାଜ ଗଛର ଖାର ବାହାର କରିଛି । ସୋଡ଼ା ଖାର ସହିତକୁ ଏଇ ଖାର ଲୁଗା ଧୋଇବାକୁ ବଢ଼ିଆ ହୁଏ ।

ମଦନ ଘୋଡ଼ାଜଲଙ୍ଗାରେ କଣାକଣି ଧାଉଛି । ଫେରୁଛି ଘରକୁ ।ସୁମାନୀ ଅଗରେ ସବୁଯାକ ଥୋଇ ଦେଉଛି । ସୁମାନୀ ଭାରି ଖୁସି । ସମରୁକୁ ସେ କିଛି ମୁଡ଼ି କଣା ଗିନାରେ ଦେଲା । ସମରୁ ତା' ବାପାର କୋଳରେ ଏକ ଅଜଣା ଖୁସିରେ ଖାଇବାକୁ ଲାଗିଲା । ମଦନ ବି କିଛି ଭାଗ ପାଉଛି । ଅଙ୍କଟିରେ ତା'ର ମୁଡ଼ିଯାକ ଗଦା ହୋଇଛି । ମଦନ ମଝିରେ ମଝିରେ ତା' ନିଜ ଭାଗରୁ ଖୁଆଇ ଦିଏ । ସମରୁ ତା' ନିଜ ଭାଗକୁ ବାପକୁ ଛୁଇଁବାକୁ ଦଏନାହିଁ । କାଳେ ବାପା ତା'ର ଖାଇଦେବ ।

ସମରୁ ପଚାରେ : ମୁନୁବାବୁ ଖାଇବ ନାହିଁ । ତା'ର ମା' କି ତ ଝୋଉଛି ।ମଦନ କହେ : ସେ ବଡ଼ ହେଲେ ସବୁ ଖାଇଦେବ । ତାକୁ ତ ଖାଇବାକୁ ଦେବନାହିଁ । ସମରୁ ବାପାଙ୍କ ଏ କଥା ଶୁଣେ । କିଛି ସମସ୍ୟ କ'ଣ ଗୋଟାଏ ଭାବେ, କିଛି ନ କହି ଚୁପ୍‌ରହେ । ପରେ ହସିଉଠେ । ନିଜ ମୁଡ଼ିସବୁ ଖାଇବାରେ ଲାଗେ ।

ସୁମାନୀ ମୁଡ଼ି ଖାଇସାରି ଗୁଡ଼ଲ ସବୁ ଗୋଟିଏ ପୁରୁଣା ହାଣ୍ଡିରେ ଭର୍ତ୍ତି କରିଦେଲା । ସେ ଆଖ ପାଖର କାହାକୁ କିଛି କହିବ ନାହିଁ । କାହା ଘରେ ଅଡ଼ିଆ ନ ଥିବ । ଗ୍ରେଇ କରି ନେଇଯିବ । କିନ୍ତୁ ହେଉ ଏବେ ସବୁଦିନ ଘରେ ରହେ । ଗ୍ରେଇ କିଏ କରିବ ଦେଖିବ । ଘର ପାଖର ଯେଉଁ ଦୁଇଟି ପରିବାର, ସେମାନେ ଖଟନ୍ତି, ଖାଆନ୍ତି । ନିସତ୍ତ୍ ଲୋକ ସିନା ଗ୍ରେଇ କରିବ ।

ସୁମାନୀ ପଚାରିଲା : ଏତେ ଆସିଲା କୁଆଡ଼ୁ ? ଭାରେ କାଠରେ ଅଡ଼ ବେଶିରେ ଦୁଇସେର ଗୁଡ଼ଲ ଆଉ କିଛି ତେଲ ଲୁଣ ଆସିବ । ତା' ପୁଣି କଣ୍ଟ୍ରୋଲ ଗୁଡ଼ଲ । ସୁମାନୀ ମନରେ ସନ୍ଦେହଭରା ପ୍ରଶ୍ନ ।

ଜଣେ ବାବୁ କାଠପାଇଁ ଭାରି ଅସୁବିଧା ପାଉଥିଲେ । ତାଙ୍କୁ ଭାର କାଠ ବେଶି ମିଳେନାହିଁ । ତାଙ୍କ ଆଡ଼କୁ କେହି ବି ଭାରଆ କାଠ ଆଣନ୍ତି ନାହିଁ । ବାଟରେ ସରିଯାଏ । ଛଅ ଭାର କାଠ ନେବାପାଇଁ ସେ ଷୋହଳ ଟଙ୍କା ପଚାଶ ପଇସା ବଇନା ଦେଇଛନ୍ତି । ସେ ଦୁଇ ତିନିଦିନ ବିଶ୍ରାମ କରି ଭାର ଭାର କରି ବାବୁଙ୍କ କାଠ ଦେଇଦେବ । ତାଙ୍କ ପଇସା ଅସୁଲ ହୋଇଯିବ । ଏବେ ସବୁଦିନେ ଦୁଇ ବଡ଼ା ଲେଖାଏଁ ଅଧିକା କାଠ ନେବ ଆଉ ପଚାଶ ପଇସାରେ ବିକିବ । ଏ ଅଧିକା ପଇସା ତାଙ୍କର କିଛି ଗୋଟାଏ କାମରେ ଲାଗିବ ।

ସୁନ୍ଦରଗଡ଼ର ସେଇ ବାବୁ ଜଣକ କେଡ଼େ ଭଲଲୋକ । ସେ ଯେବେ କହିଲେ ବି ତାଙ୍କୁ କାଠ ଦେବ । ସୁମାନୀ କୃତଜ୍ଞଭରା ସ୍ୱରରେ କହୁଛି । କିନ୍ତୁ

ମଦନର ହୃଦୟକୁ ସେ ସ୍ୱର ଯେ ନିଷ୍ଠୁର୍ ପ୍ରହାର ଦେଉଛି । ସୁମାନୀ ବୁଝିବ କେମିତି । ସ୍ୱାର୍ଥପରଙ୍କୁ କୃତଜ୍ଞତାପୂର୍ଣ୍ଣ ପ୍ରଶଂସା । ଆଜି ମନ୍ଦ ଯାଉଛି ମଦନଙ୍କ, ପରିସ୍ଥିତିର ଦାସ ସେ, କେବଳର ଏକମାତ୍ର ମୂରବୀ ।

ସୁମାନୀର ମନ ଏତେ ପ୍ରଫୁଲ୍ଲିତ ଯେ ତା'ର ଦୁର୍ବଳ ଶରୀର ସତେଜ ହୋଇ ଉଠିଛି । ତାଂ'ର ସୀମିତ ପରିବେଶରେ ଯେ ଯେଉଁକି ଭାଷା ପାଇଛି ସେଇ ଭିତରେ ସେ ତଥାପି କୃତଜ୍ଞତା ପ୍ରକାଶ କରି ଚାଲିଛି । ମଦନ ମନ ଭିତରେ ଅଶେଷ କୃତଜ୍ଞତା ପ୍ରକାଶ କରୁଥିବ ନିଶ୍ଚୟ; ସୁମାନୀର ଭାବନା । ସେ ବେଳେ-ବେଳେ ମଦନଙ୍କୁ ସାକ୍ଷୀ ଦେଉଛି । ସୁମାନୀର ସମର୍ଥନ ଲୋଡ଼ୁଛି । କିନ୍ତୁ ମଦନର ରକ୍ତ ଚଞ୍ଚଳ ହୋଇ ଉଠୁଛି, ମନ ବିଦ୍ରୋହୀ ହୋଇ ଯାଉଛି ଏବଂ ହୃଦୟ ସେ ଅସହାୟ ହୋଇଛି—ସୁମାନୀ ବୁଝିବ କେମିତି । ଶୁଙ୍ଖିଅର ସ୍ପଷ୍ଟ 'ନାହିଁ' ବାବୁଆଣୀର 'କୋମଳ ସ୍ୱର' ତା' ଆଖିରେ ନିଆଁ ଜାଳି ଦେଉଛି । ମୁଠାଏ ଖାଇବାକୁ ନାହିଁ···ଭାଷା ନାହିଁ ।·ଏପରିକି ସୁମାନୀର ଆବେଗକୁ ବାଧା ଦେବାକୁ ତା'ର ସାହସ ନାହିଁ । ଅଥଚ ସୁମାନୀର ସେ ଭାଷା, ସୁମାନୀର ଫୁଟି ଉଠୁଥିବା ମାନବିକତାର ଏବେ ସେ ଯେ ଉତ୍ସ ।

ମଦନ ଗାଧୋଇବାକୁ ଚାଲିଗଲା । ସୁମାନୀର କଥା ବି ସରିଗଲା । ସେ ରୋଷାଇଘରେ ଲାଗିଗଲା ଏବଂ ମଦନଙ୍କୁ କହିଲା; କିଛି ମୁନ୍‌ଗା ଶାଗ ଆଣିବାକୁ ।

ଘର କାଠ ବିକିବାକୁ ମଦନର ଇଚ୍ଛା ଆଉ ନାହିଁ । ଜଙ୍ଗଲର ଗଛ ସବୁକୁ ସେ ଦେଖିଲେ ଆଁଖିରୁ ଆଁଶୁ ଝରେ । ସେଠି ବୁଲିଲେ ସେ କେତେ ଆନନ୍ଦ ପାଉ ନ ଥାଏ । ମନେହୁଏ ଜଙ୍ଗଲର ଗଛଲତା, ଜୀବଜନ୍ତୁ ସମସ୍ତେ ମଦନର ଅପେକ୍ଷାରେ ରହିଆନ୍ତି । ସେ ଗଲେ ଚଢ଼େଇଗୁଡ଼ିକ ଏ ଗଛରୁ ସେ ଗଛକୁ ଉଡ଼ିଯାଇ ଉଚ୍ଚସ୍ୱରରେ କଥା ହୁଅନ୍ତି । ପବନ ବହେ । ଗଛର ଡାଳସବୁ ମୁଣ୍ଡ ଟିଙ୍ଗାରେ । ମଦନକୁ ଛାଇ ଯୋଗାଇ ଦେଇ ବଞ୍ଚି ଦିଅନ୍ତି । ମଦନ ବୁଢ଼ିଆକୁ ଧାର କରିନିଏ । ଗଛଟି ହାଣେ । କାଠ କରେ । କାଠ ଘରଟାଏ ବିକି ସେ କିଛି ରୋଜଗାର୍ କରେ । ଏଇ ଜଙ୍ଗଲ ତାକୁ ଅଡ଼ିଆ ଯୋଗାଏ । ଆଜି କିନ୍ତୁ ଚଢ଼େଇମାନେ ଭୟତ୍ରସ୍ତ, ବନ୍ୟ ପଶୁମାନେ ଆତଙ୍କିତ । ପବନରେ ଡାଳଗୁଡ଼ିକ ମଦନକୁ ଧିକ୍‌କାର କରୁଛନ୍ତି । ପଥରରେ ଧାରକଲେ ବୁଢ଼ିଆର ଗଢ଼ ଯେତେ କ୍ଷିପ୍ର ପଥର ତେତେ ଜୋରରେ କାନ୍ଦୁଛି । ମଦନର ମନେହୁଏ ଗଛଗୁଡ଼ିକ ସତର୍କ ପ୍ରହରୀ ଭଳି । ସେ ଆଜି ଜଙ୍ଗଲର ହିଂସ୍ର ଜନ୍ତୁମାନଙ୍କୁ ଯେତେ ଡରୁନି, ଡରୁଛି ଗଛଗୁଡ଼ିକୁ ! ମଦନ ଜଙ୍ଗଲକୁ ଗଲେ ନିଜକୁ ଶ୍ରେଷ୍ଠ, ହେୟ ମନେକରେ । ମନଟା ଯାକି ହୋଇଯାଏ । ନିଜକୁ ନିହାତ ଅସହାୟ ମନେକରେ ।

କିନ୍ତୁ ରଘୁ ମୋଦନକଙ୍କୁ ଘରେ କାଠ ଦେବାକୁ ପଡ଼ିବ । ମୋ ମେ ମଦନକୁ ଅନ୍ତର ମୂର୍ଦ୍ଧ ଦେଖାଇଛି । ଏଇ ଜଙ୍ଗଲରେ ପ୍ରଥମେ ପଡ଼ିଥିବା ଆବର୍ଜନା ଚ୍ଛଲପା ସବୁ ଗୋଟାଇଛି । ଗାଣ୍ଡୁଆ ଘରରେ ଧଇ ଦ୍ୱାର ଅଣାରେ ବାନ୍ଧିଛି । ମେତେବେଳେ ସେ ଜଙ୍ଗଲ ସଫା କରୁଥିଲା । ଦେହରେ ବଳ କମ୍ ଥିଲା, ବୟସ ଗ୍ଳେଟ ଥିଲା । ଗଛ ହାଣିପାରୁ ନ ଥିଲା । ତେଣୁ ଜଙ୍ଗଲକୁ ଗ୍ରେଶ ଯାଉଥିବା ଗଛର ଗୁଳି, ବତା, ବଉଁଶ ଆଦି ଛିଣ୍ଡା ହୋଇ ଯାଉଥିବାବେଳେ, କାଠୁରିଆ ଗୁଡ଼ି ଯାଉଥିଲା ଯେଉଁ । କୁଢ଼ କୁଢ଼ ହୋଇ ଗଦା ପଡ଼ି ରହୁଥିଲା । ଅନେକ ବର୍ଷ ପଡ଼ିରହି ଶୁଖି ପଚି ଯାଉଥିଲା । ସେଇ ଆବର୍ଜନା ସଫାରୁ ସେ ଏବେ କାଠ ହାଣୁଛି । ସହରକୁ ନିତ ବୋହୁଛି ଘର କାଠ ।

ରଘୁ କାଠ ନ ପାଇଲେ ଗୁଣ୍ଡିଆ ଆଉ ସେଇ ବାବୁଆଣୀ ହେବେ ଦୂରଦ୍ରଷ୍ଟା ଏବଂ ରଘୁ ବନବ ଭଲୁଆ । ମଦନ ଉଦାହରଣ ହେବ କାହିଁକି ? ଗରିବ ଲୋକେ ଭୋକିଲା । ସେମାନେ ଅବଶ୍ୟ ଏବଂ ଭଣ୍ଡ । ଅଭାବୀ ଭୋକିଲମାନେ କହିବେ ମଦନ ସେମାନଙ୍କ ଦାନାରେ ଧୂଳି ଦେଇଛି । ପ୍ରଶଂସା ହେବ ଥିଲାର ଯେ କି ଅଭାବୀ ଭୋକିଲର ଉପରକୁ ଓଦାକରି ସନ୍ତସନ୍ତିଆ କରେ ନିଜର ଜଠରକୁ । ଯେ କି ଜଠରରେ ଅଗ୍ନି ଅଛି ଜାଣେନାହିଁ ଅଥଚ ଏହାର ସନ୍ଧାନ ମିଳିଛି କେଉଁ ଯୁଗରୁ । ଏ ଦେଶର ଶାସ୍ତ୍ରରେ ବ ଯାହାର ଦୃଷ୍ଟାନ୍ତ ରହିଛି ।

ପିଲାଦିନେ ଏଇ ଜଙ୍ଗଲରେ ପ୍ରଥମେ ମଦନ କୁଦ ଶିଖିଛି । ଝିଅ ବୋହୂ ସାଙ୍ଗରେ କେତେ ଲୁଚକାଳି ଖେଳ ପୁଟୁ, ଗୁଗୁଡ଼ା, ଛତୁ ସେ ନ ଗୋଟାଇଛନ୍ତି । ବୁଦାତଳେ ଲୁଚକାଳି ଖେଳ ଖେଳିଛି । ବାଉଁଶ କଡ଼ି ଭାଙ୍ଗି କରଡ଼ି କରିଛି । ପିତା କନ୍ଦା ସବୁ ସଂଗ୍ରହ କରିଛି । ପିତା କନ୍ଦା ସଂଗ୍ରହବେଳେ ପଛରୁ ବନ କୁକୁଡ଼ା ଅନେକଥର ଖୁମ୍ପି ନେଇଛି । ଆଷାଢ଼ ମାସରେ କୁରେଇ ଫୁଲ ନ ମାଖିଛି । ମୁଚକେର ନେଇ ଗାଁ ପିଣ୍ଡାରେ ଢୋ ଧା ନ ଫୁଟେଇଛି । ଲୋପାର ଶାଗ ଖୁଣ୍ଟିଛି । ଜମର୍ଲା ଫଳ ଖାଇ ମୁହଁ ଖଟା କରିଛି । ଢେଉ, ମାମେର ପତ୍ର ଖୁଣ୍ଟିଛି ଶାଗ ପାଇଁ । ସବୁ ମଦନର ସ୍ମୃତିରେ ରହିଛି । ଗିରେଲ ଫୁଲର କଡ଼ି ବ ଭାଙ୍ଗିଛି । ପଲାସ ଫୁଲ ନେଇ ରଙ୍ଗ ପିଚକାରି ଖେଳିଛି ।" ମୟୂର ଚନ୍ଦ୍ରିକା ପାଇଛି ଏଇ ବଣରୁ । ଥରେ କେତେଥର ନିଜକୁ କୃଷ୍ଣ ସାଜିଛି । ସଂଗୋପନରେ ସଖୀ କାନରେ ମୁରଲୀ ସ୍ୱନ ବ ଶୁଣାଇଛି । ଏଠି କିଛି ବାଧା ନ ଥିଲା କି ବ୍ୟବଧାନ ମଧ୍ୟ ନ ଥିଲା । ଏଇଠି ସେ ନିଜକୁ ସରଳ, ନିଷ୍କପଟ କରି ପାରିଥିଲା ।

ଜୀବନଧର ତୁଳନା, ପ୍ରତିବାଦ କ'ଣ ଜାଣି ପାରିଲା ନାହିଁ । ସାମାନ୍ୟ ଘଟଣାରେ ମଦନର ମନ ଏବେ ବିଦ୍ରୋହ କରେ ।

ମଦନ ଠିକ୍ କରିନେଲା ଗଛଟିଏ ହାଣିବ । କାଠ କରିବ । ସେ ରଘୁର ବିଶ୍ୱାସ ଭାଙ୍ଗିବ ନାହିଁ । ପ୍ରବଞ୍ଚନାରେ ସେ ମଣିଷ ହୋଇ ରହିବ ସତ, ହେଲେ ତା'ର ନୈତିକ ବଳ ଭାଙ୍ଗିଯିବ । ଛଳର ଲାଞ୍ଛନା ସହିବାକୁ ପଡ଼ିବ । ତା'ର ପର ଲାଗି ନ ଥିବା ଶିଶୁ ଦୁଇଟି କ'ଣ ପ୍ରବଞ୍ଚନାରେ ମଣିଷ ହେବେ ? ଏ ନିର୍ଯାତନା ସେମାନଙ୍କ ବେଳକୁ କ'ଣ ଶେଷ ହୋଇ ନ ଥିବ ? ରଘୁଭଳି ସମବେଦନା ପ୍ରକାଶ କରିବା ଲୋକ ତା' ଗାଁରେ କେତେଜଣ······?? କେହି କ'ଣ ହେବେନାହିଁ ?? ନିଶ୍ଚୟ ହେବେ । ରଘୁକୁ ସେ ଜାଣେ । ସେ ସେ ସୁବଳସ୍ୟାର, ମଙ୍ଗଳୁ ବୁଢ଼ାର ପୁଅ । ମଙ୍ଗଳୁ ବି ଦିନେ କାଠ ବିକି, ମଜୁରି କରି ରଘୁକୁ ମଣିଷ କରିଛି । ବଇନା ନେଇ ଇଟା କାଟିବାକୁ ପରିବାର ସହିତ ଯାଇଛି । ଶୀତ କାକର ଖାଇ ଇଟା ତିଆରି କରିଛି ମହାଜନ ପାଇଁ । ସମୃଦ୍ଧିରେ ଥିଲେ ମହାଜନ, ଶୋଷଣରେ ଥିଲେ ଏଇ ଇଟା କଟାଳିଗଣ । ସେଇ ଇଟା କଟାଳିର ପୁଅ ରଘୁ, ସେଇ କାଠୁରିଆ ମଙ୍ଗଳୁ ବୁଢ଼ାର ପୁଅ ରଘୁ । ଅର୍ଦ୍ଧଶିକ୍ଷିତ ହୋଇ ଅମଣିଷ ହୋଇନାହିଁ । ମାନବିକତାର ମଣିଷଟିଏ ସେ । ସହର ପାଖର ଲୋକ ରଘୁ । ସେବିକ କାମଟିଏ ପାଇ ଯାଇଛି । ମଙ୍ଗଳୁର ଘର ସୁନ୍ଦର ନାଁ ସହରରେ । ଏବେ ସେ ନାହିଁ । କିନ୍ତୁ ଏବେ ବି ତା'ର କଥା ପଡ଼େ । ତେଣୁ ମଦନ ବିଶ୍ୱସ୍ତ ହେବ । କାହାରି ସହିତ ପ୍ରବଞ୍ଚନା କରିବ ନାହିଁ । ଛୁଆ ଦୁଇଟାର କେବଳ ମଙ୍ଗଳ ହେବ ଏଥିରେ ।

ମଦନ ଠିକ୍ କରିନେଲା ଗଛଟିଏ କାଟିବାକୁ । ସେ ବାଛିନେଲା ଗୋଟାଏ ବଡ଼ା ଗଛ । ବଡ଼ା କାଠ ସୁବିଧାରେ ଫାଳ ହୁଏ । ଏ ଗଛଟିରୁ ଆଠ ନଅ ଭାର କାଠ ବାହାରି ପଡ଼ିବ । ଗଛଟିରେ ମଦନ ପ୍ରଥମ ଚୋଟଟି ପକାଇଛି । ଗଛଟି ଚିତ୍କାର କରି ଉଠିଲା । କିନ୍ତୁ ମଦନର ବିପ୍ଳବୀ ହୃଦୟ ତାକୁ ଅଗ୍ରାହ୍ୟ କଲା । ତା'ର ରକ୍ତ ମାଂସର ଶରୀର କର୍ମରତ କଳରେ ପରିଣତ ହୋଇଯାଇଛି । ଶରୀରରେ ବଞ୍ଚିରହି ବଞ୍ଚାଇ ରଖିବାର ମାନବିକ ପ୍ରବୃତ୍ତି ତେଜସ୍ୱାନ ହୋଇ ଉଠିଛି । ସେ ବର୍ତ୍ତମାନ ଯେ ଜୀବନ୍ତ କଳ । ବୈପ୍ଳବିକ ମନୋଭାବ ଯେ ତା'ର ଅପରନ୍ତ କାଳେଣି । କାଳେଣିର ଅଭାବ ନାହିଁ । ଯନ୍ତ୍ରରେ ତ୍ରୁଟି ନାହିଁ । ବିଶ୍ରାମର ମାନ୍ୟତା ବା ଆବଶ୍ୟକତା ନାହିଁ । ଗତିରେ ବ୍ୟତିକ୍ରମ ନାହିଁ । କଳ ଚାଲିଛି । କଳର ଲକ୍ଷ୍ୟ ଯେଉଁଥିପାଇଁ ଯେତେବେଳ ପର୍ଯ୍ୟନ୍ତ ଚାଲିତ, ସେଥିପାଇଁ ସେ ତତ୍ପରରେ ଲାଗିଥିବ ।

ଗଛଟି ଢଳି ଯାଇଛି ଦୁର୍ବଳତାର ଶରବ୍ୟ ହୋଇ । ଝାପଣ ଗର୍ଜନ କରନ୍ତି । ଆଖପାଖର ଚଢ଼େଇମାନେ ଉଡ଼ି ଯାଉଛନ୍ତି । ପର୍ବତ ବି ପ୍ରତିଧ୍ୱନିର ମାଧ୍ୟମରେ ମଦନକୁ ନିଜର ପ୍ରତିବାଦ ଜଣାଇ ଦେଉଛନ୍ତି । ତଥାପି ସେ ଆଜି ପଛକୁ ହଟୁନାହିଁ । ଲାଙ୍ଗୁଆ ବାର୍ହା ପରି ଗଛଗଣ୍ଡି ପାଖରେ ଛିଡ଼ା ହୋଇଛି । କର୍କଶ ଦୃଷ୍ଟିରେ ଆତତାୟୀ ଆଗରେ ଛିଡ଼ା ସେ । ପ୍ରତିଶୋଧ ନା ପ୍ରତିଜ୍ଞାରେ ପ୍ରତାରିତ ତା' ବି ସେ ଜାଣେନା । ସମସ୍ତ ଆଜି ସେଇ ଦୁଇ ମାସର ଶିଶୁଟିକୁ ବଞ୍ଚାଇ ରଖିବାର ମମତା ମଦନର ବିବେକକୁ ନିୟନ୍ତ୍ରଣ କରୁଛି । ମଦନ କେତେଦୂର ଠିକ୍, ଜଙ୍ଗଲ ନା ବୃକ୍ଷ, ନା ବୃକ୍ଷକୁ ଜଙ୍ଗଲର ରକ୍ଷକମାନେ । ସେମାନେ ଜଙ୍ଗଲରେ ମଦନ ପରି ରହି ନାହାନ୍ତି । ନ ହେଲେ ଜଙ୍ଗଲ ସେମାନଙ୍କୁ ନିଷ୍ଟସ୍ତ ନନ୍ଦା କରନ୍ତା ଏବଂ ପ୍ରଶଂସା କରନ୍ତା ମଦନକୁ । ଅସ୍ତୁସ୍ଥ ହୁଏ ମଦନ । ତା' ମନରେ କେବଳ ଶାନ୍ତି ଆସେ ।

ଭାବାବେଗରେ ଲୁଚି ରହିଥିବା ତୃଷା ମଦନକୁ ଦେଖାଦିଏ ତା'ର କ୍ଳାନ୍ତ ଅଥଚ ଶାନ୍ତ ଶରୀରରେ । ପର୍ବତର କୋଳ ଦେଇ ବହି ଯାଉଥିବା ଝରଣାକୁ ଯାଉଛି । ଜଙ୍ଗଲଟି ବେଶ୍ ସୁନ୍ଦର ଦେଖାଯାଉଛି । ପର୍ବତର ଶଯ୍ୟାଟି କଅଁଳିଆ ଘାସରେ ଆଚ୍ଛାଦିତ । ଚକ୍‌କ୍ଷଣ ଦବୃକ୍ଷମାରେ ଯୌବନଭରା ଚଞ୍ଚଳା ଗରିବ ଘରର ଝିଅ ପରି । ଘଞ୍ଚ ଗଛଗୁଡ଼ିକର ଫାଙ୍କରେ ସୂର୍ଯ୍ୟକିରଣ ପଡ଼ି ପର୍ବତର ଶଯ୍ୟା ଦସ୍ତୁମାଦ୍ । ଗଛଗୁଡ଼ିକର ଫାଙ୍କରେ ଗହଳିଆ ବୁଦା ଉପରେ ବି ସୂର୍ଯ୍ୟକିରଣ ଚମକ ସୃଷ୍ଟି କରୁଛି । ତଳେ କାନ୍ତ ଗ୍ରୀଷ୍ମ । ନୀସ୍ତ ତରୁଣୀର ହୃଦୟରେ ଡାକି ହୋଇ ନାଇଥିବା ଟଳମଳିଆ ଅଙ୍ଗ ପରି । ମଦନ ଭୁଲିଯାଏ ସମସ୍ତ ଆଜି ତା'ର ପ୍ରେମ ଛୁଆଟିକୁ । ଏବେ ସୁମାନୀ ହସଭରା ଆଜି ଚଞ୍ଚଳା । ସେ ନିଜେ ଝଟି ମଦନକୁ ହସାଇ ହସାଇବାକୁ ଦୁଃଖହରା କରି ଦେଇପାରେ । ସୁମାନୀର ଅଣ୍ଟି ଲୁଗାରେ କେତେ ପ୍ରକାର ଶାଗ । ଘରେ ପରଷି ଦେବ । ସେ ତ ଏସବୁ କେବେ ସଂଗ୍ରହ କରି ପାରିନ । ନାରୀର ମମତା ଜନିତ କର୍ତ୍ତବ୍ୟ କେତେ ବଳବତ୍ତା । ମଦନ ଦେଖେ ଏବଂ ଗୃହିଣୀରହେ ସୁମାନୀର ମମତା କୁଅଁର ଲୁଚି ଆସୁଥିବା ଅଖି ଦୁଇଟିକୁ । ତା'ର କାଲି ଚାଲି ଯାଇଥିବା ଅତୀତ ଏଠି ଲୁଚି ରହିଛି । ଏଠି ପ୍ରକୃତି ହେବେ ବି ତରୁଣୀ ହୁଏ ସୁମାନୀ ହୁଏ ତରୁଣୀ ରାଣୀ । ଆଉ ମଦନ ହୁଏ ତରୁଣ ରାଜକୁମାର । ପ୍ରକୃତି କିନ୍ତୁ ବର୍ତ୍ତମାନ ବି ତରୁଣୀ ଅଥଚ ମଦନ ଓ ସୁମାନୀର କେବଳ ହିଁ ଅତୀତ ।

ଝରଣାର କୁଳୁ କୁଳୁ ଶବ୍ଦ ମଦନର ମୁଣ୍ଡରେ ପଶିଯାଏ । ତା'ର ଅନୁଭବ ବେଶି ନୁହେଁ । ଭାବଧାରା ଖୁବ୍ ଶୀଘ୍ର ମଉଳିଯାଏ । ଖୋଲାଖିଆ ଜୀବନରେ

ଯୌବନର ମାଦକତା କେତେ ବା ହେବ । ଯୌବନର ନିଶା ଯେତେବେଳେ ଘୋଟେ, କ୍ଷୁଧା ଯେତେବେଳେ ମନକୁ କଷ୍ଟ କରିଦିଏ । ନିଶା ଓ କଷ୍ଟ, କଷ୍ଟ ଓ ନିଶା ଏମାନଙ୍କର ଜୀବନରେ ଯୁଗ ଯୁଗର ପ୍ରକ୍ରିୟା ।

ମାଦଳର ଗମ୍ଭୀର ଶବ୍ଦ ପରି ଝରଣାର ମଝିରେ ମଝିରେ ଥିବା କୁଦ ପାଖ ପଥର ଶଯ୍ୟାରୁ ଶବ୍ଦ ଫୁଟି ଉଠୁଛି । କୁଦର ମଝିରେ କଳା ପଥର । ପଥରର ଚାରି ପାଖରେ ପଥୁରିଆ ମାଟି । ମାଟିର ଶଯ୍ୟାରେ ସୁନ୍ଦର କୋମଳ ଘାସ । ମାଦଳିଆର ମୁଣ୍ଡରେ ଭିଡ଼ା ହୋଇଥିବା ଶାଗୁଆ ଅଙ୍ଗଛର ପଠା ଭଳି ଆକର୍ଷଣୀୟ । ଠିକ୍ ତଳେ ଝରଣାର କୁଳୁକୁଳୁ ଶବ୍ଦ । ମାଦଳର ତାଳଭରା ସୁରରେ ମାଦଳିଆର ତାଳରୁ ଫୁଟି ଉଠୁଥିବା ଆଦିମ ଯୁଗର ଶବ୍ଦ ପରି । ଝରଣାର ଅଣଓସାରିଆ ଗଡ଼ପଥର ଦୁଇ ପାଖରେ କୃନ୍ଦାଳିଆ ଲତା ସବୁ । ଲତାର ଡାଳଗୁଡ଼ିକ ଝରଣାର ସୁଅରେ ବେଳେବେଳେ ବୁଡ଼ିଯାଇ ଉପରକୁ ଉଠି ଆସୁଛି । ନୃତ୍ୟରତା କରମା ନାଚର ତରୁଣୀମାନଙ୍କ ପରି । ଝରଣାରେ ମଦର ସୁଅ ଛୁଟିଛି । ଲଡକା ବାଳୁଙ୍ଗୀଗୁଡ଼ିକ ମଝିରେ ମଝିରେ ମଦ ପିଇ ନେଉଛନ୍ତି । ମାଦଳ ବାଜୁଛି । ନୃତ୍ୟ ଚାଲିଛି । ଦର୍ଶକ ମଦନ ବି କିଛି ପିଇ ନେଇଛି । ମନ ମାତାଲି ମଦନ ନିଜକୁ ହଜାଇ ନିଏ ଏପରି କିଛି ସମୟ । କର୍ମକ୍ଳାନ୍ତ ରାତିଟା ମଦନକୁ ଝାଉଁଳାଇ ଦିଏ ଲଜକୁଳି ଲତା ପରି । ରାତିଟା ବିତିଯାଏ ସକାଳକୁ ଅପେକ୍ଷା କରି ।

ମଦନ ଝୁଲ୍‌ଫୁଲ୍‌ରୁ ଉଠି ଯାଇଛି । କୁକୁଡ଼ା ଡକା ବଡ଼ ପହରକୁ ଉଠି ଯାଉଛି । ମା' ଶିଖରବାସିନୀକୁ ଶୁଭ ମନାସି ମୁଣ୍ଡିଆ ମାରୁଛି । ସେ ଆଜି ଲମ୍ବା ଲମ୍ବା କାଠ ଭାରରେ ନେଉଛି । ଅଙ୍କେ କାଠ ତା'ର ଅନ୍ୟମାନଙ୍କର ଭାରରେ କାଠ ସହ ସମାନ ହେବ । କାନ୍ଧରେ ଭାର ରଖି ମୁହାଁଇଛି ସୁନ୍ଦରଗଡ଼କୁ । କ୍ଳାନ୍ତ ହେଉଥିବାରୁ ମଝିରେ ମଝିରେ ବିଶ୍ରାମ ନେଉଛି । ଦେହରେ ଦେଖାଣିଆ ବଳ, ମନରେ ସରଳତାର ସାହସ । ତଥାପି ମଦନ ଏକ୍‌ଲା ଏକ୍‌ଲା ବୋଧ କରେ । ଆଜି କିନ୍ତୁ ଧରାପଡ଼ି ଯିବାର ଭୟ ଆଉ ନାହିଁ । ମନରେ ଭାବନା ବି ନାହିଁ ଯେ ସେ ଧରା ପଡ଼ିଯିବ । ତଥାପି କାନରେ ତା'ର ବନ୍ଧା ହୋଇଛି ଏକ ଟଙ୍କା ପଞ୍ଚସ୍ତରୀ ପଇସା ।

ମଦନ ସୁବଲୟା ବାଟ ଦେଇ ସୁନ୍ଦରଗଡ଼କୁ ଯାଇଛି । କାଠ ଭାରିଆ ଗଣି ହେଉନାହିଁ । ବୁଭୁକ୍ଷୁର ସୁଅ । ପ୍ରୀତି କାଖେଇଛି ତା'ର ଦୁଧପିଆ ଛୁଆଟି । ମୁଣ୍ଡରେ ଅଙ୍କେ କାଠର ବୋଝ । ଆଗେଇ ଚାଲିଛି ନିର୍ଭୀକ ଭାବରେ । ଖାଦ୍ୟ

ଆହରଣ କରିବାକୁ କିଏ କେବେ ଡରିଛି ? ଅ.ଦିମ ମାନବ ଖାଦ୍ୟ ଅନ୍ୱେଷଣରେ ନିଜ ଜୀବନକୁ ଗଢ଼ି ଦେଇଛି ସଭ୍ୟତାର କ୍ରମ ପର୍ଯ୍ୟାୟ ଗ୍ରନ୍ଥରେ । ଡେଙ୍ଗେଟିଏ ଝିଅ ଚାଲିଛି ଗ୍ରେଟିଏ କାଠ ଭାରେ ବୋହି । ଆଗାମୀ ଦିନଗୁଡ଼ିକ ନିମନ୍ତେ ସେ ପ୍ରସ୍ତୁତ ହେଉଛି । ଜୀବିକାର କଷଟି ପଥରରେ ସେ ନିଜକୁ କଷି ନେଉଛି । ତରୁଣୀଟିଏ ଚାଲିଛି । ମୁଣ୍ଡରେ ଫାଳ କାଠର ବୋଝ । ଆଖି ଚଞ୍ଚଳ ଆଉ ମୁହଁ···। ମୁହଁଟି ରୁଜ ହୋଇଯାଇଛି । କାଠର ମୂଲ ଠିକ୍ ହୋଇଗଲା ପରେ ଖୋଲିଯିବ ମୁହଁଟି । ଫୁଟିବ ହସ । ହସି ପକାଇବ ଗ୍ରାହକଟି । ଅଥଚ ତରୁଣୀର ହସଟିରେ ଗ୍ରାହକ ପ୍ରତି ଯେ ବିନ୍ଦୁ ମାତ୍ର ଶ୍ରଦ୍ଧା କିମ୍ବା ଘୃଣା ନାହିଁ ସେ ବୁଝିପାରେନି । ତରୁଣୀର ଶ୍ରମର ସାର୍ଥକତାରେ ଗ୍ରାହକର ଅନୁକମ୍ପାର ପ୍ରେମ । ତରୁଣୀର ଭବିଷ୍ୟତର କଳ୍ପନାରେ ଗ୍ରାହକର ଅବଶ୍ୟକତାରେ ଉଦାରତାର ବଢ଼ିମ୍ବନା । ସମାନ୍ତରାଳ ସରଳରେଖା ଦୁଇଟିର ବି ମିଳନ ହୁଏ କଳ୍ପନାର ଅସୀମ ଦୂରତାରେ । ବୃଦ୍ଧଟା ବି କାଠ ଭାରଟାଏ ନେଇ ଚାଲିଛି ଆଗକୁ । ତା' ପାଇଁ କାମ ନାହିଁ । ସରକାରରେ ଉପାର୍ଜନ ଅଛି କିନ୍ତୁ ପ୍ରାଚୁର୍ଯ୍ୟ ନାହିଁ । ଦେହରେ ବଳ ଅଛି । ବସିବ କାହିଁକି ?? ସେ ଚାହେଁ ସଂସାରଟି ଉନ୍ନତ ହେଉ । ପୁଅ ଝିଅ, ନାତି ନାତୁଣୀ ମୁଠାଏ ଖୁସିରେ ଖାଆନ୍ତୁ । ଜୀବନ ସଂଗ୍ରାମରେ ଏ ଅଜେୟ ସୈନ୍ୟର ଅଭିଯାନ ଚମତ୍କାରପ୍ରଦ । ଏଠି ସୈନିକ ବୃଦ୍ଧ ବୃଦ୍ଧା, ତରୁଣ ତରୁଣୀ, ମା' ଶିଶୁ ଆଉ ଯୁବକ ଯୁବତୀ । ଏ ଦଳର ଏ ମାଟିରେ ଉପମା ନାହିଁ । ଏମାନେ ନିଜେ ହିଁ ନିଜର ଉପମା । ମଦନ ବି ଆଗେଇ ଚାଲିଛି ଅଗ୍ର ଅଗ୍ରଜ ସୈନିକ ପରି । ସଂଗଠିତ ଦେଶ ବନ୍ଦନାର ଗୀତ ଗାଇ । ମୁହଁ ବନ୍ଦେ ମାତରଂର ସ୍ଲୋଗାନ ନ ଗ ଇ ପାରେ ତା'ର ସୈନିକତାରେ । ସେ ଆଗେଇ ଚାଲିଛି । ନୂତନ ଏକ ଜାଗରଣ ତା' ଶରୀରରେ ଖେଳି ଉଠିଛି । ମଦନର କାନରେ ପଇସା ଅଛି । ସେକଥା ସେ ଭୁଲିଯାଇଛି ।

ଏ ବିରାଟ ଅଭିଯାନରେ କିଏ କେଉଁ ଗାଁର କିଏ କେଉଁ ସୈନ୍ୟ ଗ୍ରୁଉଣୀର ଏମାନେ ସମସ୍ତେ ଜାଣନ୍ତି ନାହିଁ । କେହି କାହାର ସାଙ୍ଗରେ କଥାବାର୍ତ୍ତା ବି ହେଉନାହିଁ । କିନ୍ତୁ ସମସ୍ତେ ଏକ । ସମସ୍ତିଙ୍କ ମନରେ ଗୋଟିଏ ଭାବ । ସମସ୍ତେ ସମସ୍ତଙ୍କର ଭରସା । ସମସ୍ତେ ସଂଗ୍ରାମୀ ଭୂମିକାରେ ଅବତୀର୍ଣ୍ଣ । ମଦନର ମନେପଡ଼େ, ନିକଟ ଅତୀତର ଏକଲା ନିଆଁସ୍ ଜୀବନ ।

ଏ ବିରାଟ ପଟୁଆର ତଥାପି କ'ଣ ପ୍ରତିରୋଧ କରିପାରିବ ଜଙ୍ଗଲ ବିଭାଗକୁ । ନାଁ, ନୁହେଁ । ଏମାନଙ୍କର ମିଳିତ କଣ୍ଠରେ ପ୍ରକାଶିତ ହେବ ଦୈନ୍ୟର

ବେଦନା ?? ଉତ୍ତର ମିଳିବ, ଅନ୍ୟ କ'ଣ ଅନ୍ୟ କିଛି ପନ୍ଥା ନାହିଁ ? ଲାଞ୍ଛନା ମଧ୍ୟ ଦୁନିଆରେ ଚଳିଯିବେ ? ଲାଞ୍ଛନା, ତାଙ୍କ ପାଇଁ ବଞ୍ଚି ରହିବାର କଷଟି ପଥର ।

ଯଦି ଏ ଜଙ୍ଗଲ ନ ଥାନ୍ତା ? ସେମାନେ ସହରନ୍ତେ ଥିଲାର ଲାଞ୍ଛନା ଓ ତାଡ଼ନା । ଏଠି ତାଡ଼ନା ନାହିଁ । ମନରେ ଆନନ୍ଦ ଜନ୍ମେ । ଯେଉଁଠି ତାଡ଼ନା ନାହିଁ ଲାଞ୍ଛନାରେ ବି ଜୀବନ କେତେ ସରସ, କେତେ ସୁନ୍ଦର ।

ରଘୁ ଘରେ ନାହିଁ । ରଘୁର ସ୍ତ୍ରୀ କାଠଯାକ ମଦନ ପାଖରୁ ରଖି ନେଇଛନ୍ତି । ମଦନକୁ ସେ ଦୁଇଟଙ୍କା ପଚିଶ ପଇସା ବଢ଼ାଇ ଦେଲେ । ମଦନ ମାତ୍ର ଦୁଇଟଙ୍କା ନେବାକୁ ରାଜି ହୋଇ ବାକିତକ ନ ନେବାକୁ ସ୍ଥିର କଲା । ସେ ରଘୁର ଉପକାରକୁ ଭୁଲି ପାରୁନା । ରଘୁ ମଦନର ଆଖିରେ କେତେ ମହାନ୍ ଅଥଚ ନୈତିହାସିକମାନେ ଯେଉଁମାନଙ୍କୁ ମହାନ୍ କରିବେ ସେମାନଙ୍କୁ ମଦନ ଚହ୍ନେନାହିଁ, ଜାଣେନାହିଁ । ସେମାନଙ୍କ କଥା ମଦନ ଶୁଣି ବି ପାରେନା ଯଦି ବା କେବେ ଶୁଣେ ତା'ହେଲେ ଅନୁଭବ କରିପାରେ ବି ନାହିଁ । ଶୀଥିଲ ରକ୍ତ ପ୍ରବାହ ମଧ୍ୟରେ ଅନୁଭବ ଶକ୍ତି ନ ଥାଏ । ପରୋକ୍ଷ ପ୍ରତିଫଳନ ଯଦି କିଛି ଥାଏ ତା' ପାଖକୁ ପହଞ୍ଚି ପାରେନାହିଁ । ଅନାବଶ୍ୟକ ଯେହେତୁ ସେସବୁ ମଦନ ପାଇଁ ।

ମଦନ ସହରଂ ଗଳିରେ ଫେରି ଆସୁଛି । କେତେ ଯେ କଥା ଶୁଣୁଛି । କେତେ ଯେ ପରିବର୍ତ୍ତନ ଦେଖୁଛି । ମଦନର ଉପାର୍ଜନରେ ପରିବର୍ତ୍ତନ ଆସିଛି ସତ, ହେଲେ ଲୋକରେ ପରିବର୍ତ୍ତନ ଆସିନାହିଁ । ସେ ପରିବର୍ତ୍ତନ ପୂର୍ବେ ବି ଲୋକଟା ପରେ ବି ଲୋକଟା । ବେଶଭୂଷା, ଖାଦ୍ୟପେୟ ଯାହା ମିଳୁଛି, ତାହା ହିଁ ପରିବର୍ତ୍ତନ ଆଣିଛି । ଏ ପରିବର୍ତ୍ତନ ତା'ର ସ୍ୱେଚ୍ଛାକୃତ ନୁହେଁ । ସେ ଏ ସବୁକୁ ଆଦରି ନେଇଛି ଦୁନିଆଁ ଦୁଆରରେ ଠିଆ ହେବାକୁ । କୌଣସି ମତେ ବଞ୍ଚି ରହିବାକୁ ।

ବାଧ ହୋଇ ବଞ୍ଚି ରହିବାଟା ଯେ ପରିବର୍ତ୍ତନ କୁହାଗଲେ, ମଦନର ବିଶେଷ ପରିବର୍ତ୍ତନ ଘଟିଛି । ସେ ପଡିଲା ଧୋତି·ପିନ୍ଧେ । ମୁଣ୍ଡରେ ଗହଳିଆ ବାଳ ନାହିଁ । ମଝିରେ ମଝିରେ କାଟିନିଏ ନିଜେ । ମୁଣ୍ଡ ଧାରିଟା ଆବୁଖାବୁ ରହିଥାଏ । ନିଜେ ହାତରେ କଇଁଚି ଦର୍ପଣ ଧରେ । ପଥର ଚଟାଣରେ ବସି ବାଳ କାଟେ । କେତେଦିନ ପରେ ପୁଣି ସେ ସବୁ ବଢ଼ି ସମାନ ହୁଏ । ସେ ସାତ ଆଠ ଦିନରେ ଥରେ ହେଲେ ଦେହରେ ତେଲ ଲଗାଏ । ପ୍ଲାଷ୍ଟିକ ପାନିଆରେ ମୁଣ୍ଡ

କୁଣ୍ଡାଏ । ମୁଣ୍ଡ ମଟିରେ ମାଙ୍ଗପାରେ । ମୋଟର୍ ଟାୟାର୍‌ର ଚଟି ଚପଲ ହୁଲେ ପିନ୍ଧେ । ସହରରେ କାଠ ବିକେ । କାନ୍ଥବର୍ଷ ତଳେ ଏକ ଟଙ୍କା ପଗ୍ରଣ ପଇସାରେ ଏବେ ଦୁଇଟଙ୍କା ପଚିଶ ପଇସାରେ ବିକେ । ସେ ସୁନ୍ଦରଗଡ଼ ସହର ବିଷୟରେ କିଛି କିଛି ଜାଣେ । ସୁମାନି ଜୁଡ଼ାରେ ପ୍ଲାଷ୍ଟିକର କୃତ୍ରିମ ବାଳ ବାନ୍ଧେ । ଅନେକ ରଙ୍ଗର ଶାଢ଼ୀ ପିନ୍ଧିଲାଣି । ଆଗେ ମୋଟା କପଟା ପିନ୍ଧୁଥିଲା । ହାତରେ ପିନ୍ଧୁଥିଲା ମୋଟା ଲାଖୁଆ ଚୂଡ଼ି । ଏବେ କେତେ ରକମର ରଙ୍ଗିଆ ଚୂଡ଼ି ପିନ୍ଧିଲାଣି । ମଦନର ସମସ୍ତ ଦୋକାନର ପେଣ୍ଟ ପିନ୍ଧେ ଏବେ ।

ମଦନ ନିଜର ଜୀବନ ପ୍ରବାହରେ ପରିବର୍ତ୍ତନ ଚାହେଁ । ଏବେ ବି ସେ ବାଇଶୀ ବର୍ଷର ଯୁବକ । ରକ୍ତ ତା'ର ଶୀଥିଳ ନୁହେଁ । ଚେହେରାରେ ତା'ର ଶାନ୍ତିର ତେଜ ଖେଳି ଆସୁଛି । ଏ ବୟସରେ ବି ସଂସାରରେ ପ୍ରବେଶ କରି ସେ ନମ୍ର ଏବଂ ସଂଯମୀ । କଠୋର ମାନବିକ ଶୃଙ୍ଖଳା ଏମାନଙ୍କର ମନ ଏବଂ ଭାଷାକୁ ନିୟନ୍ତ୍ରଣ କରେ । ମଦନ ନିଜେ ହିଁ ନିଜର ପରାମର୍ଶଦାତା । ସୁମାନି, ମଦନର ଜୀବନ ପ୍ରବାହର ପରିବର୍ତ୍ତନର ଭାବନାକୁ ସମର୍ଥନ କରେ । କିନ୍ତୁ କିପରି ? କହିପାରେ ନାହିଁ । ମଦନର ଭାବନା ବଢ଼ି ଚାଲିଛି । ସହରର ଗଳିଟି ମୁଖ୍ୟ ରାସ୍ତାରେ ମିଶି ଯାଇଛି । ଜନଗହଳି । ମଦନ ଉତ୍ତେଜିତ ହୋଇଯାଇଛି । ସୁମାନି ବୟସର ଉଣେଇଶ ବର୍ଷର ଅବିବାହିତ - ଝିଅମାନେ ହସ ଖୁସିରେ ଚାଲିଛନ୍ତି । ମଦନ ଥରଟିଏ ଦେଖି ସେମାନଙ୍କର ରୂପକୁ ପ୍ରଶସ୍ତିର ଭାବରେ ନିଜ ଭିତରେ ଦେଖିବାକୁ ଯଥାର ସହିତ ଚେଷ୍ଟା କରୁଛି । ଜନଗହଳିରେ ସେମାନେ ଅନନ୍ତ ଦୂରରେ ମିଳେଇ ଯାଇଛନ୍ତି । ସେ ତ ଆଉ ଥରେ ଦେଖିବାକୁ ଅଧିକାର ପାଇନାହିଁ । ଦେଖିନାହିଁ । ଭାବନାରେ ବିଭ୍ରାଟ ସୃଷ୍ଟି ହୁଏ ତା'ର । ଉତ୍ତେଜନା ସ୍ଥିର ଭବରେ ଲୁଚି ରହିଛି କଇଁଛ ଖୋଲପା ଭିତରେ । ବାହାରିପଡ଼େ ଥରେ ଥରେ ।

ଜନଗହଳରେ ଦେଖାଯାଇଛି ରଘୁ । ମଦନ ମନରେ ଉଶ୍ୱାସଭରା ଆନନ୍ଦ । ସେ ରଘୁର ଧାର ଶୁଝି ପାରିଛି ବୋଲି । ତା' ପାଖରେ ସେ ଖୋଲଖୋଲି କଥା କହିବାର ଦମ୍ଭ ପାଇଛି । ସେ ରଘୁକୁ କେବେ ପ୍ରତାରଣା ଦେଇନାହିଁ । ବରଂ ସାଧାରଣ ଗ୍ରାହକଠାରୁ ତାକୁ ଅଧିକ କାଠ ଦେଇଛି । ରଘୁ ମଦନର ପଛରେ ବି ପ୍ରଶଂସା କରିବ । ତା' ମନରୁ ଉଦ୍‌ବେଜନା ଉଭେଇ ଯାଇଛି । ହସରେ ମୁହଁଟି ଭରିଯାଇଛି । ରଘୁ ମଦନକୁ ଦେଖି ଡାକ ଦେଇଛି । ମଦନ ପାଖକୁ ଆସିଛି, ଆସୁଛି ଯେପରି । ରାସ୍ତା କଡ଼ରେ ସେମାନଙ୍କର କଥାବାର୍ତ୍ତା ଚାଲିଲା ।

ତେଣୁ ମଦନକୁ ଶ୍ରଦ୍ଧା କରେ । ମଦନ ତାଙ୍କ ଜୀବନ ଯାପନ କରୁଥିବା ସମସ୍ତ ପରିଚିତଙ୍କୁ ସେ ପ୍ରେରଣା ଦିଏ । ରଘୁଠାରେ କର୍ମନିଷ୍ଠ ହେବାର ଅଭିମାନ ନାହିଁ । ଗ୍ରାମ୍ୟ ଜୀବନରେ ପାର୍ଥକ୍ୟ ତା' ପାଖରେ କେବେ ବି ଦେଖାଯାଏ ନାହିଁ । ଘର ବାହାରେ ସହରରେ ସେ ଗାଁର ଜଣେ ସମସ୍ତ ଅଧିବାସୀ ।

ମଦନ ସବୁଦିନ ଜାହିଁକି ଯେ କାଠ ବିକେ ତାହା ବୁଝିପାରେ ନାହିଁ । ସବୁଦିନେ ଏକ ରକମର ଧନ୍ଦା ନେଇ ଅନିଶ୍ଚିତ ଶ୍ରମିକ ଜୀବନରେ ଜଣେ ସେ ଉଧେଇ ପାରିବ ନାହିଁ, ଏହା ମଦନ ସେ ବୁଝୁନାହିଁ କାହିଁକି ? ଏବେ ସହରରେ ଘାସର ଗ୍ରହିଦା ବଢ଼ି ଯାଇଛି । ସବୁ ଲୋକେ ଗାଈ ରଖିବାକୁ ପସନ୍ଦ କଲେଣି । ସେମାନଙ୍କୁ ଘାସ ଦରକାର । ସହରର ଗାଈ ଯେ ଘାସ ଖାଇବାକୁ କେତେଦୂର ବ୍ୟାକୁଳ, ରଘୁ ବୁଝିଛି । ଘାସ ବିଡ଼ାକୁ ପାଞ୍ଚ ପଇସା । ମଦନ ପରି ଯୁବକ ଅନାୟାସରେ ଅଣିକି ଶହେ ବିଡ଼ା ଆଣି ପାରିବ । ମାତ୍ର ପାଞ୍ଚଟଙ୍କା ରୋଜଗାର ଦିନକୁ ହେବ । ସୁଯୋଗ ଉଣ୍ଡି ମଣିଷ ଯଦି ଶ୍ରମର ବିନିଯୋଗ କରି ନ ପାରିଲା ତା' ହେଲେ ମଣିଷ କ'ଣ ଭାଗ୍ୟବାଦୀ ହୋଇ ସବୁଦିନ ରହିଯିବ ? ରଘୁର ମତରେ ସୁଯୋଗର ସମୟୋପଯୋଗୀ ବ୍ୟବହାର ଭାଗ୍ୟକୁ ନିୟନ୍ତ୍ରଣ କରିପାରେ । ଆବଶ୍ୟକତା ଭିତରେ ବଢ଼ି ଚାଲିଥିବା ଅଭାବ ମଣିଷର ଅବସ୍ଥାକୁ ପରିବର୍ତ୍ତନ କରିଦେଇ ପାରେ ।

ମଦନକୁ ରଘୁ ଏକଥା ବୁଝାଇଲା; ଘାସ ସହରରେ ବହୁତ ବିକ୍ରୀ ହୁଏ । ଜଣେ ଜଣେ ଲୋକର ଶହେ ଦୁଇ ଶହ ଘାସ ବିଡ଼ା ବି ଦରକାର ପଡ଼ୁଥାଏ । କାଠ ବିକିବାକୁ ଗଳି ଗଳି ଘର ଘର ବୁଲିବାକୁ ପଡ଼ୁଛି । ଘାସର ଗ୍ରାହକ ଜଣେ କିମ୍ବା ଦୁଇଜଣ ଠିକ୍ କରିନେଲେ ନିତିଦିନିଆ ଉପାର୍ଜନର ଧନ୍ଦା ଗୋଟିଏ ମିଳିଯିବ ।

ସହରର ବର୍ତ୍ତମାନ ଗ୍ରହିଦା ଓ ଶ୍ରମର ପ୍ରକୃତ ମୂଲ୍ୟ ପ୍ରତି ରଘୁ ମଦନକୁ ସଚେତନ କରି ଦେଇଛି ।

ମଦନର ହୃଦୟ ରଘୁର ଏ ପ୍ରକାର ଅଭିମତକୁ ଚଟ୍ କିନା ଗ୍ରହଣ କରିନେଲା । ତା' ମନ ଭିତରୁ ସବୁପ୍ରକାର ପୁଞ୍ଜିଭୂତ ବେଦନା ଦୂରେଇ ଗଲା । ମସ୍ତିଷ୍କ ଭିତରେ ଭରି ରହିଥିବା ଅବ୍ୟକ୍ତ ଚିନ୍ତାଧାରାକୁ ରଘୁର ସଗ୍ରାମୀ ଭାଷା ତୁରନ୍ତ ବହିଷ୍କାର କରିଦେଲା ।

ମଦନର ମୁହଁରେ ହସର ଢେଉ ଖେଳିବା ପୂର୍ବରୁ ଖେଳିଯାଇଛି ସମଗ୍ର ମୁଖମଣ୍ଡଳରେ ଆଉ ଓଷ୍ଠର ପ୍ରାନ୍ତରେ ବିବର୍ତ୍ତନର ଏକ ସୂକ୍ଷ୍ମ ଆଭାସ । ଝାପ୍‌ସା

ଖବର ରଖିବାକୁ ଭଲ ଲାଗିଲା ଏବେ । ସହରର ତଳ କୋଠାତଳେ ମୁରୁକି ହସି ନେଲା ଥରେ ।

ଚନ୍ଦ୍ର ବିଦାୟ ନେଇ ବସା ଘରକୁ ଫେରିଆସିଛି । ମଦନ ଏତେ ଦିନଯାଏ ନିଜ ଦେହରେ ମଥେଷ୍ଟ ବଳ ଅଛି ଅନୁଭବ କରି ନ ଥିଲା । ନିଜକୁ ସେ ବଳୁଆ ମନେ କରୁଥିଲା ହେଲେ ବଳ କେଉଁଠି ଅଛି ଜାଣି ନ ଥିଲା । ମନରେ ନା ଅବୟବରେ । ସୁଯୋଗରେ ନା ଅଭ୍ୟାସରେ । ଜ୍ଞାନରେ ନା ପରିଶ୍ରମରେ ??

ମଦନର ଧନ ସଞ୍ଚୟ କରିବାରେ ଯେତିକି ସ୍ପୃହା ନାହିଁ ମଣିଷ ହୋଇ ବଞ୍ଚି ରହିବାରେ ସ୍ପୃହା ସେତିକି ଅଛି । ମଦନ ଆଶ୍ରମରେ ଜୀବନ କାଟିବାର ସ୍ୱପ୍ନ ଦେଖି ନ ଥିଲେ ବି ଖଞ୍ଜଣିର ପୁରସ୍କାର ପାଇବାର ଅଧିକାର ପାଇଛି । ଶ୍ରମର ଫଳ ଯଦି ମଣିଷ ଭଳି ବଞ୍ଚି ରହିବାରେ ସହାୟକ ନ ହୁଏ, ତା'ହେଲେ ଶ୍ରମର ସାର୍ଥକତା କେଉଁଠି ! ମଦନ ପ୍ରଶ୍ନ କରେ । ସେ ଠିକ୍ କରେ ନିଜ ଶ୍ରମର ମାପକାଠି- ଉପାର୍ଜନ । ଉପାର୍ଜନ ଶ୍ରମର ମର୍ଯ୍ୟାଦାପୂର୍ଣ୍ଣ ରୂପାନ୍ତର । ଉପାର୍ଜନ ଯେତେବେଳେ ସାମାଜିକ ଜୀବନର ମାପକାଠି, ସେ କାହିଁକି ଯେ ସମାଜରେ ପରିତ୍ୟକ୍ତ ହୋଇ ସମାଜର ଏକ ବିଶିଷ୍ଟ ଅଙ୍ଗ ନ ବୋଲାଇବ । ବୁଝିପାରେ ନାହିଁ ମଦନ । ଏଆଡ଼େ ସୁନ୍ଦରଗଡ଼ରେ ଯେ ତାକୁ ଅନେକେ ଜାଣନ୍ତି ।

ମଦନର କ'ଣ ନାହିଁ । ମାନବିକ ସୁଗୁଣ ? ସମାଜ ପ୍ରତି ଭକ୍ତି ? ଉପାର୍ଜନକ୍ଷମ ଶରୀର ? କର୍ତ୍ତବ୍ୟନିଷ୍ଠା ? ତଥାପି ସେ ଦରିଦ୍ର କାହିଁକି ?? ଶିକ୍ଷାର ଅଭାବ ନା ଦୀକ୍ଷାର ଅଭାବ । ଶିକ୍ଷାର ତ ଅଭାବ ଅଛି । ଏଥିରେ ତା'ର ବା ଦୋଷ କ'ଣ ? ଯେଉଁ ତରୁଣର ବଞ୍ଚି ରହିବାର ପଥ ଜାଣନ୍ତୁ କ୍ତ, ସେହି ତରୁଣକୁ ହିଁ ଠିକ୍ କରିବାକୁ ପଡ଼େ ତା'ର ଶିକ୍ଷାଲାଭ କରିବାର ଅନୁଷ୍ଠାନଟି କେଉଁଠି ? ଉପବାସରେ ନା ଅର୍ଦ୍ଧନଗ୍ନତାରେ, କର୍ମକ୍ଷେତ୍ରରେ ନା ଶିକ୍ଷାଗତଚ୍ୟୁତ ବୁଭୁକ୍ଷୁ ପରିବାର ଭିତରେ ? ମଦନ ପୂର୍ବପୂର ନିଜେ ନିର୍ଦ୍ଦୋଷ । ସମସ୍ତ ଅଭିଯୋଗରୁ ସେ ମୁକ୍ତ । ପଙ୍କ ପୂର୍ଣ୍ଣ ଆବଦ୍ଧ ପୋଖରୀର କଇଁଫୁଲ ପରି ଆଜି ଜନପ୍ରିୟ ପୁରାତନ ମନ୍ଦିର ବକ୍ଷରେ ବଢ଼ି ଉଠୁଥିବା ଅଶ୍ୱତ୍ଥ ଗଛ ପରି ।

ଶିକ୍ଷା ବ୍ୟତୀତ ଦୀକ୍ଷା ବି ମଦନର ବିଶେଷ କିଛି ନାହିଁ । ପରିବେଶପୂର୍ଣ୍ଣ ପରିବେଷ୍ଟନୀ ତାକୁ ଦୀକ୍ଷା ଦିଏ । ପଡ଼ା ପଡ଼ୋଶୀରୁ ସେ ଯେଉଁ ଉତ୍ତମ ଦୀକ୍ଷା ପାଇଛି, ତାହା ହିଁ ତାକୁ କରିଛି କାଠ ଭରିଆ । କାଠ ଭରିଆର ଜୀବନରେ ଯାହା ସେ ପାଇଛି ସେଇଟା ହେଲା ତା' ପାଇଁ ଶୃଙ୍ଖଳିତ । କାଠଭରିଆ ହେବାକୁ

ଦୀକ୍ଷା । ମନନଶୀଳ ଜାତି ଦେବାକୁ କେବଳ ଉପଦେଶ । ସେହି ଉପଦେଶ ଭିତରେ ଧମକ୍ ବି ମିଶି ରହିଥାଏ । ଧମକ୍ ଆଶ୍ରିତ ଶ୍ରମଜୀବୀ ପ୍ରତି ଉପଦେଶ—ଏହା କିଏ ନ ଜାଣେ । ନିର୍ଭରଶୀଳ-ଶ୍ରମର ଦୀକ୍ଷା ନେଇଛି । ସେ ସର୍ବଂସହା ହୋଇପାରେ, ପଥ ଅନ୍ଧ ହୋଇପାରେ କିନ୍ତୁ ପଥ ଜାଣିଗଲେ ନୁହେଁ ।

ମଦନ ବାଟଟିଏ ପାଇଛି । ଏବେ ସେଇ ବାଟରେ ଚାଲିବ । ଏଇ ବାଟଟି ଯେତିକି ସିଧା ସେତିକି ପରିଷ୍କାର । ସିଧା ଆଉ ପରିଷ୍କାର ରାସ୍ତାର ପଥିକ ବନିଛି ଏବେ ମଦନ । ତା' ପାଖରେ ଏବେ ତିନିଟଙ୍କା ପଞ୍ଚିଶି ପଇସା ଅଛି । ଆଜି ରବିବାର । ସୁନ୍ଦରଗଡ଼ର ବଡ଼ ହାଟ ପାଳି । ସେ ଗେଣ୍ଡୁଆ ଧାଡ଼ିରେ କିଣିନେବ । ଆଉ କିଛି କାଉଁରିଆ ପଟ ବି । କାଉଁରିଆ ପଟରେ ସେ ନିଜେ ଗେଣ୍ଡୁଆରେ ବ୍ୟବହାର କରାଯାଉଥିବା ରସି ତିଆରି କରିନେବ । ଘରେ ତ ବାହୁଙ୍ଗା ଅଛି । କେଳିଗଛର ବାହୁଙ୍ଗା । ବାପ ଅଜା ଅମଳର ଦା'ଟାଏ ବି ଅଛି । ଘାସ କାଟି ବୋହି ନେବାକୁ ଅନ୍ୟ ସମ୍ବଳର ଆଉ ଆବଶ୍ୟକ ନାହିଁ । ସବୁଠା ଦରକାର ଶ୍ରମବଳ—ସେ ତ ଦେହରେ ସଞ୍ଚିତ ହୋଇ ଭରପୂର ରହିଛି ।

ଆଖପାଖ ଗାଁର ବଡ଼ ବଡ଼ ପ୍ରଜାମାନଙ୍କ ଘରକୁ କେବେ କେମିତି ଗଲେ ଧାନ କିମ୍ବା ଗୁଣ୍ଡଲ କିଣିବାକୁ, କଥା ଶୁଣିବାକୁ ପଡ଼େ । ସେ ତ ଦିନେ ହେଲେ ଧାନ କ୍ଷେତକୁ କାମ କରିବାକୁ ଆସିନାହିଁ ଆଉ ଧାନ କିଣିବାକୁ ଆସିଛି କିପରି ? ସେମାନେ ମଦନ ପରି ଜଣକୁ ଧାନ ନ ବିକି ଚଳିଯିବେ, ତାଙ୍କର ଧାନ ବିକା ଯିବାକୁ ବଜାରର ଅଭାବ ନାହିଁ । କିନ୍ତୁ ମଦନ ପରି ଶ୍ରମଜୀବୀ ଲୋକ ଧାନ ଆଉ ଗୁଣ୍ଡଲ ପାଇଁ ସେମାନଙ୍କୁ ଯେ ନିର୍ଭର ନ କରିବ ଏକଥା ନୁହେଁ । ନିର୍ଭର ନ କରି ବି ଚଳି ପାରିବ କିନ୍ତୁ ଅପ୍ରୀତିକର ପରିସ୍ଥିତି ଭିତରେ ଜୀବନ ବିତାଇବା ମଦନ ପରି ଲୋକର ସ୍ୱଭାବ ନୁହେଁ । ସେମାନଙ୍କର ବଞ୍ଚି ରହିବାର କଳା ବାସ୍ତବିକ ଚମତ୍କାର । ସେମାନଙ୍କର ବେଦନା ଯେ ନାହିଁ ଏକଥା ନୁହେଁ । ସେମାନଙ୍କର ବେଦନା ଯେ ଅପ୍ରକାଶିତ ଏହା ବି ନୁହେଁ । ସେମାନେ ନିଜର ବେଦନା ନିଜ ଭିତରେ ପ୍ରକାଶ କରନ୍ତି । ବେଦନାର ଉପଶମ ହୁଏ । ସମସ୍ତଙ୍କର ବେଦନା ପୁଞ୍ଜି ପୁଞ୍ଜି ହୋଇ ଶୂନ୍ୟରେ ମିଳେଇଯାଏ । ପୁଞ୍ଜିଭୂତ ହୋଇ କେନ୍ଦ୍ରୀଭୂତ ହେବାର ସ୍ଥାନ ନାହିଁ । ଏଣୁ ଅସହାୟ ଭାବରେ ଅଦୃଶ୍ୟ ହୁଏ । ଯାହାହେଉ ମଦନ ଦା'ଟି ଅତି ଯତ୍ନରେ ରଖିଛି । ଏଇ ଦା'ଟି ମଦନ ତା' ବାପର ଚିହ୍ନ ରଖିଛି । ଏହା ହିଁ ହେଉଛି ଦା'ଟିକୁ ଯତ୍ନରେ ରଖିବାର କାରଣ । ଅଢ଼ିଆର ଅଖଣ୍ଡରେ ପ୍ରଜାର ଆଶୀର୍ବାଦ ନିମନ୍ତେ ଯେ ଦା'ଟି ଯତ୍ନର ଅଧିକାଂଶ ଏହା ମଦନ ହୁଏତ କେବେ

ଯଦିଓ ବି ଚିନ୍ତା କରିନାହିଁ । ଶ୍ରମର ରୂପାନ୍ତର ପାଇଁ ବାପ ତା'ର ଏଇ ଦା'ରେ ପ୍ରଜାବତ୍ସଳ ଥିଲା ।

ମଦନ ଦୁଇଟଙ୍କା ପଚିଶ ପଇସାରେ ସାରେ ଗେଣ୍ଡୁଆ ଏବଂ ଏକ ଟଙ୍କାର କାଉଁରିଆ ପଞ୍ଚ କିଣି ବଳକା ପଚିଶ ପଇସାଟି ଅଣ୍ଟାରେ ଗୁଞ୍ଜି ତା' ଘରକୁ ଫେରି ଆସୁଛି । ଘରେ ଅଉ ତିନି ଚାରି ଦିନର ଅଟା ଅଛି । କିଛି ତ ଆଉ କିଣିବାର ନାହିଁ । ଏଣୁ ଘରବାହୁଡ଼ା ଚାଲିଟି ସହରରେ ବି ଚଞ୍ଚଳ ହୋଇଯାଇଛି ।

ମଦନ ଠିକ୍ କରିନେଲା ଘରକୁ ପହଞ୍ଚିବା ପୂର୍ବରୁ ଗାଧୋଇ ନେବ । ଘରେ ତ ଅଟା ଅଛି । ସୁମାମି ରନ୍ଧା ସାରିଥିବ । ଥରେ ଟିକିଏ ପିଇ ଧକ୍କା ମାରିଦେବ ।

ମଦନ ଗୋଟିଏ ଗାଡ଼ିଆ ପାଖରେ ଅଟକିଗଲା । ଗଛର ଛାଇରେ ଟିକିଏ ବିଶ୍ରାମ ନେଲା । ଛାଇ ବାଦଲିଆ ଖରାରେ ଦେହରେ ଝାଳ ଆସି ଯାଇଛି । ଚଞ୍ଚଳ ଚାଲିରେ କ୍ଳାନ୍ତ ବି ଆସି ଯାଇଛି । ଆଶ୍ୱିନ ମାସ । ମେଘରେ ଜୋର ଏତେ ବେଶି ନ ଥିଲେ ବି ମେଘୁଆ ପବନ ବେଳେବେଳେ ବହୁଛି । ପବନର ସ୍ପର୍ଶରେ ମଦନର ଶରୀର ଭିତରେ ଲୁଚି ରହିଥିବା ତନ୍ଦ୍ରା ଥରେ ଦୁଇଥର ମଦନକୁ ଝିଙ୍କି ଦେଲାଣି । ତଥାପି ମଦନ ଗାଡ଼ିଆଟିରେ ଗାଧୁଆ ସାରିଦେଲା । ମୁଣ୍ଡରେ ଭିଡ଼ିଥିବା ପାଗଟି ପିନ୍ଧିଦେଇ ଘରଆଡ଼େ ପାଦ ବଢ଼ାଇଲା ।

ମଦନ ଗେଣ୍ଡୁଆ ଦୁଇଟି ଏବଂ କାଉଁରିଆ ପଞ୍ଚ କେରିଟି ଘର ଭିତରେ ଥୋଇଦେଲା । ସୁମାମି ଏସବୁ ଲକ୍ଷ୍ୟ କରୁଛି ଏବଂ ମଦନକୁ ଚାହିଁ ରହିଛି ପ୍ରଶ୍ନିଳ ଦୃଷ୍ଟିରେ । ସୁମାମିକୁ ଦେଖି ମଦନର ମୁହଁରେ ହସ ଫୁଟିଉଠିଛି । ସେ ଏ ହସରେ ଭାଗ ନେଇ ପାରିଲା ନାହିଁ । ହସର କାରଣ କିମ୍ବା ପୂର୍ବାଭାସ ତାକୁ ଜଣା ନ ଥିଲା । ମଦନର ହସର ଭାଷାକୁ ସୁମାମି ଜାଣିବାକୁ ଅପେକ୍ଷା କରିଥିଲା କିନ୍ତୁ ଆଦେଶ ମିଳିଲା ଥରେ ଟିକିଏ ବାଢ଼ି ଦେବାକୁ ।

ସୁମାମି ଗଡ଼ୁଟିରେ ପାଣି ମଦନକୁ ବଢ଼ାଇ ଦେଇଛି । ସେ ମୁହଁ ହାତ ଗୋଡ଼ ଧୋଇ ନେଇଛି ଓ ଥରେ ପିଇବାକୁ ବସି ଯାଇଛି । ସୁମାମିର ଚିରାଚରିତ ଅଭ୍ୟାସ ଯେ ତା' ମନର ଭାବ ପ୍ରକାଶ କରିବ ଏତିକିବେଳେ ମଦନ ଆଗରେ । ଏଥିପାଇଁ ବେଳେବେଳେ ମଦନ ବିରକ୍ତ ହୁଏ । ହେଲେ ସୁମାମି ମନରେ ଦୁଃଖ ଆସେ । ମଦନ କାହିଁକି ଯେ ବୁଝେନାହିଁ ଏ ଭାଷା ମମତାର ଭାଷା । ମଦନ କହେ : ମମତାର ଭାଷା ଜଣେ କାମରେ ଲାଗିଥିବାବେଳେ ବୁଝିବ ବା କିପରି ? ଏ ଦ୍ୱନ୍ଦ୍ୱର ଅବସାନ ନାହିଁ । ମଦନ ପ୍ରାଞ୍ଜଳ ଭାବରେ କିଛି ନ

କହିଲେ ବି ମୂଳ କଥାଟି ସୁମାନୀଙ୍କୁ କହିଦିଏ । ସୁମାନୀ ଆଶ୍ୱସ୍ତ ହୁଏ । ପରେ ପ୍ରାଞ୍ଜଳ ଭାବରେ ବୁଝି ନେବାକୁ ଧୈର୍ଯ୍ୟ ଧରେ । ସୁମାନୀ ପଚାରିଲା : ଗେଣ୍ଡୁଆ ଦୁଇଟିଯାକ ଓ ପଟ ବିଡ଼ାକ କାହାର ?

ମଦନ କହିଲା : ମୋର । ଏବେ ଘାସ ବିକିବାକୁ ସୁନ୍ଦରଗଡ଼କୁ ନେବି । ବଡ଼ା ପିଣ୍ଡା ପାଞ୍ଚ ପଇସା ବିକା ହେଉଛେ । ମୁଁ ଅଣି ଶହେ ବଡ଼ା ଘାସ ଥରକେ ନେଇ ପାରିବି ।

ସୁମାନୀକୁ କଥାଟା ପସନ୍ଦ ଲାଗିଲା ନାହିଁ । ମଦନ ଉପରେ ରାଗ ଜନ୍ମିଲା । ଘାସ କ'ଣ ଗୋଟାଏ ଯେ ଧନ୍ଦା ହିବ । ଦିନ ଚାରି ଦିନର ଅଚିଆ ଘରେ ଥିବାରୁ ମଦନର ମନଟି ବଢ଼ି ଯାଇଛି । ସେ ସେଥିପାଇଁ ଏବେର କମାଣିକୁ ଦାନେ ଖର୍ଚ୍ଚ କରିବାକୁ ବସିଲଣି । ସୁମାନୀ କହିଲା : ଇଟା କାଏଁ ଭଲ ଚଲନ୍ ଥାଏ । ଚୁଆ ଦୁଇଟା ହେଲେନ । କମେଇ ନ ବଢ଼ି ବେପାର କରୁଛେ । ସୁମାନୀ ବେଶି କିଛି କହୁଥାନ୍ତା କିନ୍ତୁ ମଦନ ଥରେ ପିଇ ନେଲେ ଦେଖି ନେବାକୁ ମନ ଭିତରେ ଠିକ୍ କରିନେଲା ।

ମଦନ ବି କିଛି କହୁଥାନ୍ତା । ଥରେ ଟିକିଏ ପାଇଁ ସେ ଯେତେବେଳେ ଏତେ ଖଟୁଛି, ନୂଆଁ ନୂଆଁ ବାଟ ଖୋଜୁଛି ଆଉ କହୁନାହିଁ । ସୁମାନୀ ତ ଦୁନିଆଁଟାକୁ ବେଶି ଚହ୍ନି ନାହିଁ, ଜାଣିବ କପରି ? ତା'ର ବୋଧହୁଏ ଆଉ ମନେନାହିଁ ଗତ ବର୍ଷ ଶ୍ରାବଣ ମାସର କଥା । ସେ ସେତେବେଳେ ମଦନ ସାଙ୍ଗରେ ସୁନ୍ଦରଗଡ଼ ଯାଇଥିଲା । ରବିବାର ଦିନ । ତା ପାଇଁ ଖଣ୍ଡିଏ ଶାଢ଼ୀ କିଣାହେବ । ପୁଅ ସମରୁକୁ ବଗା ମାରିଥାଏ । ସମରୁ ସେତେବେଳେ ଦେଢ଼ ବର୍ଷର ପିଲା । ମଦନ ଧୋତିରେ ବାନ୍ଧିଥାଏ ଗୁଡ଼ାଏ ଛତୁ । ସହରର ଲୋକେ ଏଇ ଶୁଆବୁନ୍ଦା ଛତୁସବୁ ଟେଣାଓଟର୍ କିରି କିଣି ନେଇଗଲେ । ପଞ୍ଚସ୍ତରି ପଇସା ମିଳିଥିଲା । ସୁମାନୀ ପଚାରିଥିଲା ଛତୁକୁ କିଣିବାକୁ ଏମାନେ ଏତେ ବ୍ୟାକୁଳ କାହିଁକି ? ଛତୁ ବିକ୍ରୀ ହେବା ପରେ ସେ ପଇସାକୁ ଗଣି ପକାଇଲା ଆଉ ହସି ଉଠିଥିଲା । ମୁରୁକି ହସ । ଏବେ କଥାଟା ବୁଝିଗଲା ପରେ ମୁରୁକି ହସି ଦେଇଛି ।

ସୁମାନୀ ମୁରୁକି ହସାରେ ନିଜର କଥା କହିସାରି ଆଉ ଟିକିଏ ଥରେ ଆଣିବାକୁ ଗଲା ଯାଇଥିବାରୁ ମଦନ ସମର୍ଥନର ସୂଚନା ଦେଇ ଭୁଲି ପଡ଼ିଲା । ସେ କଥା ଆଉ କହିଲା ନାହିଁ । କ୍ଷୁଧା ତା'ର ମେଣ୍ଟି ଯାଉ । ଅଯଥାରେ କଥା ବଢ଼ିବ କାହିଁକି ?

ମଦନ ଖିଆପିଆ ସାରି ବିଶ୍ରାମ ନେଉଛନ୍ତି । ସୁମାମୀ ବି ଝିଅପିଅ କରି ନେବାକୁ ମଦନର ଖଟରେ ଗ୍ରେଟ ଛୁଆଟିକୁ ଶୁଆଇ ଦେଉଛନ୍ତି । ସମରୁ ଅଗରୁ ଥର୍ ପିଇସାରି ଶୋଇଛନ୍ତି । ମଦନ ଗ୍ରେଟ ଛୁଅଟିକୁ ଶୁଆଇବାକୁ ଚେଷ୍ଟା କରୁକରୁ ତା' ଆଗରୁ ନଜେ କ୍ଲାନ୍ତିରେ ଶୋଇ ଯାଇଛନ୍ତି । ଶିଶୁଟି ଖେଳିବାରେ ଲଗିଛି ମୁକୁଲା ଫୁଙ୍ଗୁଲା ଦେହରେ ।

କିଛି ସମୟ ଭିତରେ ସୁମାମୀ ସବୁ କାମସାରି ଦେଇଛନ୍ତି । ଏସବୁ କାମ କରୁଥିବା ସମୟରେ, ଖାଉଥିବାବେଳେ, ବାସନ ଧୋଉଥିବା ବେଳେ, ରନ୍ଧାଘର ଲିପାପୋଛା କରୁଥିବାବେଳେ ସୁମାମୀର ମନରେ ଗୋଟିଏ ଭାବନା : ଅଡ଼ିଆ ଥିବାରୁ ମଦନର ମନଟି ବଢ଼ି ଯାଇଛି । ନୂଆଁ ନୂଆଁ ଧନ୍ଦା ଧରିବାକୁ ବସୁଛନ୍ତି । ଏ ଧନ୍ଦା ଚଳିବ କି ନାହିଁ କିଏ ଜାଣେ । ନ ଚଳିଲେ ଉପାୟ । ଏ ଛୁଆ ଦୁଇଟାକୁ ମଦନ ଗୁଲଗୁଲ୍ କରିଦେବ । ମଦନ ଜଙ୍ଗଲ ଯିବ ତ ଯିବ ନୋହିଲେ ସେ ଗେଣ୍ଡୁଆ ଦୁଇଟାକୁ ଫିଙ୍ଗିଦେବ । ପଟଟାକୁ ପୋଡ଼ିଦେବ । ତନ ଗୃହଟା ଝଙ୍କା ଯିବ ତ ଯିବ । ଘରେ ତ ଅଡ଼ିଆ ଅଛି । କାଠ ବିକ ସେମାନେ ଅଗ ପରି ଚଳିଯିବେ । ହଁ, କେବେ କେମିତ କାଠ ବୋହିବାକୁ ଗେଣ୍ଡୁଆ ସାରକ ଯଦି ରଖାଯାଏ ତ ଭଲ କଥା । ମଦନ ଯେଉଁ ଧନ୍ଦା ଧରିଲଣି ଛୁଆମାନେ ବଡ଼ ହେଲେ ଠିକ୍ ହୋଇଯିବ ସେ ।

ମଦନ ଶୋଇଥିବା ଖଟରେ ଗ୍ରେଟ ଛୁଆଟି ଖେଳୁଛି । ସେମାନେ ଖୁବ୍ ସମୟ ଧରି ଶୋଇଥିବାରୁ ସେ ଆଉ ଶୋଇନାହିଁ । ପେଟ ଖାଲି ନାହିଁ, ଖେଳୁଛି । ସୁମାମୀ ଖାଇବାକୁ ଛୁଆଟିକୁ ଖଟରୁ ଆଣିଛି । ମଦନର ନିଦଟି ଭାଙ୍ଗି ଯାଇଛି । ଛୁଆଟି ସୁମାମୀର ହାତରେ । ମଦନ ଆଉ ଶୋଇନାହିଁ । ଉଠି ଯାଇ ମୁହଁ ଧୋଇ ନେଇଛି । କାଉଁରିଆ ଝଟି ଆଣି ବାରଣ୍ଡାରେ ବସି ପଡ଼ିଛି । ସୁମାମୀ ବି ତା' ପାଖରେ ବସିଗଲା ।

ଜଙ୍ଗଲକୁ ଯାଇ କାଠ ନ ଆଣିଲେ କାଲି ବିକା ହେବ କ'ଣ । ବର୍ତ୍ତମାନ ଏ କାମ ନ କରି ରାତରେ କଲେ ତ କିଛି ଅସୁବିଧା ନାହିଁ । ତେବେ ଏ କାମରେ ମଦନ ଲାଗି ପଡ଼ିଛି କାହିଁକି । ଏଥିରେ କି ଲାଭ ଅଛି । ସୁମାମୀ ଦୁଃଖ ଆଉ ରାଗରେ କହି ଉଠିଛି ।

ମଦନ ବଡ଼ ବଡ଼ ପ୍ରଜା ଆଉ ଗାଈ ଗୋରୁଙ୍କ କଥା କହେ । ସେମାନେ କେତେ ଯେ ଘାସ କାଟି ଆଣି ସେଗୁଡ଼ିକୁ ଖାଇବାକୁ ଦେଉଛନ୍ତି । ମଦନ ବୁଝାଏ : ସହରରେ ଚରାଭୂଇଁର ବଡ଼ ଅଭାବ ଅଛି । ଗାଈ ରଖିଲେ ଘାସ

ଦରକାର । ଏ ଘାସ କିଏ ନେବ ? ମଦନ ସବୁ ନ କେତେଜଣ ଘାସ କାଟୁଛନ୍ତି । ଆଉ ରୋଜଗାର କରୁଛନ୍ତି । ବେଶ୍ ଦୁଇ ପଇସା ସେମାନେ ପାଉଛନ୍ତି ।

ସୁମାନୀ କହିଲା : ମୋ ଦେଉଁ ବାବୁଜଣକେ କାଠ ପାଇଁ ବଇନା ପଇସା ଦେଇଛନ୍ତି ସେ କେମିତି କରିବେ । ତାଙ୍କୁ ତ କାଠ ଦରକାର । ପଇସା ସେଇଥିପାଇଁ ସିନା ଆଗରୁ ବଇନା ଦେଇଛନ୍ତି । ଏଥିପାଇଁ ସୁମାନୀ ମନରେ ଆଶଙ୍କା ଜନ୍ମେ । ବାବୁଜଣକ କାଠ ନ ପାଇଲେ ମଦନକୁ ନିଶ୍ଚୟ ଗାଳି କରିବେ । ପଇସାତକ ତାଙ୍କ ଫେରାଇ ନେବେ କି ନାହିଁ କେଜାଣି । କାଠ ଆଣିବାକୁ ଯଦି ଧରିବସନ୍ତି ପୁଣି ଜଙ୍ଗଲକୁ ଯିବାକୁ ପଡ଼ିବ । ତେବେ ଏ ଅନ୍ଧାରେ ଅଯଥାରେ ସମସ୍ତ ଗଡ଼ାଇ ନେବା କାହିଁକି ? କଥା ଶୁଣିବା କାହିଁକି ? ଲୋକେ କ'ଣ କହିବେ ? ମଦନ ସିନା ଘରେ ନ ଥିବ କମ୍ପା ଏଠିକାର ବେଶି ଲୋକ ସିନା ତାକୁ ଭେଟି ପାରିବେ ନାହିଁ । ଯଦି ସୁମାନୀ ଘରୁ କାଳି ବାହାରେ ଆର ପାଖର ସେ କେତେ ଲୋକଙ୍କୁ ଭେଟିବ । ସେମାନଙ୍କ କଥାର ବୋଝ ବୋହିବ ସୁମାନୀ । ସୁମାନୀର ହୃଦୟ କାନ୍ଦିବ । ସେ ବି ସେତେବେଳେ କହିବ ମଦନ ଏବେ ଖରାପ ହୋଇଯାଇଛୁ । ସେ ବୁଝାଇବ ସେମାନଙ୍କୁ ଏକଥା ସୁଧାରି ଦେବାକୁ । ଅସୁବିଧାରେ ପଡ଼ି ଥରେ ସିନା ହୋଇଗଲା । ସବୁବେଳେ କ'ଣ ହେବ ? ତଥାପି ଲୋକେ କହିବେ : ହୁଏ ଯେ ଏପରି ହୁଏନାହିଁ । ସମ୍ଭାଳି ପାରିବା ବୋଝ ଉଠାଇବା ଉଚିତ । ସୁମାନୀ ସେତେବେଳେ ବାଧ୍ୟ ହୋଇ ନୀରବ ରହିବ ।

କାଉଁରିଆ ବଳବାରୁ ମଦନର ହାତ ବନ୍ଦ ହୋଇଗଲା । ଆଶା ତା'ର ମଉଳି ଯାଇଛି ସୁମାନୀର କଥା ଶୁଣି । ସତ ଘଟଣାଟି ପ୍ରକାଶ କରିବାର ସମୟ ଏହା ଯେ ନୁହେଁ ସେ ଅନୁଭବ କରୁଛି । ତେବେ କରିବ କ'ଣ ? ସୁମାନୀର ମନଟି ଭାଙ୍ଗିଗଲେ ତା'ର ଗଢ଼ିଥିବା ମାଟି ମାଟିଆ ସଂସାରଟି ଭାଙ୍ଗିଯିବ । ମଦନର କାଳ୍ପନିକ ବାଗୁଡ଼ି କଳ୍ପନାରେ ମିଶିଯିବ । ସୁମାନୀ ଆଉ ମଦନର ମଝିରେ ଠିଆ ହୋଇଯିବ ସନ୍ଦେହର ଏକ ପାଚେରି । ସନ୍ଦେହର ପାଚେରି ଦୁର୍ଭେଦ୍ୟ ଉପାଦାନରେ ଗଢ଼ା । ଥରେ ସୃଷ୍ଟି ହେଲେ ବଳସ୍ତ କେଉଁଠି ସନ୍ଦେହର ସ୍ରଷ୍ଟା ବି କହି ନ ପାରେ । ସନ୍ଦେହର ପ୍ରକୃତ ରୂପ ଉନ୍ମୋଚନ ପରେ ବି ସନ୍ଦେହ ଉଭେଇ ନ ଯାଇ ନୂତନ ସନ୍ଦେହର ଦୃଢ଼ ପାଚେରି ଠିଆ ହୋଇଯାଇ ପାରେ ।

ମଦନ ନୀରବ । ମୁହଁକୁ ଚାହିଁଛି ସୁମାନୀ । ତା'ର ଦୁଃଖଭରା ରାଗ ବଢ଼ିଯାନ୍ତା କିନ୍ତୁ ମଦନର ହାତ ବନ୍ଦ ଅଛି । ପଚ ଦୁଇକେରା ଦୁଇ ହାତରେ

ନଶାହ୍ ଭାବରେ ପଡ଼ ରହିଛି । ଗୃହ ଛଅ ଅଙ୍କୁଳ ଲମ୍ବର ରସି ଭୂଇଁରେ ଲେଟି ପଡ଼ିଛି ।

ମଦନ ଆଖିରେ ଝଲକ ଉଠିଛି ରଘୁ । ରଘୁ ମଦନର କାଳ୍ପନିକ ବାବୁ ବନିଗଲେ ଅଥଚ ମଦନର ସରଳ ମନ ନିଜର ଅଭିବଧାରାକୁ ପ୍ରମାଣ କରିବାରେ ବାଧା ଦେଇପାରି ନାହିଁ । ଯେଉଁମାନେ ଅବାସ୍ତବ ଘଟଣାକୁ ବାସ୍ତବତାର ରୂପ ଦିଅନ୍ତି, ସେମାନେ ପରସ୍ପର ବିରୋଧୀ । କେତେ ଯେ ଘଟଣା ଏମାନଙ୍କ ସମାବେଶ କରୁଥିବେ ତାହା ବିଶ୍ଳେଷଣ କରିବା ଯେତିକି କଷ୍ଟକର, ସେତିକି ନବ୍ୟ ନୂତନ ଅବାସ୍ତବତାର ଆନୁମାନିକ ଉଦ୍ଭବରେ ଜଟିଳ ।

ମଦନ ଅଳ୍ପ ହସି ନିଜର କଥାଟି ଆରମ୍ଭ କରିଛି । ସେ ଯେପରି କି ଅନ୍ୟମନସ୍କ ଥିଲା । ସମରୁଟି ଏତେବେଳରୁ ଶୋଇଛି ଯେ ସେ ଖାଇସାରି ଶୋଇଛି ନା ଅଖିଆ ଶୋଇଛି ।

ସୁମାନୀ ବିରକ୍ତିରେ କହୁଛି : ନ ଖାଇ ଶୋଇଥିଲେ କ'ଣ ଖୁଆଇବାକୁ ଉଠାଇ ନ ଥାନ୍ତି। ଯେ ଏତେ ବେଳଯାଏ ଅଖିଆ ଶୋଇଥାନ୍ତା । ସୁମାନୀର କଥା ସରୁଣୁ ନ ସରୁଣୁ ମଦନ କହୁଛି : ସେ ବାବୁ ନିଜେ କହୁଛି, ସେ ଘାସ ବିକୁ । ଅଧିକ ରୋଜଗାର କରୁ । କାଠ ଅନେକ ଲୋକ ବିକୁଛନ୍ତି । ଘାସ ବେଶିଲୋକ ଆଣୁନାହାନ୍ତି । ବୁଲି ବୁଲି ଘାସ କାଟିବା ସମସ୍ତଙ୍କ ଦ୍ୱାରା ହେବନାହିଁ । ମଦନ ନିଜେ ଜଣେ କାଠ ଭାରିଆକୁ ଠିକ୍ କରିବ ଯେ କି ସେଇ ବାବୁକୁ କାଠ ଦେବ । ଘାସ ବିକା ପଇସାରୁ ମଦନ ନିଜେ କାଠର ପଇସା ଦେଇଦେବ । ବାବୁଙ୍କ ପଇସା ଚୁକ୍ତି ହୋଇଗଲେ ବାବୁ ବି ଖୁସି ଆଉ ନିଜ ମୁଣ୍ଡର ବୋଝ ବି କମିଯିବ ।

କଥାଟା ସୁମାନୀକୁ ଭାରି ପସନ୍ଦ ଲାଗିଲା । ସେ ଦିନ ଗଣୁଥିବ । ଯେଉଁଦିନ ଛଅ ଦିନ ପୂରିଯିବ ତା' ପରଦିନଠାରୁ ସେ ମଦନ ପାଖରେ ଥିବା ପଇସା ଗଣିବ । ବଡ଼ାକୁ ପାଞ୍ଚ ପଇସା ମିଳିଛି କି ନାହିଁ । ଯଦି କମ୍ ମିଳିଛି ତା' ହେଲେ ସେ ପୂର୍ବ ଛଅ ଦିନ କେଉଁଠାରୁ ପଇସା ଆଣି କାଠଭାରିଆକୁ ପଇସା ଦେଲା ତାହା ତଦାରଖ କରିବ । ବାବୁଟି ତା'ର ପଇସା କମ୍ପା କାଠ ପାଇଲା କି ନାହିଁ—ସବୁ ବୁଝିବ । ନ ହେଲେ କଥା କ'ଣ ହେବ ମଦନ ବୁଝିବ ।

ସମରୁ ଶୋଇ ଉଠି ମା'କୁ ଡାକୁଛି । ସୁମାନୀ ମଦନକୁ ଥରେ ଡୁଇଥର ନିରେଖି ସମରୁ ପାଖକୁ ଚାଲିଗଲା ।

ସୁମାମୀର କଠୋର ଭବିଷ୍ୟତ ସୂଚନା ପରେ ବି ମଦନର ମୁଖମଣ୍ଡଳ ପ୍ରସନ୍ନ ଦେଖା ଯାଉଥାଏ । ମୁଣ୍ଡ ତା'ର ହାଲୁକା ହୋଇଗଲା । ହାତ କାମରେ ଲାଗିଗଲା ।

ପରଦିନ ମଦନ ଘାସ କାଟିବାରେ ଲାଗିଛି । ମନରେ ନୂତନ ଆନନ୍ଦ । ବାହୁରେ ନୂତନ ଜାଗରଣ । ହୃଦୟରେ ଗଭୀର ସ୍ପନ୍ଦନ । ନୂତନଭାବ ଗମ୍ଭୀରତା ମାପୁଛି ମଦନ ।

ସବୁଜିମାରେ ଭରା କ୍ଷେତ । ସବୁଜିମାରେ ଭରା ହୁଡ଼ା । କ୍ଷେତର ସବୁଜିମା କୃଷକ ମନରେ, ପ୍ରାଣରେ ପୁଲକ ଭରି ଦେଉଛି ଯେତେବେଳେ, ହୁଡ଼ାର ସବୁଜିମା ମଦନର ମନରେ । କ୍ଷେତରେ ଧାନ ଗଛ, ହୁଡ଼ାରେ ଘାସ । କୃଷକ ଅନାବନା ଘାସ କ୍ଷେତରୁ ବାଛି ଫିଙ୍ଗି ଦେଉଛି । ଘାସ ଲୋପ ପାଉ । କ୍ଷେତର ମାଟିରେ ଭରି ରହିଥିବା ଉଦ୍ଭିଦ-ଖାଦ୍ୟ କେବଳ ଧାନ ଗଛ ପାଉ । ଧାନ ପ୍ରଚୁର ଫଳୁ । କୃଷକର ଅମାର ଭରିଉଠୁ । ହୁଡ଼ାରେ ହେଉ ବା ପାହାଡ଼ରେ ହେଉ । ପଡ଼ିଆରେ ହେଉ ବା ପଦାରେ ହେଉ । ଘାସ ବଢ଼ୁ । ମଦନକୁ ଅଡ଼ିଆ ମିଳି-ଯାଉ । ମାଟିର ମହାନତା ଘାସରେ ଫୁଟୁ ଆଉ ତା'ର ଝାଟିର କୁଡ଼ିଆ ବଞ୍ଚିରହୁ ।

ମଦନକୁ ଆଜି ଟିକିଏ ଲଜ୍ଜା ବୋଧ ହେଉଛି । ଘାସ ବୋହୁଛି ବୋଲି ନୁହେଁ । ନୂଆ ଏକ ଧନ୍ଦାରେ ପଶିଛି ବୋଲି । ମନରେ ନୂଆ ଆଶା ଥିଲେ ବି ମୁହଁରେ ଏକ ଲାଜର ଭାଷା ।

ମଦନର କାଠ ବିକାଳି ସାଥିମାନେ ବି ହସି ଉଠୁଛନ୍ତି । ଯିଏ ମଦନ ସହିତ କଥାବାର୍ତ୍ତା କରେ ସେ ହସି ହସି କହେ ମଦନକୁ ବୋଧହୁଏ କାଠବିକା ପୋଷେଇଲା ନାହିଁ । ମଦନ ଶୁଣି ମୋଟେ ବିରକ୍ତ ହୋଇନାହିଁ । ହସିଦେଇ କହେ : ସବୁଦିନ ସମାନ ନ ଥାଏ । ଯେଉଁଦିନ ଯାହା ସୁବିଧା ହେଲା ଆଦରି ନେବା କଥା । ନ ଖଟିଲେ ପଥର ଦେହରୁ ଚାଉଳ ବାହାରିବ କିମିତି । ନ ଖଟିଲେ ଖାଇବାକୁ ଯେ ମିଳେନାହିଁ । କୌଣସି ପ୍ରକାରେ ଅଡ଼ିଆ ଯୋଗାଡ଼ କରିବାକୁ ପଡ଼ିବ । ମଦନକୁ ଯେ ଚିହ୍ନେ ଅଥଚ କଥାବାର୍ତ୍ତା କରିନାହିଁ ସେ ମଦନକୁ ଦେଖି ହସିଦିଏ । ନିଜ ଭାବ ନିଜ ଭିତରେ ଫୁଟାଇ ଦିଏ । ଏ ହସରେ ତାଚ୍ଛଲ୍ୟ ନାହିଁ । ଅଛି ନୂତନକୁ ଏକ ପ୍ରକାର ଅଭିବାଦନ ।

ସହରର ଗଳିରେ ବୁଲୁଛି ମଦନ । ତା'ର ସ୍ଥାୟୀ ଗ୍ରାହକ ନାହିଁ । ଦୁଇ ଚାରି ଜଣକୁ ଘାସ ନେବାକୁ ସେ ଯାଚୁଛି । ସେମାନଙ୍କର ସ୍ଥାୟୀ ଯୋଗାଡ଼

ଥିବାରୁ ଘାସ ରଖିବାକୁ ମନା କରନ୍ତି । ମଦନର ଘାସ ଦେଖି କନ୍ତୁ ଲୋଭ ଲଗେ । ସେମାନେ କମ୍ ଦାମରେ ଘାସ ମାଗନ୍ତି । ସେ କନ୍ତୁ ଦେବାକୁ ନାରାଜ ହୁଏ । ଯାଚଲା ଜିନିଷ ସବୁ ଜାଗାରେ ଶସ୍ତା । ଯାଚଲା ଜିନିଷ ତଟକା ଆଉ ମଜବୁତ ହେଲେ ବି ପସନ୍ଦ ହୁଏନାହିଁ । ମନ ଭଲ କହେ କନ୍ତୁ ମୁହଁ କହେ ନା କହେ ଦୁର୍ଗୁଣ ବାହାର କରି ପକାଏ । କାଳେ ସୁବିଧାରେ ଜିନିଷଟା ମିଳିଯିବ । ଶସ୍ତାରେ ମିଳି ଯାଇଥିବା ସମସ୍ତ ଜିନିଷ ବ୍ୟବହାରରେ ନ ଆସିଲେ ବି କ୍ଷତି ନାହିଁ । ଯେତିକ ବ୍ୟବହାରରେ ଆସି ଯାଉଥିବ ସେଥିରେ ତ ଜିନିଷର ପ୍ରକୃତ ଦାମ ବାହାରି ପଡ଼ୁଥିବ । ବାକତକ ବ୍ୟବହୃତ ହୋଇଥିଲେ ଶ୍ରମ ଏବଂ ଦ୍ରବ୍ୟର ସେ ଅପଚୟ ହୋଇ ନ ଥାନ୍ତା । ଏଥିପ୍ରତି ଅନୁଶୋଚନା କଲେ ନିଜର ବ୍ୟକ୍ତିଗତ ଅର୍ଥରେ ପରିବର୍ତ୍ତନ ଅସିବ ନାହିଁ କମ୍ବା ବ୍ୟକ୍ତିଗତ ଶ୍ରମରେ ବି ସଙ୍କୋଚନ ଆସିବ ନାହିଁ । ବ୍ୟକ୍ତିର ପ୍ରାଧାନ୍ୟ ହିଁ ବ୍ୟବସାୟରେ ଏଠି ନିୟାମକ ।

ମଦନ ମନେ ମନେ ଠିକ୍ କରି ନେଇଛି ଯେ ସମସ୍ତଙ୍କର ସ୍ଥାୟୀ ଘାସ ଯୋଗାଡ଼ ଥିବ କନ୍ତୁ ହୁଏତ ଘାସର ଆବଶ୍ୟକତା ନ ଥିବ । ସେ ଯେତେବେଳେ କାଠ ଆଣେ ଅନେକ ଘର ଯେ ବୁଲିବାକୁ ପଡ଼େ । କାହାକୁ କମ ଦାମରେ ଦେବାକୁ ମନା କରେ ତ କାହାର କାଠର ଦରକାର ନ ଥାଏ । କାଠ ହେଉ ବା ଘାସ ହେଉ ଏକା ରକମର ଧନ୍ଦା ତ ।

ଘାସରେ ତ କଟକଣା ନାହିଁ । ଆଜଯାଏ ମଦନ ଶୁଣିନାହିଁ ଘାସ ପକଡ଼ା ଯାଇଛି । ଜୋରିମାନା ହୋଇଛି । ଯାହାକିଛି କଟକଣା ହୁଏ, ହୁଏ ଗାଁରେ । କେହି କାହାର କ୍ଷେତରୁ ଘାସ ବାଇଲେ ହୁଏ । ସେଇଟା ବି ଯଦି କ୍ଷେତବାଲାର ଘାସ ଦରକାର ଥିଲେ । ଘାସ କାଟୁଥିବା ଲୋକ ପ୍ରତି କ୍ଷେତ-ବାଲାର ଶ୍ରଦ୍ଧା ନ ଥିଲେ ବି ହୁଏ । ଘାସ ବାଉଥିବା ଲୋକ ହିଡ଼ ତଳର ଧାନ ନଷ୍ଟ କରି ଦେଉଥିଲେ ବି କଟକଣା ହୁଏ ଘାସ କାଟିବାରେ । ଯାହାହେଉ ଘାସର ଘର ଗୁରିଆଡ଼େ ।

ମଦନ ଜଙ୍ଗଲ ବିଭାଗର କର୍ମଚାରୀଗଣ ରହୁଥିବା ଗଳିରେ ଘାସ ଭାର ନେଇ ବୁଲିଲା । ଗୋଟିଏ ଶ୍ରେଷ୍ଠ ଅଥଚ ଆକର୍ଷଣୀୟ ବସାଘରୁ 'ଏ ଘାସ' ବୋଲି ଡାକଟିଏ ଶୁଭିଲା । ମଦନ ଅଟକିଗଲା ।

ବସା ଘରଟି ଜଣେ ପରିଦର୍ଶକଙ୍କ ଘର । ଶିକ୍ଷା ବିଭାଗର ଏହିଂ କର୍ମ-ଚାରୀଙ୍କର ଗାଈଟିଏ ଅଛି । ଗ୍ରେଟିଆ ବାଛୁରୀଟିଏ ବି ଅଛି । ଏଇ ବୟସ୍କ କର୍ମଚାରୀ

ନୁରେକ ବଜାରର ଗୋ ଖାଦ୍ୟକୁ ଯେତିକି ପସନ୍ଦ କରନ୍ତି ଘାସ ପରି ପ୍ରାକୃତିକ ଖାଦ୍ୟକୁ ବି ସେତିକି ପସନ୍ଦ କରନ୍ତି । ଏଥିରେ ଗାଈ ନିମନ୍ତେ ଆବଶ୍ୟକ ସମସ୍ତ ଉପାଦାନ ମିଳୁ ନ ଥିବାର ତଥ୍ୟ ଥିବାରୁ ସେ ଗୋଖାଦ୍ୟ କିଣିଥାନ୍ତି । କିନ୍ତୁ ସବୁଜ ଘାସ ଯେ ଏକ ଉପାଦେୟ ଖାଦ୍ୟ । ମୋଟ ଉପରେ ଶସ୍ତାରେ ଘାସ ପରି ଏତେ ପରିମାଣରେ ଗୋ ଖାଦ୍ୟ ମିଳେନାହିଁ ।

ମଦନ ଯେତେବେଳେ ଗ୍ରାହକଙ୍କ ଡାକରା ପାଇଛି ମନରେ କି ଆଶଙ୍କା ଆସିଛି । ରାସ୍ତା ଅଡ଼ ବସାଘର ମଝିରେ ଘାସ ଭାରଟି ଥୋଇ ଦେଇ ମଦନ ଦାମ ମୂଲ ଛିଣ୍ଡାଇବାକୁ ଗଲା ।

ପରିଦର୍ଶକଙ୍କ ସ୍ତ୍ରୀ କହିଲେ : କେତେ ବଡ଼ା ଘାସ ଅଛି, ବଡ଼ାକୁ କେତେ ନେବୁ ?

ମଦନ କହେ : ସାତ କମ ଶହେ ବଡ଼ା ଘାସ ଥିବା କଥା ଜଣାଇଛି । ବଡ଼ାକ ପୁଣି ପାଞ୍ଚ ପଇସା ଦରରେ ସେ ବିକିବ । ଗୃହିଣୀ ଜଣକ ଗୃହଟିକୁ ନେଇ ଯିବାକୁ କହିଲେ । ମଦନ ନାରାଜ ହେଲା ଏବଂ ପୋଷେଇବ ନାହିଁ ବୋଲି କଣେଇ ଦେଲା । ଘାସ ଭାର ସେପରି ଥୁଆ ହୋଇଥାଏ ।

ରାସ୍ତାରେ ବୁଲୁଥିବା ଗାଈ ଆଉ ତା'ର ଛଡ଼ା ବାଛୁରୀଟି ଥୁଆ ହୋଇ-ଥିବା ଘାସରୁ ତିନି ବଡ଼ା ଘାସ ଟିକିଏ ସାରିଥିଲେଣି । ମା'କୁ ଦାମ ମୂଲ ଠିକ୍ କରି ନେବାରେ ସମର୍ଥନ ଜଣାଇବାକୁ ବାହାରି ପଡ଼ିଥିବା ପୁଅଝିଅଙ୍କ ଆଖିରେ ଏ ଘଟଣାଟି ଦେଖା ଯାଇ ନ ଥିଲେ ମଦନର କେତେ ବଡ଼ା ଘାସ ଯେ ଉଦରସ୍ଥ ହୋଇ ଯାଇଥାନ୍ତା, ପରେ ଗଣିଥିଲେ ଜଣା ପଡ଼ିଥାନ୍ତା । ଏହା ମଝିରେ ପରିଦର୍ଶକ ବାବୁ ଜଣକ ବାହାରି ପଡ଼ିଛନ୍ତି । ବଡ଼ାକୁ ପାଞ୍ଚ ପଇସା ଦରରେ ଦେଇଦେବାକୁ ମଦନ ଶୁଣୁଥିବା ଭଳି ସ୍ୱରରେ କହିଦେଇ ମଦନକୁ ଘାସଗୁଡ଼ାକ ଗାଈ ନିମନ୍ତେ ଅସ୍ଥାୟୀ ଭାବରେ ଉତ୍ତର କାନ୍ଥର ଅଗଣାରେ ତିଆରି କରା-ଯାଇଥିବା ଗୁହାଳରେ ରଖି ଦେବାକୁ କହିଲେ ।

ଶିକ୍ଷା ବିଭାଗରେ କାମ କରୁଥିବାରୁ କର୍ମଚାରୀଜଣକ ବାରମ୍ବାର ଗୃହିଣୀଙ୍କୁ ତଥା ପୁଅଝିଅଙ୍କୁ ଶୃଙ୍ଖଳିତ କଥାବାର୍ତ୍ତା କରିବାକୁ ଉପଦେଶ ଦିଅନ୍ତି । ବିଶେଷ କରି କିଣାକିଣି କରିବା ସମୟରେ ସେ ବେଶି ତର୍କ ବିତର୍କକୁ ପସନ୍ଦ କରନ୍ତି ନାହିଁ । ସେ ଏ ସବୁରେ ଘଡ଼ୋଣୀଙ୍କ ପ୍ରତିଦ୍ୱନ୍ଦ୍ୱିତାକୁ ବିଶେଷ ଭୟ କରନ୍ତି । ସେ ମନେ କରନ୍ତି ଦରଦାମ ଛିଣ୍ଡାଛିଣ୍ଡିରୁ ସୃଷ୍ଟି ହେଉଥିବା ତର୍କ ବିତର୍କ ତାଙ୍କ ସମ୍ମାନରେ ଆଞ୍ଚ ଆଣେ । ଏପରିକି ବିଭିନ୍ନ ବିଭାଗର କର୍ମଚାରୀମାନଙ୍କ

ଗୃହିଣୀମାନେ ସମବେତ ହୋଇ ଦରଦାମ ଛଣ୍ଡାଛଣ୍ଡିରେ ଲାଗି ପଡ଼ିଥିବା ଅବସ୍ଥାରେ ବି ସେ ବିଚଳିତ ହୋଇଥାନ୍ତି । କାହାକୁ କିଛି କହି ହୁଏ ନାହିଁ । କହିଲେ ହୁଏତ ତା'ର ପ୍ରତିକ୍ରିୟା ଅନ୍ୟ କର୍ମଚାରୀମାନଙ୍କ ଉପରେ ପଡ଼ିପାରେ । ଏହା ଏକ ଅପ୍ରୀତିକର ପରିସ୍ଥିତି ବି ସୃଷ୍ଟି କରି ଦେଇପାରେ । ବଜାରକୁ କିଛି ନୂଆ ଫେସନର ଶାଢ଼ୀ ଆସିଲେ ଉପୁରି ରୋଜଗାର ବା ବେଶି ଦରମା ପାଉଥିବା ଗୃହିଣୀମାନଙ୍କ ମଧ୍ୟରେ ଟଣାଓଟରା ହୁଏ କିଣାକିଣି ସକବାକ ନେଇ । କେତେ ଫ୍ରିଜ, ଟି. ଭି. କିଣିଗଲେ ଆଉଜଣକ ମଧ୍ୟ ତାହା ଆଣିବାକୁ ବାଧ୍ୟ । ନ ହେଲେ ଘରର ମାନ ମହତ ରହେ ନାହିଁ । ଏପରି ପାର୍ଥିବତ୍ୱ ପ୍ରତି ଗୃହିଣୀମାନଙ୍କ ରୁଚି ବିଶେଷ ଥାଏ ଓ ଶେଷକୁ ଫ୍ରିଜ ଭିତରେ ଶାଢ଼ୀ ବି ରଖା ଯାଇଥାଏ । ବିଜ୍ଞାନର ଉନ୍ନତିରେ ଅନୁନ୍ନତ ଚିନ୍ତାଧାରା ପଶିଯାଏ । ଏଠି ସିମିତ ବାବୁଆଣୀ ଜଣକ ହଉଛନ୍ତି । ପରେ ସେ ନିଜର ବିରକ୍ତି ପ୍ରକାଶ କରନ୍ତି ଘରେ । ଗୃହିଣୀ କହନ୍ତି—ତା'ହେଲେ ସେ କିଛି କିଣି ପାରିବେ ନାହିଁ । ପଡ଼ୋଶୀ ଅଭିମାନର ରୂପର ଛାପ ଲଗିଯାଏ ଓ କହନ୍ତି : ହବୁଯାକ ପଡ଼ୋଶୀ ଲୋକେ ନେଇଯିବେ । ସମସ୍ତେ ମିଶି ତ କାରବାର କରନ୍ତି ସେଥିରେ ପୁଣି ଜଣକର ମୁଣ୍ଡ ବଥାଏ କାହିଁକି ? କର୍ମଚାରୀ ଜଣକ ନୀରବ ରହନ୍ତି । ଶିକ୍ଷାର ପ୍ରସାର ନ ହୋଇଥିବାରୁ ସେ ଅଭିଭାବକଙ୍କ ଉପରେ ରାଗିଯାନ୍ତି । ତା'ପରେ ଭାବନାରେ ଭଟ୍ଟା ପଡ଼େ ।

ଦରଦାମ ଛଣ୍ଡାଛଣ୍ଡିର ଅବକାଶ ନ ଥିବାରୁ ଗୃହିଣୀ ତଥା ପୁଅଝିଅମାନେ ଘର ଭିତରକୁ ଚାଲିଗଲେ । ନିଜେ କର୍ମଚାରୀଜଣକ ଗୁହାଳକୁ ଯାଇ ଘାସ ରଖାଇଲେ ।

ଘାସ ରଖୁଥିବା ସମୟରେ କର୍ମଚାରୀଜଣକ ଦିନେ ଛଡ଼ା ଦିନେ ଘାସ ଆଣି ପାରିବ କି ନାହିଁ ମଦନକୁ ପଚାରିଲେ । ମଦନ କାହିଁକି ଆଣି ପାରିବ ନାହିଁ । ମନ ଭିତରେ ଥିବା ଅବିଶ୍ୱାସର ସୃଷ୍ଟିରେ ହିଁ ମାତ୍ର ଶ୍ରମର ସାର୍ଥକତା ସେ ଅନୁଭବ କରିଛି । ଘାସ କାଟିବା ଆଉ ବିକିବା ତା'ର ବେଉସା । କୌଣସି ମତେ ପେଟ ପୋଷିବାକୁ ତ ହେବ । ସେ କାହିଁକି ଦିନେ ଛଡ଼ା ଦିନେ ଘାସ ଆଣି ପାରିବ ନାହିଁ । ମିଳୁଥିବା ଯାଏ ସେ ଏହି ଧନ୍ଦା ହିଁ କରିବ ।

ମଦନର ଘାସ ବଡ଼ା କର୍ମଚାରୀଙ୍କୁ ପସନ୍ଦ ଲାଗି ଯାଇଛି । ଗାଈ କେବଳ ତାଙ୍କ ପରିବାରକୁ ଦୁଧ ଯୋଗାଏ ନାହିଁ । ଦିନକୁ ଅଢ଼େଇ ଲିଟର ଦୁଧ ଗୁଡ଼ିଆ ଦୋକାନୀ ଜଣେ ବି ତାଙ୍କଠାରୁ ନିଏ । ଘରେ ପୁଅ-ଝିଅମାନେ ଦୁଧ ଖାଇଯିବା ସଙ୍ଗେ ସଙ୍ଗେ ଗାଈଟି ତା'ର ନିଜର ଖାଦ୍ୟ ନିଜେ ବାହାର କରିନିଏ ।

କର୍ମଚାରୀଜଣଙ୍କ ଚାରିଟଙ୍କା ପଚିଶ ପଇସା ମଦନକୁ ବଢ଼ାଇ ଦେଲେ । ମଦନ ମନରେ ପ୍ରଚୁର ଆଶ୍ୱସ୍ତିର ଅନନ୍ଦ ଖେଳି ଯାଉଛି । ଶ୍ରମର ଲହଡ଼ି ସବୁ ଏକତ୍ରିତ ହୋଇ ତା' ପରିବାରର ଉନ୍ନତ ପଥରେ ପିଟିହେଲେ ।

ମଦନ ଦିନେ ଛଡ଼ା ଦିନେ ନିର୍ଦ୍ଧାରିତ ମତେ ଘାସ ଦେଇ ଚାଲିଛି । ସୁବିଧାରେ ଘାସ ମିଳିଗଲେ ମନରେ କି ଅପୂର୍ବ ଆନନ୍ଦ । ମଦନ ଦିନେ ଛଡ଼ା ଦିନେ ଗଣିଦିଏ ଷ୍ଟାଫ୍ ଗ୍ରାହକଠାରୁ ପାଉଥିବା ପାଞ୍ଚଟଙ୍କା ସୁମାମି ହାତରେ । ଅନ୍ୟ ଦିନ ଯେଉଁଠି ସୁବିଧା ହୁଏ ଘାସ ବିକିଦିଏ । ହାଟିକାଉ କରି ଦୁଇ ପଇସା କାଠ ଭିତରୁ ବେଶି ଯାଏ । ପଇସା ବେଶ୍ ପାଏ । ଘରର ହାଟ କରି ଏବେ ତା' ପରିବାରରେ ସଞ୍ଚୟ କିଛି ବଢ଼ି ଚାଲିଛି ।

ଏପରି କାଗୃତପୂର୍ଣ୍ଣ ବୃଦ୍ଧି ହେବା ଦିନରୁ ମଦନ ଘରେ ଥିବା ପୁରୁଣା କଂସା ଥାଳିଟିକୁ ଦେଖି ଆସୁଛି । ସୁମାମି ମା' ଘରୁ ବେଶି କିଛି ଆଣି ନ ଥିଲା । ମା' ଘରେ ବି ତ ତାକୁ ଖଟି ଖାଇବାକୁ ପଡ଼ୁଥିଲା । ନିଜ ପାରିଶ୍ରମିକ ପଇସାରୁ କିଣିଥିବା ଦୁଇ ତିନୋଟି ପାନିଆଁ, ଗୋଟିଏ ଦର୍ପଣ, ଦୁଇକେଇ ଚଉଁରି, ସ୍ନୋଟବଡ଼ ତିନୋଟି ମାଖିବା ସାବୁନ, ଗୋଟିଏ କପଡ଼ା କଚା ବାର୍ ସାବୁନ, ଗୋଟିଏ ତେଲକାଁଚ ଆଉ ଗୋଟିଏ ମଧ୍ୟମ ଧରଣର ବାସନା ଶିଶି । ସୁମାମିର ଭାଇ ଯୋଗାଡ଼ କରି ଗୋଟାଏ ଝାମ୍ପିଲରେ ଦେଇଥିଲା ଦୁଇଖଣ୍ଡ ଶାଢ଼ୀ, ସାଉଁରିଏ ଧୋତି । ଗାଁ ଲୋହୁରି ତିଆରି କରି ଦେଇଥିବା ପନିକି, ଡୁଆ ଓ ଝରା ଚଟୁ ଦେଇଥିଲା ସେ ଗୋଟାଏ କାଠ ବାକ୍ସରେ । ଶିଳ ଓ ଶିଳପୁଆ ବି ଦେଇଥିଲା । ଗାଁ ତନ୍ତି ତିଆରି କରିଥିବା ଗୋଟିଏ ଦୁଇ ଖଣ୍ଡିଆ ଡାଲି ଓ ଗୋଟିଏ ଭୁଗୁଳି ବି ଥିଲା । କୁଣ୍ଡା ଗୋଟିକରେ କିଛି ଖଇଲିଆ ଥିଲା । ଡାଲିରେ ତିନି ସେର ଚାଉଳ ଆଉ ଭୁଗୁଳିରେ ମାଣିଂ କୋଳଥ ଦିଆ ଯାଇଥିଲା । ଗୋଟାଏ କୁମ୍ପିରେ ଅଧ ସେର ଡୁରି ତେଲ ଓ ସୁମାମି ହାତରେ ଚାରିଟଙ୍କା ଆଉ କିଛିଟା ଭାଇ ତା'ର ଦେଇଥିଲା । ହେଲେ ବାସନ କୁସନ ବିଶେଷ କିଛି ଦିଆଯାଇ ନ ଥିଲା । ପେଟକୁ ତ ଏତେଦିନ ଖଟି ଖଟି ପୂରିନାହିଁ ସେ ବା କରିଥାନ୍ତା କ'ଣ । ସୁମାମି ମନରେ ବି ଏଥିପାଇଁ ଦୁଃଖ ନ ଥିଲା । କାହାରି ପ୍ରତି ସୁମାମିର ଈର୍ଷା ବି ନ ଥିଲା । ବିବାହରେ ସେ ଜାଣେ ସେମାନଙ୍କର ବିଶେଷ କିଛି ପରିବର୍ତ୍ତନ ଆଣେନାହିଁ ବରଂ ଏକ ପ୍ରକାର ନୂଆ ଶକ୍ତି ସୃଷ୍ଟି ହୁଏ । ଯାହା ସୁମାମି ଭିତରେ ଅଛି । ପର୍ବତ ଶଯ୍ୟା ତ୍ୟାଗ କରି ଝରଣାର ସ୍ରୋତ ହଠାତ୍ ସମତଳରେ ପ୍ରବେଶ କଲେ ପ୍ରପାତ ସୃଷ୍ଟି ହୋଇ ଜଳ ସ୍ରୋତରେ ଏକ ନୂତନ ଶକ୍ତି ସୃଷ୍ଟି ହୁଏ ।

ସୁମାମୀ କେବଳ ଘର କାମ କରେନାହିଁ । ଦିନେ ଅନେକ ଦିନ ନଜଣ ଝାରପଣା ଜଙ୍ଗଲକୁ ଯାଇ ଶାଳ ପତ୍ର ଭାଙ୍ଗି ଆଣେ । କେନ୍ଦୁ କାଠି ବି ଆଣେ । ଘରେ ବସି ଖଲି, ଚଟେଇ ତିଆରେ । ଗାଁରେ ଭୋଜିଭାତ ସମୟରେ ଖଲି ଚଟେଇ ବିକି ଦୁଇ ପଇସା ପାଏ । ହୁଏତ ଏହାର ସମ୍ପର୍କ ଘଟାଇଲେ ସହରକୁ ଯୋଗାଇ ଦେଇ ବେଶ୍ ଦୁଇ ପଇସା ନିଜେ ରୋଜଗାର କରନ୍ତା । ସେ ମଦନ କାଠ ଭାରରେ ଅନେକ ଦିନ ଏପରି ଦେଖିଛି । କହିଲେ ମଦନର କାଠ ଭାରଟି ଏକ ଛୋଟିଆ ଦୋକାନ ଥିଲା । କାଠି ପତର ଚଟେଇ ଆଦି ନେଇ ସହରର ଆବଶ୍ୟକତା ପୂରଣ କରି ଅଲକ୍ଷ୍ୟରେ ତାଙ୍କର ପ୍ରିୟପାତ୍ର ହୋଇଥିଲା । ବାହା ହୋଇ ନ ଥିବା ଆଗୁଁ ସୁମାମୀ କେନ୍ଦୁପତ୍ର ତୋଳି କେରି ବାନ୍ଧୁଥିଲା । ମା' ଘରୁ ଆଣିଥିବା ଦୁଇ ଖଣ୍ଡିଆ ଡାଲରେ ପତ୍ର କେରି ସବୁ ପତର ଫାଣ୍ଡିକୁ ନେଉଥିଲା ଫଗୁଣ ଚଇତ ମାସରେ । ହପ୍ତାକୁ ହପ୍ତା ସପ୍ତାହକୁ ସେ ବି ରୋଜଗାର କରୁଥିଲା ଦଶ ବାର ଟଙ୍କା । ପତର ଫେଣ୍ଡିରେ ଆଷାଢ଼ ଶ୍ରାବଣ ମାସରେ କେନ୍ଦୁପତ୍ର ସଜାଡୁଥିଲା । ମାସ ମାସ ଧରି ପତ୍ର ଫେଣ୍ଡିରୁ ଆଉ ପତ୍ର ଫେଣ୍ଡି ଯାଇଛୁ । ଜୀବନଟା ଏକରକମ ସଙ୍ଘର୍ଷ କରି ଅଭ୍ୟସ୍ତ ଶ୍ରମିକ ହୋଇଛୁ । ତେଣୁ ଏବେ ବି ବସି ରହିବ କାହିଁକି ? ଘର ପାଇଁ ସେ କାଠ, ଝାଟି, କୁଟା ଯାଇ ଆଣେ । ମଦନକୁ ସେ କାଠ ଭାର ନେବାକୁ ବାଧ କରୁଥିଲା । କାରଣ ସେ ବି କେନ୍ଦୁ କାଠି ପତ୍ର ଦେଉଥାନ୍ତା । ମଦନ ତା' କଥା ବୁଝିଲା ନାହିଁ ବୁଝିଲା କେଉଁ ବାବୁ କଥା । ଏବେ ସେ ଖଲି ଚଟେଇ ସବୁ ଘରେ ଥାକ ମାରି ରଖୁଛି ସୁବିଧା ଦେଖି ବିକିବ । ଗାଁରେ ବା ସହରରେ ଯଦି କାହାରି ବାହାଘର ପଡ଼େ ମଦନକୁ କହିବେ ଓ ସେ ତାହା ଯୋଗାଇ ଦେବ ।

ଏବେ ମଦନ ସୁନ୍ଦରଗଡ଼ରୁ ଗୋଟିଏ ଟାଣ ଟିଣ ବାକ୍ସ ନେଲାଣି । ଘରର ଧୋତିପଟା ଆଉ ପାଖରେ ଥିବା ଦୁଇ ଚାରି ଟଙ୍କା ଏଇଥିରେ ରଖେ । ଖଣ୍ଡିଏ ମୋଟା ବଡ଼ ତାସଲ୍ ଆଉ ଦୁଇଟା କଂସା ଗିନା ବି କିଣିଲାଣି । କଂସା ବାସନ, ସେମାନଙ୍କର ପଡ଼ା ପଡ଼ଶାରେ ମାନ ବଢ଼ାଇଥାଏ । ସେ ଏବେ ତେଲି ମାନଙ୍କଠାରୁ ଘାଣି ତେଲ ବି କିଣେ । ଦୋକାନୀ ଘାଣି ତେଲ ସେ ସେତେ ବେଶି ପସନ୍ଦ କରେନାହିଁ । ଖୋଲା ବିକା ହେଉଥିବା ତେଲ ଏକ ଗନ୍ଧ ସୃଷ୍ଟି କରେ ଏବଂ ନିଦା ତେଲ ଡବା କିଣିବାକୁ ସମ୍ବଳ ନାହିଁ । ମୋଟ ଉପରେ ବିଳାସ ମଦନ କିମ୍ବା ସୁମାମୀ କାହାରିର ଇଚ୍ଛା ନୁହେଁ । କ୍ଷୁଧାହୀନ ଜୀବନ ଯାପନ କରିବାରେ ଏଇ ଶ୍ରମଜୀବୀଙ୍କ ଜୀବନ ସଂଗ୍ରାମର ମୂଳପିଣ୍ଡ । ଯେଉଁ ଶ୍ରମଜୀବୀଠାରେ ଏହାର ବ୍ୟତିକ୍ରମ ଘଟେ, ବିଳାସର ସୂଚନା ମିଳେ ତାକୁ

ତ୍ରିମଣଙ୍କୀ କାହିଁକି ସମସ୍ତେ ଘୃଣା କରନ୍ତି । ସେ ପଡ଼ିଯାଏ । ଜୀବନରେ କାଣ୍ଡ ଅଗ୍ନି ଦୈନ୍ୟର ଉପାଦାନ ବଢ଼ାଇଦିଏ । ମନରେ ବିପ୍ଳବ ଜାଗି ଉଠିଲେ ବି ମଉଳି ଯାଏ । ଅହଂକାର ଆଉ ପ୍ରତିହିଂସାର ମୂଲ୍ୟବାନ ଜୀବନଟି ନଷ୍ଟ ହୋଇଯାଏ । ମଦନ ଓ ସୁନାମୀ ନିଜ ନିଜକୁ ଏବଂ ପରସ୍ପରକୁ ଚିହ୍ନିଛନ୍ତି । ସେମାନଙ୍କର ଜୀବନ ପ୍ରବାହ ନିୟନ୍ତ୍ରିତ କେନାଲର ଜଳସ୍ରୋତ ପରି ଧୀରଗାମୀ, ଉପାଦେୟ ଓ ସରଳ ନିରାଡ଼ମ୍ବର ।

ମଦନର ଭାଷା ବି ଏବେ ବଦଳି ଗଲାଣି । ଦମ୍ଭ କମି ଗଲାଣି । ହେଲେ ତା'ର ସ୍ୱର କୋଣରେ ସ୍ୱାଭାବିକତା ରହିଛି । ତା'ର ସ୍ୱଚ୍ଛଳ ଜୀବନ ପ୍ରବାହରେ ଚଳଚଳଣି ଅଥଚ ଗମ୍ଭୀର ଭାବରେ ଫୁଟିଉଠୁଛି । ଯେଉଁମାନେ ମଦନକୁ ଚିହ୍ନନ୍ତି ଏବେ ସେମାନେ ତାକୁ ଭକ୍ତି କରନ୍ତି ତା' ନୁହେଁ ଆଦର ବି କରନ୍ତି ।

ଖଟିବାରେ, ଶ୍ରମର ସାର୍ଥକ ବିନିଯୋଗ କରିବାରେ ମଦନର ତ୍ରୁଟି ନାହିଁ । କିଛୁଦିନ ପାଇଁ ଅଯଥା ଭାବରେ ବିଶ୍ରାମ ନେବାକୁ ମଦନ ପସନ୍ଦ କରେ ନାହିଁ । ତା'ପରେ ଦଶ ପନ୍ଦର ଦିନ ଚଳିଯିବାକୁ ସମ୍ବଳର ଅଭାବ ନାହିଁ । ସେ ତଥାପି ମନେକରେ ଅହେତୁକ ବିଶ୍ରାମ ଜାଗ୍ରତ ନିଦ୍ରା ସଙ୍ଗେ ସମାନ । ଏ ନିଦ୍ରାରେ କ୍ଳାନ୍ତି ଦୂର ହୁଏନାହିଁ, ନୂତନ ଶକ୍ତି ଉଦ୍ରେକ ହୁଏନାହିଁ, ଉଦ୍ଭଟ ଭାବନା ମନରେ ବସା ଖୋଜେ । ବସା ମିଳିଗଲେ ଅବାସ୍ତବ ଝଡ଼ ସୃଷ୍ଟି ହୁଏ । ଝଡ଼ରେ ଶରୀରର ସବୁଯାକ ଅଙ୍ଗ ଦୋହଲିଯାଏ । ଫଳରେ କ୍ଳାନ୍ତି ବଢ଼ିଯାଏ । ଶକ୍ତିର ହ୍ରାସ ହୁଏ । ମଦନ ବୁଝିଛି । ଏଣୁ ଏ ପରିବର୍ତ୍ତନ ପରେ ବି ସବୁ ସ୍ୱାଭାବିକ ଗତିରେ ଚାଲିଛି ।

ଏବେ ଧାନ ଅମଳ ହେବାରେ ଲାଗିଛି । ଆଜି ଗାଁ ଘରେ ଯେତେ ଲୋକ ନାହାନ୍ତି ଅଡ଼ନ୍ତ କ୍ଷେତରେ ଯେତିକି ବାଂମାନାଧିକରୁ ଅଧିକ । ଚାଷୀ ଶୂନ୍ୟ-ଘର ଦେଖିଲେ ଆଉ ହତାଶ ହେଉନାହିଁ । ମନରେ ଲୁଚି ରହିଥିବା ସବୁଯାକ ଉଲ୍ଲାସ ଫୁଟି ଉଠୁଛି । ବିକ୍ଷିପ୍ତ ଧାନରାଶିକୁ ଏକତ୍ରିତ କରିବାରେ ସେ ଯତ୍ନବାନ ହୋଇ ଉଠିଛି । ଅଧିକୃତ ପରିସର ମଧ୍ୟରେ ସମ୍ପଦ ସଂଗ୍ରହ—ଯେ କୌଣସି କ୍ଷେତ୍ରରେ ଉନ୍ମାଦନା ଦିଏ । ଅନ୍ୟମାନଙ୍କୁ ଏହା କଷ୍ଟଦାୟକ ହୋଇପାରେ, କାହାର କାହାର ମତରେ ଏହା ଅନଧିକାରର ଅଧିକାର ହୋଇଥାଇ ପାରେ କିନ୍ତୁ ଏ ଉନ୍ମାଦନା ଏବଂ ସେସବୁ ମଧ୍ୟରେ ପ୍ରଭେଦ ଅଛି । ଏକ ଦିଗରେ ଏ ମଣିଷର ଆଶାର ଆସ୍ୱାଦ ଏବଂ ଅନ୍ୟ ଦିଗରେ ସେମାନଙ୍କର ସୃଷ୍ଟିରେ ଚରମ ବିଭେଦ । ଅବଶ୍ୟ ଏ ମାନବିକ ପ୍ରବୃତ୍ତିର ସମନ୍ୱୟ ଆବଶ୍ୟକ । ସମାନତା କିମ୍ବା ସର୍ବସମତା ଯେ ସମନ୍ୱୟ କିନ୍ତୁ ନୁହେଁ ।

ମଦନର ମନରେ ଏତିକି ଆନନ୍ଦ ଯେ ଏବେ ଟିକିଏ ଶାନ୍ତିରେ ଧାନ ମିଳିବ । ହାତରେ ଦୁଇ ପଇସା ଅଛି । ସାଗୁଆବାଡ଼ି, ପାନପରିବା ବି ଶାନ୍ତିରେ ମିଳିବାକୁ ବସିଲାଣି । ଛୋଟ ଝିଅକୁ ଚାରି ପାଞ୍ଚ ମାସ ହୋଇଗଲାଣି । ତା'ର ଏକୋଇଶା ହୋଇନାହିଁ । ବନ୍ଧୁବାନ୍ଧବଙ୍କୁ ନେଇ ଏସବୁ ତୁଟାଇ ଦେଲେ ଭଲ ହୁଅନ୍ତା । ଏହା ଯେ ସେମାନଙ୍କ ମୁଣ୍ଡର ସାମାଜିକ ବୋଝ ।

ମଦନ ସୁମାମୀ ସାଙ୍ଗରେ ବି କଥାବାର୍ତ୍ତା କରିନେଲା । ସୁମାମୀ ଏହି କଥାରେ ସାଙ୍ଗେ ସାଙ୍ଗେ ନିଜର ସମ୍ମତି ଜଣାଇ ଦେଲା । କାଖରେ ଥିବା ତା'ର ଶିଶୁଟିକୁ ଚୁମ୍ବନଟିଏ ଦେଇଦେଲା । ଖୁସିରେ କଥା ପଦେ ଦୁଇପଦ କି ହୋଇଗଲା । ଯେପରି କି ସେ ଦୁହେଁ ଏ କଥାରେ ମଇଦ ବସି ଏକଥା ହୋଇଯାଉ ବୋଲି ସ୍ଥିର କରିଥିଲେ ।

ମଦନ ତା' ନିଜ କାମରେ ବାହାରିଗଲା । ସୁମାନୀର ଇଚ୍ଛା ଯେ କେତେ, ମଦନ ବୁଝିଗଲା ପରେ ମାଆ ଆଉ ପୁଅ ଭିତରେ ଚାଲିଥିବା କଥାରେ, ସେ ବାଧା ସୃଷ୍ଟି କରିବାକୁ ଉଚିତ ମନେକଲା ନାହିଁ । ଏତେବେଳେ ସେ ସୁମାମୀର ଭାଷା ନୁହେଁ କି ସୁମାମୀର ମାନବିକତାର ଉତ୍ସ ବି ନୁହେଁ । ଭାଷାହୀନ ଶିଶୁଟି ତା' ମାଆର ହୃଦୟରେ ଲୁଚି ରହିଥିବା ଭାଷାର ପ୍ରକାଶକ ଆଉ ମାନବିକତାର ଉତ୍ସରେ ପଡ଼ି ଯାଇଥିବା ତାଲର ଚାବିକାଠି ।

ଏକୋଇଶାରେ ବନ୍ଧୁବାନ୍ଧବମାନେ ନିମନ୍ତ୍ରିତ ହେବେ । ପଡ଼ା ପଡ଼ିଶାର ଲୋକମାନଙ୍କୁ ନିମନ୍ତ୍ରଣ କରିବାକୁ ହେବ । ସେମାନଙ୍କୁ କୁଷ୍‌ନା ନ ଦେଲେ ସେ ସନ୍ତୁଷ୍ଟ ହେବେନାହିଁ । ଯେ କୌଣସି ସାମାଜିକ କାର୍ଯ୍ୟ, ଯାତ୍ରାପର୍ବ ଅଥବା ସମାବେଶରେ କୁଷ୍‌ନାର ଗୁରୁତ୍ୱ ସେ କମ୍ ନୁହେଁ । କୁଷ୍‌ନା ହିଁ ସୌନ୍ଦର୍ଯ୍ୟବୋଧ ଦିଏ । କୁଷ୍‌ନା ହିଁ ଜଣକୁ ସାମାଜିକ ପ୍ରତିଷ୍ଠା ଦିଏ । ଏହା ନ ଥିଲେ ଲୋକର ମନଟା ହଜିଯାନ୍ତା ।

ଯଦିଓ ଏ କୁଷ୍‌ନା ନିତିଦିନିଆ ପାନୀୟରେ ପରିଣତ ହୋଇ ସେମାନଙ୍କୁ ନଷ୍ଟ କରି ସର୍ବସ୍ୱାନ୍ତ କରି ଦେଇଛି ତଥାପି ସେମାନେ ଏହାକୁ ଛାଡ଼ିପାରୁ ନାହାନ୍ତି । ଏମାନେ ଶ୍ରମ କରି ଜୀବନରେ ଆନନ୍ଦ ପାଆନ୍ତି ନାହିଁ ବୋଧହୁଏ । ଶ୍ରମର କ୍ଳାନ୍ତି ହରଣ କରିବାକୁ ବୋଧହୁଏ କୁଷ୍‌ନାର ସୃଷ୍ଟି । ଯେଉଁମାନେ ଥରି ଟିକିଏ ପାଇଁ ନିଜକୁ ପଟୁ ପରି ଖଟାଇ ଦିଅନ୍ତି ସେମାନେ ପୂର୍ଣ୍ଣ ଚାଉଳକୁ କୁଷ୍‌ନାରେ ପରିଣତ କରନ୍ତି । ପିଅନ୍ତି, ଚାଉଳ ସରିଯିବା ପର୍ଯ୍ୟନ୍ତ, ଶୋଷ ମେଣ୍ଟିବା ପର୍ଯ୍ୟନ୍ତ, କ୍ଳାନ୍ତ ଅବସାଦ ନେବା ପର୍ଯ୍ୟନ୍ତ ବା କ୍ଳାନ୍ତ ଦୂର ପରେ ଶାରୀରିକ ଅକ୍ଷମତା ପର୍ଯ୍ୟନ୍ତ

ବା ଜଳୋଦସ୍ତର ଜନ୍ମ ନେବା ପର୍ଯ୍ୟନ୍ତ । ସେମାନେ କେବେ ଚିନ୍ତା କରିବାକୁ ମଉକା ପାଇବେ ? ସେମାନଙ୍କର ମନକୁ ଯେ ଚିନ୍ତା ଛୁଇଁ ପାରୁନାହିଁ । ପରି-ବେଶକୁ ଚିନ୍ତାଶୀଳ କରି ଦେଉଛନ୍ତି । ସେମାନଙ୍କର ମାନବିକ ଆବଶ୍ୟକତା କ'ଣ ଶେଷ ହୋଇଯାଇଛି । ସେମାନେ କ'ଣ ମନେ କରନ୍ତି ପରିସ୍ଥିତିର ସୁଯୋଗ ଯିଏ ପାଉନାହିଁ ସେ ମଣିଷ ହୋଇ ଜନ୍ମ ହୋଇଛି କିପରି ? ଯାହାର ଚିନ୍ତାଶୀଳ ହେବାର ଦକ୍ଷତା ନାହିଁ, ସେ ଯେ ଦକ୍ଷତା ଲାଭ କରିବ—ଏ ଚିନ୍ତା କରାଯିବ କାହିଁକି ? ବୋଧହୁଏ ସେମାନେ ବି ଏକ ରକମର ପଶୁ । ଏମାନେ ମାନବିକତାକୁ ପିଅନ୍ତି, ମାନବିକତା ସରିଯିବା ପର୍ଯ୍ୟନ୍ତ । ପୁଣି ପଶୁ ସେମାନେ ପାଲଟି ଯାଆନ୍ତି । ବିଶେଷ ଧରଣର ଆମୋଦପ୍ରଦ ବସ୍ତୁରୁ ସାଧାରଣ ବ୍ୟବହାର୍ଯ୍ୟ ବସ୍ତୁରେ ପରିଣତ ହୋଇ ପ୍ରତ୍ୟେକ କ୍ଷେତ୍ରରେ ଅପରାଧ ସୃଷ୍ଟି କରି ଚାଲିଛି । ସଂଯମ ଏବଂ ନିୟନ୍ତ୍ରଣର ଅଭାବ ନୂତନ ସମସ୍ୟା ସୃଷ୍ଟି କରେ । ଅନୁସନ୍ଧାନର ମାନ ପ୍ରକୃତିର ଏକ ଅଲଙ୍କାର ନ ହୋଇ କୃତ୍ରିମ ବୋଝ ହୁଏ ।

ମଦନର ମୁଣ୍ଡ ଗଣ୍ଡଗୋଳିଆ ହୋଇଯାଏ ତାକୁ କୃଷ୍ଣା ଆଦୌ ପସନ୍ଦ ଲାଗେନାହିଁ । ସୁମାମି ବି କୃଷ୍ଣା ପିଏନାହିଁ । ହେଲେ ନିମନ୍ତ୍ରିତ ବ୍ୟକ୍ତିମାନେ ସେ ନିଶ୍ଚୟ ପିଇବେ । କେବଳ କୃଷ୍ଣା ପାଇଁ କେତେଜଣ କୁଣିଆଁ ହେବେ । ସେମାନେ ଶ୍ରେଷ୍ଠ ଝିଅକୁ ଆଶୀର୍ବାଦ କରିବେ । କୃଷ୍ଣା ନ ହେଲେ ଅଶାନ୍ତିର ଢେଉ ଭସା ଝାପ୍ସା ବାଦଲରେ ଧାଁ ଦଉଡ଼ ଖେଳିବ । ଝଡ଼ରେ ସମୁଦ୍ରର ଜୁଆର ମାଡ଼ି ଆସେ ସ୍ୱାଭାବିକ ତରଙ୍ଗକୁ ଛାଡ଼ିଦେଇ । ସମୁଦ୍ରର ବିଶେଷ କିଛି କ୍ଷତି ହୁଏନାହିଁ, ହୁଏ ଯଦି କୂଳବାସୀମାନଙ୍କର । କ୍ଷତି ହୁଏ ନିରୀହ ମତ୍ସ୍ୟଜୀବୀର । କ୍ଷତି ହେବ ମଦନ ଆଉ ସୁମାମିର । କ୍ଷତି ହେବ ସମଲୁ ଆଉ ଶ୍ରେଷ୍ଠ ଝିଅର । ନା, ଅସ-ନ୍ତୋଷରେ ଏମାନଙ୍କର କ୍ଷତି କାହିଁକି ହେବ ? ଏମାନଙ୍କର ମଙ୍ଗଳ ହେଉ । ଏମାନେ ନିଜ ସମାଜ, ପରିଧିରେ ପ୍ରତିଷ୍ଠିତ ହୁଅନ୍ତୁ । ମଦନର ମୁଖ ଉଜ୍ଜ୍ୱଳ ହୋଇଯାଏ । ସେ ତା' ହାତରୁ ସୁମାମି ଖାଇବାକୁ ନେଉଥିବା ଶ୍ରେଷ୍ଠ ଝିଅର ହସ ହସ ମୁହଁ । ଦାନ୍ତ ନାହିଁ ଅଥଚ କି ସୁନ୍ଦର ହସ । ଦାନ୍ତ ଥିଲେ ହସଟା ବୋଧହୁଏ ଚାପି ହୋଇଯାନ୍ତା । ଖୋଲା ହସ, ଓଠର ଦୁଇ ଧାରରେ ଫୁଟି ଉଠୁଛି । ଦୁଇଧାଡ଼ି ପାହାଡ଼ ମଝିରେ ଝରି ଆସୁଥିବା ପାଣିଧାର ଭଳି । ସ୍ୱଚ୍ଛ ଅଥଚ ଶବ୍ଦହୀନ । ମଦନର କୃଷ୍ଣା ପରିମିତ ଆମୋଦଦାୟକ ପାନୀୟ ବ୍ୟବସାୟ କିମ୍ବା ଅଭ୍ୟାସଗତ ଆତିଶଯ୍ୟ ନୁହେଁ ।

ମଦନ ଫେରି ଆସିଛି । ଲୁହା ଗୋଟିଏ ଆଣି ଜଙ୍ଗଲକୁ ଯିବ । କୃଷ୍ଣା ରାନ୍ଧିବାକୁ ରାନୁ ତିଆରି କରିବ । ରାନୁ ତିଆରି କରିବା ନିମନ୍ତେ ଜଙ୍ଗଲ କେତେ

ସେ ଉଦ୍ଭିଦ ମାନଙ୍କର ରକ୍ଷିତ୍ରୀ କେଉଁ କାଳରୁ । କୁମ୍ଭାର ଜନ୍ମ ଆଗରୁ ବା ବନ୍ୟର ସୃଷ୍ଟି ପ୍ରକ୍ରିୟା ପରେ କେବେ ସେ କୁମ୍ଭା ମିଳିବାକୁ ଦେବ ଏଇ ଜଙ୍ଗଲ କିଏ ଜାଣେ । ସୃଷ୍ଟି ମାନସରେ କୁମ୍ଭା, ଗଛ ଓ ଜଙ୍ଗଲର ଅଚ୍ଛେଦ୍ୟ ପ୍ରକ୍ରିୟା ରହିଛି ।

ମଦନ ମନେ ମନେ ଠିକ୍‌କଲା ବଡ଼ କୁରେଇ ଗଛ, ପିଲେହି ମୂଳ, ଜଟି ମଧୁର ମୂଳ, ଅଗ୍ନିଝାଳ ଚେର, ଫେନ୍‌ଫେନା ଗଛ, ସହସ୍ର ଭେଜରୀ ଚେର, ଚିରେମାରେ ମୂଳ, ପୋଢ଼ଲଟା ଗୁଳୁ, ଅକାଣ୍ଡ ବାନ୍ଧ ମୂଳ, ଗୁଜଳିଆ ମୂଳ, ରାଶ୍ନା ମୂଳ, ହରେନ୍ ମୂଳ, ଛତାବରୀ ମୂଳ, ତାଳମୂଳି ଚେର, କାନ ମୁରଲି ଚେର, ମହାଜାଲ ଚେର ଏବଂ ଲାଲ ମୁଡେର ମୂଳ ସଂଗ୍ରହ କରିବ । ଏତେଗୁଡ଼ିଏ ଜିନିଷ ସେତେବେଳେ ଯୋଗାଡ଼ କରିବ ଯାନୁ ଯେ ନଷ୍ଟେ ଔଷଧ ଓ କଢ଼ା ହେବ । କୁମ୍ଭାର ବାହାରେ ସମସ୍ତେ ଖୁସି ହୋଇଯିବେ । ସେଦିନ ଛୁଆଟିକୁ ଖୁସିରେ ଆଶୀର୍ବାଦ କରିବେ । ମଦନର ପରିବାରର ସୁନାମ ବଢ଼ିବ । ଭବିଷ୍ୟତରେ ଛୁଆମାନେ ବଡ଼ ହେଲେ ତାଙ୍କର ଆଦର ସମାଜରେ ରହିଯିବ ।

ମଣିଷ ଯେଉଁ ସ୍ତରରେ ରହିଥିଲେ ସୁଦ୍ଧା ସନ୍ତାନର ଉଜ୍ଜ୍ୱଳ ଭବିଷ୍ୟତ ଚିନ୍ତା କରେ । ପରିଣାମ ଯାହାହେଉ ନା କାହିଁକି, ସେ ସବୁ ସେ ଚିନ୍ତା କରେ ନାହିଁ । ବାପ ଥରେ ବା ଅନେକ ଥର ପୁଅର ପ୍ରନ୍ଦ୍ୱ, ସୌକର୍ଯ୍ୟ ପାଖେ ହାର ମାନିଥାଏ । ପ୍ରତ୍ୟେକ ପିତା ନିଜକୁ ଚିନ୍ତା କରିବାର ଅବକାଶ ପାଏନାହିଁ ନା ପାଏ ? ମଣିଷ ବୋଧହୁଏ ଜାଣେ କିନ୍ତୁ ପ୍ରକାଶିତ ହେବା ପରେ ବି ଏ ପ୍ରକ୍ରିୟା ଅନ୍ୟ ମଣିଷ ଭିତରେ ଏକ ସ୍ୱତନ୍ତ୍ର ଓ ସ୍ୱେଚ୍ଛାକୃତ ଗତି ଭରିଦିଏ । ଏ ଗତିର ନିର୍ଦ୍ଦିଷ୍ଟ ରୂପରେଖ ଏ ପର୍ଯ୍ୟନ୍ତ ସ୍ଥିରୀକୃତ ହୋଇ ପାରିନାହିଁ । ମମତା ବୋଧହୁଏ ଏ ଗତିର ନିୟନ୍ତ୍ରକ ।

ମଦନ ଏତେଗୁଡ଼ିଏ ଚେର, ମୂଳ, ଗୁଳୁ ଆଉ ଛାଲି ଘରେ ପରିମାଣ ମୁତାବକ ଜମା କରିଦେଲା ଯେ ସୁମାମା ଆଉ କିଛି ଅଣାଯାଇଛି କି ନାହିଁ ପଚାରି- ବାକୁ ଉଚିତ ମନେ କଲାନାହିଁ । ସୁମାମା ମା' ହେଲେ କ'ଣ ହେବ ମଦନର ମମତା ଯେ ତୁଷାରପୁଷ୍ଟ ନଦୀର ସ୍ରୋତ ପରି ଚିରସ୍ରୋତା ଏହା ସୁମାମା ହିଁ ବୁଝିଛି ।

ସୁମାମାକୁ ଏକ ଟଙ୍କାର କରମା ଧାନ କିଣି ଆଣିବାକୁ ମଦନ ଟଙ୍କା ଦେଲା । ଏ ଧାନ ସାଧାରଣତଃ ବୁଲଣ ପଇଁବୁଲଣ ଦିନରେ ହୁଏ । ଜମିର ପାଗ ବା ଧାନ ବୁଣାବୁଣିର ପାଗ ବିଗିଡ଼ି ଗଲେ ବା ସମୟ ଆଉ ନ ଥିଲେ କରମା

ଧାନ ବୁଣାଯାଏ । କରମ୍ପା, କୁସୁମା, ଝୁମୁକା ଏଇ ପ୍ରକାର ଧାନ । କରମ୍ପା ଧାନର ଗୁଣ୍ଡଲରେ ଗନ୍ଧ ତଥାଗ ବଢ଼ିଆ ହୁଏ । ଗନ୍ଧ ବଜାରରେ ବିକ୍ରୀ ହୁଏ । ଧଳା ଖାରୁଆ ବଢ଼ି ପରି ଦିଶେ । ସମସ୍ତ ସମୟରେ ଏହା ସ୍ୱତନ୍ତ୍ର ଭାବେ ଗ୍ରାହକମାନଙ୍କ ପାଖକୁ ବିକ୍ରୀ ହେବାକୁ ଆସେ । ବିକ୍ରୀ ହେଉଥିବା ଗନ୍ଧ ପ୍ରତି ମଦନର ବିଶ୍ୱାସ ଥିଲେ ବି ସମ୍ଭାବନା ମନ୍ତ୍ରମୁଗ୍ଧ ଏବଂ ପ୍ରତି ସଦିଚ୍ଛା ପୂର୍ବକ ସହଯୋଗ ପାଇଁ ଧାଇଁ ଯାଇଥିଲା ବଣିକୁ । ସେ ସବୁର ସଂଗ୍ରହ ଓ ଯୋଗାଡ଼ ପାଇଁ । ଏପରି ପ୍ରସ୍ତୁତ ମନରେ ଅନୁଭୂତି ଓ ଅନୁରାଗ ଜନ୍ମାଏ । ଏହା ବାହାରେ ମଦନ କୋଡ଼ିଏ ଟଙ୍କା ସୁମାନି ଲୁଗା କାନିରେ ବାନ୍ଧିଦେଲା କୁମ୍ନା ନିମନ୍ତେ ଧାନ କିଣିବାକୁ । କୁମ୍ନା ପାଇଁ ଧାନ ଯେପରି ବଛା ହୋଇଥିବା ଗୁଣ୍ଡଲ ଦାନାସବୁ ଅକାଣ୍ଡିଆ ଲାଲ୍ ହେଲେ ବଢ଼ିଆ ପୁଷ୍ଟି ଓ ରୁଚିକର ହୁଏ । ଏଥିପାଇଁ କଳା-ଆଣ୍ଡି, କଳାଭୁଟା, ମାଳଧାନ ସବୁ ତଥା ଅନ୍ନପୂର୍ଣ୍ଣା ଧାନ କୁମ୍ନା ରାନ୍ଧିବାକୁ ସର୍ବୋତ୍କୃଷ୍ଟ ଅଟେ । ଅଦା, ଅଳେଇଚ, ଲବଙ୍ଗ ଆଦି ସୁଗନ୍ଧର ଆବଶ୍ୟକ ମୋଟେ ନାହିଁ ।

ସୁମାନି ଲୁଗାକାନି ଗଣ୍ଠିକୁ ସାଉଁଟି ନେଇ ଏତେ କୁମ୍ନା କ'ଣ ହେବ ବୋଲି ମଦନ ସାମନାରେ ପ୍ରତିବାଦ କଲା । ତଥାପି ବାପଘରୁ ଆଣିଥିବା ଦୁଇ ଖଣ୍ଡିଆ ତାଲା ବାହାର କଲା ଶିକାରୁ । ସଜଡ଼ା ଦହି ସହିତରେ ଚୂଲି ମୁଣ୍ଡ ଉପରେ ସେ ରଖିଥାଏ । ସେ ମଦନକୁ କହେ : ଭବିଷ୍ୟତରେ ଯେ ଆମର ପୁଅଝିଅ ହେବେ, ଗୋଟିକ ପାଇଁ ଏତେ ଖରଚ, ଧୂମ୍‌ଧାମ କାହିଁକି କରିବା । ସେମାନଙ୍କର ବୟସ ଯେ ପୂରି ରହିଛି । ସେଇଭଳି ରହିଛି । ସୁମାନୀ ନିଜକୁ ଟିକିଏ ନିଜେ ଦେଖିନିଏ । ନିଜ ଭିତରେ ଯୌବନ ଉଙ୍କି ମାରୁଥିବା ସେ ଦେଖେ । ଲୋଭନୀୟ ଗୃହିଣୀରେ ଦେଖିଦିଏ । ଥରେ ଦେଖିନିଏ ମଦନକୁ । ମଦନର ମୁହଁରୁ ପାଦ ପର୍ଯ୍ୟନ୍ତ ଦେଖିନିଏ ଗୋଟିଏ ପଲକ ଭିତରେ । ତା' ଆଖିର ଝଲକ ସେ ଅନୁଭବ କଲା ମଦନ ଆଗରେ । ମଦନ ଯେ ଏବେ ଯୌବନର ଆକୃତିକୁ ଉଦୟାଚଳର ସୂର୍ଯ୍ୟ ପରି ବଢ଼ାଇ ଦେଇଛି ।

ସୁମାନୀର ହାବଭାବରୁ ମଦନ ସବୁକିଛି ବୁଝିନେଲା । ପୁରୁଷ ସେ, ସ୍ତ୍ରୀର ମନକଥା ଜାଣିବାକୁ ତାକୁ ପ୍ରଚେଷ୍ଟା ଆବଶ୍ୟକ ହୁଏନାହିଁ । ତଥାପି ଉଦାସୀ ମଦନ ଜାଣେ ଆଉ ଯେ ତା'ର ପୁଅ-ଝିଅ ହେବନାହିଁ—ସେ ବୁଝିଛି । ସୁମାନୀ କିନ୍ତୁ ସେ ପ୍ରକାର ଧାରଣା ବା କରିବ କିପରି । ମଦନ ମୁଣ୍ଡକୁ ତଳ କରି ଦେଇଛି ସୂର୍ଯ୍ୟମୁଖୀ ଫୁଲ ପରି ଉଦିତ ସୂର୍ଯ୍ୟ ପାଖରେ । କିନ୍ତୁ ମନରେ ଭବିଷ୍ୟତ ସନ୍ତାନ

ଲଭର ବାସନା ସମ୍ପୂର୍ଣ୍ଣ ଲୋପ ପାଇଛି । ସେ ଦୃଷ୍ଟି ମଦନର ଅଯିବ କୁଅଡ଼ୁ । ତଥାପି ସେ ଏକ ନମ୍ର ଭ ହସଟିଏ ମୁହଁରେ ଫୁଟାଇ ଦେଇ ସୁମାନୀକୁ ଗ୍ରହି ଦେଇଛି । ସୁମାନୀ ଯେଉ ହସଟିରେ ପାଇ ଯାଇଛି ଦୃଷ୍ଟିର ଆବେଗିକ ରହସ୍ୟ । ଆକାଶରେ ମେଘର ଅନ୍ତରାଳରେ ଦେଖା ଯାଉଥିବା ଅତି ଆଦରଣୀୟ ସୂର୍ଯ୍ୟର ପ୍ରକାଶ । ନିଜର ଦୃଷ୍ଟିକୋଣ ନିଜକୁ ଦୂଷାଏ ।

ଗୋଟିଏ ପଟରେ ସାଂସାରିକ ଜୀବନରେ ପ୍ରସବିନୀର ସନ୍ତାନ ଲାଭରେ ଅପୂରନ୍ତ ଆନନ୍ଦ ଓ ଅନ୍ୟ ପଟରେ ସନ୍ତାନ ସୃଜନରେ ସୂତ୍ରଧରର ନିଷ୍ପ୍ରୟୋଜନତାର ବାତୁଳତା । ଗୋଟିଏ ପଟରେ ନୂତନ ସନ୍ତାନ ଧାରଣ ଆଶାରେ ନିବିଡ଼ ପ୍ରେମର ଆଲିଙ୍ଗନ ଓ ବାସ୍ତବତାର ସୁଖାନୁଭୂତି, ଅନ୍ୟ ପଟରେ ପ୍ରସୂତ ସନ୍ତାନର ପାଳନ ଆଶାରେ ପ୍ରକୃତ ସହିତ ନିବିଡ଼ ପ୍ରେମର ବନ୍ଧନ ଓ ବାସ୍ତବତାର ଅପରିହାର ଅଭିପ୍ସା । ଉଭୟେ ଅବିଚ୍ଛିନ୍ନ କିନ୍ତୁ ଏକ କେନ୍ଦ୍ରର ଦୁଇଟି ବୃତ୍ତ । ବାହାରେ ଯିଏ ଅଛି ତା'ର ପରିଧି ଦୀର୍ଘତର ।

ମଦନ ବସିଗଲା ଦ୍ୱାର ମୁହଁ ବାରଣ୍ଡାର ଗୋଟିଏ ଧାରରେ । ପରିଧିରୁ ଫେରିଆସି ସ୍ଥିର ବିନ୍ଦୁ କେନ୍ଦ୍ରବିନ୍ଦୁ ପାଖେ ଅବିଚଳିତ ଅବସ୍ଥାରେ । ପରିଧିର ଅସ୍ୱାଭାବିକ ନିର୍ଯ୍ୟାତନା ଦାଉରୁ ରକ୍ଷା ପାଇବାକୁ ନିଜକୁ । ନିଜ କଥା ଆରମ୍ଭ କରିବା ଆଗରୁ ମଦନ ଦେଖିଛି ସୁମାନୀକୁ । ଶରାଗତ, ଶରଣାଗତ ବିପକ୍ଷହୀନ ପକ୍ଷୀଟି ପରି । ସୁମାନୀର ସର୍ବାଙ୍ଗରେ ସେଇ ଛଟା । ଅପୂର୍ବ ଲାବଣ୍ୟ, ସେଇ ଆବେଗ, ସେଇ ଅଭିସାରିକାର ସ୍ପଷ୍ଟୋକ୍ତି । ନିଜର ଚିନ୍ତାଧାରାକୁ କି ପ୍ରକାର ପ୍ରକାଶ କରିବ ଚିନ୍ତା କରିପାରୁ ନାହିଁ ମଦନ । କ'ଣ ସବୁ କହିଲେ ବର୍ତ୍ତମାନ ହେବାକୁ ଥିବା ଖର୍ଚ୍ଚରେ ସୁମାନୀ ଏକମତ ହେବ । ଆଗ୍ରହ ବଢ଼ିବ । ଆଗ୍ରହ ନ ଥାଇ କୌଣସି କାର୍ଯ୍ୟ ଆରମ୍ଭ କଲେ ବିଶୃଙ୍ଖଳା ସୃଷ୍ଟି ହୁଏ । କାର୍ଯ୍ୟ ଯାହା ହେଉ ନା କାହିଁକି ସଫଳତା ଆସେନାହିଁ ।

ମଦନର ହୃଦୟରେ ସୁମାନୀର ରୂପଛଟା ହଜି ଯାଇଛି । କେବଳ ଦେଖା ଯାଉଛନ୍ତି ସମରୁ ଆଉ ଶ୍ରେଷ୍ଠ ଝିଅଟି । କିଛି ସମୟ ନୀରବ ହୋଇ ମଦନର ବସି ରହିବା ଦେଖି ସୁମାନୀର ଆଖିରୁ ବି ଚଞ୍ଚଳତା କମି ଆସୁଛି । କାଖରେ ଥିବା ଝିଅ ଆଡ଼କୁ ଧ୍ୟାନ ଫେରି ଆସୁଛି । ଝିଅ ସହିତ ପଦେ ଅଧେ କଥା କହି ମଦନକୁ ଏକୋଇଶା ସମ୍ବନ୍ଧରେ ପଚାରିଛି ।

ମଦନ ନିଜର କଥା ଆରମ୍ଭ କରିବାକୁ ସୁଯୋଗ ପାଇଛି । ସୁମାନୀ ବି ଝିଅଟି ପ୍ରତି ଆକର୍ଷିତା ହୋଇଛି । ସୁମାନୀ ବର୍ତ୍ତମାନ ବୁଝିଯିବ ଯେମିତି ଜଣା ପଡ଼ୁଛି ମଦନ ଆଖିରେ ।

ଯେତେବେଳେ ସେମାନଙ୍କ ପାଖରେ କିଛି ପୁଞ୍ଜି ଅଛି, ସେମାନେ ତାହାଁକି କିଛି ଅଧିକ ବର୍ତ୍ତମାନ ଖର୍ଚ୍ଚ କରିବେ ନାହିଁ । କେତେକ ଲୋକ ଋଣ କରି, ଧାର କରି ସେମାନଙ୍କର ସାମାଜିକ ନାମ ତୁଲାଉଛନ୍ତି । ସେମାନେ ନିଜର ସମ୍ପତ୍ତିକୁ ବୃଦ୍ଧି ଦେଉନାହାନ୍ତି । ଭବିଷ୍ୟତରେ ସେମାନେ ଯେତିକି ଖଟିବେ ଋଣ ପରିଶୋଧ କରିବାରେ ସେ ସବୁ ନିଅଣ୍ଟ ହୁଏ । କେହି ନା କେହି ପଡ଼ି ଯାଉଛନ୍ତି ଯେ ଆଉ ଉଠିପାରୁ ନାହାନ୍ତି । କିଏ ନେ ସାମାଜିକ ଦୁର୍ନୀତିରେ ପଶି ଯାଉଛି । କିନ୍ତୁ ମଦନ ତ ଋଣ କରୁନାହିଁ ଯେ ତଳେ ପଡ଼ିଯିବାର ଭୟ ରହିବ । ଦୁର୍ନୀତି ତ ଦୂରର କଥା ମଦନ ଦୁର୍ନୀତିର ବ୍ୟାଖ୍ୟା ଜାଣେନାହିଁ । ମଦନ ଶ୍ରମ ଲବ୍ଧ ଧନରେ ଏକ ସୁନ୍ଦର ଯୋଜନା ସୃଷ୍ଟି କରିବାକୁ ଯାଉଛି । ସେତ ଏତେ ଉପରେ ନାହିଁ ଯେ ଯଦ୍ଵାରା ଦୁର୍ନୀତି କରି ପୁଞ୍ଜି ବଢ଼ାଇବ କିମ୍ବା ଏତେ ତଳେ ନାହିଁ ଯେ ସେ ଦୁର୍ନୀତିର ଆଶ୍ରୟ ନେଇ ପରିବାରର ଭରଣ ପୋଷଣ କରିବ । ଅବଶ୍ୟ ଏ ଶବ୍ଦଟି ସେ ଅନେକ ଥର ସହରରେ ଶୁଣିଛି ଏବଂ ଏ ସମ୍ପର୍କରେ ନାନା ଆଲୋଚନା ବି ଶୁଣିଛି । ହେଲେ ମଦନ କିଛି ବୁଝି ନ ବୁଝିଲା ପରି ରହିଯାଏ । ଏସବୁ କି ପ୍ରକାର ଜିନିଷ, ଏସବୁ କେଉଁଠିନ କେଉଁଥିରୁ ବାହାରେ ସେ ଠିକ୍ କରିପାରେ ନାହିଁ । ଏତିକି ସେ ବୁଝିଛି ଯେ ଯିଏ ଯେଉଁ ଜିନିଷ ପାଇବା ପାଇଁ ଉପଯୁକ୍ତ ନୁହେଁ ସିଏ ସେସବୁ ଜିନିଷ ପାଇବା ପାଇଁ ଯେଉଁ ଉପାୟ ଅବଲମ୍ବନ କରେ ତାହା ହିଁ ଦୁର୍ନୀତି । ନିଜର ସାମର୍ଥ୍ୟ ବାହାରେ କୌଣସି ଜିନିଷର ଲାଭ କରିବା ବି ଦୁର୍ନୀତି । କିନ୍ତୁ ମଦନ ଶ୍ରମ କରେ । ନିଜ ଶ୍ରମ ଯେଉଁ କ୍ଷେତ୍ରରେ ପ୍ରଯୁକ୍ତ ହୁଏ ସେ କ୍ଷେତ୍ରରେ ତାହାର ଅଶାନ୍ତି ଯେପରି ନ ରହେ ତା' ପ୍ରତି ସଜାଗ ରହେ । ତା'ର ଶ୍ରମ ଲବ୍ଧ ଧନ ଜଣକର ଯେପରି ଅସନ୍ତୋଷର କାରଣ ନ ହୁଏ ସେଥିପ୍ରତି ମଧ୍ୟ ଦୃଷ୍ଟି ଦିଏ । ମଦନ ନିଜେ ଖଟେ ଏ ଉପାର୍ଜନ କରେ । ତାହାରିଠାରୁ ସେ କୌଣସି ପ୍ରକାର ଚୋରି କରିନାହିଁ ଯେ ଖର୍ଚ୍ଚ କରିବାକୁ ଡରିବ । ତା' ପରେ ନିଜର ଉପାର୍ଜନ ହେଲେ ବି ସେପରି ଏକ ସାଧାରଣ ସୀମା ଲଙ୍ଘନ କରି ଅପଖର୍ଚ୍ଚ ବି କରୁନାହିଁ । ତା'ର ଖର୍ଚ୍ଚରେ ସୌଖିନତାର ସୁଖ ନ ଥାଇ ଅଛି ଏକ ସାଧାରଣ ସାର୍ଥକ ସମାବେଶରେ ଅପ୍ୟାୟନର ସୁଖ ।

ସୁମାଳୀ ବାକି କଥା ସବୁ ବୁଝୁ ବା ନ ବୁଝୁ ଗୋଟିଏ କଥା ଠିକ୍ ବୁଝିଲା ଯେ ତାଙ୍କ ଘରେ ଥିବା ସାମାନ୍ୟ ପୁଞ୍ଜି ସେମାନେ ଖଟି ପାଇଛନ୍ତି । ଚୋରି ବିଷୟରେ ସେ ବେଶିକିଛି ଜାଣି ନ ଥିଲେ ବି ଧାନ, ଗୁଡ଼ଲା, ବାସନ, ବର୍ତ୍ତନ ଚୋରିହେବା କଥା ଶୁଣେ । ଏଣୁ ତାଙ୍କର ପୁଞ୍ଜି ଏ ପ୍ରକାରର ନୁହେଁ ବୋଲି ଜାଣେ । ସେ ମଦନ ସହିତ ଏକମତ ହେଲା । ଗ୍ରେଟ ଛୁଆ ଆଡ଼କୁ ନିଜ

ସ୍ନେହଭରା ଦୃଷ୍ଟି ପକେଇ ମଦନକୁ କହିଲା : କ'ଣ ମତେ ଭରିବାକୁ ହେବ । ସୁମାମୀ ଏବେ ବି କରିବାକୁ ପ୍ରସ୍ତୁତ ଅଛି ସେପରି । ତାକୁ ଧରି ବାହାରି ପଡ଼ନ୍ତି କୁସୁମା ଧାନ କିଣିବା ପାଇଁ । ବାଛି ଅଣିବ ଭଲ ଧାନ । ନଗଦ ଟଙ୍କା ଧରିଛି, ତେଣୁ ସେଥିରେ ମାଣେ ଅଧିକ ପାଇବ । ଭଲ୍ କଠାରେ କିଣିବ । କଠା ଭରି ଧାନ ମାପିବାକୁ କହିବ । ହୁଏତ ଘରେ ପୁଣି ଥରେ ମାପିନେବ ନିଜ କଠାରେ । କ୍ରମ ଲବ୍ଧ ଟଙ୍କାଗୁଡ଼ିକ ଠିକ୍ ଭାବେ ବିନିଯୋଗ କରିବ । ପ୍ରଜା ଘରକୁ ସୁମାମୀର ପଦକ୍ଷେପ ଚଞ୍ଚଳ ଥିଲା ।

ସୁମାମୀର ଏ ଗତିରେ ମଦନ ଆଶ୍ୱସ୍ତ ହେଲା । ପୁଅମାନଙ୍କୁ ବାଣ୍ଟିଥା କରିବା ପୂର୍ବରୁ ଏହା ଯେ ତା'ର ଶେଷ ସାମାଜିକ କାମ । ଏଥିପାଇଁ ସେ ଏ ପର୍ବର ଆୟୋଜନ କରିଛି । ଆତ୍ମୀୟ ସ୍ୱଜନ ତଥା ପଡ଼ା ପଡ଼ୋଶୀଙ୍କ ସ୍ମୃତିକୁ ଅତୁଟ ରଖିବା ତାହାର ଇଚ୍ଛା । ସୁମାମୀ ବି ବାଟରେ ଥିବା ଛୁଆର ସ୍ପର୍ଶ ଏବଂ ତଦ୍‌ଜନିତ ଉଟକା ମମତା ଏଡ଼ାଇ ପାରିନାହିଁ ।

ମଦନ ପରଦିନ ଘାସ ଖାର ନେଇ ତା'ର ଜୀବିକା ପଥରେ ଆଗେଇ ଚାଲିଲା । ପ୍ରତ୍ୟେକ ଦିନ ଏବେ ସେ ସେଇ ପଥରେ ଆଗେଇ ଚାଲିଛି । ଚାଲିପଥଟି ପୁରାତନ । ମଝିରେ ମଝିରେ ଛିଡ଼ା ହୋଇଥିବା ଗଛଗୁଡ଼ିକ ବି ପୁରୁଣା । ଛୋଟ ଛୋଟ ପାହାଡ଼, ବିସ୍ତୃତ ପଦା ଜଙ୍ଗଲ, ଛୋଟ ଛୋଟ ନାଳ ଏସବୁ ବି ପୁରୁଣା । ସେ ନିଜେ ବି ଏସବୁ ପାଇଁ ପୁରୁଣା । ମଦନ ଭିତରେ ଥିବା ଶରୀରର ପ୍ରଧାନ ଅଂଶଗୁଡ଼ିକ ବି ପୁରୁଣା । ତଥାପି ମଦନକୁ ସବୁ ନୂଆ ପରି ମନେହୁଏ । ଜୀବନରେ ତା'ର ଗତି ଭରି ଉଠିଥିବାରୁ ମନେକରେ ସେ ଆଗକୁ ଆଗକୁ ବଢ଼ି ଚାଲିଛି । ସେ ଏକ ସେଇଘରୁ ନିଜ କର୍ମ କ୍ଷେତ୍ରକୁ ଗଲେ ବି ଏକ ଅଗ୍ରଗାମୀ ପଥରେ ଚାଲିଥାଏ ଏବଂ ଫେରିଲାବେଳେ ମଧ୍ୟ ଏକ ଅଗ୍ରଗାମୀ ପଥରେ ଆଗେଇ ଚାଲିଥାଏ । ସେ ସୁମାମୀକୁ ଦେଖେ । ସୁମାମୀ ଆଖିରେ ନୂଆ ଗତି । ମାଳ ଅଞ୍ଚଳରେ ବନ୍ଧା ଯାଇଥିବା ନଦୀରେ ଆଦ୍ୟ ହେମନ୍ତର ସ୍ରୋତ ପରି । ମୁହଁରେ ନୂଆ ହସ । ପର୍ବତର ଢାଲୁ ଶଯ୍ୟାରେ ଶରତ କାଳର ସଦ୍ୟ ଫୁଟି ଉଠିଥିବା ବିଭିନ୍ନ ରଙ୍ଗର ଘାସଫୁଲ ପରି । ସମରୁକୁ ବି ଦେଖେ । ସେ ଯେ ଖୋଲର ପ୍ରାରମ୍ଭରେ ବଢ଼ି ଉଠିଥିବା ଚିକ୍କଣ ସବୁଜ ଗୁଳ୍ମ । ଆଉ ଛୋଟ ଛୁଆଟି ଗୁଳ୍ମର ଠିକ୍ ହାତେ ଦୂରରେ କ୍ଷୀଣ ଧାରରେ ଝରି ଉଠୁଥିବା ନୂଆ ଏକ ଝରଣା ସ୍ରୋତର ସ୍ୱଚ୍ଛ ଜଳଧାର । ମଦନ ନିଜେ ପରିବ୍ରାଜକ । ନୂତନତାର ପୂଜାରୀ । ଅଗ୍ରଗତି ତା'ର ଇପ୍‌ସିତ ଅଭିଳାଷ ।

ମଦନ ଆଜି ଏକ ଶହ ଅଠ ବିଡ଼ା ଘାସ ନେଇ ଯାଇଛି । ଆଜି ରବିବାର । ସେ ତିନୋଟି ହାଣ୍ଡି କିଣିଲା । ଦୁଇଟିରେ ଯେମିତି ଅଠ ଅଠ ସେର

ମଦନ ଆଜି ଏକ ଶହ ଆଠ ବଜା ଘାସ ନେଇ ଯାଉଛି । ଆଜି ଶନିବାର । ସେ ଧନୋଟି ହାଣ୍ଡି କିଣିଲା । ଦୁଇଟିରେ ଯେମିତି ଆଠ ଆଠ ସେର ଚାଉଳର କୁମ୍ଣା ତିଆରି ହୋଇ ପାରିବ ଏବଂ ଗୋଟିକରେ ଗୁଡ଼ ଦେବ । ବଡ଼ ହାଣ୍ଡି ଦୁଇଟାକୁ ଏକ ଟଙ୍କା ପଚାଶ ପଇସା ଲେଖାଏଁ ଏବଂ ସାନ ହାଣ୍ଡିଟାକୁ ପଞ୍ଚସ୍ତରି ପଇସାରେ କିଣିଲା । ଦୁଇ ଟଙ୍କାର ତେଲ ଲୁଣ ହଳଦି ଆଉ ମସଲା କିଣିନେଲା । ଆଜି ସେ ଘରୁ ପଇସା ନେଇ ନ ଥିଲା । ବାକି ଶାଗ ସବଜି ଆସନ୍ତା ସପ୍ତାହରେ କିଣିବ । ଏହୋଇଗଲା ତ ଆସନ୍ତା ସପ୍ତାହର ବୁଧବାର ଦିନ ହେବ । ମଙ୍ଗଳବାର ଦିନ ସେ ସୁନ୍ଦରଗଡ଼କୁ ଫେରିବା ସମୟରେ କରମଡ଼ିହ ଦେଇ ଯିବ । ସେଠି ଏକ ସୁନ୍ଦର ଗ୍ରେଟିଆ ହାଟଟିଏ ବସେ । ତଟକା ଶାଗ ସବଜି ସେଠାରେ ଶସ୍ତାରେ ଓ ସୁଲଭ ଦରରେ ମିଳେ ।

ସୁମାନୀ ନୂଆ ହାଣ୍ଡିଗୁଡ଼ିକୁ ଧୋଇ ଶୁଖାଇ ଦେଲା । ପୁରୁଣା କୁମ୍ଣା ହାଣ୍ଡିରେ କୁମ୍ଣା ମଦ ତିଆରି କରିଲେ ଭଲ ହୁଏ । ହେଲେ ତା' ପରିବାରରେ ତ ଏ ସବୁ ଚଳେନି । ପୁରୁଣା ହାଣ୍ଡି ଆଉ ଆସିବ କୁଆଡ଼ୁ । ପଡ଼ା ପଡ଼ଶାରେ ଅଛି କିନ୍ତୁ ଆଣି ଫେରାଇବା ସମୟରେ କିଛି କୁମ୍ଣା ଦେବାକୁ ପଡ଼ିବ । ଅଯଥାରେ କିଛି କୁମ୍ଣା ଅପବ୍ୟୟ ହେବ । ସେତିକି ହୁଏତ ବନ୍ଧୁ ବାନ୍ଧବ ପିଇଲେ କେତେ ସେ ଖୁସି ନ ହେବେ । ଉଚ୍ଛିଷ୍ଟ ଖାଦ୍ୟ ପଦାର୍ଥ ଫିଙ୍ଗିଦେଲେ କେତେକ ଜୀବର ହୁଏତ ପେଟ ପୂରେ; କିନ୍ତୁ ଆବଶ୍ୟକ ଆହାରରୁ ଯଦି କିଛି ଟଳିପଡ଼େ ବୁଭୁକ୍ଷୁ କ'ଣ ସେତିକି ପାଇ ସନ୍ତୋଷ ପ୍ରକାଶ କରେନାହିଁ ? ହୁଏତ ତା'ର କ୍ଷୁଧା ପ୍ରବଳତର ହୋଇଯିବ । ନିଜ ଜୀବନର ସମୀକ୍ଷା ବଦଳି ଯିବ । କୃତଜ୍ଞତା ପ୍ରକାଶ କରାଯିବାର କୌଣସି କାରଣ ଦେଖିବ ନାହିଁ, ତଥାପି ସେ ବିସ୍ମୃତ ହେବନାହିଁ । ପ୍ରତିହିଂସାରେ ଜଳି ପୋଡ଼ି ଗଲେ ବି ତା'ର ପାଉଁଶରେ ଏ ବଳକା ଖାଦ୍ୟର ଅବଶେଷ ରହିଯିବ । ଏଠାରେ କିନ୍ତୁ ଏ ସଙ୍ଘର୍ଷର ସମ୍ଭାବନା ନାହିଁ । ଏ ଯେ ସେମାନଙ୍କର ଶ୍ରମଲବ୍ଧ ଧନ । ତଥାପି ଏ ସବୁର ବିନିଯୋଗ ଯେ ସେମାନଙ୍କର କାମ୍ୟ ।

ଗନୁକୁ ଯତ୍ନ ସହକାରେ ତିଆରି କଲେ, ନୂଆ ହାଣ୍ଡିରେ ବି ଉତ୍କୃଷ୍ଟ କୁମ୍ଣା ତିଆରି କରାଯାଇ ପାରିବ । ସୁମାନୀର ସେ ଏଥିପ୍ରତି ଅଭିଜ୍ଞତା ଅଛି । ଏବେ ସିନା ସେ ଏ ପରିବାରର ବୋହୂ ହୋଇ ପରିବାରର ପରମ୍ପରାକୁ ମାନି ନେଇଛି । ମଦନର ସାନ୍ନିଧ୍ୟ ତାକୁ ଯେତିକି ଆନନ୍ଦ ଦିଏ କୁମ୍ଣା ସେ ଆନନ୍ଦ ତାକୁ କେବେ ଦେଇନାହିଁ । ନିଜର ଅନୁଭୂତି ଭିତରେ ବୁଝିନେଇଛି ତୁଳନା କରି, କଷଟି କରି ।

କୁମାରୀ ଜୀବନରେ ଏବଂ ବିବାହ ପରେ ପ୍ରଥମ ବର୍ଷର ପ୍ରଥମ ଭାଗରେ ସୁମାନୀ ଅନେକ ଥର ନିଜ ଗାଁର ବିଭିନ୍ନ ଅନୁଷ୍ଠାନରେ ବା ଇନ୍ଦ୍ର ପର୍ବ, ନୂଆଖାଇ, କରମ ପାଇଁ ନାଚ ସମୟରେ କୃତ୍ରିମ ବ୍ୟବହାର କରିଛି । ତା'ର ମହକରେ ନିଜର ପ୍ରାକୃତିକ ସୁଗନ୍ଧକୁ ଗନ୍ଧଯୁକ୍ତ ତେଲ ଦରି ଏ ବଳି ଦେଇ ଦେଇଛି । ସେ ଯେ କେତେ ପୁରୁଷ ଓ ସ୍ତ୍ରୀଙ୍କର ମେଳରେ ନାଚିଛି । ଏହି ପରିବେଶ ମଧ୍ୟରେ ସେ ଯେ କେତେ ଖୋଲା ହୃଦୟର ପରିଚୟ ପାଇଛି । ଏହି ପରିବେଶର ବନ୍ଧନ ନ ଥିଲା । ଶିମୁଳି ଗଛର ସବୁଯାକ ଫଳ ପାଚି ଫାଟି ଯାଇଛି । ପବନର ଗତିରେ ନିଜର ଗତି ତୋଳି ଦେଇଛି । ସେଠି ନିଜ ଗତିର ସ୍ୱାତନ୍ତ୍ର୍ୟ ନାହିଁ । ସେଠି ଗୀତ ଫୁଟି ଉଠିଛି । ସେ ଗୀତର ଦୃଷ୍ଟିକୋଣ ଜଣକୁ ଗୋଟିଏ ଅଉ ମନକୁ ଗୋଟିଏ । ସୁମାନୀ ବି ପାଇଛି । ସୁମାନୀ ବି ହସିଛି । ସୁମାନୀ ବି ତା'ର ମନକୁ ଗୋଟିଏ ଦିଗରେ ନିଜର ଦୃଷ୍ଟିକୋଣରେ ଆଗେଇ ନେଇଛି । ହେଲେ ତା'ର ମନରେ ସେତେବେଳେ ସେ ସବୁ ସ୍ଥାନହରା ହୋଇ ଯାଇଛି । ସେ ତା'ର ଆବଶ୍ୟକତାର ଉପାଦାନ ସବୁକୁ ଜଣକ ଭିତରେ ପାଇ ପାରେନାହିଁ ବୋଲି । ସୁମାନୀକୁ ଅନେକ କୁହାଯାଇଛି ସେ ବୋଧହୁଏ ଏଇ ସମାଜକୁ ପସନ୍ଦ କରେ ନାହିଁ । ସେ ତା'ର ଆଶା ବୋଧହୁଏ ଏଇ ସମାଜ ଭିତରେ ପୂରଣ କରି ପାରିବ ନାହିଁ । ସେମାନଙ୍କ ମତରେ ସୁମାନୀ ବୋଧହୁଏ ଏକ ଉନ୍ନତ ଜୀବନର ଆଶାରେ ବିଳାସର ବ୍ୟଭିଚାରକୁ ଅନ୍ୱେଷଣ କରୁଛି । କିନ୍ତୁ ସୁମାନୀ ସେଇ ସମୟରେ ଗନ୍ଧଯୁକ୍ତ ତେଲ ହୋଇଥିଲେ ସୁଦ୍ଧା ଗନ୍ଧକାରୀ ପଦାର୍ଥର ପୃଥକୀକରଣ ପରେ ତେଲର ପ୍ରକୃତ ଗନ୍ଧ ଯାହା ତାହା ଲୁକ୍କାୟିତ ରହିଛି । ଏହା ସେ ଦେଖାଇ ଦେଇଛି ମଦନର ସାନ୍ନିଧ୍ୟ ଲାଭ ପରେ । ମଦନ ବିଳାସିତ ଜୀବନ ପସନ୍ଦ କରେନାହିଁ, ସମସ୍ତେ ଜାଣନ୍ତି । ଏସବୁ ସତ୍ତ୍ୱେ ଓ ମଦନକୁ ତ ସମସ୍ତେ ଆଦର କରନ୍ତି ।

ଯେଉଁମାନେ ଶ୍ରେଷ୍ଠ ଦିନରୁ ସୁମାନୀକୁ ଜାଣନ୍ତି ସେମାନେ ମଦନର ସାନ୍ନିଧ୍ୟରେ ତା'ର ବିଶେଷ କିଛି ପରିବର୍ତ୍ତନ ଦେଖି ନାହାନ୍ତି । କେବଳ ଦୁଇଟି ମାତ୍ର ପରିବର୍ତ୍ତନ ତା'ର ଆସିଛି । କୃତ୍ରିମ ସୁମାନୀ ଆଉ ପିନ୍ଧୁନାହିଁ । ପୂର୍ବ ପରି ଆଉ ଏତେ ବେଶି ଗୀତ ଗାଉନାହିଁ ଏବଂ ନାଚୁନାହିଁ ।

ସୁମାନୀ ଛୁଆପିଲାର ମା' ହୋଇ ଗଲଣି । ଛୁଆ ପିଲାଙ୍କର ସେବା ସୁଶ୍ରୂଷାର ବନ୍ଧନରେ ବାନ୍ଧି ହୋଇଗଲଣି । ଏଇଥିପାଇଁ ସେ ବେଶି ଗାଏ ନାହିଁ । ଏବଂ ନାଚେନାହିଁ । ତାହା ନୁହେଁ । ତା'ର ରୂପରେ କିମ୍ବା ଶାରୀରିକ ଗଠନରେ ବେଶିକିଛି ପରିବର୍ତ୍ତନ ହୋଇ ଯାଇଛି ବି ନୁହେଁ । ସେ ତ ଏବେ

ଦେହକୁ ଚଳକଣ ରଖେ । ଶରୀର ତା'ର ସମ୍ପତ୍ତି । ସନ୍ତାନମାନେ ତା'ର କ୍ଷୀର ଖାଇଲେ ବି ବକ୍ଷ ଏବେ ବି ଉନ୍ନତ । ତୁମ ଯୋଉଁ ଜୀବନରେ ସୁଖମୟ ହେବାର ଏକମାତ୍ର ଶଯ୍ୟା, ସେ ଶଯ୍ୟା ନଡାଘରେ ସିନା ଶୁଷ୍କ କିନ୍ତୁ ବର୍ଷାରେ ଯେ ସବୁଜିମାରେ ଭରା । ସିଏ ସନ୍ତାନ ପ୍ରସବ କଲାପରେ ବି ଶ୍ରମମୟ ଜୀବନ ଯାପନ କରିବାରେ ନିଜର ସଂସ୍ଥାନ ପରିବେଶକୁ ଅତୁଟ ରଖିବାର ଦକ୍ଷତା ଲାଭ କରିପାରିଛି ଏ ସମୟରେ ତା'ର ଶରୀରରେ କାହିଁକି ବା ଶିଥିଳତା ଆସିବ । ଅସାବଧାନତା ହୁଏତ ବ୍ୟତିକ୍ରମ ସୃଷ୍ଟି କରି ଦେଇପାରେ ଅବା ହୁଏତ ଶରୀର ଶିଥିଳ ଉପାଦାନରେ ହିଁ ଗଢା, ଯେ ଏକ ଭିନ୍ନ କଥା କିନ୍ତୁ ସୁମାନୀର ପରିବେଶ ଏକଲା ହୋଇ ଯାଇଛି ।

ମଦନ ନିଜ ଦ୍ୱିତୀୟ ସନ୍ତାନ ଲାଭ କରିବା ସମୟରେ କାଠ ନିର୍ମିତ ବନ୍ଦୀ କରିପାରି ନ ଥିବାରୁ ପ୍ରଥମ ଦୁଇ ତିନି ମାସ ସୁମାନୀ ସାମାନ୍ୟରୁ ସାମାନ୍ୟତର ଅସୁସ୍ଥତା ଭିତରେ ଗତ କରିଥିଲା ସିନା କିନ୍ତୁ ତା' ପୂର୍ବରୁ ନୁହେଁ । ଏବେ ସୁସ୍ଥ ଅଛି ସେ । ଏବେ ଘର ପାଇଁ ସୁମାନୀ ନିଜେ ଜଙ୍ଗଲରୁ ବୋଝାଏ ଝାଟି ନେଇଆସେ । ଝାଳ ଗମ୍‌ଗମ୍ ବାହାରି ପଡ଼େ । ହେଲେ ବି ସେ ଅକ୍ଳାନ୍ତ ଏବଂ ପ୍ରଫୁଲ୍ଲିତ । ଏବେ ତା'ର ନୂଆ ପ୍ରାୟ ଦୁଇଖଣ୍ଡ ଶାଢ଼ୀ ଏବଂ ଖଣ୍ଡିଏ କେଉଁଠି କେମିତି ଚିରି ଯାଇଥିବା ଶାଢ଼ୀ ଥିବାରୁ ସେ ପୂର୍ବ ଅପେକ୍ଷା ପରିଷ୍କାର ଶାଢ଼ୀ ପିନ୍ଧେ । ପୂର୍ବେ ସେ ଅନେକ ଦିନ ଖଣ୍ଡିଏ, କେବେ କେମିତି ଖଣ୍ଡିଏ ନୂଆ ଆଉ ଖଣ୍ଡିଏ ନିହାତି ପୁରୁଣା ଶାଢ଼ୀରେ ଦିନ ଗଡ଼ାଇ ଦେଇଛି ।

ପୂର୍ବାପେକ୍ଷା ଏବେ ସେ ବେଶି ସୁନ୍ଦର ଦେଖାଯାଏ । ଛୁଆଟିକୁ ଦୁଧ ପିଆଉ ନ ଥିବା ସମୟରେ କିମ୍ବା ଛୁଆଟିକୁ ଏକପ୍ରକାର କାଖେଇ ନ ଥିବା ସମୟରେ ସେ ଏତେ ଅକର୍ମଣୀୟା ଦେଖାଯାଏ ଯେ କେହି ବି ଆକର୍ଷିତ ହୁଅନ୍ତି । ହଡ଼ତଳେ ଗ୍ରେଟ ଫୁଲ ଗଛଟିରେ ସଦ୍ୟ ସୁନ୍ଦର ଫୁଲ ଫୁଟିଥିଲେ ବି ଅପର ପାର୍ଶ୍ୱରୁ ଦେଖା ଯାଉଥିବା ଡେଙ୍ଗା ଫୁଲ ଗଛଟିରେ ଫୁଟି ସତେଜ ଦେଖା ଯାଉଥିବା ବାସିଫୁଲ ଲୋକଲୋଚନକୁ ଆସେ । ସୁମାନୀର ସୌନ୍ଦର୍ଯ୍ୟ ଝାଟିର କୁଡ଼ିଆ ଭିତରେ ଦୃଷ୍ଟିର ଅନ୍ତରାଳରେ ରହିଯାଏ ।

ତଥାପି ସୁମାନୀ ନାଚେନାହିଁ କିମ୍ବା ଆଉ ସେତେ ଗାଏନାହିଁ । ସେ କୁସ୍ନା ପିଉଥିଲା, ପିଇ ଆସୁଥିଲା ବୋଲି । ଯେ କେବେଠୁଁ ସିଏ ଜାଣେନାହିଁ । ସେ ଏସବୁ ପିଇଛି ଗୋଟିଏ ପିଇବା ଖାଇବାର ସାଧାରଣ ଜିନିଷ ପରି । ଏଥିରେ ସାମାଜିକ କଟକଣା ନାହିଁ କିମ୍ବା ସାମାଜିକ ଦୋଷ ଦୁର୍ବଳତା ନାହିଁ ବରଂ ସେମାନେ କୁସ୍ନା

ସେବନରେ ପାଆନ୍ତି ସାମାଜିକ ଐକ୍ୟ ଏବଂ ଏଇ କୁଣ୍ଠା ସେମାନଙ୍କୁ ନିକଟରୁ ନିକଟତର କରିଦିଏ । କିନ୍ତୁ ସେଏନାହିଁ ମଦନ । ବାପ ତା'ର ଦାରୁ ପିଇ ପିଇ ସଂସାରରୁ ଚାଲିଯାଇଛି ସ୍ୱାଦନ ପାଇଁ । ଦାରୁ ମହୁଲିରୁ ହୁଏ ଅଉ କୁମ୍ଭା ଚାଉଳରୁ । ତିଭାଷ୍ୟେ ମାଦକତା ଭରି ଦେଇଅଛି ମଣିଷ ଭିତରେ । କ୍ଷଣିକ ନିମନ୍ତେ ସେ ମଦ ସେମାନଙ୍କୁ କି ଆନନ୍ଦ ଦିଏ ?? ଅବଶ୍ୟ ସେବନକାରୀ ନିଜର ଢଙ୍ଗାରେ ବିଭିନ୍ନ ପ୍ରକାର କହେ । ସୁମାମୀ କି ଆଉ ପିଇବାକୁ ଇଚ୍ଛା କରେନାହିଁ । ବିବାହ କ'ଣ ଅନୁଭବ କଲା ପରେ କୁମାରୀ ଜୀବନରେ ଯାହା ସେ ଖୋଜୁଛି ତାହା ସେ ପାଇପାରି ନ ଥିଲା । ଯଦିଓ ସେ ବହୁତ ଖୋଜିଲା । ତା'ର ସୀମିତ ପରିବେଶ ମଧ୍ୟରେ ଯେତେବେଳେ ବି ସୁଯୋଗ ପାଇଛି, ଖୋଜିଛି । ଅନେକ ଖୋଜିଲା । ସେଇ ପରିବେଶ ଭିତରେ ନିଜ ନିଜର ମନଲାଖି ସାଥୀ ପାଇ ଯାଇଛନ୍ତି ହେଲେ ସୁମାମୀ ପାଇ ନ ଥିଲା । ସେ ନିଜ ପରିବେଶ ମଧ୍ୟରେ ସୁନ୍ଦର ସୁଗଠିତ ଯୁବକର ଆକର୍ଷଣୀୟ ଚେହେରା ଏବଂ ସୁନ୍ଦର କୋମଳ କଥା କହୁଥିବା ହସିଲା ମୁହଁ ଯେ ପାଇନାହିଁ ଏକଥା ନୁହେଁ । କିନ୍ତୁ ସେମାନଙ୍କ ଭିତରେ ସେ ପାଇନାହିଁ ପ୍ରେମର-ଅନୁସନ୍ଧାନ । କାମର ସୂଚନା ସେତ ଅନେକ ପାଇଲା କିନ୍ତୁ ତା'ର ମାତାଲ ଶରୀରକୁ ବି ତାହା ଆକୃଷ୍ଟ କରିପାରି ନ ଥିଲା । ମାତାଲ ଅବସ୍ଥାରେ ବି ଏମାନେ ନିଜକୁ ସଜାଗ ରଖିଥିବାରେ ଅଭ୍ୟସ୍ତ । ପରିସ୍ଥିତିର ସୁଯୋଗ ନେଇ ଯେ କୌଣସି ମଣିଷର ଜାତ୍ୟଭିତ୍ତିକୁ ମଦରେ ଯେ କେବଳ ଲୋପ କରାଯାଇ ପାରିବ ତା' ନୁହେଁ, ତା' ପାଇଁ ସାଧନାର ଅଭାବ ନାହିଁ । ସେ ପ୍ରକାର ପରିସ୍ଥିତିକୁ ସତର୍କତା ଅବଲମ୍ବନ କରି ସୁମାମୀ ଏଡ଼ାଇ ଦେଇଛି । ଯେତେବେଳେ ମଣିଷର ପ୍ରବୃତ୍ତି ଚରିତାର୍ଥ କରିବାକୁ କ୍ଷେତ୍ରର ଅଭାବ ନାହିଁ ସେତେବେଳେ ଜଣକର ଜାତ୍ୟଭିତ୍ତିକୁ ଲୋପ କରିଦେଇ ନିଜର ଅଭିପ୍ସା ପୂରଣ କରିବାର ବାସନା ସର୍ବଗ୍ରାହୀ ହେବାର ସମ୍ଭାବନା ପ୍ରାପ୍ତ ନ ଥାଏ । ଉଦ୍ଦେଶ୍ୟ ମୂଳକ ଭାବରେ ଅଭିପ୍ସା ପୂରଣ ନିମନ୍ତେ ଜଣେ କିମ୍ବା କେତେଜଣ ସଂକଳ୍ପବଦ୍ଧ ହେଲେ ପରିସ୍ଥିତିର ଉପଯୁକ୍ତ ଯୋଗର ଅପେକ୍ଷାରେ ରହି ଅନ୍ୟ କ୍ଷେତ୍ରର ଅଭିପ୍ସାକୁ ଗୌଣ କରି ଦିଆଯାଏ । ଗୌଣ କ୍ଷେତ୍ରର ଅଭିପ୍ସାକୁ ପରିତ୍ୟାଗ କରାଯାଇ ପାରିବାର ମନୋବୃତ୍ତି ଥିବା ନିତାନ୍ତ ଆବଶ୍ୟକ, କିନ୍ତୁ ଏ ପ୍ରକାର ନିସ୍ପୃହା ସ୍ଥାୟୀ ସନ୍ତୋଷ ଦେଇପାରେ ନାହିଁ ଏବଂ ଏହାର ଯବନିକା ଖୁବ୍ ଶୀଘ୍ର ପଡ଼ିଯାଏ । କୁହୁଡ଼ି ଦିଗ୍‌ବଳୟକୁ ପାଖେଇ ଦିଏ ଏବଂ ସାମୀପ୍ୟ ବି ଦିଗ୍‌ବଳୟର ଅନ୍ତରାଳରେ ରହିଯାଏ କିନ୍ତୁ ସୂର୍ଯ୍ୟ କିରଣ ଧୀରେ ଧୀରେ ଦିଗ୍‌ବଳୟକୁ ତା'ର ମୂଳସ୍ଥାନକୁ ତଡ଼ିଦିଏ । ସୁମାମୀ ଅଲକ୍ଷ୍ୟରେ ଭେଟିଛି ପରିମେୟର ଗତିଶୀଳ ପଥରେ ମଦନକୁ । ମଦନଠାରୁ ସେ ପାଇଛି ତା'ର

ଇପ୍‌ସିତ ଅଭିଳାଷ । ସେ ବିବାହିତା ଜୀବନ ନିଶ୍ଚିନ୍ତ ଯାପନ କରିଥାନ୍ତା ଏବଂ ହୃଏତ ନିଜର ଇଚ୍ଛା ପୂରଣ ହୋଇ ବି ପାରି ନ ଥାନ୍ତା । ତା'ର ଜୀବନର ଲକ୍ଷ୍ୟ ଥିଲି କାମପ୍ରବଣତା ନ ଥିବା ଏକ ପୁରୁଷର ପ୍ରେମ । ମଦନ ସହିତ ସୁମାଳୀର ସାକ୍ଷାତ ହୋଇନାହିଁ କିମ୍ବା ମଦନଠାରେ ଏସବୁ ଅଛି କି ନାହିଁ ସୁମାଳୀ ଜାଣିବାର ସୁଯୋଗ ପାଇନାହିଁ । ତଥାପି ସେ ସାମାଜିକ ଶୃଙ୍ଖଳାକୁ ମାନି ନେଇଛି । ସେଇ ଭିତରେ ସେ ଆନନ୍ଦ ଲାଭ କରୁଛି । ସଫଳ ପ୍ରେମର କ୍ଷେତ୍ର ଏଠି ବି ସେ ପାଇଛି ।

କିନ୍ତୁ ସୁମାଳୀର ପରୀକ୍ଷା ଯେ ହୋଇଯାଇଛି ଏହା ସେ ଜାଣେନାହିଁ । ବିବାହର ପୂର୍ବ ବର୍ଷ ମଦନର ମା' ଏକ ସାମାଜିକ ନିମନ୍ତ୍ରଣ ରକ୍ଷା କରିବାକୁ ଯାଇ ସୁମାଳୀକୁ ଦେଖିଛି । ସୁମାଳୀର ଆଚରଣରେ ସେ ଖୁସି ହୋଇଥିଲା । ଏଇ ଖୁସିର ଶେଷ ଫଳ ହିଁ ମଦନ ଓ ସୁମାଳୀର ବିବାହ ।

ସୁମାଳୀ ବାଉଁଶରେ ତିଆରି ଟୁପୁଲିଟିଏ ଆଣିଲା । ଧୋଇଦେଇ ଖରାରେ ଶୁଖାଇ ଦେଲା । ଅରୁଆ ଚାଉଳକୁ ଗୁଣ୍ଡ କରିଦେଲା । ଟନ୍ଥ ତିଆରି କରିବା ନିମନ୍ତେ ସଂଗୃହୀତ ଚେରମୂଳ ଡାଳ ଗଛ ସବୁକୁ ଖରାରେ ପୂର୍ବରୁ ପୁରାପୁରି ଶୁଖା ଯାଇଛି । ସୁମାଳୀ ସେଗୁଡ଼ିକୁ ଯନ୍ତ୍ର ସାହାଯ୍ୟରେ ଗୁଣ୍ଡ କଲା । ମଦନ ଜଣେ ଗୃହସ୍ଥଠାରୁ କିଛି ପୁଆଳ ଧାନ ଆଣି ଦେଇଛି । ପୁଆଳକୁ ଧୋଇ ଦେଇ ଶୁଖାଇ ଦେଲା । ଯେପରି ଟିକେ ପାଣି ଅଂଶ ନ ଥିବ । ଅରୁଆ କରିନ ଚାଉଳ ଗୁଣ୍ଡରେ ଚେରମୂଳର ଗୁଣ୍ଡକୁ ମିଶାଇ ଦେଲା । କିଛି ପାଣି ମିଶାଇ ଦେଇ ବଡ଼ି ତିଆରି କରାଯାଇ ପାରିବା ଭଳି ଅଠାଳିଆ କରିଦେଲା । ଟୁପୁଲିରେ ପରସ୍ତେ ପୁଆଳ ବିଛାଇ ଦେଲା । ତା'ପରେ ଅଣ୍ଡା ଆକୃତିର ଗୋଲି ତିଆରି କରିବାରେ ଲାଗିଗଲା । ପରସ୍ତ ଉପରେ ପରସ୍ତ ପୁଆଳ ବିଛାଇ ଦେଇ ଯନ୍ତ୍ର ସାହାଯ୍ୟରେ ଟୁପୁଲି ଭିତରେ ସବୁ ବିଛାଇ ଦେଲା ।

ମଦନ ଏବେ ନିଜର ରୋଜଗାର କରି ଦୈନନ୍ଦିନ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ ଦେବାକୁ ବି ଯାଏ । ଆସନ୍ତା ବୁଧବାର ଦିନ ଏକୋଇଶା ହେବ । ଗ୍ରେଟ ଜୁଆଡିର ନାଁ ଦିଆହେବ ।

ସୁମାଳୀ ରଖିଥିବା ଟୁପୁଲିକୁ ଥରେ ଥରେ ଦେଖେ । ଉଷୁମ ବୋଧ ହୋଇ ନ ଥାଏ । ଅଣ୍ଡା ଦିନ ନା, ଟିକିଏ ବଳମୂରେ ବ୍ୟବହାରଯୋଗ୍ୟ ଅବସ୍ଥାକୁ ଗଲୁ ଆସିବ । ଦୁଇଦିନ ପରେ ଟନ୍ଥ ତା'ର ରୂପ ପ୍ରକାଶ କଲା ।

ସୁମାଳୀ ଖଳୁଆ ପତରରେ ତିଆରି ପଟିଆକୁ ଧୋଇଆଣି ଶୁଖାଇ ଦେଲା । ତା' ଉପରେ କୁଣ୍ଡା ତିଆରି କରିବା ନିମନ୍ତେ ପ୍ରସ୍ତୁତ କରାଯାଇଥିବା ଉଷୁନା

ଚାଉଳକୁ ଭାତରେ ପରିଣତ କରିବାକୁ ଲାଗି ମନ୍ଦ ଜାଳ । ତେଣୁ ଚାଉଳକୁ ସେତିକି ପାଣି । ଭାତ ଫୁଟିଯାଏ । ପାଣିତକ ଭାତ ଶୋଷିନିଏ । ସେମାନେ ଭାତକୁ ବାଢ଼ିଦିଏ ପଟିଆରେ ପତଳା କରି । ଭାତରୁ ଗରମ ଅଂଶ ଚାଲିଯାଏ । ଉଷୁମ ଥିବା ଅବସ୍ଥାରେ ଯେପରିକି ଭାତକୁ ମୁଠାକରି ଧରିଲେ ବି ତାତୁ ନ ଥିବ, ଗୁଣ୍ଡ କରି ରାନ୍ଧୁକୁ ଭାତ ଉପରେ ଗୁଣ୍ଡାଇ ଦିଏ । ଆବଶ୍ୟକ ପରିମାଣ ରାନ୍ଧୁକୁ ମିଶାଇ ଦେଲା ପରେ ଶୁଖିଲା ହାଣ୍ଡିରେ ସେ ରାନ୍ଧୁମିଶା ଭାତ ଭର୍ତ୍ତି କରିଦେଲା । ଉପରେ ଗୋଟିଏ ଝଲି ଢାଙ୍କିଦେଇ ଘର ଭିତରେ ରଖିଦେଲା । କିଛିଦିନ ପରେ ଏଇ ହିଁ ହେବ ବନ୍ଧୁବାନ୍ଧବ କୁଣିଆଁଙ୍କ ଆଦରଣୀୟ ପାନୀୟ ଲୁହ୍ମା ।

ମଦନ ଜଙ୍ଗଲରୁ ସର୍ଗିପତରର ଡୋଲା ଆଣିଛି । ସୁମାମା ଝଲି ଆଉ ଚୌକୁଣୀ ତିଆରି କରୁଛି । ଏତେ ଲୋକଙ୍କୁ ତ ବାସନ କୁସନ ଯୋଗାଇ ଦିଆଯାଇ ପାରିବ ନାହିଁ । ସେ ପ୍ରକାର ସୁଯୋଗ ଏମାନଙ୍କର ଜୀବନରେ ଆସିବ, ଏ ଆଶା ସେମାନଙ୍କର ନାହିଁ । ସେ ପ୍ରକାର ସ୍ୱପ୍ନ ଦେଖିବା ସେମାନଙ୍କର ନିଦ୍ରାରେ ନାହିଁ । ସେମାନଙ୍କ ନିଦ୍ରାରେ ସ୍ୱପ୍ନର ଉଦ୍ରେକ ଏ ପର୍ଯ୍ୟନ୍ତ ହୋଇନାହିଁ । ସୁମାମାର ସ୍ୱପ୍ନ ମଦନର ନିଷ୍କପଟ ବ୍ୟବହାର ଏବଂ ମଦନର ସ୍ୱପ୍ନ ତା'ର ଦୁଇଟି ସନ୍ତାନ ।

ଆଜି ମଙ୍ଗଳବାର । ମଦନ ସୁନ୍ଦରଗଡ଼ରୁ କରମଡିହ ବାଟ ଦେଇ ତା' ନିଜ ଗ୍ରାମ ମାନମୁଣ୍ଡାକୁ ଯିବ । ଏଠି ହାଟ ବଳମ୍ପୁରେ ବସେ । ଲୋକେ ନିଜ ଘର କାମ ସାରି ହାଟକୁ ଆସନ୍ତି । ନିଜ ଜିନିଷପତ୍ର ବିକ୍ରୟ କରିସାରି, ସାମାନ୍ୟ କିଛି ଜିନିଷପତ୍ର କିଣାକିଣି କରି ଘରକୁ ଫେରିଯାନ୍ତି । ହାଟଦାଣ୍ଡି ଦିନର ପୂର୍ବାହ୍ନରେ ଏକ ଖାଲି ପଡ଼ିଆ ପରି ପଡ଼ି ରହିଥାଏ । ଆସ୍ତେ ଆସ୍ତେ ହାଟୁଆ ଲୋକଙ୍କ ଭିଡ଼ ଜମେ । ସମସ୍ତେ ନିଜ ନିଜର କଥା କହନ୍ତି । ନିଃଶବ୍ଦ ପଡ଼ିଆଟି କୋଳାହଳରେ ନିଜର ପ୍ରାଧାନ୍ୟ ପ୍ରକାଶ କରେ । ଉତ୍କୋଚ ପ୍ରିୟ କର୍ମଚାରୀର କାର୍ଯ୍ୟାଳୟ ପରି ଏଇ ହାଟର ପ୍ରାଧାନ୍ୟ । ଉତ୍କୋଚ ଗ୍ରହୀତା କାର୍ଯ୍ୟାଳୟ ଆରମ୍ଭ ହେବା ପୂର୍ବରୁ ନୀରବ ଥାଏ ଏବଂ ନିଜର ଅଧିକାରର ଅନଧିକାର ଭିତରେ ତୃପ୍ତିର ଅକ୍ଷୁଣ୍ଣ ଶବ୍ଦରେ କୋଳାହଳ ସୃଷ୍ଟି କରେ ।

ମଦନ ଆଜି ପ୍ରଶସ୍ତ ରାସ୍ତାରେ ଚାଲିନାହିଁ, ଚାଲିଛି କେବଳ ସହରର ରାସ୍ତା ଓ ଗଳିରେ । ଆଜି ପ୍ରଶସ୍ତ ରାସ୍ତାରେ ସେ କମ ଚାଲିଛି ତଥାପି ନିଜକୁ ସଙ୍କୁଚିତ ମନେ କରୁଛି । ଏହି ରାସ୍ତାରେ ବି ମଣିଷ ଯେଉଁ ପରିବେଶ ମଧ୍ୟରେ ଚାଲିଛି ସେସବୁ ସେ ସହରରେ ବି ଦେଖିଛି । ଯେତେବେଳେ ଏସବୁ ସେ ସହରରେ ଦେଖେ ସେଠାକାର ରୂପ ବୋଲି ସେ ସେସବୁକୁ ବିବେଚନା କରେ । ମନରେ

ତା'ର ସ୍ୱଭାବରୁ ହୁଏନାହିଁ । ସେହି ପରିବେଶ ଭିତରେ ସେ ଦୀର୍ଘ ଦିନର ଅଭ୍ୟାସ ବଳରେ ନିଜକୁ ନିଯୋଜିତ କରି ନେଇଛି । ସେମାନଙ୍କଠାରୁ ନିଜକୁ ପୃଥକ ମନେ କରିବାର ଅବକାଶ ସେ ପାଇନାହିଁ । ସହରରେ ତା'ର ଆବଶ୍ୟକତା ଅଛି, ଏହା ସେ ଅନୁଭବ କରନ୍ତି । ସହର ବି ସତେ ଯେପରି ମଦନକୁ ନିଜର କରି ନେଇଛି ।

ଏକ ପ୍ରାଦେଶିକ ରାଜପଥରେ ଯେ ସମସ୍ତ ଯାତ୍ରୀ ମଦନଠାରୁ ଉନ୍ନତ, ଏହା ନୁହେଁ । ମଦନ ଯେ ସେମାନଙ୍କ ଯାତାୟାତ ଦେଖି ବି ନାହିଁ, ଏହା ନୁହେଁ । ସେମାନଙ୍କୁ ସେ ସେ ଚିହ୍ନେନାହିଁ ହେଲେ ସେମାନେ ଯେ ମଦନ ପରି ପଥିକ ଏହା ସେ ହୃଦବୋଧ କରେ । କିନ୍ତୁ ଏସବୁ ତାକୁ ଆଶ୍ୱାସନା ଦିଏନାହିଁ ବରଂ ତା'ର ଭାବନାରେ ପରିବ୍ୟାପ୍ତି ଆସିଯାଇଛି । ଜଳନ୍ତା ପେଟ୍ରୋଲରେ ଜଳ ଢାଳି ଦିଆଯାଇଛି । ଅଗ୍ନି ନିର୍ବାପିତ ନ ହୋଇ ଜଳର ଗତିପଥରେ ଅଗ୍ନିଶିଖା ଗତି କରି ଉଠିଛି ।

କରମଡିହି ମଦନ ପହଞ୍ଚି ଯାଇଛି । ଯେଉଁ ରାସ୍ତାକୁ ମଦନ ଆପଣାର ବୋଲି ହୃଦବୋଧ କରି ପାରିଲା ନାହିଁ, ସେଇ ରାସ୍ତା ମଦନକୁ ଏଠାରେ ପହଞ୍ଚାଇ ଦେଲା । ଏ ରାସ୍ତା ବୋଧହୁଏ ମଦନକୁ ନ ଚିହ୍ନି ବି ଚିହ୍ନିଛି । ସେଥିପାଇଁ ତା'ର କଳା ମିଚ୍‌ମିଚ୍ ଶରୀରର ଧାରେ ଧାରେ ଧୂସର ଚଲାପଥ ଦୁଇଟି ରଖିଛି । ଏକ ବିସ୍ତୃତ ଶରୀରରେ ଆପାଦଲମ୍ବିତ ଦୁଇଟି ହାତ । ବାହୁ ବିସ୍ତାର କରି ଅଭୟ ଦେଇଛି ମଦନ ପରି କେତେକଙ୍କୁ । ଦଣ୍ଡାୟମାନ ରାସ୍ତାର ବକ୍ଷରେ ମଦନର ରୂପହୀନ ବହୁରୂପୀମାନେ ଘନଘନ ବେଶ ପରିବର୍ତ୍ତନ କରିଛନ୍ତି ।

ହାଟ ଭିତରେ ମଦନ ନୀରବ । ଆଖି ତା'ର ଧୀରେ ଧୀରେ ପସରାଗୁଡ଼ିକୁ ଚହଟି ଦେଖୁଛି । ମନ ତା'ର ସଂକୀର୍ଣ୍ଣ ନୁହେଁ ଅଥବା ବିସ୍ମାରିତ ନୁହେଁ । ହାଟରେ ଜିନିଷ କିଣିବା, ଦରମୂଲ ଠିକ୍ କରିବା ଯେ ଏହା ତା' ପକ୍ଷରେ ପ୍ରଥମ ସେଇଆ ବି ନୁହେଁ ତଥାପି ମଦନ ଏଠି ଶୃଙ୍ଖଳିତ ଅଥଚ ଏ ହାଟ ତା' ଜୀବନରେ ଏ ପର୍ଯ୍ୟନ୍ତ କରିଥିବା ହାଟଗୁଡ଼ିକଠାରୁ ନିହାତି ଶ୍ରେଷ୍ଠ । ମଦନ କିନ୍ତୁ ଏଠି ଦେଖେ ନିଜ ପରି ଅନେକ ଗ୍ରାହକ ଏବଂ ନିଜତୁଲ୍ୟ ଅନେକ ବିକ୍ରେତା । ସହର ବଜାରରେ ବୁଲୁଥିବା ଗ୍ରାହକର ଚଞ୍ଚଳ ଗୃହ ଏଠି ନାହିଁ କି ସହରର ହାଟୁଆର ସ୍ୱରୂପ ନାହିଁ । ଏଠି ବସ୍ତୁର ସଉଦା ମଣିଷ ଯେତିକି କରୁନାହିଁ, ମଣିଷତ୍ୱର ସଉଦା କରୁଛି ତା'ଠାରୁ ତେର୍‌ଗୁଣ ବେଶି । ଏଠି ହାଟ କରିବା ମାନେ ନିଜକୁ ନିଜ ଭିତରେ ହଜାଇ ଦେବା । ଏଠି ନିଜକୁ ନିଜେ ନ ଖୋଜିଲେ

ହୁଏତ ନିଜର ନଷ୍ଟ ହେବା ଯାଏ ଚିତ୍କାର ସମ୍ଭାବନା ରହିଥିଲା ବେଶି । କେବଳ ଗୋଟିଏ ଜିନିଷ ଏଠି ବି ଅଛି, କୋଳାହଳ । କେବଳ ମଦନ ନୁହେଁ ସବୁଓ କେତେକ ହାଟ ଭିତରେ ନୀରବ ।

ମଦନ ପାଉଳ ଘଣ୍ଟା ବା ବଳାଉ ଏକ କିଲୋଗ୍ରାମ କିଣିଲା ଅଢ଼େଇ ଟଙ୍କାରେ । କଞ୍ଚାମରିଚ ପଚିଶ ପଇସାର, ପିଆଜ କିଣିଲା ଅଧ କିଲୋଗ୍ରାମ ଏକ ଟଙ୍କାରେ । ଏକ ଟଙ୍କାରେ ସାରୁ ଦୁଇ କିଲୋଗ୍ରାମ କିଣିଲା ଏବଂ ଚନା ପାଇଁ ଖଜିଲା ଚଣା ପଚିଶ ପଇସାର କିଣିଲା । ସେ ସୁନ୍ଦରଗଡ଼କୁ ଆସିବା ସମୟରେ ଦୁଇଟି ଟଙ୍କା ଧରିଥିଲା ଅଣ୍ଟାରେ । ଏଇଥିରେ କିରୋସିନି ତେଲ ଏକ ଲିଟର କିଣିଲା । ତାକୁ ଏକ ଟଙ୍କା ଦେବାକୁ ପଡ଼ିଲା । ଟିପଚିହ୍ନ ବି ଦୋକାନୀର ଖାତାରେ ଦେଲା । ଖାତାରେ ଦର କ'ଣ ଅଛି ସେ ଜାଣିବାକୁ ଚେଷ୍ଟା କଲା ନାହିଁ । ସେ ବିଶେଷ ଖୁସି ଯେ ସୁବିଧାରେ କିରୋସିନି ମିଳିଗଲା । ସେ ଦୋକାନୀ ପାଇଁ ମନେ ମନେ କୃତଜ୍ଞତା ପ୍ରକାଶ କଲା । ମେଘର ଆତଙ୍କପୂର୍ଣ୍ଣ ଘଡ଼ଘଡ଼ି ଶୁଣିଲେ ବି ଗ୍ରୀଷ୍ମର ସବାଙ୍ଗରେ ବର୍ଷାଜଳ ହସ ଫୁଟାଇ ଦିଏ । ମେଘରେ ଘଡ଼ଘଡ଼ି ଥାଇପାରେ କିନ୍ତୁ ଜଳ··· । ମେଘ ଜଳର ଏକ ଅବସ୍ଥା । ଆକାଶ ତା'ର ଗତିପଥ । ଅବଶ୍ୟ ତା'ର ଗତିପଥରେ ଶୂନ୍ୟ ନାହିଁ । ମଦନ କିନ୍ତୁ ଧରାପୃଷ୍ଠର ଠିକ୍ ଉର୍ଦ୍ଧ୍ୱରୁ ଶୂନ୍ୟର ଉପଲବ୍ଧି କରେ । 'ମଦନ ବଡ଼ି ଏକକଠା କିଣିଲା ତିରିଶ ପଇସାରେ, ଶାଗ କିଣିଲା ପଚିଶ ପଇସାର ଏବଂ ଗୁଡ଼ାଖୁ ବି କିଣିଲା ପଚିଶ ପଇସାର ।

ବିଭିନ୍ନ ଗଣ୍ଠି ପକାଇ ଏସବୁ ଜିନିଷ ମଦନ ନିଜର ଗାମୁଛାରେ ବାନ୍ଧି- ଦେଲା ଏବଂ ଘରଅଡ଼ିକୁ ପାଦ ବଢ଼ାଇବାକୁ ଲାଗିଲା । ଫେରିବା ବାଟରେ ମୁଢ଼ି ଅଧକଠା କିଣିଲା ପନ୍ଦର ପଇସାରେ ଏବଂ, ପାଞ୍ଚ ପଇସା ଅଣ୍ଟିରେ ଖୋସିଦେଲା । ପିନ୍ଧିଥିବା ଧୋତିରେ ମୁଢ଼ିକ ମନୂରେ ରଖିନେଇ ନିଜର ଭୋକ ଦୂର କରିବା ନିମନ୍ତେ ମୁହଁରେ ମୁଠାଏ ମୁଠାଏ ପକାଇ ବାଟ ଚାଲିବାକୁ ଲାଗିଲା ।

ମଦନ ପାହାଡ଼ ଜଙ୍ଗଲ ଦେଇ ନିଜ ଘରକୁ ଫେରୁଥିଛି । ଏ ବାଟ ତା' ପାଇଁ ନୂଆ ହେଲେ ବି ମଝିରେ ମଝିରେ ପଥଚଲା ସାଙ୍ଗ ପାଇ ଯାଇଛି । ବାଟଟି ସିନା ନୂଆ, ପାହାଡ଼, ପର୍ବତ ଯେ ତା'ର ସବୁ ଦିନର ସାଥୀ । ମଦନର ଜୀବନ ପ୍ରବାହରେ ଜଙ୍ଗଲ, ପର୍ବତ ଆଉ ପର୍ବତକୁ ଲାଗି ରହିଥିବା ପଦା ଓ ପଡ଼ିଆ ସମତାଳରେ ଗତି କରି ଚାଲିଛି । ସେ ନୂଆ ଅବସ୍ଥିତି ସିନା ଦେଖେ କିନ୍ତୁ ପୁରୁଣା ଭାବକୁ ଭୁଲିଯିବ କିପରି ।

ଯତନରେ ସୁମାନୀ ସବୁ ଜିନିଷପତ୍ରକୁ ଘରେ ରଖିଦେଲା । ମଦନକୁ ଗଡ଼ୁ ପାଣିଦେଲା । ଖାଇବା ପାଇଁ ଦେର୍ କରିଦେଲା । ମଦନ ଖାଇବାକୁ ବସିଛି । ସୁମାନୀର ଆଜି ତରବରରେ ବୋଧହୁଏ ମଦନକୁ କିଛି କହିବାକୁ ନାହିଁ । ସେ ଘରେ ଜିନିଷପତ୍ର ସଜଡ଼ା ସଜଡ଼ି କରିବାରେ ଲାଗିଗଲା । ମଦନର କାନରେ ବନ୍ଧା ହୋଇଥିବା ମୁଢ଼ି ମୁଠାଏକୁ ସମସ୍ତଙ୍କୁ ବାଣ୍ଟଦେଇ ଖାଇବାକୁ ଦେଇ ବାକି ଜିନିଷଗୁଡ଼ିକ ଅଙ୍ଗୁଛିରୁ ଫିଟାଇ ଯଥା ସ୍ଥାନରେ ରଖିଲା । ସମସ୍ତେ ନିଜ ମାଆକୁ ଜିନିଷପତ୍ରର ସଜଡ଼ା ସଜଡ଼ି କରୁଥିବା ସମୟରେ ଇତସ୍ତତ କରିବାର କୌଣସି କାରଣ ନାହିଁ । ସେ ସରଳ, ଶାନ୍ତ ଓ ଲାଜୁଆ ସ୍ୱଭାବର । ତାକୁ କୋଠାଏ କାଗାରେ ବସି ରହିବାକୁ ପୁଣି ବଡ଼ିଆ ଔଷଧ ଦିଆଯାଇଛି, ମୁଠାଏ ମୁଢ଼ି ।

ବନ୍ଧୁବାନ୍ଧବମାନେ ଆସି ଯାଇଛନ୍ତି । ମଦନର ମାମୁଁ ପୁଅ ଦୁଇଜଣ । ସେମାନଙ୍କର ସ୍ତ୍ରୀ ମାଇକିନା ଦୁହେଁ ଆଉ ଛୁଆପିଲା ପାଞ୍ଚଜଣ ଆସିଛନ୍ତି । ମଦନର ବାପାଙ୍କର ଭଉଣୀ ବା ଫୁଫୁ ବି ଆସିଛି । ଯାଙ୍କରେ ତା'ର ଦଶ ବର୍ଷର ନାତି ଆଉ ସାତ ବର୍ଷର ନାତୁଣୀଟା ବି ଆସିଛି । ସୁମାନୀର ବାପାର ପୁଅଟିଏ ବି ଆସିଛି । ଏକଲା । ସୁମାନୀର ବନ୍ଧୁବାନ୍ଧବ ଭିତରୁ ଜଣେ ଆଉ ମଦନର ବନ୍ଧୁବାନ୍ଧବ ଭିତରୁ ଛୁଆପିଲା ମିଶି ବାରଜଣ ଆସିଛନ୍ତି । ଘରୋଇ କୁଣିଆଁ ତେରଜଣ ଏବଂ ଗାଆଁରୁ ଆଠଜଣ । ମଦନର ଜାତଭାଇ ଘରୁ ପରିବାରର ସମସ୍ତେ, ବାପା ମା' ଏବଂ ଦୁଇଟି ଛୁଆ । ଅନ୍ୟାନ୍ୟ ପରିବାରରୁ ତିନିଜଣ ସ୍ତ୍ରୀ ଲୋକ ଏବଂ ମଦନର ସମ୍ପ୍ରଦାୟର ଜଣେ ମୁଖ୍ୟ ଆସିଛନ୍ତି ।

ଦିନଟା ବୁଧବାର । କୁମ୍ଭା ତଅର ଗୁଲଛି । ଗୋଟିଏ ବଡ଼ ହାଣ୍ଡିରେ ମୁହଁକୁ ଖଣ୍ଡିଏ କପଡ଼ାରେ ଢାଙ୍କି ଦିଆଯାଇଛି । କପଡ଼ା ଉପରେ ଆବଶ୍ୟକ ପରିମାଣ ମେଦ୍ ଚକଟିବାକୁ ଆରମ୍ଭ କଲା ସୁମାନୀ । ମଝିରେ ମଝିରେ ସେ ପାଣି ଢାଳୁଛି । କୁମ୍ଭା ମହକ ଅନେକ ଦିନରୁ ତା' ନାକରେ ବାଜୁଛି । ଥରେ ସେ ଢଙ୍ଗର ପାହାଡ଼ ଡେଇଁ ଯାଇଛି ତେଣୁ ଆଉ ତାକୁ ଆଦର କରନାହିଁ । ରକ୍ତର ଛିଟା ମାଂସାସୀ ଦାଗ ସାମ୍ନାରେ ପଡ଼ୁଛି । ତଥାପି ପୁଅ ପାଇଁ ଏ ମହାପ୍ରସାଦ । କପଡ଼ାରେ ଗୁଣି ହୋଇ ବହଳିଆ ଚୋପ୍ରାଣି ପରି ହାଣ୍ଡିରେ କୁମ୍ଭା ଝର ଝର ଝରଣାରୁ ହ୍ରଦରେ ଜମା ହେଉଛି ହାଣ୍ଡି ତଳେ । ଭଉଁରୀ ମାରୁଛି ହାଣ୍ଡି ଭିତରେ ଯାହାର ଦୃଶ୍ୟ ଅଗୋଚର ରହିଯାଉଛି ପୋଖତ ଦର୍ଶକକୁ ତା'ର ଦାର୍ଶନିକ ତତ୍ତ୍ୱ ନିରୀକ୍ଷଣରୁ । ମେଦରୁ କୁମ୍ଭା ନିଗାଡ଼ ସାର ଅବଶେଷକୁ ଫିଙ୍ଗି ଦିଆଯାଇଛି । ହାଣ୍ଡିକୁ ଲାଗି ପଟିଆରେ ବସିଛନ୍ତି ନିମନ୍ତ୍ରିତ ବ୍ୟକ୍ତିମାନେ । ମଡ଼ା ବାଛରେ ଗୃହ ପାଖରେ ଯେପରି ବିଲୁଆ ସବୁ ବସି ଟଣାଓଟରା ହେଉଥାନ୍ତି । କୁମ୍ଭାର ମହକ

ସେମାନଙ୍କ ମନରେ ଏକ ଅଭିନବ ଉନ୍ମାଦନା ଭରି ଦେଉଛି । ସବୁକଥା ହସିଲ ମୁହଁରେ ଫୁଟୁଛି । ବିଷାଦର କାଳିମା ଏଠି ଆଦୌ ନାହିଁ । ଧଳା କୁମ୍ଭା ଉଲ୍ଲାସର ଶୁଭ୍ର ଆଲୋକ ବାଣ୍ଟି ଦେଉଛି । ଅନ୍ଧକାରଧର୍ମୀ ରାତ୍ରିର ନିର୍ମଳ ଆକାଶରେ ସୁଶୀତଳ ଜ୍ୟୋତ୍ସ୍ନାଭରା ପୂର୍ଣ୍ଣିମା ଚନ୍ଦ୍ର ଏହି କୁମ୍ଭା । ସୂର୍ଯ୍ୟଠାରୁ ଆଲୋକ ଗ୍ରହଣ କରି ଚନ୍ଦ୍ର ଜ୍ୟୋତ୍ସ୍ନା ବିକିରଣ କରେ ଆଉ ଗୃହିଳ ରାନ୍ଧୁରୁ ।

ଧାଡ଼ି ଧାଡ଼ି ବସିଛନ୍ତି ନିମନ୍ତ୍ରିତ ବ୍ୟକ୍ତିମାନେ । ଜଣକ ପରେ ଜଣେ ଉଲୁମ୍‌ରେ କୁମ୍ଭା ପିଇବାକୁ ଲାଗି ପଡ଼ିଛନ୍ତି । ସର୍ଗିପତ୍ରର ମଦ ପିଆଯିବା ସମୟରେ ସାଧାରଣତଃ ବ୍ୟବହୃତ ହୁଏ ଓ କ୍ଷେତ ବିଲ କାମରେ ଯାଇଥିବାବେଳେ ହିଡ଼ ଉପରେ ବସି ଗୃହୀପୁଅ ଆମ୍ବୁଲପାଣି ପିଇଥାଏ ପଳାସ ପତ୍ରର ଉଲୁମ୍‌ରେ । ଏ ସମୟରେ ପାନୀୟ ଯେପରି ପଡ଼ିଯିବ ନାହିଁ ସେପରି ଧରାଯାଏ । ଏ ପ୍ରକାର ଧରା ଯାଇଥିବା ସର୍ଗିପତ୍ରର ନାମ ଉଲୁମ୍ । ପତ୍ରର ଯେଉଁ ଗଛର ବି ହେଉ ତା'ର ନାମ ଉଲୁମ୍ । ଏ ପତ୍ର ଯେଉଁ ପତ୍ରର କି ମଣିଷର ଖାଦ୍ୟ ସାମଗ୍ରୀ ନୁହେଁ ସେ ଉଲୁମ୍ ରୂପରେ ମଣିଷ ମୁହଁରେ ଯେତେବେଳେ ଜିଭକୁ ଛୁଏଁ ସେତେବେଳେ କି ଅପୂର୍ବ ସ୍ୱାଦୁ ଅନୁଭୂତ ହୁଏ । ଏ ପ୍ରକାର ରୁଚିକର ଏତେ ପରିମାଣ ପାନୀୟ ବୋଧହୁଏ କୌଣସି ଅତ୍ୟାଧୁନିକ ପଦ୍ଧତିରେ ନିର୍ମିତ ପାନୀୟ ସମ୍ପୃକ୍ତି ଏକ ନୂତନ ପାତ୍ରରେ ବ୍ୟବହାର କଲେ ବି ଏ ପ୍ରକାର ରୁଚିପ୍ରଦ ଆନନ୍ଦ ପାଇପାରୁ ନ ଥିବ ।

ମଦନ ଆଉ ସୁମାନୀ କୁମ୍ଭା ପିଇବାକୁ ମନା କରୁଥିଲେ । କିନ୍ତୁ କେତେଜଣ ବନ୍ଧୁ, ସେମାନେ କୁମ୍ଭା ନ ପିଇଲେ ନିଜେ କୁମ୍ଭା ପିଇବେ ନାହିଁ ବୋଲି ନିଜର ନିଷ୍ପତ୍ତି ଜଣାଇ ଦେଲେ । ବନ୍ଧୁମାନେ ଯେ ନିଜ ଘରେ ଅଛନ୍ତି । ତାଙ୍କ ଦ୍ୱାରା ନିମନ୍ତ୍ରିତ ହୋଇଛନ୍ତି । ନିଜର ମଙ୍ଗଳ ନିମନ୍ତେ ତାଙ୍କର ସମାବେଶ । ଶ୍ରେଷ୍ଠ ଛୁଆର ଯେ ଏକୋଇଶା । ବନ୍ଧୁମାନଙ୍କ ମନରେ ଦୁଃଖ ହେଲେ ଶ୍ରେଷ୍ଠ ଛୁଆର ଉଜ୍ଜ୍ୱଳ ଚେହେରାରେ ଦୁଃଖ ପ୍ରତିଫଳିତ ହେବ—ମଦନ ସମ୍ମତ ହୋଇଛି ପିଇବାକୁ । ଯଦିଓ ଦୁହିଁଙ୍କର ଅଭ୍ୟାସ ନାହିଁ । ତେଣୁ ସେମାନେ ଅଳ୍ପ ପିଇବେ । ବନ୍ଧୁମାନେ ରାଜିହେଲେ । ପରସ୍ପର ଭିତରେ କଥା ହୋଇଗଲେ । ଯେତେବେଳେ ସେମାନେ ପିଅନ୍ତି ନାହିଁ ଅଳ୍ପ ପିଅନ୍ତୁ କିନ୍ତୁ ପିଇବା କଥା । ଯେଉଁମାନେ କିଛି ପିଇ ନେଇଲେଣି ସେମାନଙ୍କ ଭିତରୁ ଜଣେ କହିଲେ : ସେମାନେ କୁମ୍ଭା ପିଇବାକୁ ତ ଆସି ନାହାନ୍ତି । ସେମାନେ ଆସିଛନ୍ତି ସାମାଜିକ କାର୍ଯ୍ୟ ତୁଟାଇବାକୁ । ନିଶା ମାଡ଼ି

ଅସିଲଣି । ଇଚ୍ଛା ବଳବତୀ ହେବାକୁ ବସିଲାଣି । ଅନ୍ୟ କେତେଜଣ ଯାଙ୍କୁ ମାଙ୍କୁ ସମର୍ଥନ କରିଦେଲେ—ସୁମାନୀ ଅବାଳମ୍ବେ ତୁଳୁମ ଧରିଛୁ । କେବଳ କୁମ୍ଭା ପିଉଛି ସେ । ସୁମାନୀ ପରେ ପରେ ମଦନ ବି ତୁଳୁମେ ପିଉନେଲା । କୁମ୍ଭା ଏମାଏଁ ପିଇ ନ ଥିବା ବନ୍ଧୁମାନେ ସମସ୍ତଙ୍କୁ ଟିକଏ ପିଆଇ ଦେଇ ନିଜେ ପିଇବାକୁ ଲାଗିଗଲେ ।

ସମସ୍ତଙ୍କ ଭିତରେ ଆଲୋଚନା ଗ୍ଲଲିଛି ଶ୍ରେଷ୍ଠ ଝୁଆଟିର ନାମ କ'ଣ ରଖାଯିବ ??

ମଦନ ଯେଉଁ ଭଦ୍ରବ୍ୟକ୍ତିଙ୍କ ଘାସ ଦଏ ତାଙ୍କର ଗୋଟିଏ ଝିଅ ଆଉ ଗୋଟିଏ ପୁଅ । ନାଆଁ ଦୁଇଟି ସନ୍ଧ୍ୟା ଓ ଆଲୋକ । ସେ ଭଦ୍ରଲୋକଙ୍କ ମୁହଁରୁ ସନ୍ଧ୍ୟାଲୋକ ଶବ୍ଦଟି ମଦନ ଥରେ ଶୁଣିଥିଲା । ଏଇ ଯେ ଶିଶୁଟି ତା'ର ପୁଅ ବି ଝିଅ ବି । ସେମାନେ ସମସ୍ତେ ଘରେ ଗ୍ରହିଥିଲେ ଝିଅ; କିନ୍ତୁ ପୁଅ ପାଇଛନ୍ତି । ମଦନ ନିଜର ଇଚ୍ଛା ପ୍ରକାଶ କଲା ନାମଟି ହେବ ସନ୍ଧ୍ୟାଲୋକ । କାହାରିକୁ କିନ୍ତୁ ପସନ୍ଦ ହେଲାନାହିଁ । ସନ୍ଧ୍ୟାଲୋକ ପୁଣି ନାମ ? ଏ କାହାର ନାମ ?

ନୂଆ ଗିନାଟିରେ ପାଣି କିଛି ରହିଛି । ଅରୁଆ ଗ୍ଳଉଳ ପକା ଯାଇଛି । ଘିଣି କିଛି ଥୁଆ ହୋଇଛି । ସେ ଗିନାରେ ଜଣକ ପରେ ଜଣେ ଦୁଇଟି କରି ଘିଣି ପକାଇ ନାମକରଣ କ୍ରିୟା ଆରମ୍ଭ କଲେ । ଜାତିର ମୁଖିଆ ଆଗରେ ଗିନା ଓ ଘିଣି ଥୁଆ ହୋଇଛି । ଘିଣି ପାଣିରେ ଭାସିବ । ନାମ ଉଚ୍ଚାରଣ ମାତ୍ରେ ଏକତ୍ରିତ ହେବେ । ସେହି ନାମଟି ଶ୍ରେଷ୍ଠ ଝୁଆର ନାମ ହେବ । ଜଣକ ପରେ ଜଣେ ଆଗେଇ ଆସିଲେ । କୁମ୍ଭାର ମାଦକତା ସମସ୍ତଙ୍କୁ ଘାରି ଦେଇଛି । ମନ ପ୍ରଫୁଲ୍ଲ ଓ ଉନ୍ମାଦ ପରିପୂର୍ଣ୍ଣ ମୁଖରିତ ଥିଲା ।

ଶ୍ରେଷ୍ଠ ଝୁଆଟି ସୁମାନୀର କୋଳରେ ଦୋହଲୁଥିଲା । ସମସ୍ତେ ବାପାର କୋଳରେ ଶୋଇ ଯାଇଛି । ନିଶା ସାମାନ୍ୟ ଘୋଟିଛି ତାକୁ । ଶୋଇଯାଇ ସେ ଶାନ୍ତି ଅନୁଭବ କରିଛି ।

ନାମକରଣର ପାଳି ପଡ଼ିଲା ମଦନର ଫୁଫୁର । ବୃଦ୍ଧୀ ଫୁଫୁ ଝୁଆଟିର ଦୋହଲୁଥିବା ଦୃଶ୍ୟକୁ ଲକ୍ଷ୍ୟ କରିଛି । ଆସୀନ ସମସ୍ତ ବ୍ୟକ୍ତିଙ୍କର ଦୃଷ୍ଟି ସେ ଆଡ଼କୁ ଆକର୍ଷିତ ହେବାଭଳି ସେ କହିଛି କି ସୁନ୍ଦର ଦୋହଲୁଛି ତା' ମାଆ କୋଳରେ ? ସମସ୍ତେ ବଡ଼ ପୁଅ ବାପର ହେଇଥାଉ ଏ ଶ୍ରେଷ୍ଠ ଝୁଆଟି ମା' କୋଳରେ ମାଆର ହୋଇଥାଉ । ଏପରି କହିସାରି ସେ ଖୁସିରେ ହସି ଉଠିଛି ଓ

ହସ ସରୁଣୁ ନ ସରୁଣୁ ସେ କହି ଉଠିଲେ ଏ ପିଲାର ନାମ ଦହଲ୍ ରଖାଯାଉ । ପିଲାଟି ସବୁଦିନ ଝୁମ୍ପିରେ ଦୋହଲୁଥାଉ । ସମସ୍ତଙ୍କ ମନକୁ ନାମଟି ପାଇଲା । ଗିନାରେ ବଣି ଦୁଇଟି ଏକାଠି ମିଶି ଭାସିଲା ।

ସମ୍ପ୍ରଦାୟର ମୁଖ୍ୟ ଜଣେକ ଶ୍ରେଷ୍ଠ ଛୁଆଟି କାନରେ କହିଦେଲେ : ଆଜିଠାରୁ ଏ ଛୁଆର ନାମ ଦହଲ୍ ରଖାଗଲା । ନଡ଼ିଆ ଭଙ୍ଗାଗଲା । ନଡ଼ିଆ ତା'ର ଟାଣ ଶରୀର ଭିତରୁ ବାଢ଼ିଦେଲା ସୁରସ ପାନୀୟ ଆଉ ସୁମିଷ୍ଟ ଖାଦ୍ୟ ।

ଆଜିଠାରୁ ପରିବାରର ଚାରିଜଣଯାକ ପରିଚିତ ହେଲେ ମଦନ, ସୁମାନି, ସମରୁ ଆଉ ଦହଲୁ ନାମରେ ।

ସୁମାନି ଆଉ ମଦନର ସ୍ତ୍ରୀ ଲାଗିପଡ଼ିଲେ ରନ୍ଧାବଢ଼ାରେ । ମଦନର ବନ୍ଧୁ ଦୁହେଁ ପରିବା କାଟିବାରେ ଲାଗିଗଲେ । ପରିବା କହିଲେ ପାତଲଘଣ୍ଟା ଆଉ ସାରୁ ।

ଭାତ ହୋଇଗଲା । ଭାତ ତ ନ ଥିଲା, ଥିଲା କାଠିମରା ପଖାଳ ଭାତ । ଏମାନେ ସାଧାରଣତଃ ପଖାଳ ଖାଆନ୍ତି । ଭାତ ଖାଆନ୍ତି ନାହିଁ । ଥିର୍ ଏମାନଙ୍କୁ ଯେତିକି ତୃପ୍ତି ଦିଏ, ଭାତ ସେତିକି ତୃପ୍ତି ଦିଏନାହିଁ । ହେଲେ ଆଜି ସେମାନେ ଅଣ୍ଟୁଆ ଭାତ ଖାଇବେ । ପଖାଳ ନିମନ୍ତେ ବାସନର ଅଭାବରୁ । ପାତଲଘଣ୍ଟା ଆଉ ସାରୁର ଆମ୍ବିଳ । ଏଠି ଥିର୍‌ର କାମ କରିବ । ନୋହିଲେ ଶୁଖିଲା ଭାତ ତଣ୍ଟିରେ ଟଳିବ ନାହିଁ । ଏମାନେ ଥିର୍ ସବୁ ନଗାଡ଼ି ଫିଙ୍ଗି ଦେଇ ନାହାନ୍ତି । ଆପଣା ଭିତରେ ଅଳ୍ପ ଭାଗବଣ୍ଟା କରି ପିଲ୍ଲୁ ଦେଇଛନ୍ତି । ଗରମ ଥିର୍ ଏମାନଙ୍କର ଅଖିଆ ପେଟର କିଛି ପରିମାଣ ଭୋକ ଉଡ଼ାଇ ଦେଇଛି । ଏଥିରେ ଏମାନେ ଆନନ୍ଦିତ ନିଶ୍ଚୟ; କିନ୍ତୁ କୁମ୍ଭାର ନିଶା ଯେ ତେଜି ଉଠିଛି । ଶରୀରରେ ନୂଆ ଏକ ତେଜ ସ୍ଫୂର୍ତ୍ତି ଉଠିଛି । କେତେ ସେ କଥା, କେଉଁ କାଳର କଥା । ଅଜା ବଡ଼ୁ କାଳ ବେଳର କଥା ଏଠି ଆଲୋଚିତ ହୋଇ ଯାଇଛି । ପ୍ରଦୀପରେ ତେଲ ଢାଳିଲେ ଶୀଘ୍ର ଶୀଘ୍ର ପୋଡ଼ି ଯାଉଥିବା ସଳିତା ଯେତିକି ଆନନ୍ଦ ପାଏନାହିଁ ତା'ଠାରୁ ବେଶି ଆନନ୍ଦ ପାଏ ଅଗ୍ନିଶିଖା ।

ଖିଆପିଆ ସରୁ ସରୁ ସନ୍ଧ୍ୟା ହୋଇଗଲା । ମଦନ ଲଣ୍ଠନଟିକୁ ବାହାର କଲା । ଲଣ୍ଠନଟି କେଉଁ କାଳର ମଦନ ଜାଣେନାହିଁ । କିଛିଦିନ ତଳେ ସେ ତାକୁ ସୁନ୍ଦରଗଡ଼କୁ ନେଇ ରଙ୍ଗ ବୋଳାଇ ନୂଆକରି ଆଣିଛି । ଲଣ୍ଠନର ବ୍ୟବହାର ଯେ ଏମାନେ ଏତେ ବେଶି କରନ୍ତି ନାହିଁ । ଲଣ୍ଠନଟିରେ ଧୂଳି ଅଳନ୍ଧୁ ବସି ଯାଇଛି । ମଦନ ତାକୁ ପୋଛିଦେଲା ପୁଅପରି । ତେଲ ସାମାନ୍ୟ ଥିଲା ତା'

ପେଟରେ। ମଦନ ଲଣ୍ଠନଟି ହଲାଇ ଦେଇ ପରୀକ୍ଷା କରିନେଲା। ମାସେ ଦୁଇ ମାସରେ ଥରେ ଅଧେ ସେ ଲଣ୍ଠନରେ ସାମାନ୍ୟ ତେଲ ଭର୍ତ୍ତିକରି ଦେଉଥାଏ ଏବଂ ସଫା କରିଦିଏ। ଏଇ ମାସେ ଦେଢ଼ମାସ ହେବ ସେ ଲଣ୍ଠନରେ ତେଲ ଭର୍ତ୍ତିକରି ଦେଇଥିଲା। ତା'ପରେ ଆଜି ଲଣ୍ଠନକୁ ସେ ବାହାର କରିଛି। ଇତି ପୂର୍ବେ ସମରୁର ଜନ୍ମଦିନ ବ୍ୟବହାର ହୋଇଥିଲା। ଲଣ୍ଠନର ବ୍ୟବ-ହାର ସମରୁର ଜନ୍ମ ହେବା ଦିନଠାରୁ ପ୍ରାୟ ଦୁଇମାସ ଯାଏ ହୋଇଥିଲା। ଘରେ ସମରୁ ଥିଲା ପ୍ରଥମ ନବ ଜାତକ, ପ୍ରଥମ ସନ୍ତାନ। ସମରୁର ମୁହଁରେ କାନ୍ଦଣା ଭିତରେ ମଦନର ମା' ଶୁଣିଥିଲା ଆନନ୍ଦର ଚିତ୍କାର। ସମରୁ ତାଙ୍କର ଆଶାର ଦୀପରେ ଏକ ନୂଆ ଜାଳେଣି ଭରିଦେଲା। ସେ ଯେତିକି ଆଲୋକ ବିଚ୍ଛୁରିତ କରୁଥିଲା ତା'ଠାରୁ ଅଧିକ ଆଲୋକ ଭିତରେ ସମରୁକୁ ରଖିବାକୁ ଯତ୍ନ କରୁଥିଲା। ଦୁଇମାସ ପରେ ବି ଲଣ୍ଠନଟି ଜଳୁ, ଏହା ଥିଲା ମାଆର ଇଚ୍ଛା। କିନ୍ତୁ ଯେତେବେଳେ ପରିବାରଟି ସଂସାରରେ ଉଟଧିଇବାକୁ ଜାଳେଣିର ଅଭାବ ଅନୁଭବ କରିଛି ସେତେବେଳେ ଆଲୋକିତ କୋଠରୀରେ ଶୋଇବା ନିମନ୍ତେ ଜାଳେଣି ମିଳିବ କିପରି? ଜାଳେଣିକୁ ଚିହ୍ନିବାର କଳା ଏମାନଙ୍କୁ ବେଶ୍ ଭାବରେ ଜଣା। ଏ କଳା ସେମାନଙ୍କୁ କେହି ଶିଖାଇ ନାହିଁ। ସେମାନେ ଚିହ୍ନି ନେଇଛନ୍ତି ତାଙ୍କର ସ୍ୱୟଂ ନିୟନ୍ତ୍ରିତ ଜୀବନ୍ତ କଳ ଭିତରେ ଥିବା ବାହ୍ୟ ଅଂଶ ଗୁଡ଼ିକୁ। ସେମାନେ କଳଟିକୁ ଖୋଲି ପାରନ୍ତି ନାହିଁ କିମ୍ବା ଫେଲିବାର କଳା ଶିଖି ନାହାନ୍ତି। ଏ କଳା ଏମାନେ ନ ଶିଖନ୍ତୁ ଏହା କେତେକ ଚାହାନ୍ତି କିନ୍ତୁ ଏ କଳା ଏମାନେ ଶିଖି ପାରିବେ ନାହିଁ ବୋଲି ସେମାନେ ଧାରଣା କରି ପାରିବେ କେତେଦିନ ।

ଏମାନେ କଳ ଭିତରେ କେଉଁସବୁ ଅଂଶ ଅଛି ଜାଣିବାକୁ ଆଗ୍ରହ ପ୍ରକାଶ ଯେ କରିବେ ନାହିଁ କିମ୍ବା ଏ ପ୍ରକାର ଅଧିକାର ଯେ ଏମାନଙ୍କର ନାହିଁ, ସେମାନେ ପ୍ରକାଶ କରିବାକୁ ସ୍ୱୀକାର କରିବେ କିପରି। ଏ ପ୍ରକାର ଅଧିକାର ଏମାନଙ୍କ ଜ୍ଞାତ ସାରରେ କରିବା ଯେତେବେଳେ ଅସମ୍ଭବ ହେବ ସେମାନେ କ'ଣ ନିଜକୁ ଏମାନଙ୍କର ବନ୍ଧୁ ବୋଲି ପରିଚୟ ଦେଇ ପାରିବେ। ପାଶ୍ଚାତାପ ବି ଯଥେଷ୍ଟ ହେବନାହିଁ। ଅଜ୍ଞତା ଅବଶ୍ୟ ଏକମାତ୍ର ସହାୟ। କିନ୍ତୁ ସେମାନଙ୍କ ଭିତରୁ କେତେଜଣ ଅଜ୍ଞ। ଯେଉଁମାନେ ଶସ୍ତା କଥା କହି ସେମାନଙ୍କ ଜୀବନରେ କିଛି ପରିବର୍ତ୍ତନ ଆଣି ନାହାନ୍ତି, ସେମାନେ କିନ୍ତୁ ବିଶେଷ ସାବ୍ମୂକଂ। ସେମାନଙ୍କୁ ଏମାନେ ଅବଶ୍ୟ ଚିହ୍ନି ପାରନ୍ତି ନାହିଁ। ବରଂ ସେମାନଙ୍କୁ ବୁଦ୍ଧ, ଗାନ୍ଧୀ ଅପେକ୍ଷା ବିଶେଷ ଭକ୍ତି ଅର୍ପଣ କରିଥାନ୍ତି। କିନ୍ତୁ ଯେତେବେଳେ ସେମାନଙ୍କୁ ଚିହ୍ନନ୍ତି, ସେତେବେଳେ ମହାପୁରୁଷମାନଙ୍କୁ

ଏମାନେ ପ୍ରାର୍ଥନା କରନ୍ତି । ଏ ପ୍ରାର୍ଥନା ଅସମ୍ଭୋଷ ଦେଇପାରେ କିନ୍ତୁ ଅତୃପ୍ତ ମନ ଏକ ନୂତନ ଅଭିଯାନ ଯେ ସୃଷ୍ଟି କରିବ, ଏହା ନିଶ୍ଚିତ ।

ଏହା ପରେ ପରେ ମଦନର ମା' ପ୍ରାୟ ଆଠମାସ ବଞ୍ଚିଥିଲି । ସେ ଅନ୍ଧକାର ଭିତରେ ସମରୁକୁ ଦେଖି ନ ପାରି ଆଖପାଖର କେତେ ଯେ ଧର୍ମ ଲୋକଙ୍କ ସୁଖ ଶାନ୍ତ କଥା କହିଲେ । ମଦନ ଯୁବକ, ତଥାପି ସେ ଶାନ୍ତ ରହି ଯାଇଛି ।

ମଦନର ମାଆ ବୃଦ୍ଧା, ତଥାପି ସମରୁ ଆବିର୍ଭାବ ତାଙ୍କର ଦୀର୍ଘ ଶାନ୍ତ ଜୀବନରେ ଝଡ଼ର ସୂଚନା ଆଣି ଦେଇଥିଲି । ମଦନ କିନ୍ତୁ ସେ ଆହ୍ୱାନ ଗ୍ରହଣ କରି ନ ଥିଲି । ମଦନ ନିଜ ବାହୁକୁ ବିଶ୍ୱାସ କରେ । ସେ ଯେ କାଠ ଭାରିଆ, କାଠର ଅଭାବ ଜଙ୍ଗଲରେ ନାହିଁ । ସେମାନଙ୍କର ଭୋକ ନାହିଁ । ମଦନର ମତରେ ତା'ର ମାଆ ଗୃହରେ ଥିଲି ବଳାଯିତ ଜୀବନ ଏକ ଅସ୍ୱାଭାବିକ ଜୀବନ ।

ମଦନର ମା' ଅସୁସ୍ଥ ହେଲି । ସେ ସମରୁକୁ ନିଜ କୋଳରୁ ସବୁଦିନ ପାଇଁ ଛାଡ଼ିଗଲି । ତାଙ୍କର ଆହ୍ୱାନ ମଦନ ଜୀବଦ୍ଦଶାରେ ଗ୍ରହଣ କଲାନାହିଁ । କିନ୍ତୁ ସେ ଆହ୍ୱାନ ପ୍ରେତ ହୋଇ ଯେ ଘରେ ରହି ସମରୁକୁ ଦେଖୁନାହିଁ ତ ? ହୁଏତ ସେ ପ୍ରେତ ମାରାତ୍ମକ ନ ଥିବ । ସେ ମଣିଷଠାରୁ ପ୍ରତାରଣାପୂର୍ଣ୍ଣ ସହାନୁଭୂତିର ଆହ୍ୱାନ କିମ୍ବା ସମବେଦନାର ସୂଚନା ପାଇନାହିଁ ।

ତା'ପରେ ମଦନ ମା'ର ଶ୍ରାଦ୍ଧ ଦିନ ଏ ଲଣ୍ଠନଟିକୁ ଜାଳିଥିଲି । ଯିଏ ଜୀବନ ଦୀପ ଲିଭିଯିବା ପୂର୍ବରୁ ସମରୁର ଶରୀରରେ ପ୍ରତିଫଳିତ ହୋଇ ପାରୁଥିବା ଯେଉଁ ଆଲୋକ ଦେଖି ପାରି ନ ଥିଲି ଆଜି ସେଇ ଆଲୋକ ସମରୁକୁ ହସାଇ ଦେଇଛି । ସେଇ ଆଲୋକର ଶିଖାକୁ ସମରୁ ହାତରେ ଧରିବାକୁ ଚେଷ୍ଟା କରୁଛି । ସୁମାଣି କିନ୍ତୁ ସେଇ ଆଲୋକ ଆସୁଥିବା ଶିଖାକୁ ଛୁଇଁବାକୁ ସମରୁକୁ ବାରଣ କରୁଛି ଅଥଚ ସେଇ ଆଲୋକ ଶିଖାରେ ସମରୁର ମୁହଁରେ ଫୁଟି ଉଠୁଥିବା ହସ ଦେଖି ହସି ଉଠିଛି । ଏଇ ଆଲୋକ ଭିତରେ ମଦନ ଦେଖିଛି ମା'ର ନିଷ୍ପ୍ରଭ ଆଖି ଦୁଇଟି ଆଉ ଶୁଣିଛି ଗମ୍ଭୀର କଣ୍ଠରେ ଧର୍ମ ଲୋକଙ୍କର ସୁଖଶାନ୍ତ କଥା । ମଦନର ଦେହ ଶୀତେଇ ଉଠିଛି କିନ୍ତୁ ପରକ୍ଷଣରେ ମଦନର ଦେହରେ ସ୍ୱାଭାବିକତା ଫେରି ଆସିଛି । ଆଲୋକ ଭିତରେ ଦେଖା ଯାଇଛନ୍ତି ସମବେତ ବନ୍ଧୁବାନ୍ଧବ । ସେମାନଙ୍କ ମୁହଁରେ ସ୍ୱାଭାବିକ ଗୃହାଣୀ । ସେମାନଙ୍କ ମନରେ ପରିଚର୍ଯ୍ୟାର ଆହ୍ୱାନ । ଲଣ୍ଠନ ଭିତରେ ତେଜି ଉଠିଥିବା ଅଗ୍ନିଶିଖାର ତାପ ମଦନର ଶରୀରରୁ ଅବିଳମ୍ବେ ଶୀତ ତଡ଼ି ଦେଇଛି ଜଣାଯାଏ ।

ଆଜି ବି ଲଣ୍ଠନଟି ଯେତେବେଳେ ଜାଳିବାକୁ ଯାଉଛି ମଦନ, ସେ ମା'ଙ୍କୁ ମନେ କରୁଛି । ଆଜି ଜନ୍ମୁ ମଦନର ଯେତେ ବେଶି ଅଭାବ ନାହିଁ । ତଥାପି ସେ ଅଭ୍ୟାସ ନାହିଁ ତେଣୁ ଲଣ୍ଠନ ଜାଳିନାହିଁ । ଚମିନ କମ୍ପା ଉକ୍ତରରେ କାମ ଚଳି ଯାଉଛି । ତେଣୁ ମଦନର ଶରୀରରେ ଆଜି ମା'ର ସେ ଅଭ୍ୟାସ ଲୁଚ ଯାଇଛି । ମଦନ ଭଙ୍ଗା କାଚଟି ସଫା କରିଦେଲା । କାଚର କୌଣସି ଅଂଶ ଭାଙ୍ଗି ତଳେ ପଡ଼ିଯାଇ ନାହିଁ । ଭାଙ୍ଗି ଯାଇ କେତେଗୁଡ଼ିଏ ସ୍ପଷ୍ଟ ରେଖା କାଚରେ ଫୁଟି ପଡ଼ୁଛି ।

ଯେଉଁମାନଙ୍କର ଝିଅପିଆ ହୋଇ ନ ଥିଲା ଲଣ୍ଠନର ଆଲୋକରେ ସରିଗଲା । ଘରଦ୍ୱାର ହାଣ୍ଡି ପିଣ୍ଡା ପରିଷ୍କାର କରି ଦିଆଗଲା ।

ରାତି ଘନେଇ ଆସୁଛି । ଗାଁଆରୁ ଆସିଥିବା ବନ୍ଧୁମାନେ ନିଜ ନିଜ ଘରକୁ ଫେରି ଯାଇଛନ୍ତି । ଘରେଇ ଲୁଣିଆଁମାନେ ଶୋଇବା ବନ୍ଦୋବସ୍ତ କରୁଛନ୍ତି ।

ମଦନର ଘର ଦୁଇ କୋଠରି ବିଶିଷ୍ଟ । ଗୋଟିଏ କୋଠରି ଲମ୍ବରେ ଛଅ ହାତ, ଓସାରରେ ଆଠ ହାତ । ଅନ୍ୟ କୋଠରିଟି ଲମ୍ବରେ ଦଶ ହାତ ଆଉ ଓସାରରେ ଆଠ ହାତ । ପ୍ରଥମ କୋଠରିଟି ମଦନର ରନ୍ଧା ଘର । ଗୋଟିଏ କୋଣରେ ଗୋଟିଏ ହାଣ୍ଡି ଆଉ ଦୁଇଟି ମାଠିଆ । ତିନୋଟି ଅହେଁଇରେ ଠିଆ ହୋଇଛି । ଏଇ ପାତ୍ର ଗୁଡ଼ିକରେ ସୁମାମି ଘରର ବ୍ୟବହାର ନିମନ୍ତେ ଜଳ ଯାଇଥି ରଖେ । କୋଠରି ମଝିରେ ପୂର୍ବ କାନ୍ଥକୁ ଲାଗି ଦୁଇଟି ଚୁଲି । ଚୁଲିରୁ କିଛି ଦୂରରେ ଡାହାଣ ପାର୍ଶ୍ୱରେ କାନ୍ଥକୁ ଲାଗି ଦୁଇଟି ହାଣ୍ଡି, ଗୋଟିଏ କଡ଼ାଇ ଏବଂ ପୁରୁଣା ଅଥଚ ପରିଷ୍କାର ଗୋଟିଏ ଆଲୁମିନିୟମର କଡ଼େଇ । ଏସବୁ ଏମାନଙ୍କର ରନ୍ଧାବଢ଼ାରେ ବ୍ୟବହୃତ ହୁଏ । ଅନ୍ୟ କୋଠରିରେ ଦୁଇଟି ଖଟ । ଉତ୍ତର ଦିଗ କାନ୍ଥକୁ ଲାଗି ରସିରେ ଝୁଲୁଛି ଶ୍ରୀରଟି ପଟିଆ ଆଉ ଦୁଇଟା ଚିରା କନ୍ଥା । ପଶ୍ଚିମ ଦିଗ କାନ୍ଥକୁ ଲାଗି ସୁମାମିର କାଠ ବାକ୍ସ ଏବଂ ମଦନର ଟିଣ ବାକ୍ସ । ଗୁଡ଼ଲ ରଖିବା ପାଇଁ ତିନୋଟି ହାଣ୍ଡି ଉପୁର ତେଲ ଠେକି ଦୁଇଟା, ତିନିଟା ଶିଶି ଆଉ ଦୁଇଟା ବୋତଲ ଦକ୍ଷିଣ କାନ୍ଥରେ ଝୁଲୁଛି । ଶିଶିମାନଙ୍କରେ ଖାଇବା କମ୍ପା ମାଖିବା ତେଲ କିଛି ପରିମାଣରେ ଅଛି । ବୋତଲ ଦୁଇଟାରେ କିରୋସିନି ତେଲ ଅଛି । ଘର ଭିତରେ

ଉତ୍ତର କାନ୍ଥକୁ ଟିକିଏ ଗ୍ରଣ୍ଡ ବାଉଁଶ ଅଡ଼ାଟିଏ ଝୁଲୁଛି । ଅଡ଼ାରେ ଝୁଲୁଛି ମଦନ, ସୁମାନି, ସମରୁ ଓ ବଦନ୍‌ର କପଡ଼ାଲତା । ଅଡ଼ାର ଗୋଟିଏ ମୁଣ୍ଡରେ ଗୋଟିଏ ଡ଼ମ୍ବା ଏବଂ ପୁରୁଣା ବେଣ୍ଟରେ ନୂଆ କପଡ଼ା ଝଷ୍ଟା ଯାନ୍ଥିବା ଛତାଟିଏ ଝୁଲୁଛି । ଉତ୍ତର-ପଶ୍ଚିମ କୋଣରେ ଗୋଟିଏ ବୃଢ଼ଆ, ଗୋଟିଏ କୁଢ଼େଇ, ଗୋଟିଏ ଫାଉଡ଼ା ଏବଂ ଅଳ୍ପ ଲମ୍ବର ଲୁହାଟିଏ ରଖା ହୋଇଛି । ବାଆଁଟି ଉପରେ ବାଉଁଶରେ ଖଞ୍ଜି ଦିଆଯାଇଛି । ଦକ୍ଷିଣ-ପଶ୍ଚିମ କୋଣରେ ଗୋଟିଏ ତିନି ହାତ ଲମ୍ବର ଧନୁ ଓ ପାଞ୍ଚଟି ଶର । ବନ୍ଧା ଶର ଗୋଟିଏ, ଚଆଲ ଶର ଦଇଟା ଓ ଦଇଟା ଅପା ଶର । ପଶ୍ଚିମ କାନ୍ଥରେ ଗୋଟିଏ ବାଉଁଶ ନଳରେ ରଖା ହୋଇଛି । ତା' ପାଖକୁ ଫାଲ୍‌ସିଆଟାଏ ବି ଟଙ୍ଗା ହୋଇଛି । ଏ ସବୁକୁ ମଦନ ତା' ବାପାର ଚିହ୍ନ ରଖିଛି । ଉତ୍ତର-ପୂର୍ବ କୋଣରେ ଦିନୋଟି ବହେଙ୍ଗା ଏବଂ ସାରେଣିକା । ପାଖରେ ଦିଟଲ ଗେଣ୍ଡୁଆ । ଦକ୍ଷିଣ କାନ୍ଥକୁ ଲଗି ଠିକ୍ ମଝିରେ ଦର୍ପଣଟିଏ ଟଙ୍ଗା ହୋଇଛି ଏବଂ ଦର୍ପଣର ପଛକୁ ଲଗି ପାନିଆଟାଏ । ଠିକ୍ ଉତ୍ତର କାନ୍ଥରେ ଥିବା ଦ୍ୱାର ଦେଇ ଦୂରରୁ ବି ଦର୍ପଣଟା ଦେଖାଯାଏ । ଦକ୍ଷିଣ-ପୂର୍ବ କାନ୍ଥ କୋଣରେ ଘରର ବାସନ କୁସନ । କୋଠରୀର ମଝି ଅଂଶ ପୂରାପୂରି ଖାଲି ଏବଂ କାନ୍ଥ ପାର୍ଶ୍ୱ ଗୁଡ଼ିକ ଏମାନଙ୍କ ଭଣ୍ଡାର ।

ରନ୍ଧାଘରେ ସ୍ତ୍ରୀ ଲୋକମାନେ ଶୋଇଲେ । ଘରେ ଏବେ ସମସ୍ତ ଧରି କୁଏ ବା ନିଆଁ ଜଳିଥିବାରୁ ଘରଟି ଉଷୁମ ବୋଧ ହେଉଛି । ଗ୍ରେଟ ଗ୍ରେଟ ପିଲମାନେ ଶୋଇ ଗଲେଣି । ମଦନ ପୁଆଲ୍ ଯୋଗାଡ଼ କରୁଛି । ପୁଆଲ୍ ବିଛାଇ ଦେଇ ପଟିଆ ବିଛାଇ ଦେଲା । ପୁରୁଣା ଲୁଗାଗୁଡ଼ିକୁ ତା' ଉପରେ ବିଛାଇ ଦିଆଗଲା । ଏସବୁ ଏକ ଦଗରେ ସେମାନଙ୍କ ପିନ୍ଧାକନା ଏବଂ ଅନ୍ୟ ଦଗରେ ଶେଯ । ପରଦିନ ପିନ୍ଧିବାକୁ ଥିବା ଧୋତି ସେମାନେ ଘୋଡ଼େଇ ହୋଇ ଯାଆନ୍ତି । ଏସବୁ ଏମାନଙ୍କର କମ୍ବଳ । ଏମାନେ ବୋଧହୁଏ ନିଜେ ଶୀତତାପ ନିୟନ୍ତ୍ରିତ ।

ଘର ବାରଣ୍ଡାରେ ଗୋଟିଏ ଅଁଗର୍ କାଳି ଦିଆଗଲା । ଯିଏ ଶୀତ ଅନୁଭବ କରିବେ, କୁଏ ତାପିବେ । ପୁରୁଷ ଲୋକମାନେ ଏପର୍ଯ୍ୟନ୍ତ ଶୋଇ ନାହାନ୍ତି । ସେମାନେ ଅଁଗଚ୍ଚ ଶାଳରେ ବସି ଗୀତ ଗାଉଛନ୍ତି । ଗୀତରେ ଫୁଟି ଉଠୁଛି ସେମାନଙ୍କର ପୂର୍ବ ପୁରୁଷମାନଙ୍କର କୀର୍ତ୍ତି, ପ୍ରଶଂସା ଏବଂ ଉପଦେଶ । ଗୀତରେ ଫୁଟି ଉଠୁଛି ପୂର୍ବ ପୁରୁଷମାନଙ୍କର ଘଟିଯାଇଥିବା ବିଶେଷ ବିଶେଷ ଘଟଣାବଳୀ । ଏଇ ଗୀତ ଯିଏ ବୁଝେ ସେ ନିଜକୁ ଭୁଲିଯାଏ । ଏଇ ଗୀତ ସେମାନଙ୍କର ଇତିହାସ, ସଂସ୍କୃତି ଓ ସାହିତ୍ୟ । ଏଇ ଯେ ଏମାନଙ୍କର ଶ୍ରୁତି ।

ଶୀତ ଗାଇ ଗାତ ଏମୋଦନ ହାଲଆ ହେଲେଣି । କଦ ମାତ୍ର ଅମୃତ । ସମସ୍ତେ ଶୋଚ ମିବାକୁ ସ୍ଥିର କଲେ । ସକାଳ ହେଲ । ସମସ୍ତେ ନିଜ ନିଜକୁ ପ୍ରସ୍ତୁତ କଲେ । ବନ୍ଧୁବାନ୍ଧବମାନେ ନିଜ ନିଜ ଘରକୁ ଫେରି-ଯିବାକୁ ଉଦ୍ୟତ ହେଲେ । ସମସ୍ତେ ଛାଡ଼ି ନ ଥାଏ । ସୁମାନୀ ଘରେ ନାଗି ରହିଲ । ସମସ୍ତଙ୍କୁ ବିଦାୟ ଦେବାକୁ ସୁମାନୀ ରେଲଷ୍ଟେସନ ଗଲା । ଦାହାଲୁକୁ କାଖରେ ଧରି ବିଦାୟ କରି ଫେରି ଆସିଲା ।

ଘରକୁ ଫେରିବା ସମୟରେ ସୁମାନୀ ଭାବି ନେଇଛି ଦାହାଲୁକୁ ମଦନର କୋଳରେ ବସାଇ ଦେବ ଏବଂ ଘର କାମ ଜଲ୍ଦି ସାରିଦେବ । କିନ୍ତୁ ଦେଖିଲା କୋଳରେ ସମରୁ ବସିଛି ଏବଂ ଦୁହେଁ ଜୁଏ ଖେଳୁଛନ୍ତି । ସୁମାନୀ ମନର କଥା ନ ଫୁଟାଇ ନିଜେ ବି ଜୁଏ ଖେଳିବାରେ ଲାଗିଲା । ମଝିରେ ମଝିରେ ହାତକୁ ଜୁଏରେ କିଛି ସମୟ ଉଠେଇ ଦାହାଲୁର କାନ ଦୁଇଟାକୁ ସେକ ଦେଉଥାଏ ।

କିଛି ସମୟ ପରେ ମଦନ ନିଜ କାମରେ ବାହାରି ପଡ଼ିଛି । ଘରେ ତ ଆଉ କାମ ନାହିଁ । ଅନାଥାରେ ସେ ବସିବ କାହିଁକି ? ଏଇ ଘାସବିକା ଯେ କେଡ଼େ ଲଜ୍ଜାଜନକ ବ୍ୟବସାୟ ସେ ବୁଝି ପାରିଲାଣି । କାଠ ଖର ଖର ବୋହି ସେ ଯେତେବେଳେ ବଜାରକୁ ନେଇଛି କେବେ ବି ତ ଏତେ ଆନନ୍ଦ ଅନୁଭବ କରେନାହିଁ । ଆଶଙ୍କା ଏବଂ ଭୟ ତାକୁ ଯେତିକି ବ୍ୟତିବ୍ୟସ୍ତ କରେ ତା'ଠାରୁ ଅଧିକ ବ୍ୟତିବ୍ୟସ୍ତ କରେ କୌଣସିମତେ ଉପାର୍ଜନ କିଛି ବି ନ କଲେ ପରିବାରଟାକୁ ଅଭାବ ଗ୍ରାସ କରିଦେବ । କେତୋଟି ଜୀବନ ସେ ଅଭାବ ଭିତରେ କଲବଲ ହୋଇଯିବ । ନିଜର ରକ୍ତ ମାଂସର ପ୍ରତି ବଦଳରେ ଗଢ଼ି ଉଠିଥିବା ଜଣେ ମଣିଷ ସେହି ମଣିଷ କ୍ରମେ କ୍ରମେ ପଡ଼ି ଯାଉଥିବା ଦେଖି ସମ୍ଭାଳିବ ବା କିପରି । ଛଳଛଳ ଆଖିରେ ଜଳ, କ'ଣ ଏକ ତରଳ ପଦାର୍ଥ ନାହିଁ ଏହା କେହି କେବେ ଅବିଶ୍ୱାସ କରିବେ ? ସେମାନେ କ'ଣ କହିବେ ଏହା ଜଳ ନୁହେଁ । ସୂର୍ଯ୍ୟର ତାପରେ ଏଠି ମରୀଚିକା ସୃଷ୍ଟି ହୋଇଛି । ମଦନ ଅତୀତକୁ ସ୍ମରଣ କରି ଦେଖେ । ବାସ୍ତବିକ ବର୍ତ୍ତମାନ ସେ କେଡ଼େ ସୁଖୀ । ଅତୀତ ଯେ ଅତୀତ । ଅତୀତ ବର୍ତ୍ତମାନକୁ ଚହଲାଇ ଦିଏ । ଅତୀତ ଭିତରେ ନିଜକୁ ହଜାଇ ଦିଏନାହିଁ ।

କିନ୍ତୁ ଆସ୍ତେ ଆସ୍ତେ ମଦନ ଅତୀତକୁ ପସନ୍ଦ କରିବାକୁ ଇଚ୍ଛା ପ୍ରକାଶ କରିବାକୁ ସୂଚନା ଦେବାକୁ ବସିଲାଣି । ଘାସ ଆଉ ହାଡ଼ରେ ନାହିଁ, ପଡ଼ିଆରେ ବି ନାହିଁ । ପଦାରେ ବି ଏତେ ବେଶି ନାହିଁ । ପର୍ବତ ଖୋଲମାନଙ୍କରେ ଅଛି କେଉଁଠି କେମିତି । ଘାସ ସଂଗ୍ରହ କରିବା କଷ୍ଟକର ହୋଇ ଗଲାଣି । ସେ ଚିନ୍ତା

କରେ କ'ଣ କରିବ ? ଅଷାଢ଼ ମାସ ସେ ଆହୁରି ପାଞ୍ଚ ମାସ । ସେତେବେଳେ ଘାସ କଅଁଳିବ । ଏହି ପାଞ୍ଚ ମାସକୁ ତ ନିଜ ସଞ୍ଚିତ ଟଙ୍କା ଯଥେଷ୍ଟ ନୁହେଁ । ତା'ହେଲେ ସେ କରିବ କ'ଣ ? ସେ ମନେ ମନେ ଅନେକ କଥା ଭାବେ । ଯଦି ତାର ଜମିଖଣ୍ଡେ ହୋଇଥାନ୍ତା, ପାଣିର ସୁବିଧା ଥାନ୍ତା, ତା'ହେଲେ ସେ ଘାସ ଚାଷ କରନ୍ତା । ପଡ଼ିଆ ଜମି ବୋଲି ସେ କୋଳଥ, ରାଶି କମ୍ବା ଗୋଡ଼ାଧାନ ଇତ୍ୟାଦି ବୁଣନ୍ତା ନାହିଁ । ସେ ବୁଝି ନେଇଛି ଯେ ଘାସ ସହରମାନଙ୍କରେ ନିହାତି ଦରକାର ହୁଏ; କିନ୍ତୁ ଏ ଆବଶ୍ୟକତା ଓ ଏତେ ଆବଶ୍ୟକତା ପୂରଣ କରାଯାଇ ପାରୁନାହିଁ । ସହରରେ ତ ଚରାଭୂଇଁ ନାହିଁ, ସହରରେ ଯାହା ଗୋଚର ଜମି ଅଛି ସେଠି ଘାସ ତ ଘାସ, ଘାସର ଚେର ବି ମିଳେନାହିଁ । ସେଇ ଜମିରେ ବି ବଡ଼ ବଡ଼ ଘର କୋଠା ଠିଆ ହେବାରେ ଲଗିଛି । ସତେ ଯେପରି କି ସମାଧି ପୀଠ । ଏଠି ମଣିଷ ଜାତି ପଶୁ ଜାତିଟାକୁ ସମାଧି ଦେଇଦିଏ । ସହରରେ ଦୁଧର ଚାହିଦା ଅଛି । ଅଥଚ ଘାସ ଯୋଗାଣର ଯେ ଦରକାର ଏହା କେହି ଚାହେଁ-ନାହିଁ । ସହରତଳି ଅଞ୍ଚଳରେ ବି ନାହିଁ ।

ମଦନ ହିଡ଼କୁ ଚାହେଁ । ହିଡ଼ର ତଳେ ପିମ୍ପୁଡ଼ିର ବସା । ଧାଡ଼ି ଧାଡ଼ି ପିମ୍ପୁଡ଼ି କ୍ଷେତକୁ ବସାଯାଏଁ ଯାଆ ଆସ କରିବାରେ ଲାଗିଛନ୍ତି । ବସା ଅଭିମୁଖେ ଚାଲିଥିବା ପିମ୍ପୁଡ଼ିର ମୁହଁରେ ଖାଇବା ପାଇଁ ଦାନା । କ୍ଷେତର ନଡ଼ା ଭିତରେ ହଜି ଯାଇଥିବା ପିମ୍ପୁଡ଼ିର ଧାଡ଼ିରେ ବସା ଛାଡ଼ି ଦାନା ପାଇଁ ଚାଲିଥିବା ପିମ୍ପୁଡ଼ି ବି କର୍ମତତ୍ପର । ଫେରୁଛନ୍ତି ଯେତେ ଆସୁଛନ୍ତି ସେତେ ।

ମଦନ କ୍ଷେତକୁ ଚାହେଁ, କ୍ଷେତଟି ଶୂନଶାନ୍ । କେଉଁଠି କେମିତି ଗୋରୁ ପଲେ ତାଙ୍କର ଆହାର ଉଦରସ୍ଥ କରିବାରେ ଲାଗିଛନ୍ତି । କିନ୍ତୁ ଦୂରରେ ଚରୁଆ ପିଲାଟି ମନ ଖୁସିରେ ଖେଳୁଛି । ଗୋରୁଗାଈ କାଳେ ଶସ୍ୟ ନଷ୍ଟ କରିଦେବେ, ଏ ଚିନ୍ତା ନାହିଁ । ଗୋରୁଗାଈମାନେ ବି ଘୁରି ବୁଲି ଚରୁଛନ୍ତି । ଚରୁଆର ଧମକ ଶୁଣିବାକୁ ମିଳୁନାହିଁ ଅଥବା ଚରୁଆକୁ ଏକ ଅପରିଚିତ ସ୍ୱରର ଧମକ ବି ଶୁଣାଯାଇ ନାହିଁ ।

କ୍ଷେତଗୁଡ଼ିକର ମଝିରେ ଗଛଟିଏ । ଗଛଟି ମଦନ ପରି ଏକାକୀ । ପାଖରେ ବୁଦାଟିଏ ନାହିଁ ମଧ୍ୟ । ଗଛରେ କୌଣସି ପକ୍ଷୀର ବସା ନାହିଁ । କ୍ଷେତର ମଝିରେ ମଝିରେ କେତେ ଜାତିର ପକ୍ଷୀ ସେମାନଙ୍କର ଖାଦ୍ୟ ସଂଗ୍ରହ କରିବାରେ ଲାଗି ପଡ଼ିଛନ୍ତି । କେତୋଟି ପକ୍ଷୀ କିଛି ସମୟ ପରେ ଉଡ଼ିଯାଇ ଗଛରେ ବସି ଯାଇଛନ୍ତି ଓ କେତୋଟି ଗଛରୁ ଉଡ଼ିଯାଇ କ୍ଷେତରେ ବସୁଛନ୍ତି । ଖାଦ୍ୟର ଅଭାବ ନାହିଁ । ପକ୍ଷୀମାନେ ସହଜରେ ଖେଳୁଛନ୍ତି ।

ମଦନ ଦେଖେ ହୁଡ଼ର ଘାସପାଳ ଶୁଖି ହଳଦିଆ ହୋଇ ଯାଇଛି । ଘାସରେ ମଞ୍ଜି ଭରପୂର । କେଉଁ ଘାସରୁ ମଞ୍ଜି ଝଡ଼ିଗଲାଣି, କେଉଁ ଗଛରୁ କିଛି ଝଡ଼ିଛି ଆଉ କିଛି ଝଡ଼ିଯିବା ଅବସ୍ଥାରେ ଘାସରେ ଲାଗି ରହିଛି । କିଛି ଦୂରରେ ବଗମାନେ କ୍ଷେତରଂ ମଝିରେ ନିଜର ଖାଦ୍ୟ ସଂଗ୍ରହ କରିବାରେ ବ୍ୟସ୍ତ । ବଗଟିଏ ନିଜ ଥଣ୍ଟରେ ମାଛଟିଏ ଚିପି ଉପରକୁ ଚାହିଁଛି । ମଦନ ଦେଖୁଛି । ମୁଣ୍ଡ ପାତି ସେ ହୁଡ଼କୁ ଦେଖେ । ପବନର ଧୀର ଗତିରେ ଘାସର ଶୀର୍ଣ୍ଣ ଶରୀର ଦୋହଲି ଯାଏ । ମଞ୍ଜିପାଳ ଝଡ଼ିଯାଏ ମାଟି ଉପରେ । ମଦନକୁ କ୍ଷୀଣ ସ୍ୱରରେ ମଞ୍ଜି କହେ ମଦନର ସେବା କରିବାକୁ ମାଟିର ଶଯ୍ୟାରେ ସେ ବିଶ୍ରାମ ନେଉଛି । ଆବଶ୍ୟକ ବିଶ୍ରାମ ପରେ ସେ ମଦନର ସେବା ନିଶ୍ଚୟ କରିବ । ମଦନ ଘାସ ମଞ୍ଜିର କଥା ଶୁଣି ନିଜର ଇଚ୍ଛା ପ୍ରକାଶ କରି କହୁଛି ଯେପରି ସେ ହୃଦବୋଧ କରେ ଅଥଚ ତା'ର ଓଠ ଦୁଇଟି ରୁଦ୍ଧ ହୋଇଯାଏ । ଘାସ ମଞ୍ଜି ତା'ର ସେବା କରିବାକୁ ଯଦି ଏତେ ବ୍ୟଗ୍ର ଦୀର୍ଘ ବିଶ୍ରାମ ନେବ କାହିଁକି—ପଚାରେ କିନ୍ତୁ ଘାସର ମଞ୍ଜିଠାରୁ ଉତ୍ତର ପାଏନାହିଁ । ମଦନ ଆହୁରି ଥରେ ପଚାରିବାକୁ ଚେଷ୍ଟା କରେ; କିନ୍ତୁ ନିଜ ମନ ଭିତରେ କିଏ ତାକୁ ହିଁ ଉତ୍ତର ଦିଏ, ଘାସକୁ ଚୁପକର, ଆବଶ୍ୟକ ପରିମାଣ ଜଳ, ତାପ, ବାୟୁ ନ ପାଇଲେ ସେ ବିଶ୍ରାମ ନ ନେବ କାହିଁକି ? ମଞ୍ଜି ଯେ ସୁପ୍ତ, ନାଛି ତା'ର ଜାଗ୍ରତର ଏକ ରୂପ । ଯିଏ ତାକୁ ଜାଗ୍ରତ ଦେବ ତା' ପ୍ରତି ଅକୃତଜ୍ଞ ସେ ହେବ କାହିଁକି ।

ମଦନ ନୀରବ ହୋଇଯାଏ । ତା' ପାଖରେ ଜମି ନାହିଁ, ପାଣି ନାହିଁ, ଏ ଘାସର ବଜାର ବହୁତ ଦୂର ।

ମଦନ ପଡ଼ିଆରେ ବୁଲେ । ଶ୍ରେଷ୍ଠ ଶ୍ରେଷ୍ଠ ବୁଦାଗୁଡ଼ିକ ସାଥୀହରା ହୋଇ ପଡ଼ି ରହିଛନ୍ତି । ତା'ର ସାଥୀ ଆଉ ଘାସ ନାହିଁ । ଉଚ୍ଚ ଗଛର ଗୁଡ଼ିରେ କେଉଁଠି କେମିତି ପୁଞ୍ଜାଏ ଶାଗୁଆ ଘାସ । ମୁଠାଏ ହେବନାହିଁ । ମଦନ ହାଇମାରେ । ଦିବସରେ ବି ନିଦ ତା' ଶରୀରରେ ବସା ଖୋଜେ । ମଦନ ଗଛର ଗୁଡ଼ିରେ ବସିଯାଏ । ଅଣ୍ଟାରୁ ଭାଙ୍ଗ ଡବାଟି ବାହାର କରେ । ଫାଙ୍କେ ଭାଙ୍ଗ ଜିଭରେ ପକାଇ ଦିଏ । ହାତଟା ଧୋତିରେ ଝାଡ଼ିଦିଏ । ସତେଜ ହୋଇଉଠେ । ଏକ ପ୍ରକାର ମାଦକତା ସେ ବି ଯେପରି କି ଚାହେଁ ।

ଘାସର ଆବଶ୍ୟକତା ବଢ଼ି ଚାଲିଛି । କିଛିଦିନ ତଳେ ବେଶି ଡାକରା ଘାସ ପାଇଁ ସହରର ଗଳିରେ ଶୁଣାଯାଉ ନ ଥିଲା । ଏବେ କିନ୍ତୁ ଘାସ ହରିଆର କଥାରେ ଯାଚିଲା କଥା ଶୁଣା ଯାଉନାହିଁ । ସମସ୍ତେ ବୁଝି ନେଇଛନ୍ତି ଏବେ

ସହରରେ ଘାସ ସହଜରେ ମିଳେନାହିଁ । ଘାସ ସଂଗ୍ରହ କରିବା କେତେ ଯେ କଷ୍ଟକର ଏହାର ଗ୍ରାହକ ଜାଣେନାହିଁ । ଗ୍ରାହକ ଏତିକି ଜାଣେ ଏବେ ଆକାଶରେ ମେଘ ନାହିଁ । କି ମେଘ ଶୁଖି ଯାଇଥିବା ପାଣି ପଡ଼ିଆରେ ନାହିଁ କି କ୍ଷେତରେ ନାହିଁ । ଘାସ ବଢ଼ିବ କେମିତି । ସିଏ ନିଜ ଜୀବନରେ କ୍ଷେତ ବା ପଡ଼ିଆ ଦେଖିନାହିଁ କି ପଡ଼ିଆ କ୍ଷେତ କଥା ବୁଝିନାହିଁ ସେ ବି ଏହାର ରୂପକୁ କଳ୍ପନା କରି ଦେଖେ । ଏଥିରେ ସବୁଜିମା ନାହିଁ । କଳ୍ପନା ଅପ୍ରାକୃତିକ । ସିଏ ଥରେ ଏହି ସହର ବାହାରକୁ ସଡ଼କରେ ଯାଇଛି ଏଇ ସମୟରେ ସେ ଯେ ନିଶ୍ଚୟ ଦେଖିଛି ମାଟିର ଶୁଷ୍କ ଧୂସର ରୂପ । ଆଉ ଯେ ବର୍ଷାରେ ଥରେଅଧେ ବାହାରକୁ ଯାଇଛି ସେ ସେ ମାଟିର ରୂପକୁ ଚିହ୍ନି ନେଇଥିବ ନିଶ୍ଚୟ । ମାଟିର ଗୁଣକୁ ଜଣେ ଚିହ୍ନୁ ବା ନ ଚିହ୍ନୁ ଜଣେ ଯଦି ତା'ର ରୂପକୁ ଥରେ ଯଦି ଚିହ୍ନି ନେଇଛି ଥରେ ଭଲ ଭାବେ ନିରେଖି ଦେଖି ସେ ଯେ ଅପାସୋରା ରୂପର ଛଟା ତା' ସ୍ମୃତି ପଟଳରେ ବେଶ୍ ଛବିଳ । ରୂପ ହୃଦୟ ଭିତରକୁ ମନର ମାଧ୍ୟମରେ ଯେତେ ପଶେ ସେତେ ସୁନ୍ଦର ବୋଲି ପରିଚୟ ଦିଏ ।

ମଦନ ପର୍ବତର ଖୋଲକୁ ଯାଏ । ଦିନସାରା ଖଟେ । କ୍ଷୁଧାରେ ଥରି ଧରିଥାଏ । ଦ୍ୱିପହର ସମୟରେ କିଛି ସମୟ ବିଶ୍ରାମ ନିଏ । ଥିରି ପିଏ । ଥିରି ପିଇ ସାରିଲେ ତାକୁ ନିଶା ଲାଗେ । କିଏ ଯେ ସାଧାରଣ ଖାଦ୍ୟରେ ମାଦକତା ଅନୁଭବ କରେନାହିଁ ସେ ମଦ ପାଇଁ ଅର୍ଥ ବ୍ୟୟ କରେ । ପଙ୍ଖା ଲୋଡ଼େ । ସୁସଜ୍ଜିତ ପ୍ରକୋଷ୍ଠ ଲୋଡ଼େ । ସୁନ୍ଦର ପାତ୍ର ଖୋଜେ । ମନୋମୁଗ୍ଧକର ଆଲୋକ ଖୋଜେ । ପସନ୍ଦଯୋଗ୍ୟ ଆଳାପ ଖୋଜେ । ସୁଦୃଶ୍ୟ ଆଧାର ଖୋଜେ । ରୁଚିକର ଗନ୍ଧ ଖୋଜେ । ସମୟର ସାଥି ଖୋଜେ କିନ୍ତୁ ମଦନ ଏକାକୀ । କ୍ଳାନ୍ତ ନିଜ ଭୋକିଲା ଉଦରରେ ଥିରି ଲୋଡ଼େ । ପାଏ । ସେଥିରେ ସେ ମାଦକତା ଅନୁଭବ କରେ ।

ମଦନ ଦେଖେ ଏକ ଶୁଖିଲା ଗଛ । ଖୋଲ ଦେହରେ ଠିଆ ପଡ଼ିଛି । ଶୋଇ ଯାଇଛି ସବୁଦିନ ପାଇଁ । କୌଣସି ଏକ ଭୀଷଣ ବର୍ଷା । ବର୍ଷାର ଜଳ-ଧାରା ଭୂପୃଷ୍ଠର ଜଳସ୍ରୋତ ସଙ୍ଗେ ମିଶି ଗର୍ଜନ କରିଛି । ନଦୀରେ ବନ୍ୟା ସୃଷ୍ଟି କରିଛି ଏବଂ ପର୍ବତର ଖୋଲରେ ବି ଭୀଷଣ ଗର୍ଜନ କରିଛି । ଠିଆ ପଡ଼ିଛି ଖୋଲ ଭିତରେ ଏଇ ଗଛଟି । ମଦନର ହାତରେ ମୁଠାଏ ଘାସ । ବାମ ହାତରେ ଗୁପି ହୋଇ ଯାଇଛି । ଡାହାଣ ହାତରେ ଦା' । ଏଠି ଯେ ଏତିକି ଘାସ ଅଥଚ ଏ ଗଛରୁ ବାହାରିବ ପାଞ୍ଚଭାର କାଠ । ଅନ୍ୟ କେଉଁଠି ଘାସ ଅଛି ମଦନ ଖୋଜି-ବାକୁ ଭୁଲି ଯାଇଛି । ପରଖି ନେଇଛି ଗଛଟିକୁ । ଗଛଟିରୁ ଜୀବନ ଚାଲିଯାଇଛି ।

ପଥରରେ ସବୁଜିମା ନାହିଁ । ପଥର ସବୁ ଝଡ଼ି ଯାଇଛି । ଗଛର କାଣ୍ଡରେ ଆର୍ଦ୍ରତା ନାହିଁ । ବସନ୍ତର ପୂର୍ବାଭାସରେ ବି ପାଣି ଶୁଖି ଯାଇଛି । ସୂର୍ଯ୍ୟର କିରଣ ଏବେ ବି ଗାର୍ମିକ ମାନଙ୍କ ହେବାକୁ ଅନେକ ଦିନ ବାକି ଅଛି । ସୌର ତାପରେ ତାଡ଼ନା ଅଛି କେହି ବୁଝୁନାହାନ୍ତି । ଏବେ ବାଳାସର ଜଳ ଜୁଳ ଲଙ୍ଘନ କରି ବନ୍ଧ ବୃଦ୍ଧି ପାଉଛି ତଥାପି ଗଛଟି ପାଣି ଲୋଡ଼ୁନାହିଁ । ଯାହା ବି ଥିଲା, ତାକୁ ଯେତିକି ପାରୁଛି ସେତିକି ଗୁଡ଼ି ଯାଇଛି । ବକଲ ଫାଟି ପଡ଼ୁଛି । ସେ ବି ଗଛର ଗଣ୍ଡିକୁ ଛାଡ଼ି ଚାଲିଯିବାକୁ ବସିଛି । କେଉଁଠି ବଞ୍ଚାଇ ରଖିବାର ମମତା ଏ ବକଲର ଆଉ ନାହିଁ । ଗଣ୍ଡିର ବି ସେ ମମତା ଅପସରି ଯାଇଛି । ମାଟି ଭିତରେ ଚେର ନିଜର ରହିବା ନିମନ୍ତେ ଆବଶ୍ୟକ ସ୍ଥାନ ରଖି ନେଇଥିଲା । ଆଜି ସେ ବି ସେଇ ସ୍ଥାନ ଛାଡ଼ି ଦେବାକୁ ସ୍ଥିର କରି ନେଇଛି । ମାଟି ସେ ସ୍ଥାନ ଫେରାଇ ନେବାକୁ ସହଜରେ ରାଜି ହେଉନାହିଁ । ଏ ଚେର ପଥର ପାଲଟି ଯାଇ ବଞ୍ଚି ରହିବ କି ନିଜକୁ ଢଳାଢଳ କରି ସଢ଼ାଇ ଏକ ଶୂନ୍ୟ ସୃଷ୍ଟି କରିବ ସେ କଥା ଚିନ୍ତା କରୁଛି ।

ମଦନର ହାତରେ ଆଜି କୁରାଢ଼ି ନାହିଁ । ନ ହେଲେ ସେ ଏହାକୁ ଜାଳେଣି କାଠରେ ପରିଣତ କରିଥାନ୍ତା । ସେ ତ ଗଛକୁ ହାଣୁନାହିଁ ; ଜୀବନ୍ତ ଗଛଗୁଡ଼ିକ ପ୍ରତିବାଦ କରିବେ କାହିଁକି ? ପର୍ବତ ପ୍ରତିବାଦ କରିବ କାହିଁକି, ବନବାସୀମାନେ ଭୀତ ହେବେ କାହିଁକି ? ମଦନ ଗଛର ବକଲ ସବୁକୁ ବାହାର କଲା, ଘରକୁ ନେବ, ଘରକୁ ନେଲେ କାମରେ ଆସିବ । ବ୍ୟବସାୟ ପାଇଁ ଅଧିକ ଲୋଡ଼ା ତ ନିଜ ବ୍ୟବହାର ପାଇଁ କମ୍ ।

ମଦନ ସନ୍ଧ୍ୟାରେ ଘରକୁ ଫେରେ । ଭାରରେ ମାତ୍ର ପଚିଶ ବିଡ଼ା ଘାସ । ଏବେ ଘାସ ବିଡ଼ାକୁ ଦଶ ପଇସା । ଅବଶ୍ୟ ଦୁଇଟଙ୍କା ପଚିଶ ପଇସା ମିଳିଯିବ । କିନ୍ତୁ ଦିନସାରା ପରିଶ୍ରମ । ଯଦି ଆଜି ଏ ଅବସ୍ଥା, କାଲି ??

କାଲିପାଇଁ ମଦନ କ୍ଳାନ୍ତ ଅନୁଭବ କରେ । ଏକଥା ସୁମାନି ବୁଝେ । ମଦନର ମୁହଁରେ ସୁମାନି ମ୍ଳାନ ଦେଖେ । ମନରେ ଦୁଃଖ ଆସେ । ସେ ସେତେବେଳେ ଅନୁଭବ କରେ ନିଜକୁ ନିଜେ ସମତୁର ଖେଳରେ ବିରକ୍ତ ଆଉ ଦୋହଲୁର କାନ୍ଦରେ ବିଡ଼ମ୍ବନା ଅନୁଭବ କରେ । ନିଜକୁ ନିଜେ ଅନୁଭବ ମଦନ । ଗୋଡ଼ହାତ ଧୋଇବାକୁ ସୁମାନି ପାଣି ଦିଏ ।

ଅଗଣାର ପାଣି ହାଣ୍ଡିରୁ ସମରୁ ପାଣି ପକାଇ ଦେଇଛି । ମନକୁ ପୂରାପୂରି ଭାବରେ ନିଯୋଗ କରି ପାଣି ହାଣ୍ଡିରେ ନିଜ ହାତ ସଞ୍ଚାଳନ

କରିବାରେ ଲାଗିଛି । ସେ ଜାଣେନି ଏ ପାଣି କିଏ ଆଣିଛି, କାହିଁକି ଆଣିଛି, କାହାପାଇଁ ଆଣିଛି ଆଉ କେଉଁଠାରୁ ଆଣିଛି । ସେ ଜାଣେ ଏ ପାଣି ତାକୁ ଆନନ୍ଦ ଦିଏ । ଖେଳରେ ତା'ର ଆନନ୍ଦ । ଏଠି ସେ ଖେଳେ ଖୁସି ମନରେ । ସୁମାମି ନିଲୁ ବାରଣ କରେ । ସେ କେତେ କଷ୍ଟରେ ପାଣି ଆଣେ ସମରୁ କ'ଣ ଜାଣିଛି । ସେ ଯେଉଁଦିନ ଘର ବୋହୂ ପାଣି ଆଣିଦେବ ସେଦିନ ସେ ପାଣି ଢାଳିବ ଯେତେ ଇଚ୍ଛା ସେତେ । ସୁମାମିର ମୁହଁରେ ହସ ଫୁଟିଯାଏ । କ୍ଷଣିକ ପାଇଁ । ଆଖିରେ ନିଦ ଝଲସି ଉଠେ ସମରୁ ପାଣି ଘର ବୋହୂ ଘରକୁ ଘର ପାଇଁ ପାଣି ଆଣୁଛି ।

ଦୀହଲୁ ଖଟରେ ଲେଉଟି ଯାଉଛି । କାନ୍ଦୁଛି ସେ । ନିଜ ମା'କୁ ସେ ଲୋଡ଼ୁଛି । କାନ୍ଦରେ ମା' ଡାକ ପରିଷ୍କାର ଶୁଭୁଛି । ତଥାପି ସୁମାମି ଶୁଣିବି ଅଶୁଣା ରହିଯାଉଛି । ସେ ମଦନର ତୃପ୍ତ ଆଖିର ଚାହାଣି ଆଉ ଶାନ୍ତ ବକ୍ଷର ଶ୍ୱାସ ଦେଖିନାହିଁ ବୋଲି । ଏଠି ସମ୍ପର୍କର ଦ୍ୱନ୍ଦ୍ୱ । ମଦନ କ୍ଷୁଧାରେ ଆତୁର, ସୁମାମି ଜାଣିଛି । ମଦନ ନିଜେ ବି ଥିର୍ ଟିକିଏ ପାଇଁ ବ୍ୟଗ୍ର । ଅବଶ୍ୟ ସୁମାମିକୁ ସେ ପଦଟିଏ ବି କହିନାହିଁ । ସୁମାମି ବି ମଦନଠାରୁ ଶୁଣିବାଯାଏ ଅପେକ୍ଷା କରିନାହିଁ । ସେମାନେ ଦୁହେଁ ପୁରୁଣା ସାଥି । ମଦନର ଆଖି ତା'ର କଥା ସୁମାମି ଜାଣେ । ସୁମାମି ଏ ଆଖିର କଥା ସବୁଠାରୁ ବେଶି ବୁଝେ । ଏ ଆଖିରେ ସ୍ନେହ ଭରି ରହିଛି । ଏ ଆଖି ଦୁଇଟିରେ ସମରୁ ଓ ଦୀହଲୁ ଆସୀନ ।

ଦୀହଲୁ କାନ୍ଦ ଭିତରେ 'ବାବା' ବୋଲି ଚିତ୍କାର କରିଛି । ସୁମାମି ଚାଲି ଯାଉଛି ଦୀହଲୁ ପାଖକୁ । କାଖେଇ ନେଇଛି । ସେ ଯେ ଶୋକ ଅନୁଭବ କରୁଛି । ସୁମାମି ବୁଝୁଛି । ସମରୁକୁ ସ୍ତନରୁ ଆହାର ଲୋଡ଼ା ।

ମଦନ ସୁମାମିକୁ ଆଉ ଚାହିଁନାହିଁ । ସେ ଥିର୍ ପିଇବା ନିମନ୍ତେ ଆସୀନ ହୋଇ ଯାଇଛି । ତଥାପି ଆଖି ତା'ର ଆଉ ସୁମାମିକୁ ନିର୍ଦ୍ଦେଶ ଦେଉନାହିଁ । ମଦନ ସମରୁକୁ ଦେଖିବାରେ ଲାଗିଛି । ସମରୁ ଝଟିରେ ଝୁଲୁଛି । ମଦନକୁ ଦେଖି ହସି ଉଠିଛି । ମଦନର ମୁହଁରେ ବି ହସ । ସୁମାମି ମଦନକୁ ଥିର୍ ଆଣି ଦେଇଛି । ଦୀହଲୁ ଦୁଧ ପାଇଁ ସୁମାମିକୁ ବ୍ୟତିବ୍ୟସ୍ତ କରିଦେଲାଣି । ତଥାପି ସୁମାମି ସମ୍ଭାଳି ନେଉଛି । ମଦନ ଥିର୍ ପିଇବାକୁ ଆରମ୍ଭ କରିଦେଲାଣି । ସୁମାମି ତା'ର ବକ୍ଷ ଖୋଲି ଦେଇଛି । ଦୀହଲୁ ଦୁଧ ପିଉଛି । ସୁମାମି ମଦନର କିଛି ଦୂରରେ ବସିଛି ଆଉ ଥରେ ଥରେ ମଦନକୁ ଦେଖୁଛି । ସମରୁ ଖଟରେ ଖେଳିବାକୁ ଛାଡ଼ି ମଦନ ଆଡ଼କୁ ଅଗ୍ରସର ହେଉଛି ।

ସୁମାମିର ଖଟରେ ଦୀହଲୁ ଶୋଇ ଯାଇଛି । ମଦନର ଝଟରେ ସମରୁ ଶୋଇଛି । ମଦନ ଓ ସୁମାମିର ଆଖିରେ ବି ନିଦ । ସମସ୍ତର ବିଶେଷ ପରିସ୍ଥିତି

ସୃଷ୍ଟି ନ ହେଲେ ଅନ୍ୟ ଦିନ ଗାଢ଼ ନିଦରେ ଦୁହେଁ ଶୋଇ ଯାଇଥାନ୍ତି । ଏମାନଙ୍କ ନିମନ୍ତେ ରାତିଟା ବିଶେଷ ପରିସ୍ଥିତି ସୃଷ୍ଟି ନ ହେଲେ ବି ରାତିଟା ଶୋଇବା ପାଇଁ କେବଳ ସତେ ଯେପରି କି ସୃଷ୍ଟି ହୋଇଛି । ରାତିରେ ପର୍ବତ ଭିତରେ କେତେବେଳେ କେମିତି କୌଣସି ନା କୌଣସି ପକ୍ଷୀର ସ୍ୱର ଶୁଭେ । ଅତି ଗମ୍ଭୀର ଭାବରେ ଅଥଚ ପର୍ବତର ଅଭ୍ୟନ୍ତରରୁ । ମଦନର ଘର ପାଖର ଗଛମାନଙ୍କରେ ରାତିରେ ବେଳେବେଳେ ମଇନା ରାବେ । ପୁଣି ଶୋଇଯାଏ । ପର୍ବତ ଗୁମ୍ଫା ହେଟା ବାଘ, ବାର୍‌ହା, ଡୁଙ୍ଗୁବଗା ଆଦି ମଦନର ଘର ଆଡ଼କୁ ବୁଲି ଆସନ୍ତି । ମୟୂର ବି କେବେ କେବେ ନିଜର କେକା ଧ୍ୱନି ଦିଏ । କୁଦାତଳେ ଶୋଇ ଯାଇଥିବା କିଛି ଚଢ଼େଇଟି କୌଣସି ସରୀସୃପର ଗଳାରେ ସୃଷ୍ଟ ହୋଇଥିବା ଶବ୍ଦରେ ଭୂରୂନିନା ଉଡ଼ିଯାଇ ଅନ୍ୟ ଏକ କୁଦାତଳେ ଶୋଇଯାଏ । ତଥାପି ଏମାନେ ଗଭୀର ନିଦରେ ଶୋଇ ଯାଆନ୍ତି । କେବଳ ସ୍ୱପ୍ନ, ଯାହାକି ଜାଗ୍ରତ ପରେ ପ୍ରାୟ ସ୍ମୃତି ପଟଳକୁ ଆସେନାହିଁ । ଥରେ ଥରେ ଆସେ । ଏହା ଏମାନେ ଅନୁଭବ କରନ୍ତି । ଏମାନଙ୍କର ପଡ଼ୋଶୀମାନଙ୍କର ଜାଗରଣ କିନ୍ତୁ ଏମାନେ ଅନୁଭବ କରି ପାରନ୍ତି ନାହିଁ । ଏମାନେ ସେମାନଙ୍କ ଆଗମନକୁ ବରଂ ପ୍ରତ୍ୟାଖ୍ୟାନ କରନ୍ତି । ସେମାନେ ଯେପରି ଏମାନଙ୍କ ସୁଖ ନିଦ୍ରାରେ ବାଧା ଦେଇ ନ ପାରନ୍ତି ତା'ର ପ୍ରତିକାର କରନ୍ତି ।

ଯାହା ପର୍ବମାନଙ୍କରେ ଏମାନେ ଜାଗ୍ରତ ରହନ୍ତି । ଏ ଦିନମାନଙ୍କରେ ଅଭାବ ସତ୍ତ୍ୱେ ଏମାନଙ୍କୁ ଯେତେଦୂର ସମ୍ଭବ ଉନ୍ନତ ଖାଦ୍ୟ ସାମଗ୍ରୀ ତିଆରି କରିବାକୁ ପଡ଼େ । ସେମାନଙ୍କୁ ଏ ଖାଦ୍ୟ ନିମନ୍ତେ କିଛିଦିନ ଉପବାସ ରହିବାକୁ ପଡ଼େ, ସେଥିରେ ବି ସେମାନଙ୍କର ଅନୁଶୋଚନା ନାହିଁ । ସେଥିନିମନ୍ତେ କିଛିଦିନ ସେମାନଙ୍କ ଭିତରୁ କେତେଜଣ ସମାଜରେ ଲୋକର ବାହାରିଆ ଆଖିରେ ତଳେ ପଡ଼ିଯିବେ କାହିଁକି ?

ସାମାଜିକ କାର୍ଯ୍ୟରେ ବି ଏମାନେ ଯୋଗ ଦେଇ ଏତେବେଳେ ଶୋଇ ନ ଥାନ୍ତି । ସମାଜକୁ ନେଇ ଏମାନେ ମଣିଷ । ସେ ପରିବେଶରେ ଚେଇଁ ରହିବାରେ ଏମାନେ ଆନନ୍ଦ ଲାଭ କରନ୍ତି । ଏମାନେ ନିଜର କର୍ତ୍ତବ୍ୟ ପ୍ରତି ସମ୍ମାନ ଦେଇଛନ୍ତି ବୋଲି ନିଜକୁ ଗୌରବାନ୍ୱିତ ମନେ କରନ୍ତି । ଆଜି କିନ୍ତୁ ଯାହା ପର୍ବ ଅଥବା ସାମାଜିକ କାର୍ଯ୍ୟ ହେଉନାହିଁ । ନିକଟ ଭବିଷ୍ୟତରେ ବି ହେଉନାହିଁ । ଦୈବାତ୍ ଯଦି କିଛି ହୁଏ ତା'ର ଖବର ବି ମିଳିନାହିଁ ତଥାପି ମଦନ ଓ ସୁମାନି ଜାଗ୍ରତ ।

ମଦନ ସୁମାନିକୁ କହୁଛି ଡିବିରିଟା ଲିଭାଇ ଦେବାପାଇଁ । ଅଯଥାରେ ତେଲ ଖର୍ଚ୍ଚ ହେବ କାହିଁକି । ଆଲୋକ ଅଭାବରେ ମୁହଁର କଥା ତ ବନ୍ଦ ହେବ

ନାହିଁ । ଏଠି ତ ପରମ୍ପରାର ଅନ୍ତର୍ନିହିତ ବୃତ୍ତି ଚେତନାକୁ, ଶରୀରରେ ଫୁଟି ଉଠୁଥିବା ଭଙ୍ଗୀକୁ ଲକ୍ଷ୍ୟ କରିପାରିବାର ଯଥାର୍ଥତା ନାହିଁ । ଚିତ୍ରଶିଳ୍ପର ରୂପ ବେଶ୍ ପରିଷ୍କାର ଭାବରେ ପ୍ରତିଫଳିତ । ଏଇ ପ୍ରତିଫଳିତ ଛବିରେ ପରମ୍ପରାର ଭାବଭଙ୍ଗୀ ଠଉରାଇ ନେବା ଏ ବୃଦ୍ଧିଙ୍କ ମଧ୍ୟରେ ମହାନ । ଏମାନେ ଦୀପାଲୋକରେ, ଚନ୍ଦ୍ରାଲୋକରେ, ଚୁଲି ଅବା ଅଁତର ଆଲୋକରେ ଜୀବନରେ ଦହୁବାର ପରମ୍ପରାକୁ ବୁଝି ନେଇଛନ୍ତି ।

ସୁମାନୀ ଉଦ୍ବେଗଟା ଲୁଚାଇ ଦେଲା । ଘରର କବାଟ ବନ୍ଦ ଅଛି । କୋଠରୀରେ ଝରକା ନାହିଁ । ଘରର ଚଟାଣଟା ବେଶ୍ ଟାଣ । କାନ୍ଥଟା ମାଟିରେ ତିଆରି । କାନ୍ଥର କୌଣସିଠାରେ ସାଧାରଣ ଆଖିରେ ଛିଦ୍ର ଦେଖାଯାଉ ନାହିଁ । ଛାତରେ କିନ୍ତୁ ଛିଦ୍ର ଦେଖା ଯାଉଛି । ସ୍ଥାନୀୟ ଖପରରେ ଛାତ ତିଆରି ହୋଇଛି । ବୋଧହୁଏ ଅନ୍ଧକାର ଏଇସବୁ ଛିଦ୍ରରେ ପଶି ଆସିଲା । ଶୁଭ୍ର ଆଲୋକ ପରିବର୍ତ୍ତେ କଳା ଅନ୍ଧକାର ଶୂନ୍ୟସ୍ଥାନ ପୂରଣ କରୁଥିଲା ।

ମଦନ ଆରମ୍ଭ କରିଛି ତା' ମନକଥା, ନିଜର କଥା । ହୃଦୟ ଭିତରେ ସେକଥା ଆଉ ଲୁଚି ରହି ପାରିଲା ନାହିଁ । ମଦନର ସ୍ୱର ଅତ୍ୟନ୍ତ ହୃଦୟସ୍ପର୍ଶୀ । କଥାଗୁଡ଼ିକ ବେଶ୍ ସ୍ପଷ୍ଟ, ଗମ୍ଭୀର । କଥାର ପ୍ରାରମ୍ଭରେ ଏକ ଗଭୀର ନିଃଶ୍ୱାସ ଛାଡ଼ିଛି ମଦନ ।

ସୁମାନୀ ବି ଗଭୀର ପ୍ରଶ୍ୱାସଟାଏ ଟାଣିଛି । ତା' ପରେ କଡ଼ ଲେଉଟାଇ ନେଇଛି । ମଦନ ଆଡ଼କୁ ମୁହଁ କରିଛି । ମଦନର କଥା ଉପରେ ଉପରେ ଉଡ଼ି ନ ଯାଇ ତା'ର କାନରେ ଶୁଭିବ ବୋଧହୁଏ । ସେ ବୋଧହୁଏ ମଦନ ଆଡ଼କୁ ମୁହଁ କରେ ମଦନର କଥାର ତରଙ୍ଗ, ତା' ଶରୀରରେ ବାଧା ପାଇବ ବେଶି ପରିମାଣରେ । ଆଉ ସେ ସ୍ପଷ୍ଟ ଭାବରେ ଶୁଣି ପାରିବ । ହୁଏତ ସେକଥା ପ୍ରତିଧ୍ୱନି ବି ସୃଷ୍ଟି କରି ଦେଇପାରେ କିନ୍ତୁ ସେ ଧ୍ୱନି କଥା ଯେପରି ଅସ୍ପଷ୍ଟ ବର୍ଣ୍ଣକୁ ସ୍ପଷ୍ଟ କରିଦେବ । ସୁମାନୀ ମଦନ ଆଡ଼କୁ ମୁହଁ କରି ଅନୁଭବ କରିଛି ସେ ନିଖୁଣ ଭାବରେ । ମଦନକୁ ଅନ୍ଧକାର ଭିତରେ ବି ଦେଖିପାରୁଛି ସୁମାନୀ ।

ମଦନ କଥା ଆରମ୍ଭ କରିବା ପୂର୍ବରୁ ସୁମାନୀ ଆଡ଼କୁ ମୁହଁ କରିଛି । ମଦନ ପ୍ରସ୍ତୁତ ହୋଇଛି । ସୁମାନୀକୁ ଆଜି କିଛି କହିବ ବୋଲି । ଏହାର ସୂଚନା ସେ ତାକୁ ଦେଲାଣି । ଏଣୁ ସୁମାନୀ ବି ଏଯାଏଁ, ଶୋଇବା ପାଇଁ ବ୍ୟଗ୍ର ନୁହେଁ । ସୁମାନୀ ନିଜ ସୁପ୍ତାବସ୍ଥାରେ ଆଜିଯାଏଁ କେବେ ବି ମଦନ ଜାଗ୍ରତ ରହିବାକୁ ଇଚ୍ଛା ପ୍ରକାଶ କଲେ ଶୋଇଯାଏ ନାହିଁ । ଆଜି ସେ ଶୋଇପାରିବ କାହିଁକି ? ଉହୁଲୁକୁ ତ ରାତି ମାତ୍ର ପୂରିଗଲାଣି । ଏଣୁ ମଝିରେ ସାମାନ୍ୟ ବ୍ୟବଧାନରେ ଅନ୍ୟମନସ୍କ ହେବାର କୌଣସି କାରଣ ନାହିଁ ।

ସୁମାମୀ ଅନୁଭବ କରନ୍ତି ମଦନର କଥାରେ କେମିତି କି ମଦନ କ୍ଲାନ୍ତ ହୋଇ ଆଉ କୋଉଁ ସମ୍ଭାଳି ପାରୁନାହିଁ । ମଦନର ମନରେ ଅବସାଦ ପୂରି ଯାଇଛି । ଆଜିଯାଏଁ ମଦନ ଯେତେ କ୍ଲାନ୍ତ ଥିଲେ ବି ହର୍ଷୋତ୍‌ଫୁଲ୍ଲ ହୋଇଛି ସୁମାମୀର ସାନ୍ନିଧ ଲାଭ କରି । ମଦନର ମୁହଁରେ ହସ ଓ ବିଶ୍ୱାସ ଆଉ ଶ୍ୱାସରେ ଆଶ୍ୱସ୍ତି ଅନୁଭବ କରି ସୁମାମୀ ବି ଏକ ଗମ୍ଭୀର ଆନନ୍ଦରେ ମଗ୍ନ ହୋଇଯାଏ । ଗୋଟିଏ ନଦୀର ଦୁଇଟି ଶାଖା ଦୁଇଟି ଉପନଦୀ ଏଇ ମଦନ ଓ ସୁମାମୀ, ସୁମାମୀ ଓ ମଦନ ।

ତେବେ ଏବେ କି ଉପାୟ ଅବଲମ୍ବନ କରି ସମସ୍ତ ଅତିକ୍ରମ କରିବାକୁ ପଡ଼ିବ ?? ଜୀବନର ନୌକାଟି ଯେତେବେଳେ ଭସାଇ ଦିଆଯାଇଛି, ସମରୁ ଓ ଦହଲୁ ପରି ଦୁଇଜଣ ଯାତ୍ରୀ ଯେତେବେଳେ ଏହି ନୌକାରେ ଆଶ୍ରୟ ନେଇ ଜଳର ପ୍ରଖର ସ୍ରୋତକୁ ଅତିକ୍ରମ କରିବାକୁ ଆଗଭର ହୋଇଗଲେଣି ସେତେବେଳେ କାତ ଅଭାବରେ ତ ଡଙ୍ଗାକୁ ନଦୀର ପ୍ରଖର ସ୍ରୋତରେ ଛାଡ଼ି ଦିଆଯାଇ ପାରିବ ନାହିଁ । ମଙ୍ଗ ଧରିବାକୁ ପଡ଼ିବ । କାତ ବାହିବାକୁ ପଡ଼ିବ । ଏହି ନଦୀ ଯେ ଏବେ ବନ୍ଧୁର ଶଯ୍ୟାରେ ଗତି କରୁଛି । ସ୍ରୋତ ଯେ ପ୍ରଖର । ମଝିରେ ମଝିରେ ପୁଣି ଅନେକ ପଥର । ଏ ଡଙ୍ଗାଟା ଦୁନିଆଁର ଦୃଷ୍ଟିରେ ପଡ଼ିବା ଆଗରୁ ପଥର ଦେହରେ ବାଜି ଚୂରମାର୍ ହୋଇଯିବନି ତ ?? ଯାତ୍ରୀ ଦୁହେଁ ମୋଟେ ପହଁରି ଜାଣିନାହାନ୍ତି । ସଲିଳ ସମାଧି ହେବା ନିଶ୍ଚିତ । ସେ ସମାଧିର ଚିହ୍ନ କି ବର୍ଷେ ଖୋଜିଲେ ଆଉ ମିଳିବ ବା କାହିଁ ??

ସୁମାମୀର ଆଖିରେ ଆଁଶୁ । ସେ ଆଁଶୁ ଅବଶ୍ୟମ୍ଭାବୀ ଅଭାବ ଦେଖି ପାରୁଛି । ଏବେ ତା'ର ଆଖିରେ ମଦନ ଅଉ ଦେଖାଯାଉ ନାହିଁ । ଏଇ ଆଁଶୁ ସ୍ୱଚ୍ଛ ଓ ତରଳ ପଦାର୍ଥ ହେଲେ ବି ଏକ କଠିନ ଅସ୍ୱଚ୍ଛ ପଦାର୍ଥରେ ପରିଣତ ହୋଇ ଯାଇଛି । ମଦନକୁ ସେ ଦେଖି ପାରୁଥିଲା କିନ୍ତୁ ହଠାତ୍ ଏଇ କଠିନ ବସ୍ତୁର ପଛଆଡ଼େ ଯେମିତି କି ସେ ରହିଗଲା । ସୁମାମୀ କିନ୍ତୁ ଦେଖୁଛି ପରିଷ୍କାର ଭାବରେ ସମରୁ ଏବଂ ଦହଲୁକୁ । ସେମାନେ ଆଁଶୁର ସମ୍ମୁଖରେ ନିଜ ପାର୍ଶ୍ୱରେ ରହି ଯାଇଛନ୍ତି । ଆଁଶୁର ଭିତର ପାଖରେ ସମରୁ ଓ ଦହଲୁ ଆଉ ବାହାର ପାଖରେ ମଦନ । ଏ ଆଁଶୁକୁ ଯଦି କୌଣସି ପ୍ରକାରେ ହଟାଇ ଦିଆଯାଏ ତା' ହେଲେ ସୁମାମୀ ତିନିଜଣଯାକଙ୍କୁ ଦେଖି ପାରନ୍ତା । ଯଦିଓ ସମରୁ, ଦହଲୁ ଏବଂ ମଦନ ତିନିହେଁ ଅତି ନିକଟରେ ଅଛନ୍ତି କିନ୍ତୁ ସେମାନେ ସାନ୍ନିଧ ଲାଭ କରିପାରୁ ନାହାନ୍ତି—ଏଇ ଆଁଶୁ ଟିକକ ଲାଗି । ଏ ଆଁଶୁ ଅପସାରିତ ନ ହେଲେ ଶିଶୁ ଦୁଇଟି ନିଜର ଜନକର ମୁହଁକୁ ସତେ ଯେମିତି ଆଉ ଦେଖି ପାରିବେ ନାହିଁ ।

ସୁମାମୀର ଦୃଷ୍ଟିରେ । ସୁମାମୀ ମଦନକୁ କହୁଛିଛି : କାଠ ବିକିବାକୁ । କାଠର ଅଭାବ ତ ନାହିଁ । ଗ୍ରାହକର ଅଭାବ ନାହିଁ ।

ସୁମାମୀର ସାମାନ୍ୟ ନୀରବତା ପରେ ମଦନ ଯେ କଷ୍ଟସ୍ୱ ଉତ୍ତର ପାଇବ ଜାଣିଥାଏ । ଅଉ ସେଇଥିପାଇଁ ମଦନ ବି ନୀରବତା ଅବଲମ୍ବନ କରିଥାଏ । କାଠ କଥା ଶୁଣି ମଦନ ଅସ୍ପଷ୍ଟ ଭାବରେ କହିଲା : ଏଠି ତ ଅନ୍ୟ କିଛି ଉପାୟ ଦେଖାଯାଉ ନାହିଁ ।

ଦହିଲୁ କାଁ କରିବାକୁ ଆରମ୍ଭ କରିଛି । ଏକ ଗଭୀର କାନ୍ଦ ଆରମ୍ଭ କରିବାର ଉପକ୍ରମ ସୃଷ୍ଟି ହୋଇଛି । ସୁମାମୀ କଡ଼ ଲେଉଟାଇଲା । ଅଯଥାରେ ଦହିଲୁ କାନ୍ଦିବ କାହିଁକି । କାଠ ବିକା ତ ସେମାନଙ୍କର ପୁରୁଣା ଜୀବିକା । ଏଥିରେ ମଦନର ଅଭିଜ୍ଞତା ଯେ ଯଥେଷ୍ଟ ଅଛି । ମଦନକୁ ପ୍ରାୟ ବୁଝିବାକୁ ପଡ଼ିବ ନାହିଁ ।

ଦହିଲୁକୁ ଦୁଧ ପିଆଇ ଦେଇ ସୁମାମୀ ଶୁଆଇବାର ଉପକ୍ରମ କଲାନାହିଁ । ନିଜେ ବି କାଲେ ଶୋଇଯିବ । ଏଇ ଭାବନାରେ ନିଜର କାର୍ଯ୍ୟକ୍ରମ ସେ ଗଡ଼ାଇଁ ଦେଲା ।

ମଦନ ଅନେକ କିଛି କହିବାକୁ ସ୍ଥିର କରିଥିଲା । କାଠ ବିକାରେ କେତେ ଯେ କଷ୍ଟକଣା ସୁମାମୀକୁ ସେ ବୁଝାଇଥାନ୍ତା । ସୁମାମୀ ଅବଶ୍ୟ କାଠ ଜପ୍ତ ହେବା କଥା ଜାଣେ । ହେଲେ ସେ ଏତିକି ଜାଣେ ଯେ ଅନେକେ ଏଇଥିରେ ପେଟ ପୋଷୁଛନ୍ତି । ଯଦି ଏହା ଏକ କଷ୍ଟକର ବ୍ୟାପାର ତା' ହେଲେ ସେମାନେ ଛାଡ଼ୁନାହାନ୍ତି କାହିଁକି ? କାଠ ବିକିବା ଯଦି ସମ୍ପୂର୍ଣ୍ଣରୂପେ ବନ୍ଦ କରି ଦିଆଯାନ୍ତା, ତା' ହେଲେ ଭିନ୍ନ କଥା । ଯଦି ବି ଜପ୍ତ କରାଯିବ ତେବେ କେତେ ଦିନଯାଏଁ ଓ କେଉଁ ପାଖକୁ । ସହର ସାରା ଯଦି ଅବରୋଧ କରାଯାଏ, କେତେଜଣ କେତେ କାଳ ପର୍ଯ୍ୟନ୍ତ ? ଯେବେ କରନ୍ତି ଦିନେ ନା ଦିନେ ଏ ଅସୁବିଧା ଦୂର ହୋଇଯିବ ।

ମଦନ କିନ୍ତୁ ବୁଝାଇଥାନ୍ତା ସୁମାମୀକୁ ସହରର ଲୋକେ ଏବେ କପଟ ବିଜୁଳି ଚୁଲୀ, ପଥର କୋଇଲା ବ୍ୟବହୃତ ହେଉଥିବା ଚୁଲୀରେ କରୁଛନ୍ତି । କିରୋସିନିକୁ କପଟ ଇନ୍ଧନ କରାଯାଉଛି । କରତଗୁଣ୍ଡକୁ ନେଇ ଚୁଲୀରେ ବ୍ୟବହାର କରାଯାଉଛି ବି କହିଥାନ୍ତା । ଆଜକୁ ଦଶ ବର୍ଷ ହେବ ମଦନ ସହରକୁ ଯା'ଆସ କରୁଛି । ଅନେକ ପ୍ରକାର ବାବୁମାନଙ୍କୁ ଦେଖି ଆସିଛି । ଆଜି ସେ ଯେଉଁ ବସାଘରେ କାଠ ଦେଉଛି କାଲି ସେଇ ବସା ଘରେ ଦେଖୁଛି ଜଣେ ନୂଆ ବାବୁ ସେ କାଠକୁ କାଲେଣି ରୂପେ ବ୍ୟବହାର କରୁନାହାନ୍ତି । ସେ ପଥର କୋଇଲା

ବ୍ୟବହାର କରନ୍ତି । ଆଉ ଜଣେ ବାବୁ ବିପୁଳକୁ ଜାଳେଣି କରୁଛନ୍ତି । ଅନ୍ୟ ଜଣେ ବାବୁ କମ୍ ପରିମାଣ କାଠ ବ୍ୟବହାର କରନ୍ତି, ସେ କରଡ଼ିଗୁଣ୍ଡ ଯୋଗାଡ଼ କରନ୍ତି । ବସା ସେଇଟା, କାମ ବି ବାବୁଙ୍କର ସେଇଟା କିନ୍ତୁ ନିଜ ଚଳଣିରେ ଫେରଫାର । ସେହି ମଣିଷ ଯେତେବେଳେ କୌଣସି କାରଣରୁ କାଠକୁ ଜାଳେଣି ନ କରି ଚାଲି ଯାଉଛି, ମଦନ ଯେ କାଠ ନ ବିକିଲେ ଅନ୍ୟ ଗୋଟିଏ ରାସ୍ତା ପାଇବ ନାହିଁ କାହିଁକି ? ଅବଶ୍ୟ ଏ ଅଞ୍ଚଳରେ ସୁନ୍ଦରଗଡ଼ର ସମଗ୍ର ସହରରେ କାଠକୁ ଜାଳେଣି ନ କରି ହଠାତ୍ ଚଳିଯିବେ ଏକଥା ନୁହେଁ କିନ୍ତୁ ମଦନକୁ ବାଧେ ନିଜର ସମ୍ମାନ ନିଜର ଗୌରବ ଏବଂ ନିଜର କର୍ମଠ ଶରୀରକୁ ଉଦର ଭିତରେ ଭର୍ତ୍ତି କରିଦେଇ ଏକ ପତଳା ଆବରଣ ଭିତରେ ତା'ର ନିଜ ପରି ଏକ ମଣିଷକୁ ଦେଖାଇବା ନିମନ୍ତେ । ଏ ଆବରଣ ଏତେ ଦୁର୍ବଳ ଯେ ସାମାନ୍ୟ ଆଘାତରେ ବି ଫାଟିଯିବ । କୌଣସିମତେ ସେ ଫାଟକୁ ବନ୍ଦ ନ କଲେ ସେଇ ଫାଟ ଦେଇ ସବୁଯାକ ସମ୍ମାନ, ଗୌରବ ତଥା କର୍ମଠତା ବହିଯିବ । ନିଜେ ନେ ନିଜର ସେହି ଫାଟ ବନ୍ଦ କରିବା ନିହାତି କଷ୍ଟକର ।

ସୁମାନୀ ଶୋଇ ଗଲାଣି । ତାକୁ ବା ସେ କଣ ଉଠାଇବ କାହିଁକି ? ଏଇ ଅବସ୍ଥାରେ ସେ ମନରେ ତା'ର ଅଶାନ୍ତି ଭରିଦେବ କାହିଁକି ? ଏକ ନୂଆ ଉପାୟ ସେ ନିଜେ ବାହାର କରେ । ସୁମାନୀ ବା କାହିଁକି ପସନ୍ଦ ନ କରନ୍ତା । ସେତ ନୂଆ ଉପାୟ ଏଯାଏଁ ପାଇନାହିଁ ଅଥଚ ନୂତନତାର ଆଶାରେ ପୁରାତନ ଖିଆଲର ପୁନରାବୃତ୍ତି କରି ମତାନ୍ତର ସୃଷ୍ଟି ହେବ କାହିଁକି ? ଏହା ପରେ ବି ଯଦି ସେ ସୁମାନୀଠାରୁ ନୂତନତାର ଅଭାସ ପାଆନ୍ତା ତା' ହେଲେ ନୂତନ ଆନନ୍ଦରେ ନିଜ ପୁରୁଣା ଖିଆଲକୁ ସୁମାନୀର ସ୍ୱର ଭିତରେ ହଜାଇ ଦିଅନ୍ତା । ସେ ଆଶା ତ ନାହିଁ ।

ମଦନ କଡ଼ ଲେଉଟାଇଛି । ସମରୁକୁ ଟିକିଏ ଆଗକୁ ଖସରି ଯିବାକୁ କହୁଛି । ଗଭୀର ନିଦରେ ସମରୁ ସେକଥା ଶୁଣିଛି କି ନାହିଁ ମଦନ ଅବଶ୍ୟ ଅପେକ୍ଷା କରିନାହିଁ । ନିଜକୁ ବିଶେଷ ଅସୁବିଧା ନ ହେବା ଭଳି ସେ ନିଜେ ସମରକୁ ଖସେଇ ଦେଇଛି । ଅତି ନରମ ଗଳାରେ ସମରୁକୁ ଶୋଇ ଯିବାକୁ କହିଲା । ହୃଦୟର ସ୍ନେହଭରା ନିର୍ଦ୍ଦେଶରେ ସମରୁକୁ ଟିକିଏ ଥାପୁଡ଼ାଇ ଦେଲା ।

ମଦନର ମୁଣ୍ଡ ଭିତରେ ଦ୍ୱନ୍ଦ୍ୱର ଅବସାନ ହୋଇନାହିଁ । ସେ ଏକ ସମାଧାନ ଚାହୁଁଛି । ଜଙ୍ଗଲର ଗଛ କାଟି କାଠ ବିକିଲେ ସିନା ଜଙ୍ଗଲ ଧ୍ୱଂସ ହୋଇଯିବ । ଯେଉଁ ଗଛଗୁଡ଼ିକ କୌଣସି କାରଣରୁ ଶୁଖିଯାଇଛି ସେଗୁଡ଼ିକ ଅଯଥାରେ ନଷ୍ଟ ହୋଇଯିବ । ଏ ସବୁକୁ ଜଙ୍ଗଲରୁ ଅପସାରଣ ନ କଲେ ହୁଏତ କେବେ ଏ ଗଛ ନିଆଁର ଉଦ୍ଗମ ବନି ହୋଇ ଜଙ୍ଗଲର କ୍ଷତି କରିବ ଅଥବା କାହାରି କିଛି କ୍ଷତି ନ କଲେ ବି କାହାରି କୌଣସି କାମରେ ଆସିବ ନାହିଁ ।

ଯେଉଁ ଜୀବନର ଅବମାନ ଅନାବଶ୍ୟକତା, ଭିତରେ ଗଢ଼ିଯାଏ ସେ ଜୀବନର ଆଧାର ସମ୍ପୂର୍ଣ୍ଣ ଷଡ଼କାରକ । ଏ ପ୍ରକାର ଜୀବନ ପ୍ରତ୍ୟକ୍ଷ ଭାବରେ ଅନ୍ୟର କ୍ଷତି ନ କଲେ ବି ପରୋକ୍ଷ ଭାବରେ କରେ ନିଜକୁ ବଞ୍ଚାଇ ରଖିବାର ଅଯଥାର୍ଥତା ଭିତରେ । ସେ ତେବେ ପର୍ବତ ଖୋଲରେ ଟଳି ପଡ଼ିଥିବା ସେଇ ଶୃଖିଲ୍ ଗଛଟିରୁ କାଠ ହାଣିବ । ବିକିବ ଏବଂ ରୋଜଗାର କରିବ । ଅଡ଼ିଆ ଯୋଗାଡ଼ କରିବ ଓ ଏପରି ଶୃଖିଲ୍ ଗଛର ସେ ଅନୁସନ୍ଧାନ କରିବ ।

ମଦନର ମୁଣ୍ଡକୁ ଏବେ ହାଲ୍କା ଲାଗିଲା । ମୁହଁରେ ହସ ତ ଫୁଟିଲା ନାହିଁ ଫୁଟିଲା ହାଇ । ନିଦ ଏଇ ହାଇକୁ ଅପେକ୍ଷା କରିଥିଲା । ହାଇ ଚାଲିଗଲା ପରେ ସେ ପ୍ରବେଶ କରିବ ।

କୁକୁଡ଼ା ଡାକ ଦେଇନାହିଁ । ଗଭୀର ନିଦରେ ସେ ଶୋଇ ରହିଛି । ତା' ଡାକ ସେ ଦେବ ଠିକ୍ ସମୟରେ । ଆହାର ନିମନ୍ତେ ଅଭିଯାନ ଆରମ୍ଭ କରିବା ପୂର୍ବରୁ ସେ ତା'ର ଆହ୍ୱାନ ଜଣାଏ ନିଜର ଗୋଷ୍ଠୀକୁ ଆଉ ଶୁଣାଏ ନିଦ୍ରିତଙ୍କୁ ଆଗାମୀ ସମୟ ନିମନ୍ତେ ପ୍ରସ୍ତୁତିର ଶୁଭାରମ୍ଭ । ମଦନ ବି ଆଜିଯାଏ ଏହି ଆହ୍ୱାନରେ ନିଜର ନିତିଦିନିଆଁ ଜୀବନ ବିତାଇଦିଏ । ଆଜି କିନ୍ତୁ ସେ କୁକୁଡ଼ା ଡାକ ପୂର୍ବରୁ ଜାଗ୍ରତ । ତାକୁ ଏକ ନୂତନ ପଥ ତଥାପି ବାହାର କରିବାକୁ ପଡ଼ିବ । ଏ ଯାଏଁ ସେ ଯେଉଁ ଦୁଇଟି ପଥରେ ଚାଲିଛି ଏବଂ ଚାଲି ଆସୁଛି ସେଥିରେ ଅଗ୍ରସର ହେବା ସମ୍ଭବପର ହେଉନାହିଁ । ପ୍ରଥମ ପଥଟି ଅବଶ୍ୟ ତାହାକୁ ବର୍ତ୍ତମାନର ଲକ୍ଷ୍ୟରେ ପହଞ୍ଚାଇ ଦେଇପାରେ ତଥାପି ପଥରେ ନଈନାଳ, ପାହାଡ଼ ପର୍ବତ, ଶୋଷଣ ତାଡ଼ନା, ବିଧି ଅବିଧି ଭରି ରହିଛି । ଏ ସବୁକୁ ଅତିକ୍ରମ କରି ଆଗକୁ ବଢ଼ିବା ମଦନ ପକ୍ଷେ ସମ୍ଭବପର ହେଉ-ନାହିଁ । ଏସବୁକୁ ଏଡ଼ାଇ ହେବାର ଏକମାତ୍ର ପନ୍ଥା କାଠ ବିକିବା ଛାଡ଼ିଦେବା । ଯେଉଁ କାଠ ହେଲେ ବି ସହରରେ ନିଶ୍ଚୟ ଜପ୍ତ ହେବ । ଏ କାଠ କେଉଁ ଗଛର ସେମାନେ ତ ଜାଣିନାହାନ୍ତି । ଏଥିପାଇଁ ସେ ଅନୁମତି ନିଅନ୍ତା, ଅନୁମତି ପତ୍ର ପାଖରେ ରଖନ୍ତା । ତାହେଲେ ହୁଏତ ସେ ଅସୁବିଧାରେ ପଡ଼ନ୍ତା ନାହିଁ । ଏ କାମ କରିବାକୁ ସେ ସମ୍ବଳ ପାଇବ ନାହିଁ ତା' ନୁହେଁ, କିନ୍ତୁ ଏଇ ନିମନ୍ତେ ସମୟ ପାଇବା କଷ୍ଟକର । କେଉଁଦିନ ଅନୁମତି ପତ୍ର ଦେଉଥିବା ବାବୁ ନ ଥିବେ ତ କେଉଁଦିନ ଅନ୍ୟ କାମରେ ଲାଗିଥିବେ । ଏଥି ନିମନ୍ତେ ନିର୍ଦ୍ଦିଷ୍ଟ ଦିନ ପାଇଁ ତାଙ୍କ ପାଖରେ ପହଞ୍ଚିଲେ ହୁଏତ ଆଗାମୀ ଦିନଗୁଡ଼ିକ ନିମନ୍ତେ, ପରବର୍ତ୍ତୀ ଦିନଯାଏଁ କାଠ ନେବାକୁ ଅନୁମତି ମିଳିଯିବ । ବାବୁ ଜଣକ ଅନୁମତି ପତ୍ର ଦେବା ତାଙ୍କର ଯଦି ନୈତିକ କର୍ତ୍ତବ୍ୟ ବୋଲି ବିବେଚନା କରନ୍ତି । ପୁଣି ସେ

ଯେଉଁ ଅଞ୍ଚଳରୁ ଯେଉଁ କମ୍ପାନୀ କାଠ ସଂଗ୍ରହ କରିବାକୁ ଅନୁମତି ଦେବେ ସେ ପ୍ରକାରର କାଠ ସଂଗ୍ରହର ମିଳିବା କଥା, ନଚେତ୍ ଅନୁମତି ପତ୍ର ଥାଇ ମୁଦ୍ଧା ଅନୀତି ଭିତରକୁ ନିଜକୁ ଠେଲି ଦେବାକୁ ପଡ଼ିବ । ଯଦି ବାବୁ ଜଣକେ ଏକ ଭିନ୍ନ ଧରଣର ହୋଇଥାନ୍ତି ତା'ହେଲେ ତାଙ୍କୁ ସେବା କରିବାକୁ ପଡ଼ିବ । ପୂଜା ମଧ୍ୟ କରିବାକୁ ପଡ଼ିବ । ମୌନ ହୋଇ ନିଜକୁ ଗୌଣ ମନେକରି ସ୍ତୁତି କରିବାକୁ ବି ପଡ଼ିବ । ହୁଏତ ବରଖାସ୍ତ ହୋଇପାରେ କିମ୍ବା ସେ ବରରେ ଜଣେ ନିଜକୁ ବଳବାନ୍ ମନେ କଲେ ବି ଘାତ ଥିବ ଏବଂ ମୃତ୍ୟୁ ଭେଦ ବି ଥାଇପାରେ । ଏ ସବୁକୁ ଦୂର କରିବାକୁ ତାଙ୍କୁ ତୁଷ୍ଟ କରିବାକୁ ସେବାର ପୁନରାବୃତ୍ତି କରିବାକୁ ପଡ଼ୁଥିବ ।

ମଦନ ସହର ଯାଏ । ଅନେକ ପ୍ରକାରର ଶାସକ ଦେଖିଛି । ଝରକାଠ ନିୟନ୍ତ୍ରିତ ନୀତିରେ ନେବାକୁ ପଡ଼ିବ ବୋଲି ଆଜି ସିଏ ତାଙ୍କୁ କହୁଛି, ସେ ଜଣଙ୍କୁ ହିଁ ସେ କ ଣେ । ଏକଥା ନୁହେଁ—ସେ ଘର ଘର କାଠ ଦେଉଛି । ସେ ଜାଣେ ଏଠି କ'ଣ ହେଉଛି । କାହିଁକି ହେଉଛି ଅବଶ୍ୟ ସେ ଜାଣେନାହିଁ କିନ୍ତୁ ଶୁଣେ ନାନା ପ୍ରକାର । ମଦନ ଖୁବ୍ ଚେଷ୍ଟା କରେ ବୁଝିବାକୁ କିନ୍ତୁ ବୁଝି ପାରେନାହିଁ । ଏତେ ଦିନର ଅନୁଭୂତିରୁ ସେ ବୁଝିଛି ଜଣେ ଲୋକ ଶାସକ ଆଉ ଜଣେ ଶାସିତ । ଶାସନ ଏ ଉଭୟଙ୍କ ମଧ୍ୟରେ ସମ୍ବନ୍ଧ । ଏହା ଶାସନର ହାତରେ ନାହିଁ କି ଶାସିତର ହାତେ ନାହିଁ । ଏ ଏକ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଜିନିଷ । ଘଣ୍ଟାର ଦୋଳକ ଏହି ଶାସନ, ନିର୍ଦ୍ଦିଷ୍ଟ ସ୍ଥାନରୁ ସେ ଶାସକ ଆଡ଼କୁ ଯେତିକି ସମୟରେ ଯେତେ ଦୂର ଯାଏ, ଶାସିତ ଆଡ଼କୁ ସେତିକି ସମୟରେ ସେତେ ଦୂର ଯାଏ । ଏଥିରେ ବ୍ୟତିକ୍ରମ ନାହିଁ । କିନ୍ତୁ କେଉଁଠି ଶାସକ ଶାସନକୁ ପଥଚ୍ୟୁତ କରି ନିଜର ସ୍ୱାର୍ଥ ହାସଲ କରିବାରେ ଲାଗିଛି ତ କେଉଁଠି ଶାସିତକୁ ପ୍ରତିରୋଧ କରି । ସେମାନେ କିନ୍ତୁ ବୁଝନ୍ତି ନାହିଁ ଯେ ଏଥିରେ ସମୟର ସଠିକତା ଆସେନାହିଁ, ବରଂ ଉଭୟେ ଅନ୍ୟମାନଙ୍କ ଦ୍ୱାରା ଉପେକ୍ଷିତ ।

ମଦନର ଆଖିରେ ଝଲକେ ଭଟେ ଭାରର ଦୁଇ ପାଖରେ ଥିବା ଘାସ ଅଥବା କାଠ । ଦୁଇ ପାଖର ଓଜନ ତ ସମାନ ନ ଥିଲେ ବାହୁଙ୍ଗାର କେନ୍ଦ୍ର କାନ୍ଧ ଉପରେ ନ ରହି ରହେ କାନ୍ଧର ଆଗକୁ ଅଥବା ପଛକୁ । ଏ ଭାରର ଗୋଟିଏ ପାର୍ଶ୍ୱରେ ସେ ଦେଖେ ଶାସକକୁ ଏବଂ ଅପର ପାର୍ଶ୍ୱରେ ଦେଖେ ଶାସିତକୁ । ସେ ସମତା ରକ୍ଷାକରି ଆଜିଯାଏ ଘାସ ଅବା କାଠ ବହି ଆସୁଛି । ମଦନର ମନେପଡ଼େ କିଛିଦିନ ତଳେ ଧାନ ଅମଳ ହେବାକୁ, ଅଣା ଯାଇଥିବା ଶଗଡ଼ ଗାଡ଼ି ଚିନିଟା । ଗୋଟିକରେ କଟାଧାନ ଗଛ ଲଦା ହୋଇଥାଏ ଆଗକୁ

ବେଶି । ବଳଦ ଦୁଇଟିର କାନ୍ଧ ମୁଣ୍ଡ ଦୁଇଟିକୁ ତଳ କରି ଦେଉଥାଏ । ଅଥଚ ଧାନ କମ୍ ବୋଝେଇ ହୋଇଥାଏ । ଅନ୍ୟ ଏକ ଶଗଡ଼ରେ ବି କଟାଧାନ ଗଛ ଏତେ ବେଶି ଲଦା ହୋଇ ନ ଥାଏ । ଧାନଗୁଡ଼ିକ ଲଦା ହୋଇଥାଏ ପଛ-ଆଡ଼େ ବେଶି । ବଳଦ ଦୁଇଟିର ବେକଗୁଡ଼ିକ ଟାଣି ହୋଇଯାଇଛି ଯୋଗୁ ଯାଇଥିବା ଯୁଆଳରେ । ବଳଦ ଦୁଇଟିର ବେକ ମୁଣ୍ଡଗୁଡ଼ିକୁ ଉପର କରାଇ ଦେଇଥାଏ । ଅନ୍ୟ ଏକ ଶଗଡ଼ ବୋଝ ଆଗକୁ ଯେତେ ପଛକୁ ସେତେ । ବଳଦ ଦୁଇଟି ଫୁର୍ତ୍ତିରେ ଆଗକୁ ବଢ଼ି ଚାଲିଛନ୍ତି । କଟା ଧାନ ଗଛର ପରିମାଣ ଏ ଶଗଡ଼ରେ ଅନ୍ୟ ଦୁଇଟି ତୁଳନାରେ ବେଶି ।

ପୁଣି ଘର କାଠ ନିଜକୁ ଅଗ୍ରସର କରାଇବ ମଦନ ଏ ଆଶା ମନରେ ବାନ୍ଧି ପାରେନାହିଁ । ଅନେକ ପରୀକ୍ଷା ନିରୀକ୍ଷା ପରେ ଯାହା ଥରେ ପରିତ୍ୟାଗ କରାଯାଇଛି, ତାକୁ ପୁଣି ସେ ଗ୍ରହଣ କରିବ କିପରି । ଗ୍ରହଣ କରି ବି ହୁଏ ଆବଶ୍ୟକ ସଂସ୍କାର ପରେ କେତେକ ଗ୍ରହଣ କଲେ କିନ୍ତୁ ସଂସ୍କାର ଭିତରେ ନୁହେଁ ।

କୁକୁଡ଼ା ଡାକ ପକାଉଛି । କୁକୁଡ଼ା ଡକା ରାତି । କିଛି ସମୟ ଗଲେ ନିକଟରେ ଥିବା ଆମ୍ବ ଗଛଟିରେ କାଉ କାକଳି ସୃଷ୍ଟି କରିବ । ଅଶ୍ୱତ୍ଥ ଗଛରେ ବଗ ମୁକ୍ତ ବାୟୁର କୋଳରେ ଦୋହଲିବାକୁ ଚାଲିକୁ ଛାଡ଼ିଦେବ । ସାହାଜ ଗଛରେ ମଇନାମାନେ କୋଳାହଳ ସୃଷ୍ଟି କରି ବିସ୍ତୃତ ପଡ଼ିଆର ବକ୍ଷକୁ ଉଡ଼ି-ଯିବେ । ଜାଗ୍ରତର ପ୍ରଥମ ସୋପାନରେ ଏମାନଙ୍କର ମୁହଁରେ ଆନନ୍ଦର ଧ୍ୱନି ଫୁଟି ଉଠିବ । ଦଳ ଦଳ ହୋଇ ସେମାନେ ଉଡ଼ିଯିବେ ଖାଦ୍ୟ ଅନ୍ୱେଷଣରେ । ମଦନର ମୁଣ୍ଡ ବୋଝ ହୋଇଯାଏ । ତୁଣ୍ଡ ଗୁପି ହୋଇଯାଏ । ଆଖି ବୁଜି ହୋଇଯାଏ କିନ୍ତୁ ଶୁଣାଯାଏ ପକ୍ଷୀର କାକଳି । ସେ ତେ ଜାଗ୍ରତ । ଆଖିର ପତାଗୁଡ଼ିକର ମିଳନ ସେ ଜଣାକୁ ନିଦ ଦେଇଦେବ କିପରି । ଶରୀରର ଅନ୍ୟାନ୍ୟ ଅଙ୍ଗଗୁଡ଼ିକ ଉନ୍ମିଳିତ ।

ମଦନ ଦେଖୁଁ ଦେଖୁଁ ଦେଖେ ଦୁଧ ବିକାଳିମାନଙ୍କୁ । ସହରର ଗଳିରେ ଏବଂ ଭୋଜନାଳୟରେ । ସେମାନଙ୍କର ହସିଲା ମୁହଁ ତାକୁ ଉଦ୍‌ବୁଦ୍ଧ କରେ । ଆଖି ତା'ର ଖୋଲିଯାଏ । ସେ ମନ ଭିତରେ ଚିନ୍ତାକଲା ଦୁହାଁଳିଆ ଗାଈଟିଏ କିଣିବ । ଏଠି ତ ଚରାଭୂଇଁର ଅଭାବ ନାହିଁ । ସେ ସବୁଦିନ ତାକୁ ଭଲ ଖାଇବାକୁ ଦେବ । ଏଠି କିଏ ଗାଈ ତ କିଏ କେମିତି ବାଛୁରୀ ଶସ୍ତାରେ ବିକି ଦିଅନ୍ତି । ସହରରେ ଯେଉଁ ଦୁଧ ବିକ୍ରୀ ହୁଏ ସେଇ ଦୁଧ ସେ ଦିନକୁ ଅନ୍ତତଃ ଦୁଇ ଲିଟର ପାଇପାରିବ । ପରେ ତ ଗାଈ ତା'ର ଗୁହାଳ ଭରିଦେବ । ଏବେ

ସେ ଧନକୁ ଦୁଇଟଙ୍କା ପର୍ଯ୍ୟନ୍ତ ପଇସା ପାଇଯିବ । ଅନ୍ତତଃ ସେ କେତେଟା ରାସ୍ତା ଘରେ ଚଳି ଯିବାକୁ ପାଇଯିବ ।

ସୁମାନି ଉଠି ନ ଥାଏ । ପ୍ରାୟ ସବୁଦିନ କୌଣସି ନା କୌଣସି କାରଣରୁ ମଦନ ପ୍ରଥମେ ଉଠେ ତା'ପରେ ଉଠେ ସୁମାନି । ସମସ୍ତ ଲୋକ ସମସ୍ତଙ୍କର ପଛରେ ଉଠେ । ପକାଇଥାଏ ଅନିଦ୍ରାରେ ଜଳ । ମଦନ ସୁମାନିକୁ ଉଠାଇ ନିଜର ଭାବନାକୁ ଜଣାଇ ଦେବାକୁ ଉଦ୍‌ବିଗ୍ନ ହୁଏ । ସୁମାନି କଷ୍ଟସ୍ଥ ଖୁସି ହେବ । ଗାଈ ବଳଦ ଯେ ପ୍ରଥମ ସମ୍ପଦ । ଏହା ଏଠି କିଏ ନ ଜାଣେ । ସୁମାନିର ହାତରେ ସେ ଏକଶହ ପଚାଶ ଟଙ୍କା ରଖିବାକୁ ଦେଇଛି । ଏତେ ସମ୍ପତ୍ତି ତାଙ୍କ ପାଖରେ ଅଛି ଏହା କେହି ଜାଣେନାହିଁ । ଅବଶ୍ୟ ସାଧାରଣ ଲୋକଙ୍କ କଥାରେ ଯାହାକୁ ଅଭାବ ବୋଲି କୁହାଯାଏ ସେ ପ୍ରକାର ଅଭାବ ଭିତରେ ଏମାନେ ଚଳୁ ନାହାନ୍ତି ବୋଲି ସେମାନଙ୍କର ସମ୍ମାନ ଅଛି । ଏମାନେ ପରିଶ୍ରମ କରି ଶ୍ରମଲବ୍ଧ ଧନରେ ନିଜକୁ ଚଳାଇ ନେଉଥିବାରୁ ଏମାନଙ୍କ ପ୍ରତି ସମସ୍ତଙ୍କର ସମ୍ମାନ ଅଛି । ଦୁହିଁଙ୍କର ଗାଈଟିଏ ଏମାନଙ୍କ ଘରକୁ ଆସିଲେ ଘରର ଓଜନ ଯେତିକ ବଢ଼ନ୍ତା ସେମାନଙ୍କର ଓଜନ ବି କିଛି ବଢ଼ନ୍ତା । ଉପାର୍ଜନରେ ନିଜର କିଛି ପାର୍ଥକ୍ୟ ଆସନ୍ତା ନାହିଁ । ଏବେଯାଏଁ କାଠ କାମ୍ବା ଘାସରୁ ଏତିକ ତ ସେ ଉପାର୍ଜନ କରେ ।

ସୁମାନି ଉଠିଛି । ପୂର୍ବ ଦିନରୁ ଗୋବର ଅଣାଯାଇ ଥୁଆ ହୋଇଛି । ଘରର ଅଗଣାରେ ଗ୍ରୋଟ ଭିତରେ ପାଣି କିଛି ଆଣିଛି ଏବଂ ଗୋବରକୁ ଗୋଳି ଦେଇଛି । ଛିଞ୍ଚି ଦେଇ ସୁମାନି ଘର କୋଣରୁ ବାଡ଼ୁନିଟା ଆଣିଛି । ସୁମାନି ନିଜ ହାତରେ ଏଇ ବାଡ଼ୁନିଟା ତିଆରି କରିଛି । ନିଜେ ସେ ପାଖ ପଦାରୁ ବାଡ଼ୁନି ଗଛ କାଟି ଆଣିଛି । ବାଡ଼ୁନିଟା ଯେପରି ଖୋଲି ନ ଯାଏ, ମଦନ ସେଥିରେ ଡୋରି ବାନ୍ଧି ଦେଇଛି । ସୁମାନି ବାଡ଼ୁନିରେ ଘରର କୋଠରୀଟା ଏବଂ ଅଗଣାଟା ଝାଡ଼ୁ ଦେଇଦେଲା । ସକାଳ ପାଇଁ ଥିର୍ ଟିକିଏ ଓହ୍ଲାଇ ଦେବାକୁ ଚୁଲିରେ ନିଆଁ ଜାଳିବାକୁ ଲାଗିଗଲା ।

ମଦନ ମୁଣ୍ଡଟା ନିଜର ଟିକିଏ ଆଉଁସି ଦେଇ କଥା ଆରମ୍ଭ କଲା । ମଦନ ଆଗରୁ ଯାହାକିଛି ପ୍ରସ୍ତାବ ଦେଇଛି ସେଥିରେ ସୁମାନି ରାଜି ପଡ଼ି ଯାଇଛି । ହେଲେ ଏ ଯେଉଁ ପ୍ରସ୍ତାବ ଅଛି ତାହା ଏକ ଭିନ୍ନ ଧରଣର । ସେମାନଙ୍କ ଜୀବନରେ ଏକ ନୂତନ ସୋପାନକୁ ଉନ୍ନୀତ ହେବାର ଏକ ପଦକ୍ଷେପ । ମଦନ ଟିକିଏ ଦବିଲା ସ୍ୱରରେ ନିଜର ମନକଥା ଆରମ୍ଭ କଲା । ଏବେ ସହରରେ

ଲୋକେ ଗାଈ ରଖିବାକୁ ପସନ୍ଦ କରୁନଥିଲେ । ଅନେକେ ଅଷ୍ଟାର୍ଥୀ ଗୁହାଳ ରଖି ସହରରେ ଗାଈ ପାଳିଲେଣି । ତଥାପି ସହରରେ ଗୋରସର ଚାହିଦା ଏତେବେଶି ଯେ ଲୋକେ କେବଳ ଗୋରସ ବିକ୍ରି କରି ନିଜକୁ ଅନେକ ବଢ଼ାଇ ନେଉଛନ୍ତି । ସେମାନଙ୍କ ପାଖରେ କି ଏବେ ଆହୁରି ଶହେ ପଚାଶ ଟଙ୍କା ଅଛି । ଏ ଅଞ୍ଚଳରେ ଖୋଜି ବସିଲେ ବାଛୁରି ସହିତେ ଦୁହାଁଳିଆ ଗାଈ ମେଟିକି ଟଙ୍କାରେ କିଣା ହୋଇଯିବେ । ଦୁଧ ପ୍ରାୟ ଦୁଇ ଲିଟର ଗାଈ ଦେବ । କିଣିନେଲେ ଭଲ ହୁଅନ୍ତା । ମଦନ ନିଜେ ଗୋରସ ବିକିବାକୁ ସହରକୁ ଯିବ । କିଛି ବେଶି ଗୋଟାଏ ଉପାର୍ଜନ ହେବ । ଗୋବର ଖତ ବିକ୍ରୀ ହେବ । ବାଛୁରୀମାନେ ବଡ଼ ହେଲେ ଘରେ ହଳ ମିଳିଯିବ । ସେତେବେଳେ କିଛି ଗୋଟାଏ ନୂଆ ଧନ୍ଦାର ଉପାୟ କରିଯାଇ ପାରିବ ।

ସୁମାନା ବିବ୍ରତ ହୋଇଗଲା । ଘରେ କିଛି ପୁଞ୍ଜି ଅଛି ବୋଲି ବୋଧହୁଏ ମଦନର ଏ ପ୍ରକାରର ଦୁଃଶ୍ଚିନ୍ତା ଜାତ ହୋଇଛି । କୌଣସି କାରଣରୁ ଯଦି ଗାଈଟାର ଅବସ୍ଥାରେ କିଛି ଶୋଚନୀୟ ପରିବର୍ତ୍ତନ ଆସେ । ତା'ହେଲେ ପୁଞ୍ଜି ବି ବୁଡ଼ିଲା । ଅଉ ରୋଜଗାର ବି ବୁଡ଼ିଲା । ତା' ପରେ ପରେ ପୁଣି ବାଛୁରିର ସେବାରେ ନୂତନ ଖର୍ଚ୍ଚ ତ କୁ ଯେ ମରଣ ଭିତରକୁ ଠେଲି ଦିଆଯାଇ ପାରିବ ନାହିଁ । ତା'ଠାରୁ ସେତେବେଳେ କିଛି ଲାଭ ନ ପାଇଲେ ବି ବିନା ଶୁଶ୍ରୂଷାରେ ଅବା ଭୋକରେ ମାରି ଦିଆଯାଇ ପାରିବ ନାହିଁ । ଦୁଇ ଗୃହଟା ଗାଈ ଏକ ସାଙ୍ଗରେ ରଖାଗଲେ ଭିନ୍ନ କଥା । ଦିନକୁ ଦିନ ତ ଦୁଧ ବିକି ଯେ ଜଣେ ନିଜ ପେଟ ପୋଷିବ ସେଥିରେ ଗାଈ କିମ୍ବା ବାଛୁରିର କ'ଣ ଭଲ ମନ୍ଦ ନାହିଁ । ଏ ଆଡ଼େ ଯେ ରୋଜଗାରର ଅନ୍ୟ କିଛି ପନ୍ଥା ନାହିଁ । ବାଛୁରୀଟାକୁ ଅସହାୟ ଭାବରେ ଦୂରରେ ଠିଆ କରାଇ ଦେଇ ଦୁଧ ବ୍ୟବସାୟ କରାଯିବ ଅଥଚ ଗାଈର ଦୁଧ ବାଛୁରିକୁ ନିଅଣ୍ଟ । ବାଛୁରି ବି ଜୀବିତ ମୃତ ଏବଂ ଗାଈକୁ ଆଶ୍ରା କରିଥିବା ପ୍ରାଣୀ ଜୀବିତ କିନ୍ତୁ ଅନଶ୍ୱର । ଗାଈ ଏ ପ୍ରକାର ପାଳିକରି ପ୍ରାଚୁର୍ଯ୍ୟତା ଆବଶ୍ୟକ ନାହିଁ କି ବାଛୁରିର ଆକୁଳ ନିଃସହତା ଭିତରେ ନିଜକୁ ଗୌରବାନ୍ୱିତ ମନେ କରିବାର ଅଭିପ୍ରାୟ ନାହିଁ ।

ସୁମାନା ନିଜ କଥାଯାକ କହି ଯାଇଛି । ମଦନ କିନ୍ତୁ ନିରୁତ୍ତର । ମଦନର ମୁଣ୍ଡ ଲଇଁଯାଇଛି । ସୁମାନା ଆହୁରି କିଛି କହିଥାନ୍ତା କିନ୍ତୁ ଦେଖିଲା ଯେ ମଦନ ଆଉ ଆଗକୁ ବଢ଼ିବାକୁ ଚାହୁଁନାହିଁ । ତେଣୁ ନୀରବ ରହିଲା । କାଠ ଆଣିବାକୁ ସେ ମଦନକୁ ଚେତାଇ ଦେଲା । ମଦନର ପ୍ରତ୍ୟେକ ଚିନ୍ତା ପ୍ରତି ସୁମାନା ଏପରି ବାଧାପୂର୍ଣ୍ଣ ରୋକଠୋକ ଜବାବ ମଦନ ମନରେ

କେତେ ଆଘାତ ହଏ ନା ନାହିଁ ଜାଣେନା । ତା'ର ସ୍ୱଳ୍ପ ବୁଦ୍ଧି ଓ ଶ୍ରେଷ୍ଠ ସମ୍ପାର ସନ୍ଧ କାଠ ଘର ହିଁ ଶ୍ରେଷ୍ଠ ମନେଶ । ସୁନ୍ଦରୀ ପଢ଼ିବାର ପାଇଁ ଅଧିକ ଜମ୍ପାଳ ଯେ ବୃଦ୍ଧେ ନାହିଁ । ମଦନକୁ ଏପରି ଅଭିମତରେ ବାଧିଲେ ବାଧି ।

ମଦନ କହୁଥାନ୍ତା କୁଷ୍ଠିଆଳ ଗାଉଁ କଥା, ଉନ୍ନତ ଗାଈ କଥା; କିନ୍ତୁ ସମ୍ଭଳ ନାହିଁ । ତେଣୁ ନୀରବ ରହିଲା । ଅନ୍ୟ କିଛି ବଣ୍ଟିବାର ବାଟ ପାଉ ନ ଥିଲେ ବି ମଦନ କିନ୍ତୁ ସିଧାସଳଖ ମନା କରିଦେଲା ଯେ ସେ ଘର କାଠ ବୋହି ପାରିବ ନାହିଁ କମ୍ପା ନିଜର ବଳିଷ୍ଠ ବାହୁ ଦୁଇଟିକୁ ଧାସ୍ୱାଲିତ ଜାଣିବାକୁ ଯୋଗ୍ୟ ପାରିବ ନାହିଁ ।

ସୁମାନୀ ଟିକିଏ ଦବିଗଲା । ପଚାରିଲା : ତା'ହେଲେ କ'ଣ କରିବାକୁ ହେବ ? ଅନ୍ୟ କିଛି ଗୋଟାଏ ରାସ୍ତା ବାହାର କରିବାକୁ ପଡ଼ିବ ଯେଉଁଥିରେ କି ଦୁଇବେଳା ନ ହେଲେ ବି ଗୋଟାଏ ବେଳା ଥିର୍ ଟିକିଏ ମିଳିବ । ସୁମାନୀ ଆଉ ବେଶିକିଛି ଆଲୋଚନା କରିବାକୁ ସମୟ ପାଉନାହିଁ । ସକାଳ ପାଇଁ ପ୍ରସ୍ତୁତ ହେଉଥିବା ଥିର୍ ଓହ୍ଲାଇବା ଅବସ୍ଥାକୁ ଆସିଗଲାଣି । ଏଣୁ ସେ ମଦନକୁ ଅନ୍ୟ କାମ ନ ହେଲେ ବି ଘରଂ ପାଇଁ କିଛି କାଠ ଆଣିବାକୁ ଅନୁରୋଧ କଲା । ଆଜି ସିନା କାଠ ଅଛି ପୁଣି ତ ଆଣିବାକୁ ପଡ଼ିବ ।

ମଦନ ବି ରାଜିହେଲା । ସାହାକିଛି ଘାସ ମିଳିବ ଏକ ସାଙ୍ଗରେ ଘରେ ଥିବା କିଛି ଘାସ ସହ ଉପରବେଳା ସେ ସୁନ୍ଦରଗଡ଼କୁ ନେଇଯିବ । ବାବୁଙ୍କୁ ଗତକାଲିର ଘାସ ଏବଂ ଆଜିର ଘାସ ମିଶାଇ ଦେଇ ଦେଲେ ବେଶି ଖୁସି ହେବେ । ଘାସର ଅସୁବିଧା କଥା ସେ ବୁଝାଇବ । ବାବୁ ଭଲ ଲୋକ । କଥାଟା ବୁଝିବେ । କିଛି ଗୋଟାଏ ବାଟ ବି ନିଶ୍ଚୟ ବତାଇ ଦେବେ । ସେ ସେଇ ବାଟରେ ଆଗକୁ ବଢ଼ିବ ।

ମଦନ ଜଙ୍ଗଲରେ ପ୍ରଥମେ ଅନ୍ୟ ଏକ ଖୋଲକୁ ଗଲା । ଘାସ ସଂଗ୍ରହ କରିବାରେ ଲଗି ପଡ଼ିଲା । ପ୍ରାୟ ପନ୍ଦର ବିଡ଼ା ଘାସ ବହୁତ ସମୟ ପରେ ସଂଗ୍ରହ କଲା । ସାଙ୍ଗରେ ଟୁସ ବୁଢ଼ିଆଟାଏ ବି ନେଇଛି । ଘର ପାଇଁ ସେ କିଛି ଜାଳେଣି କାଠ ନେବ । ସେଇ ଟଳ ଘଡ଼ିଥିବା ଶୁଖିଲା ଗଛ ପାଖକୁ ସେ ଆସିଛି । ଅଳ୍ପ ଅଳ୍ପ ସମୟ ଭିତରେ ସେ ଖରେ କାଠ ଫାଳ କରିଦେଲା । ବୋହି ନେବାକୁ ସଜ କରି ଘାସ ବିଡ଼ାଯାକ କାଠ ଉପରେ ଥୋଇଦେଲା । ଧୀରେ ଧୀରେ ପର୍ବତର ଖୋଲରୁ ତଳକୁ ଓହ୍ଲାଇ ଆସିଲା ।

ବଣ ସହିତ ନିଜ ଘରକୁ ସଂଯୋଗ୍ କରୁଥିବା ପଦାର ଅଣଓସାରିଆ ବାଟ ଦେଇ ମଦନ ଫେରି ଆସୁଛି । ଗ୍ରାମଟି ତିନି ଭାଗରେ ବିଭକ୍ତ । କୋଳିକଣ୍ଟା ଡାଳଟିଏ ଖଳୁଙ୍ଗା ଲତା ଡାଳଟିଏ ଥୋଇ ତା' ଉପରେ ପଥରଟିଏ ଥୋଇ-ଦେଲା । କାରଣ ଏହା କଲେ ବେଲ ଶୀଘ୍ର ପାଏନାହିଁ ।

ଅଳ୍ପ ସମୟରେ ଭୁବନ ବି ଫେରୁଛି । ସେ ମଦନର ପଡ଼ୋଶୀ । କାନ୍ଧରେ ଗୋଟିଏ ଶୁଖିଲା ଗଛର ଶାଖା । ଘରେ କାଠ ନାହିଁ । ଏତିକ କାଠରେ ତିନି ଚାରି ଦିନର କାଳେଣି ହୋଇଯିବ । ସେ ଏଇ କିଛି ସମୟ ପୂର୍ବେ ଜଙ୍ଗଲକୁ ଯାଇଥିଲା । ଘରେ ଆଉ କାଠ ନ ଥିଲା । ମଦନ ଘରୁ ଦୁଇଖଣ୍ଡ କାଠ ଆଣି ସ୍ତ୍ରୀ ତା'ର ଥର୍ ଟିକିଏ ଓହ୍ଲାଇ ନେବାର ସୁବିଧା କରିନେଲା । ଥର୍ ପ୍ରସ୍ତୁତ ହେବା ଭିତରେ ନୂତନ କାଠ ଖଣ୍ଡେ ଆଣିବାକୁ ଜଙ୍ଗଲକୁ ଚାଲିଗଲା । ଥର୍ ଟିକିଏ ପିଇସାରି ସେ ଚାଲିଯିବ ମୂଲ ଖଟିବାକୁ ।

ଭୁବନର ପଛକୁ ଇସ୍‌ମାଇଲ ଖାଁ । ସେ ଏ ଅଞ୍ଚଳର ଲୋକ ନୁହନ୍ତି । ତାଙ୍କ ଘର ଗଡ଼ଜାତ ଅଞ୍ଚଳରେ । ସେ ଏ ଅଞ୍ଚଳର ଭାଷା ପରିଷ୍କାର ଭାବରେ ବୁଝନ୍ତି । ଏ ଅଞ୍ଚଳର ଲୋକମାନଙ୍କ ସହିତ ସେ ନିଜ କଥା ମିଶାମିଶି କଥା କୁହନ୍ତି । ଏ ଅଞ୍ଚଳରେ ଖାନ୍ ହିସାବରେ ସେ ପରିଚିତ । ସମସ୍ତଙ୍କ ସହିତ ସମ୍ପର୍କ ବି ଭଲ ରଖିଛନ୍ତି । ସେ କହନ୍ତି : ତାଙ୍କର କାମ କଠୋର ମନୋ-ଭାବାପନ୍ନ ହେଲେ ସୁଦ୍ଧା ସଦ୍‌ଭାବକୁ ଏଡ଼ାଇ ଦେଇ ପାରିବେ ନାହିଁ । ଗଡ଼ିଆ ହୋର୍ଷ୍ଟିତ ମଦ ଭାଟିରେ କାମ କରନ୍ତି । ତାଙ୍କ କାମ ହେଲା ତାଙ୍କ ମଦ ଭାଟିର ପରିସର ମଧ୍ୟରେ ମଦ କପରି ନିରାପଦ ଭାବରେ ବିକ୍ରୀ ହେବ ତା' ପର୍ଯ୍ୟବେକ୍ଷଣ କରିବା । ଲୋକଙ୍କ ସୁବିଧା ନିମନ୍ତେ ମଦଭାଟି ତରଫରୁ ନିଜ ପରିସର ମଧ୍ୟରେ ଗ୍ରାମେ ଗ୍ରାମେ ଏପରିକି ପ୍ରତି ପଡ଼ାରେ କୁଚିଆ ମଦ ବିକ୍ରୀ ହୁଏ । ନିର୍ବିଘ୍ନରେ କୁଚିଆ ମଦ ବିକ୍ରୟ କରାଯାଇ ନ ପାରିଲେ ସେ ଦାୟୀ ହେବାକୁ ପଡ଼େ ମାଲିକ ପାଖରେ । ଏଣୁ ପ୍ରତି କୁଚିଆ ଦାରୁ ବିକ୍ରୀ ହେଉଥିବା ବସ୍ତିକୁ ବାର୍ଷିକ କିଛି ଟଙ୍କା ମଦ ଭାଟି ତରଫରୁ ଦିଆଯାଏ । କୁଚିଆ ଦୋକାନୀ ବି କିଛି ଟଙ୍କା ଗ୍ରାମବାସୀଙ୍କୁ ଦିଏ । ଗାଆଁର ଲୋକେ ଏ ଟଙ୍କାକୁ ସର୍ବସମ୍ମତ ଏକ ପନ୍ଥାରେ ଖର୍ଚ୍ଚ କରନ୍ତି । ଇସ୍‌ମାଇଲ୍ ଖାଁ ଭୁବନ ଓ ମଦନକୁ ଟପି ଆଗେଇ ଗଲେ ସାଇକେଲରେ ।

ଇସ୍‌ମାଇଲ୍ ଖାଁ ସାଇକେଲରେ ଆସୁଛନ୍ତି । ପଛ ପାଖେ ଗୋଟିଏ ଟିଣ ବସ୍ତାମରେ ପଚିଶ ଲିଟର ମଦ ଭର୍ତ୍ତି ହୋଇଛି । ସେ ମାନମୁଣ୍ଡାକୁ ଏହି ମଦ ନେଇ ଯାଉଛନ୍ତି । ଆଜିକୁ ତିନିଦିନ ତଳେ ଦଳେ ଯୁବକ ବାଟରେ କୁଚିଆଠାରୁ ମଦ ଛଡ଼ାଇ ଆଣି ଫିଙ୍ଗିଦେଲେ । ତା'ର ପ୍ରତିକାର ସ୍ୱରୂପ ଇସ୍‌ମାଇଲ ଖାଁ

ନିଜେ ନିଜ୍ଞାନ ପାଇଁ ସେ ଗାଁକୁ ମଦ ପହଞ୍ଚାଇ ଦେଉଛନ୍ତି । ଯାଉଁ ଯାଉଁ ହଠାତ୍ ଖା ସାଇକେଲଟା ବନ୍ଦ କରିଦେଲା । ଦେଖିଲେ ଖାକି ପୋଷାକ ପିନ୍ଧା ବାବୁ ଦୁଇଜଣ ଆଉ ତିନିଜଣ ଭଦ୍ରଲୋକ ଏ ଆଡ଼କୁ ଆସୁଛନ୍ତି । ସେ ଭାବିଲେ ଏମାନେ ହୁଏତ ଅବକାରୀ ବିଭାଗର ଲୋକ । ତେଣୁ ଅଯଥା ଏକ ଅନୀତି କାମ ପାଇଁ ସେ ହଇରାଣ ହେବେ କାହିଁକି ? ଶେଷରେ ଭାଟି ଠିକାଦାର ଏଥିପାଇଁ ତାଙ୍କୁ ଦାୟୀ କରିବେ ଏବଂ କାର୍ଯ୍ୟରୁ ଅନ୍ତର ବି କରିଦେବେ । ତେଣୁ ସେ ପଦା ଭିତରେ ଆତ୍ମଗୋପନ କରିବାକୁ ଲାଗିଲେ । ତାଙ୍କର ଦାନା ଟିକକ ରହୁ । ଏଇ ଦାନାପାଇଁ ସେ ସାମାନ୍ୟ ପାରିଶ୍ରମିକରେ ନିଜର ବାସ ଭୂମିର ଦୂରରେ ସେ ପ୍ରବାସୀ ହୋଇଛନ୍ତି । ଦାନା ଟିକକ ପାଇଁ ସେ ଯେ ଦୁର୍ନୀତିର ପରିବାହକ । ସେ ଯେ ଦୁର୍ନୀତିର ମୂଳ କାରଣ ନୁହନ୍ତି । ପରିବହନ ତାଙ୍କର କର୍ମ । ଅନିୟମିତ ପରିବହନ ଯଦି ଫଳପ୍ରଦ ପରିବହନର ମୂଳାଧାର ହୁଏ ତା' ହେଲେ ସେଥିରେ ବ୍ୟତିକ୍ରମ ନ କରିଚିବ କାହିଁକି ? ଇସମାଇଲ ଖାଁ ଅବକାରୀ ବିଭାଗର କର୍ତ୍ତୃତ୍ୱ ତଳେ ଆଜିକି ପ୍ରାୟ ଏଗାର ବର୍ଷ ହେବ କାମ କଲେଣି । ତାଙ୍କ ଅଭିଜ୍ଞତା ଏ ବିଭାଗର ପ୍ରତ୍ୟେକ କ୍ଷେତ୍ରରେ ଅନେକ ବେଶି । ସେ ସବୁ ବୃତ୍ତାନ୍ତ କିନ୍ତୁ କାହାରିଠାରେ କିଛି ପ୍ରକାଶ କରି ନ ଥାନ୍ତି । ଯେଉଁଠି ଯାହା ଆବଶ୍ୟକ ତାହା ସେ ପ୍ରକାଶ କରନ୍ତି । ଜଣେ ତାଙ୍କୁ ଦେଖିଲେ ମନେ କରିବେ ସେ ଜଣେ ନିର୍ବୋଧ କର୍ମଗୃହୀ । ସେ ତାଙ୍କର କାର୍ଯ୍ୟରେ ତ୍ରୁଟି କେବେ କରିଥିବା ମନ୍ତବ୍ୟ ଆଜିଯାଏ କେହି ଦେଇ ନାହାନ୍ତି । ସେ ଠିକାଦାରଙ୍କ ସମ୍ମୁଖରେ ଯେତିକି କର୍ମଦକ୍ଷ ଓ ନିର୍ବୋଧ ଏ ବିଭାଗର ଶାସନ ଦାୟିତ୍ୱରେ ଥିବା କର୍ତ୍ତୃପକ୍ଷମାନଙ୍କ ସମ୍ମୁଖରେ ସେତିକି ନମ୍ର ଓ ନିର୍ବୋଧ । ସେ ଉଚ୍ଚ ସ୍ତରରେ ନିର୍ବୋଧ ଅଥଚ ଦକ୍ଷ ଲୋକ ଭାବରେ ଏବଂ ସାଧାରଣ ବାସିନ୍ଦାମାନଙ୍କ ମଧ୍ୟରେ ଦକ୍ଷ ଅଥଚ ଲୋକ ଭାବରେ ଆଦୃତ । ସେ ଜନସାଧାରଣଙ୍କୁ ଆବଶ୍ୟକ ସ୍ଥଳେ କହିଥାନ୍ତି : ସେମାନେ ଯେତେବେଳେ ଆବଶ୍ୟକସ୍ଥଳେ ମଦ ବ୍ୟବହାର କରୁଛନ୍ତି, ଏହାର ସୁଲଭତା ଉପରେ ଦୃଷ୍ଟି ଦେବା ଉଚିତ । ଅଯଥା ଯେପରି ସମୟ ଖର୍ଚ୍ଚ ନ ହୁଏ ସେଥିପ୍ରତି ସଜାଗ ରହିବା ଉଚିତ । ସବୁ ସ୍ଥାନରେ ତ ମଦଭାଟି ବସି ପାରିବ ନାହିଁ । ଏଣୁ କୁଚିଆ ମଦ ସମୟ ବଞ୍ଚାଏ । ଜଣକୁ ମଦଭାଟି ପର୍ଯ୍ୟନ୍ତ ଯିବା ଆସିବାରେ ଦେହକୁ ଅଯଥା କଷ୍ଟ ହୁଏ । ପିଇବା ଲୋକ ନିଶ୍ଚୟ ପିଇବ । କୁଚିଆ ନ ଥିଲେ ବି ପିଇବ । କୁଚିଆ ଥିଲେ ଗାଁକୁ ବି କିଛି ପାଣ୍ଠି ମିଳିଯିବ । ମୁଖିଆ ଲୋକଙ୍କୁ ସେ ବେଶିକିଛି ବୁଝାନ୍ତି ନାହିଁ । ସେମାନଙ୍କୁ କୁହନ୍ତି ସେ ତାଙ୍କର ସେବା କରିବାକୁ ସବୁବେଳେ ପ୍ରସ୍ତୁତ । ଗାଆଁର ପାଣ୍ଠି ବଢ଼ାଇବାକୁ ସେ ଚେଷ୍ଟା କରିବେ । ଏବର୍ଷ ଆହୁରି

କିଛି ଚଙ୍ଗା। ଗାଁର କଣ୍ଟି ଚଟଣକୁ ଅଧିକ ବଢ଼ାଇବାକୁ ସେ ସୁପାରିଶ କରିବେ। ଇସ୍‌ମାଇଲ ଖାଁ ସୂର୍ଯ୍ୟମୁଖୀ ଫୁଲ ପରି ସୂର୍ଯ୍ୟର ଗତି ପଥରେ ନିଜର ଗତିକୁ ନିୟନ୍ତ୍ରିତ କରିଥାନ୍ତି।

ଘଟଣା ସ୍ଥଳରେ ଇସ୍‌ମାଇଲ ଖାଁ ନିଜକୁ ଆଶ୍ୱସ୍ତି ବୋଧ କଲେ। ଯେ ମଦନକୁ ଚିହ୍ନନ୍ତି। ମଦନ ମଦ ବ୍ୟବହାର ନ କଲେ ବି ମଦ୍ୟପ ଶ୍ରେଣୀରେ ତା'ର କଥା ପଡ଼େ। ଇସ୍‌ମାଇଲ ଖାଁ ଏତିକି ଜାଣନ୍ତି ଯେ ମଦ ବ୍ୟବହାର ନ କରିବାକୁ ମଦନ ଲୋକମାନଙ୍କୁ ବୁଝାଏ। ତଥାପି ଇସ୍‌ମାଇଲ ଖାଁ ମଦନକୁ ଭଲ ପାଆନ୍ତି। ସେ କାହାରିକୁ ମଦ ଦୋକାନ ଯିବାକୁ ବାରଣ କରେନାହିଁ ବୋଲି; କିନ୍ତୁ ସେ ଆତ୍ମଗୋପନ କରିଛନ୍ତି ବୋଲି ମଦନ ଜାଣିଲେ ହୁଏତ ତାଙ୍କର ମଦ ବ୍ୟବସାୟରେ ଏକ ନୂତନ ବିପଦ ଦେଖା ଦେଇପାରେ। ମଦନ ନିଜର ଲୋକଙ୍କୁ ଦୃଷ୍ଟାନ୍ତ ଦେବାକୁ ଏକ ଉପାଦାନ ପାଇଯିବ ଯେ ମଦପାଇଁ କ୍ଷତି ଥିଲେ ବି କେତେ ଯେ କଟକଣା ଅଛି। କାହାରିକୁ କିଛି ଯେ କିଛି ନ କହି ନୀରବରେ ପଛ ଭିତରକୁ ଚାଲିଗଲେ। ଆତ୍ମଗୋପନ କରି ଆତ୍ମପ୍ରତାରଣାରୁ ନିଜକୁ ରକ୍ଷା କଲେ।

ଇସ୍‌ମାଇଲ ଖାଁ କୁଆଡ଼େ ଓ କାହିଁକି ହଠାତ୍ ଚାଲିଗଲେ ଏକଥା ମଦନ ଏବଂ ଭୁବନକୁ କେତେକ ବିସ୍ମିତ କଲାନାହିଁ ସେମାନଙ୍କୁ ସେ ଟପିଗଲା ପରେ ହଠାତ୍ ଠିଆ ହୋଇ ଯିବାଟା ବେଶି ବିସ୍ମିତ କଲା। ଦୁହେଁ ଉଭୟେ ଦୂରରେ ଆସୁଥିବା ସେହି ଖାକି ପୋଷାକ ପିନ୍ଧା ବାବୁମାନଙ୍କୁ ଦେଖିଲେ। ମଦନ ଅଦୌ ଧାରଣା କଲାନାହିଁ ଯେ ଖାନ୍‌ଙ୍କ ଆତ୍ମଗୋପନ ପଛରେ ଏମାନଙ୍କର ଆଗମନ ଜଡ଼ିତ। ଏ ପ୍ରକାର ଧାରଣା ଜାଗ୍ରତ ହୁଏତ ହୋଇଥାନ୍ତା ଯଦ୍ୟପି ଖାନ୍ ସେଠି କିଛି ସେମାନଙ୍କୁ କହିଥାନ୍ତେ।

ଭୁବନ କିନ୍ତୁ ପ୍ରମାଦ ଗଣିଲା ନିଜ ପାଇଁ। ମନେ ତା'ର ପଡ଼ିଗଲା ଗତ ହାଟ ପାଳି କଥା। ଜଣେ କେହି ଗୋଟିଏ ଅଙ୍ଗଛି ଚୋରି କରି ନେଇଗଲା ଜଣେ ଲୁଗା ବ୍ୟବସାୟୀଙ୍କ ଖୋଲା ଦୋକାନରୁ। ଚୋରା ଚାଲିଲା କିନ୍ତୁ ସେ ଧରା ପଡ଼ିଲା ନାହିଁ। ସୁନ୍ଦରଗଡ଼ରେ ସେ ହାଟ ପାଳିଟାରେ ଚହଲ ପଡ଼ିଗଲା ଯେ ଚୋରି ହୋଇଛି। ପୋଲିସ କର୍ମଚାରୀ ବି ତତ୍ପର ହୋଇ ଉଠିଲେ। ହେଲେ କୌଣସି ସନ୍ଧାନ ମିଳିଲା ନାହିଁ। ଭୁବନ ବି ସେ ଘଟଣା ସ୍ଥଳରେ ଉପସ୍ଥିତ ଥିଲା। ଯେ ସେହି ବ୍ୟବସାୟୀଙ୍କୁ ଚିହ୍ନେ। ଗତ ତିନିବର୍ଷ ତଳେ ସେ ବି ବାଧ୍ୟ ହୋଇ ଖଣ୍ଡେ ଶାଢ଼ୀ ଚୋରି କରିଥିଲା। ସ୍ତ୍ରୀର ଖଣ୍ଡିଏ ଶାଢ଼ୀ ଥିଲା। ସେଇଟା ବି ଚିରା। ଘରେ ପୁଞ୍ଜି ନ ଥିଲା। ଅତି କମ୍ ଟଙ୍କାରେ ସେ ଖଣ୍ଡିଏ ଶାଢ଼ୀ

କିଣିଲ ଅନ୍ତ ଗଛର ବୃକ୍ଷଖଣ୍ଡ ହୋଇଗଲେ ଭଳି ହୋଇଥାନ୍ତା । ତେଣୁ ସେ ବ୍ୟବସାୟୀଙ୍କ ବହୀର ଭିଡ଼ ଭିତରେ ଅନ୍ୟ ଏକ ଶାଢ଼ୀ ହାତ କରିଥିଲା । ସେ କିନ୍ତୁ ଦୂର ନ ଯାଇଣୁ ଧରା ପଡ଼ିଗଲା । ବ୍ୟବସାୟୀ ତଥା ତାଙ୍କ ବନ୍ଧୁଙ୍କ ହାତରେ ସେ କସ୍ତିକ ମାଡ଼ ଖାଇଲା । ପୋଲିସଙ୍କ ହାତୁଡ଼ରେ ବି ପଡ଼ିଲା । ବ୍ୟବସାୟୀ-ଜଣକ ତା' ବିରୁଦ୍ଧରେ ଆଉ ଅଧିକ କାର୍ଯ୍ୟାନୁଷ୍ଠାନ ଗ୍ରହିଲେ ନାହିଁ । ଯା'ହେଉ ଥାନାରେ ତା' ନାମ ଗ୍ରାମ ଲେଖାହେଲା । ପରେ ସେ ଘରକୁ ଫେରିଲା । ଯୋଗ ସେ ତା'ର ନିଜ ଉପସ୍ଥିତିରେ ପୁଣି ଏକ ଘଟଣା କାଳେ ବ୍ୟବସାୟୀ ଜଣକ ତାକୁ ସନ୍ଦେହ କରିବେ । ସେଥିପାଇଁ ଚିନ୍ତିତ ହେଲା । ସେ ଦିନଠୁ ସେ ଯେ ଆଉ ଏସବୁ କିଛି କରେନାହିଁ । ମଦନର ଜୀବନଧାରା ତାକୁ ଅନୁପ୍ରାଣିତ କରିଛି ଖଟି ନିଜକୁ ସୁଖୀ କରିବାକୁ । ତଥାପି ସେ ନିଜକୁ ନିରାପଦ ମନେ କରୁ ନ ଥାଏ । ଯେତେବେଳେ ନିଜକୁ ନିଜେ ସେ ସନ୍ଦେହ ଚକ୍ଷୁରେ ଦେଖୁଥାଏ ସେତେବେଳେ ନିଜକୁ ସେ ଅତି ଅସହାୟ ମନେ କରୁଥାଏ । ସେ ଜାଣେ ପୂର୍ବର ପରିଚିତ ରୂପକୁ ତା'ର ହୁଏତ ସାଧାରଣ ଚକ୍ଷୁ ସ୍ନେହ ରୂପରେ ଦେଖୁଥିବା । ଯିଏ କି ତା'ର ସ୍ୱଚ୍ଛ ଶରୀରକୁ ତିରସ୍କାର କରିଛି ସିଏତ ଜାଣେନାହିଁ ଯେ ଭୁବନ ବି ସ୍ରୋତସ୍ୱିନୀ । ଯେଣୁ ନିଜର ଜୀବନଧାରାର ସ୍ୱଚ୍ଛ ଶରୀରରେ ଚିରସ୍ରୋତା ଏକ ଧାରାର ସଂଯୋଗ ଘଟିଛି । ଯାହାର ବିଗତ ଅନୁଭୂତି ବର୍ତ୍ତମାନର ବି ବାସ୍ତବତା, ବର୍ତ୍ତମାନର ସମୀକ୍ଷା ଯିଏ କି ବର୍ତ୍ତମାନ ଉପରେ କରେନାହିଁ, ବିଗତର ସମ୍ଭା-ବନାକୁ ଯିଏ କି ଏଡ଼ାଇ ଦେବାର ଅଭିମୁଖ୍ୟକୁ ଯଥାର୍ଥ ମଣେନାହିଁ, ସିଏ ନୂତନ ପରିଚୟକୁ ପ୍ରତାରଣା କାହିଁକି ଅବା ମନେ କରିବ ନାହିଁ । ଅସ୍ପଷ୍ଟ ପରିଚୟ ଯେତେବେଳେ ପ୍ରତାରଣାର ଏକ ଭିନ୍ନ ରୂପ ବି ହୋଇପାରେ ସେତେବେଳେ ଭୁବନ କି ଉପାୟରେ ଏକ ଅପ୍ରୀତିକର ପରିବେଶର ଉପସ୍ଥିତ ଜନ ସମୂହକୁ ନିଜର ପରିଚୟ ଦେବାକୁ ସୁଯୋଗ ଲାଭ କରିପାରିବ । ନିଜ ପଡ଼ାପଡ଼ିଶାର ଲୋକ ତା'ର ପରିବର୍ତ୍ତନ ଲକ୍ଷ୍ୟ କରିଛନ୍ତି ଏବଂ ତାକୁ ଯଥୋଚିତ ମର୍ଯ୍ୟାଦା ଦେଉଛନ୍ତି । ଏହା କିନ୍ତୁ ଭୁବନକୁ ତୃପ୍ତି ଦେଇନାହିଁ । ସେ ନିଜେ ତା'ର ଦାଗ ଭୁଲିନାହିଁ । ସେ ସମସ୍ତର ଦଣ୍ଡ ସେ ଭୁଲିଯାଇଛି କିନ୍ତୁ ନିଜ କାର୍ଯ୍ୟକଳାପ ଛାଡ଼ି ଯାଇଥିବା ଦାଗ ଲିଭିନାହିଁ ।

ଅଦୂରରେ ଆସି ଯାଉଥିବା ପଥିକମାନଙ୍କ ଭିତରେ ଭୁବନ ବି ଦେଖି ନେଇଛି, ଖାକି ପୋଷାକ । ଶୁଖିଲା ଗଛର ଶାଖାକୁ କାନ୍ଧରୁ ସେ ଯାଙ୍ଗେ ଯାଙ୍ଗେ ପକେଇ ଦେଲା । ମଦନ ଶୁଣିବା ଭଳି ସେ କହିଲା—କାଠି ଦୁଇ ଖରଖଣ୍ଡ ସେ ନେଇ ଆସୁଛି । ନିଜକୁ ନିଜେ ସେ ଏ କଥାଟି କହୁଛି ।

ଆଗନ୍ତୁକମାନେ ମଦନକୁ ହୁଏତ କାହିଁ ପଚାରିଲେ ସେ ନିଶ୍ଚୟ ନିରା-ପତ୍ତାର ବ୍ୟବସ୍ଥା କରିବ । ମଦନକୁ କେବଳ ନିଜର ଅନୁପସ୍ଥିତି ଜଣେଇ ଦେଉଛି· ନିଜ ସନ୍ଧିତ ଉଚ୍ଚ ସ୍ୱରରେ ଆଳାପ କରି । ପଚା ଭିତରେ ସେ ନିଜର ଆତ୍ମ ସମୀକ୍ଷା କରିବାକୁ ଚାଲିଗଲା ।

ଏ ପର୍ଯ୍ୟନ୍ତ ଆଗନ୍ତୁକମାନେ ମଦନର ଆଖିରେ ପରିଷ୍କାର ଭାବରେ ପଡ଼ି ନ ଥିଲେ । ଏ ମଧ୍ୟରେ ଇସ୍‌ମାଇଲ ଖାଁ ଏବଂ ଭୁବନ ଭିତରେ ଦେଖା ଯାଇଥିବା ପରିବର୍ତ୍ତନ ସେ ଅନୁଭବ କରି ପାରିଲା ନାହିଁ ।

ମଦନ ପରିଷ୍କାର ଭାବରେ ଖାକି ପୋଷାକ ପଥିକମାନଙ୍କୁ ଚିହ୍ନି ନେଲାଣି । ଜଣେ ସ୍ଥାନୀୟ ବନପାଳ ବାବୁ ଏବଂ ଅନ୍ୟ ଜଣକ ବନରକ୍ଷୀ ବାବୁ । ସାଙ୍ଗରେ ଥିବା ଭଦ୍ରଲୋକଙ୍କ ଭିତରୁ ସେ ଜଣକୁ ଚିହ୍ନେ, ସେ ଗାଁର ଜଣେ ଜଣାଶୁଣା ଲୋକ । ଅନ୍ୟ ଦୁଇ ଜଣଙ୍କୁ ସେ ଚିହ୍ନେନାହିଁ ।

ମଦନ କାଠ ଭାରକୁ ରାସ୍ତା କଡ଼ରେ ଥୋଇଦେଲା ଏବଂ ଗଛର ଛାଇରେ ବସିଲା । ଆତ୍ମଗୋପନ କରିବାକୁ ସେ ଉଚିତ ମନେ କରୁନାହିଁ । ଯେତେବେଳେ ଭୁବନ ବି କାଠ ଆଣୁଛି ଅଥଚ ଆତ୍ମଗୋପନ କରିନାହିଁ ସେତେବେଳେ ସେ ବା କରିବ କାହିଁକି ? କୌଣସି ବାହାନା କରି ସେମାନଙ୍କ ଦୃଷ୍ଟି ସାମନାରେ ଅନ୍ତର୍ହିତ ହେବାକୁ ଚେଷ୍ଟା କରିବ କାହିଁକି ? ସେ ସୌଜନ୍ୟତା ପ୍ରକାଶ କରି-ବାକୁ ଠିକ୍‌କଲା । ନିୟମକୁ ସମ୍ମାନ ଦେବାକୁ ସେମାନଙ୍କ ଦୃଷ୍ଟିରେ କାଠ ଭାରଟିକୁ ନେବନାହିଁ । ସେମାନଙ୍କ ମୁହଁର କଥା ଅଥବା ଆଖିର ପ୍ରକାଶ ଅନୁଭବ କଲାପରେ ସେ ଆଗକୁ ବଢ଼ିବ ।

ମଦନର କାଠ ଭାରଟି ଥୁଆ ହୋଇଛି ଖରାରେ, ସତେ ଅବା ତାକୁ ଜ୍ୟୋତି ଆବଶ୍ୟକ । ଆଉ ମଦନ ବସିଛି ଛାଇରେ ତାକୁ ଅନ୍ଧକାର ଘେରି ରହିଛି । ଦୂରରେ ଗୋଟିଏ ଗଛର ଡାଳରେ କପୋତ ତା'ର ନିଜର ଭାଷାରେ କ'ଣ ସବୁ କହି ଚାଲିଛି । ମଦନର କାନରେ ଶୁଭୁଛି—'ଘଯୋଡ', 'ପାଣୋଡ' । ସେ ବିଷାଦରେ କିମ୍ବା ଆନନ୍ଦରେ ଏ ଧ୍ୱନି ଗୁଡ଼ୁଛି ମଦନ ବୁଝି ପାରୁନାହିଁ । ଏ ଧ୍ୱନି ଭିତରେ ସେ ଦେଖୁଛି ତା'ର ମା'କୁ । ଗୋଡ଼ ଦୁଇଟିକୁ ଦୋଳି କରି ସମରୁକୁ ସେ ଝେଲାଉଛନ୍ତି । ମଦନର ମା'ର କଣ୍ଠରେ ଖେଳର ଗୀତ—

'ଘଯୋଡ', 'ପାଡ଼େଁଡ'
ଉଠ ପାଁଡ଼େ
ଖାଇ ବସ,
ପାଁଡ଼ଏନ୍‌କେ ନେଇଗଲା ଗ୍ୱେର୍ ।

ମଦନ ମନେକରେ ସୁମାନା ଓ ଦାହାଲ୍‌କୁ । ଯେତେବେଳେ ଏମାନେ ଦେଖା ଯାଉଛନ୍ତି ସେତେବେଳେ ସମରୁ ଓ ମଦନର ମା' ଅନ୍ତର୍ହିତ ହୁଅନ୍ତି । କ୍ରମେ ନିକଟରୁ ନିକଟତର ହେଲେ ପାଞ୍ଚଜଣ ଯାକ । ମଦନ କିନ୍ତୁ ନିର୍ବିକାର ଭାବରେ କ୍ଲାନ୍ତି ଦୂର କରିବାରେ ଲାଗିଛି । ମଦନ ପାଖରେ ସେମାନେ ଠିଆ ହେଲେ । ମଦନ ବି ଠିଆ ହୋଇଗଲା । ବନପାଳବାବୁ କାଠ ସମ୍ପର୍କରେ କେତେ ପ୍ରଶ୍ନ କଲେ । ମଦନ ଉତ୍ତର ଦେଲା ଯେ ତା'ର ଘରେ କାଠ ନାହିଁ । ଶୁଖିଲା ଗଛଟିଏ ପଡ଼ିଥିଲା, ସେ ଜଙ୍ଗଲରେ କାଠ କରିଛି ।

ଏଥି ନିମନ୍ତେ ମଦନ ଅନୁମତି ନେଇଛି କି ବୋଲି ବନପାଳ ବାବୁ ପଚାରିଲେ । ମଦନ ଅନୁମତି ନେଇନାହିଁ କହୁଛି । ଘରେ ଜାଳିବା ନିମନ୍ତେ କାଠ ନ ଥିବାରୁ ସେ ନେଉଛି । ବନପାଳ ବାବୁ ଘରେ ଗାଈଗୋରୁ ଅଛନ୍ତି କି ବୋଲି ପଚାରିବାରୁ ମଦନ ନ ଥିବା କଥା କହୁଛି ।

ଏ ଘାସ ତା'ହେଲେ କ'ଣ ହେବ ! ବନପାଳ ବାବୁ ପଚାରିଲେ । ମଦନ କହୁଛି : ସେ ସୁନ୍ଦରଗଡ଼ଙ୍କୁ ଘାସ ବନ୍ଦୋବସ୍ତ କରିବାକୁ ନିଏ । ଏଇ ଘାସ ତା'ର ପରିବାରକୁ ଅଡ଼ିଆ ଯୋଗାଏ ।

କାଠ ଅଡ଼ିଆ ଯୋଗାଏ ନାହିଁ; ବନପାଳ ବାବୁ ପଚାରିଲେ । କାଠ ବି ତ ବନ୍ଦୀ ହେବାକୁ ଯାଉଥିବ ? ସେକଥା କିନ୍ତୁ କୁହା ଯାଉନାହିଁ କାହିଁକି ? ମଦନ ସାଙ୍ଗେ ସାଙ୍ଗେ କହି ଉଠିଛି : ଗଛ, ଏ ଜଙ୍ଗଲର ଗଛ, ଆମର, ଜାତୀୟ ସମ୍ପଦ । ତାକୁ ଅଡ଼ିଆ ପାଇଁ କାହିଁକି ଧ୍ୱଂସ କରାଯିବ । ଘରେ କାଠ ନ ଥିଲା । ଜଙ୍ଗଲରେ ଅଯଥାରେ ଗୋଟିଏ ଗଛ ନଷ୍ଟ ହୋଇ ଯାଇଥିଲା । ନିଜର ବ୍ୟବହାର ନିମନ୍ତେ ଶୁଖିଲା ଗଛକୁ ଫାଳ କରି କାଠ ଆଣିଛି ।

ଅନ୍ୟ ଦୁଇଜଣ ଅପରିଚିତ ବ୍ୟକ୍ତିଙ୍କ ଭିତରୁ ଯିଏ ସୁସ୍ଥ ଦେଖା ଯାଉଛନ୍ତି, ରୁଚିସମ୍ପନ୍ନ ପୋଷାକ ପିନ୍ଧି ସମସ୍ତଙ୍କଠାରୁ ସ୍ୱାସ୍ଥ୍ୟବାନ ଜଣା ପଡ଼ୁଛନ୍ତି ସେ ବନପାଳ ବାବୁଙ୍କୁ ଅ.ଉ ବେଶିକିଛି ନ କହିବାକୁ ଅନୁରୋଧ କରେ । ସେ ଯେତେବେଳେ ନିଜ ଘର କାମରେ ନେଉଛି ତାକୁ ବେଶି ପଚାରିବାଟା ଠିକ୍ ହେବନାହିଁ । ଯେତେବେଳେ ଜଙ୍ଗଲଟା ପାଖରେ ଅଛି, ଜାଳିବାପାଇଁ ଏମାନେ କାଠ ନ ନେବେ ତ ଚଳିବେ କିପରି । ବିଶେଷ କରି 'ଜାତୀୟ ସମ୍ପଦ' ଶବ୍ଦଟି ଅଞ୍ଚଳରେ ଏପରି ଏକ ଲୋକର ମୁହଁରେ ସେ ଶୁଣି ଟିକିଏ ସୁଙ୍କୁରି ଗଲେ । ନିଜର ରୁଚିସମ୍ପନ୍ନ ପୋଷାକ ତଳେ ସେ ନିଜକୁ ଏତେ ଦୁର୍ବଳ ମନେକଲେ ଯେ ମଦନ ଯେପରି କି ଏକ ଶକ୍ତିଶାଳୀ ବ୍ୟାଘ୍ର ଶାବକ । ଏହି ଯୁବକ

ମନ୍ତ୍ରୀଙ୍କରେ ସେ ହୁଏତ ସୃଷ୍ଟି ଏକ ବେଳ । ମାଆରେ ତାଙ୍କର ଯେଉଁ ଗୃହକ ବାଳ-
କଣ ବର୍ତ୍ତମାନ ଅନ୍ତ ଯେମାନେ ଯେଉଁ ନକ୍ସ ଧରଣର ଅଧିକର ଏ ବାକ୍ୟଟିକୁ
ଅଭ୍ୟାସ କରିବାକୁ ଅଭ୍ୟସ୍ତ ହୋଇଛନ୍ତି ଯେ ଅନ୍ୟରେ ଏ ବାଘ ଆହତ
ହୋଇପାରେ କିନ୍ତୁ ମୃତ ହେବନାହିଁ । ହୁଏତ ସେ ହିଂସ୍ର ହୋଇ ଅତର୍କିତ
ଆକ୍ରମଣ କରି ଦେଇପାରେ ଏବଂ ସେ ନିଜେ ତା'ର ପ୍ରଥମ ଶିକାର ହୋଇ
ବି ପାରନ୍ତି ।

ଭଦ୍ରବ୍ୟକ୍ତିଙ୍କ ଏ ସମ୍ଭାଷଣରେ ଗ୍ରାମର ଜଣାଶୁଣା ବ୍ୟକ୍ତି ଜଣକ ଆଶ୍ୱସ୍ତ
ହେଲେ 'ଜାତୀୟ ସମ୍ପଦ' ଶବ୍ଦଟା ଉପରେ ଆତଙ୍କିତ ହୋଇ ଯେଉଁ ସ୍ୱର
ଉତ୍ତେଜିତ ହୋଇଛି, ତା'ର ତତ୍ତ୍ୱ ସେ ବୁଝିଛନ୍ତି, ସେକଥା ନୁହେଁ କୌଣସି
କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବାକୁ ବାରଣ କରୁଥିବା ଦୃଷ୍ଟିରୁ ସେ ଏ ଆଶ୍ୱାସନା
ପାଇଛନ୍ତି । ଜଙ୍ଗଲ ବିଭାଗର କର୍ମଚାରୀମାନେ ମଦନକୁ ପଚରାଉଚୁରା କରୁଥିବା
ସମୟରେ ସେ ନିଜ ମୁଣ୍ଡକୁ ତଳ କରି ଦେଇଥିଲେ । ସେ ନିଜେ ବୁଝିଛନ୍ତି ଯେ
ସେ ଏକ ଗୃହକର୍ତ୍ତା ଗଛ । ତାଙ୍କର ଉପସ୍ଥିତିରେ ମଦନ ଦଣ୍ଡିତ ହେଲେ ତାଙ୍କର
ନିଜ ଅଞ୍ଚଳରେ ସନ୍ଧ୍ୟା ଅସୁବିଧା । ପଦଗୁଡ଼ିକ ବୃଦ୍ଧି ହୋଇଯିବ ।

ବର୍ତ୍ତମାନ କିନ୍ତୁ ନିଜକୁ ସେ ଗୌରବାନ୍ୱିତ ମନେ
କରୁଛନ୍ତି । ଜଣେ ଅସମର୍ଥ ସମର୍ଥଙ୍କ ପରି ନେତାଙ୍କର ଭାଷଣ
ମଝିରେ ଜନତାର ଆନନ୍ଦ ଧ୍ୱନିରେ ଏକ ଗମ୍ଭୀର ଆନନ୍ଦ ଓ ଆନନ୍ଦ ଅନୁଭବ
କରି, ସେ ହୃଦବୋଧ କରିଛନ୍ତି ଯେ ବାସ୍ତବିକ ଏ ଭଦ୍ରବ୍ୟକ୍ତିଙ୍କ ହୃଦୟରେ
ଗମ୍ଭୀର ଶ୍ରଦ୍ଧା ଭରି ରହିଛି । ଏ ବ୍ୟକ୍ତିଜଣକ ଯଦି ତାଙ୍କର ଅଗ୍ରଣୀ ହୋଇଥାନ୍ତି
ତା'ହେଲେ ସାଧାରଣ ଜନତା ବି ଆନନ୍ଦ ଭିତରେ ଆଗକୁ ବଢ଼ି ଚାଲନ୍ତେ ।
ଏଠି ଯେଉଁ ଦୁଇଜଣ ଅଗ୍ରଣୀ ଅଛନ୍ତି ସେମାନେ ଯେ ଏ ପର୍ଯ୍ୟନ୍ତ ଅଜ୍ଞଗତ ନିମନ୍ତେ
ଉଦ୍ୟମ ନୁହଁନ୍ତି ସେକଥା ନୁହେଁ । ଜନସାଧାରଣଙ୍କ ସୁଖ ସୁବିଧା ପ୍ରତି ସେମାନେ
ଦୃଷ୍ଟି ଦଅନ୍ତି ନାହିଁ ସେକଥା ନୁହେଁ; କିନ୍ତୁ ଆବଶ୍ୟକସ୍ଥଳେ ସେମାନେ
ଜନତାକୁ ସିଧାସଳଖ କଥା ଶୁଣାଇ ଦଅନ୍ତି । ଏ କଥାରେ ସେମାନଙ୍କର ଯଦିଓ
ନିଜର ବ୍ୟକ୍ତିଗତ ଲାଭ କିଛି ନ ଥାଏ ଏବଂ ଜନତାର ମଙ୍ଗଳ ବରଂ ସେଥିରେ
ବିଶେଷ ଭାବରେ ଜଡ଼ିତ ଥାଏ । ମଦନ ତ ତା' ଘର ପାଇଁ କାଠ ନେବ ।
ନିଜ ପରିବାରର ସୁବିଧା ହେବ । ସେ ଯଦି ଦଣ୍ଡିତ ହୋଇଥାନ୍ତା ସେଥିରେ
ତା'ର ବ୍ୟକ୍ତି ପରିବାରରେ ବରଂ ବ୍ୟଥା ବଢ଼ି ଯାଇଥାନ୍ତା । ଏଣୁ
ମଦନର ମୁଣ୍ଡରେ ତ ଭଦ୍ରବ୍ୟକ୍ତିଙ୍କ ବ୍ୟକ୍ତିଗତ ଲାଭ କିଛି ନାହିଁ ।

ଗ୍ରାମର ଜଣାଶୁଣା ଲୋକଜଣକ କିନ୍ତୁ ଉକ୍ତ ଭଦ୍ରବ୍ୟକ୍ତିଙ୍କ ଏ ଧ୍ୱନି
ଭିତରେ ପ୍ରବେଶ କରିପାରି ନାହାନ୍ତି । ସେ କେବଳ ଏକ ହୃଦୟସ୍ପର୍ଶୀ ଧ୍ୱନିର

ତରଙ୍ଗରେ ତରଙ୍ଗାୟିତ ହୋଇ ଯାଉଛନ୍ତି । ସେ ଯେ ଏକ ଘନ ପଦାର୍ଥ ଏହା କେହି ଅଗ୍ରାହ୍ୟ କରିବେ ନାହିଁ ଯେତେବେଳେ ସେ ଜଳେ ଏକ ଭାସମାନ ସୋଲ୍ । ଏକ କ୍ଷୁଦ୍ର ଅସ୍ୟୁତନ ବିଶିଷ୍ଟ ଘନ ପଦାର୍ଥ ଦ୍ୱାରା ସୃଷ୍ଟ ତରଙ୍ଗରେ ସେ ଆନ୍ଦୋଳିତ ହୋଇ ଯାଉଛନ୍ତି । ଏ ଘନ ପଦାର୍ଥର ଓଜନ ଯଦିଓ ଏହି ଆନ୍ଦୋଳିତ ହେଉଥିବା ସୋଲଠାରୁ ବି କମ୍ କିନ୍ତୁ, ଅଳ୍ପ ଅସ୍ୟୁତନ ବିଶିଷ୍ଟ କ୍ଷୁଦ୍ର ପଦାର୍ଥଟି କ୍ଷିପ୍ର ବେଗରେ ଜଳ ଭିତରେ ପ୍ରବେଶ କରି ଏହାର ପୃଷ୍ଠଭାଗକୁ ଯେ କେବଳ ତରଙ୍ଗାୟିତ କରି ଦେଇଅଛି ତା' ନୁହେଁ ଜଳର ଅନ୍ତରକୁ ଭେଦକରି ଜଳର ଶେଷ ପ୍ରାନ୍ତରେ ବି ଉପବିଷ୍ଟ ହୋଇଯାଇଅଛି । ଏ ଶକ୍ତି ପ୍ରୟୋଗ କରି ସୋଲକୁ ନିକ୍ଷେପ କଲେ ବି ବେଗ ଗ୍ରହଣ ସେ କରିପାରିବ ନାହିଁ କି ଜଳର ଅନ୍ତରକୁ ଭେଦ କରିପାରିବ ନାହିଁ । ଜଳକୁ ଅବଶ୍ୟ ସ୍ପର୍ଶ କରିବ ଏବଂ ଏ ଜଳ ଏ ଜନତା ।

ଗ୍ରାମର ଜଣାଶୁଣା ଲୋକ ଏହି ବସନ୍ତ ବାବୁ ଜଣେ ସରଳ ଲୋକ । ଗ୍ରାମର ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ଅନ୍ୟମାନେ ସମସ୍ତେ ତାଙ୍କୁ ଭଲ ପାଆନ୍ତି । ସେ କାହାରିକୁ ଅନାଦର କରନ୍ତି ନାହିଁ । କାହାରିକୁ ଛତଭଙ୍ଗରକୁ ଠେଲି ଦେବାକୁ ପସନ୍ଦ କରନ୍ତି ନାହିଁ । କୌଣସି କ୍ଷମତା ତାଙ୍କ ହାତରେ ରହୁ ସେ ଏହା ଚାହାନ୍ତି ନାହିଁ ଅଥଚ ଏ ଅଞ୍ଚଳର କ୍ଷମତାଶୀଳ ଲୋକଙ୍କଠାରୁ ବି ସେ ବେଶି ସମ୍ମାନିତ । ସେ କାହାରିକୁ ଅବିଶ୍ୱାସ କରନ୍ତି ନାହିଁ । କାହାରି ହୃଦୟ ଭିତରେ କପଟତା ଥିବ ଏକଥା ସେ ଭାବନା ବି କରନ୍ତି ନାହିଁ । କୌଣସି ଏକ କ୍ଷେତ୍ରରେ ଜଣକ ଭିତରେ ସେ କପଟତାର ସୂଚନା ପାଇଲେ ତା' ପ୍ରତି ଭିନ୍ନ ଧରଣର ବ୍ୟବହାର କରିଯିବାକୁ ସ୍ଥିର କରନ୍ତି; କିନ୍ତୁ ପର ମୁହୂର୍ତ୍ତରେ ସେସବୁ ଉଭେଇ ଯାଏ । ନିଜ ଲୋକଙ୍କ ଭିତରେ ଯେତେସବୁ ଅସଦ୍ ଗୁଣ ସେ ଅନୁଭବ କରନ୍ତି ସେ ସବୁକୁ ଦୂର କରିବାକୁ ସେ ସ୍ଥିର ନିଶ୍ଚିତ ହୁଅନ୍ତି । ତଥାପି ନିଜ ହୃଦୟରେ ତଥା ଅନ୍ୟମାନଙ୍କର ଜଟିଳତା ଭିତରେ ଏକ ନୂତନ ପରିସ୍ଥିତି ସୃଷ୍ଟି କରିଦିଏ । ଏ ସବୁରୁ ଧୈର୍ଯ୍ୟ ସହକାରେ ନିଜକୁ ସେ ସଂଯତ କରନ୍ତି । ଯେ କୌଣସି ସ୍ଥାନରେ ବି ହେଉ ଜଣେ ଅପରିଚିତ ବ୍ୟକ୍ତି ହୁଅନ୍ତୁ ସେ ତାଙ୍କୁ ନିରାଶ କରିବାକୁ ଚାହାନ୍ତି ନାହିଁ । ନିଜର ଯଥାଶକ୍ତି ସାହାଯ୍ୟ ନିଶ୍ଚୟ ସେ ପ୍ରଦାନ କରନ୍ତି । ଯେଉଁ ଅପରିଚିତ ଭଦ୍ରବ୍ୟକ୍ତିଙ୍କ ଗହଣରେ ବର୍ତ୍ତମାନ ସେ ଅଛନ୍ତି, ସେମାନଙ୍କୁ ପଦାର ଅପର ପାଖରେ କ୍ଷେତକୁ ଲାଗି ରହିଥିବା ଶର୍ଗି ଜଙ୍ଗଲକୁ ଦେଖାଇବାକୁ ଯାଇଛନ୍ତି । ହୃଷ୍ଟପୁଷ୍ଟ ବ୍ୟକ୍ତି ଜଣକ ଜଣେ ଠିକାଦାର ଏବଂ ଅନ୍ୟ ଜଣକ ଠିକାଦାରଙ୍କର ଜଣେ କର୍ମଚାରୀ । ଏହି ଭବାନୀଶଙ୍କର ବାବୁ ଆଜିକୁ ସାତ ବର୍ଷ ହେବ ଏ ଅଞ୍ଚଳରେ ଗଛ ବ୍ୟବସାୟ କରୁଛନ୍ତି ।

'ମଦନ ଜାତୀୟ ସମ୍ପଦ' କହିଲେ କିଛି ବୁଝିନାହିଁ । ସେ କେବଳ ଏତିକି ଜାଣେ ଯେ ଏଇ ବଣର ଗଛ ଗୋଟିଏ ଜାତୀୟ ସମ୍ପଦ । ସେ କଥାଟିକ ବନପାଳବାବୁଙ୍କଠାରୁ ସେଦିନ ଏହା ଶୁଣିଛି । ଏହା କାହିଁକି କୁହାଗଲା ମଦନ ବୁଝିନାହିଁ । ଅନ୍ୟର ଦେଶର ବି କିଛି ଅଛି ଯାହାକି ଜାତୀୟ ସମ୍ପଦ ଆକାରରେ ପରିଗଣିତ ହୁଏ ସେକଥା ବି ମଦନ ଜାଣିନାହିଁ । ସେ ଜାତି କହିଲେ ନିଜର ସଂପ୍ରଦାୟକୁ ବୁଝେ ଏବଂ ସମ୍ପଦ କହିଲେ ନିଜର କର୍ତ୍ତୃତ୍ୱ ଅଧିନରେ ଥିବା ବସ୍ତୁ-ଗୁଡ଼ିକୁ ବୁଝେ । ସୁନାଙ୍କି ବେଳେବେଳେ, କହିଥାଏ ସମରୁ ଓ ଦହଲ୍ ସେମାନଙ୍କର ଧନ । ସମ୍ପଦ । ଜାତି ଏବଂ ସମ୍ପଦ ଏ ଦୁଇଟିର ଅର୍ଥ ସେ ବୁଝିଥିଲେ ବି 'ଜାତୀୟ ସମ୍ପଦ' କଥାକୁ ସେ ବୁଝିନାହିଁ । ସେ ଏତିକି ବି ବୁଝିନାହିଁ ଯେ ଏହା ସେମାନଙ୍କର ସମ୍ପଦ । ଏ ପ୍ରକାର ଭାବନା ତା' ମୁଣ୍ଡରେ ପଶିନାହିଁ ।

ମଦନର ବକ୍ତବ୍ୟ ଭିତରେ 'ଜାତୀୟ ସମ୍ପଦ' ଶବ୍ଦଟା ବସନ୍ତ ବାବୁ ଶୁଣିଛନ୍ତି । ଶବ୍ଦଟା ଉଚ୍ଚାରିତ ହେବାପରେ ବି ସେ କୌଣସି ପ୍ରତିକ୍ରିୟା ପ୍ରକାଶ କରି ନାହାନ୍ତି । ସେ ମଦନର ଉର୍ଦ୍ଧ୍ୱରେ, ହେଲେ ସେ ଏତିକି ଜାଣନ୍ତି ଯେ ଗାଁ ଗହଳର ଲୋକେ ତଥା ସାଧାରଣ ଲୋକେ ଯେଉଁ ଶବ୍ଦଟା ଶୁଣିଥାନ୍ତି ତା'ର ବ୍ୟବହାର ଜାଣି ନ ଥିଲେ ବି କହିଥାନ୍ତି । କହିବା କଥା ଭିତରେ ଏହାର ଅର୍ଥ କେଉଁ ଆଡ଼କୁ ଯାଉଛି ସେମାନେ ବୁଝି ନ ଥାନ୍ତି । ସେମାନେ ଏତିକି ଆନନ୍ଦିତ ହୁଅନ୍ତି ଯେ ତାଙ୍କଠାରୁ ଉନ୍ନତ ଲୋକେ ବୁଝି ପାରିଲା ଭଳି କଥାଟିଏ କହି ପାରିଛନ୍ତି । ସେ ଶବ୍ଦଟା ସେମାନେ କହି ନ ଥିଲେ ହୁଏତ ତାଙ୍କର କଥାଟା ଉନ୍ନତ ଲୋକେ ବୁଝି ପାରି ନ ଥାନ୍ତେ । ସେମାନେ ଭିନ୍ନ ଧାରଣାରେ କହନ୍ତି ଅଥଚ ସେ ଶବ୍ଦରେ ବିଶେଷ କିଛି ତାତ୍ପର୍ଯ୍ୟ ନ ଥାଏ । ସେ ଶବ୍ଦଟା ବରଂ ସେମାନଙ୍କର ନିର୍ବୋଧତାର ପରିଚୟ ଦିଏ । ଏଣୁ ବସନ୍ତବାବୁ ନିଜ ଲୋକର ମୁହଁରେ ଏକ ଆବଶ୍ୟକ ଶବ୍ଦ ଶୁଣି ଟିକିଏ ଲଜ୍ଜାବୋଧ କଲେ । ଯାହାହେଉ ମଦନ ଯେ ଜଣେ ନିରୀହ ଲୋକ ଏପରିକି ଦୟାର ପାତ୍ର, ଏକଥା ଭବାନୀଶଙ୍କର ବାବୁ ଯାହାହେଉ ବୁଝି ପାରିଛନ୍ତି ଏବଂ ପ୍ରଥମେ ସ୍ୱର ଉତ୍ତୋଳନ କରିଛନ୍ତି ତାକୁ ଦଣ୍ଡିତ କରି ନ ଦିବାକୁ । ସେ ମଦନ ତରଫରୁ ତାଙ୍କ ଉପରେ କୃତଜ୍ଞ ।

ବନପାଳ ବାବୁ ବି କିଛି କହିଲେ ନାହିଁ । ମଦନର ମୁହଁରୁ 'ଜାତୀୟ ସମ୍ପଦ' ଶବ୍ଦଟା ତାଙ୍କୁ ବି ବ୍ୟଥିତ କଲା । ସେ ବି ନମ୍ର ହୋଇଯିବା ଅବସ୍ଥାକୁ ଆସି ଯାଇଥିଲେଣି । ଭବାନୀଶଙ୍କର ବାବୁଙ୍କ ଉପସ୍ଥିତିଟା ସେ ଅଡୁଆ ଅନୁଭବ କରୁଥିଲେ । ତାଙ୍କୁ ବୋଧହେଲା ସତେ ଯେପରିକି ଏଇ ଲୋକଟା ସେମାନଙ୍କୁ ଉପହାସ କରୁଛି ।

ଏହି ପରିବେଶ ମଧ୍ୟରେ କାଲିଠାରୁ ଗଛ କାଟିବାକୁ ବସନ୍ତ ବାବୁ ମଦନଙ୍କୁ ଅନୁରୋଧ କଲେ । ଭବାନୀଶଙ୍କର ବାବୁ ଜଙ୍ଗଲ ବିଭାଗରୁ ଅନୁମତି ଆଣିଛନ୍ତି ଏଠାରୁ ଗଛ କାଟିନେବେ । ବିଭାଗୀୟ କର୍ମଚାରୀମାନେ ସେଥିପାଇଁ ସେ ଅଞ୍ଚଳରେ ନିୟମ ଅନୁଯାୟୀ ଗଛଗୁଡ଼ିକ ଚିହ୍ନିତ କରାଇ ଦେବେ ।

ମଦନ ବି ସମ୍ମତ ହେଲା ଗଛ କାଟିବାକୁ; କିନ୍ତୁ ଦୁଇ ତିନି ଦିନରେ ଥରେ ସୁନ୍ଦରଗଡ଼କୁ ସେ ଯାଇ ଦେଇ ଦେବ । ଯେ ଯେତିକି ସଂଗ୍ରହ କରିଥିବ ସେତିକି ନେଇ ନ ଦେଲେ ସେ ବାବୁଜଣକ ବଡ଼ ଅସୁବିଧାରେ ପଡ଼ିବେ । ଆଜିଯାଏଁ ଯେତେବେଳେ ସେ ଦାନା ଯୋଗାଇ ଆସୁଛନ୍ତି ତାଙ୍କୁ ବି ହଠାତ୍ ଛାଡ଼ିଦେବାଟା ଠିକ୍ ହେବନାହିଁ । ନିଜର ଦାନାପାଣି ଯୋଗାଡ଼ କରିବାରେ ଯଦିଓ ଘାସର ପରିମାଣ ଅନୁସାରେ ପାରିଶ୍ରମିକ ସେ ଦିଅନ୍ତି ତଥାପି ତାଙ୍କୁ ପଦଟିଏ ଶୁଣାଇ ଦେବାକୁ ହେବ । ମଦନ ତ ଭୁଲ୍ ବକାଲି ନୁହେଁ । ମଦନ ସବୁବେଳେ ଗୋଟିଏ କଥା ଭାବେ ଯେପରି କି ତାକୁ ଜଣେ କୌଣସି ଭୁଲ୍ ଦେଖାଇ ପଦଟିଏ ବି କହୁ । କଥା ମଦନ ପାଇଁ ଯେ ଶୁଣିବା ମଦନଙ୍କୁ ପସନ୍ଦ ଲାଗେନାହିଁ ।

ମଦନ ବନପାଳ ବାବୁଙ୍କ ମୁହଁକୁ ଏବଂ ଭବାନୀଶଙ୍କର ବାବୁଙ୍କ ମୁହଁକୁ ଦେଖି ନିଜର ଶେଷକଥା କହିବାକୁ ଲାଗିଲା । ଯେତେବେଳେ ଜାତୀୟ ସମ୍ପଦକୁ ନିଜେ ବିଭାଗୀୟ ଲୋକେ ଚିହ୍ନ ଦେଇ ଜଣେ ଅନୁମତି ପାଇଥିବା ଭଦ୍ରବ୍ୟକ୍ତିଙ୍କୁ ଦେଇଛନ୍ତି ସେ କାହିଁକି ନିଜର ଘର ପାଖରେ ପରିଶ୍ରମ କରି ଛୁଆପିଲାଙ୍କ ମୁହଁ ଦେଖି ରୋଜଗାର କରିବ ନାହିଁ । ଯଦି ବାବୁ ଜଣକ ଏଠି ଦୁଇ ତିନି ମାସ କାମ କରାନ୍ତେ ତା'ହେଲେ ତ ସେମାନେ କଷ୍ଟ ପାନ୍ତେ ନାହିଁ । ତାଙ୍କର ରୋଜଗାର ହେଲେ ହେଲା । ଯେଉଁଠି ବିଭାଗର କର୍ମଚାରୀ ଅଛନ୍ତି ଏବଂ ଜଣେ ଅନୁମତି ଦେଇ-ଛନ୍ତି ଜାତୀୟ ସମ୍ପଦଟା ଉପରେ କେହି ଆଖି ପକାନ୍ତେ ନାହିଁ । ଯାହାହେଉ ଏ ଅଭାବ ପରିସ୍ଥିତିରେ ସେମାନଙ୍କୁ କାମ ମିଳିଗଲା । ତେଣୁ ବିଭାଗର ଲୋକ ଏବଂ ଭବାନୀଶଙ୍କର ବାବୁଙ୍କୁ ସେ ଥରଟିଏ ଲେଖାଏଁ ଜୁହାର କଲା ।

ସମସ୍ତେ ହସି ଉଠିଲେ । ଭବାନୀଶଙ୍କର ବାବୁ ମଦନଙ୍କୁ ପଚାରିଲେ ସେ 'ଜାତୀୟ ସମ୍ପଦ' ଶବ୍ଦଟା କିପରି ଜାଣିଲା । ମଦନ କହିଲା ସେ ପୂର୍ବେ କାଠ ବିକୁଥିଲା । କାଠ ବିକି ପରିବାର ପୋଷୁଥିଲା । ଥରେ ଧରା ପଡ଼ିଯିବାରୁ ବନରକ୍ଷୀ ବାବୁ ଦୟା ପ୍ରଦର୍ଶନ କରୁଥିବା ସତ୍ତ୍ୱେଓ ବନପାଳ ବାବୁ କହିଲେ ଜାତୀୟ ସମ୍ପଦକୁ ଏମାନେ ନଷ୍ଟ କରି ଦେଉଛନ୍ତି । ସେତେବେଳେ ସେ ଜାଣିଲା ଜାତୀୟ ସମ୍ପଦ କାହାକୁ କୁହାଯାଏ । ଗଛ କହିଲେ ସେମାନେ ବୁଝିପାରୁ ନ ଥିବେ

ବୋଲି ଗଡ଼ କଥା ପଡ଼ିଲେ ସେ ଜାଣନ୍ତୁ ସମ୍ବାଦ ବୋଲି କହୁଥାଏ । ସେମାନେ ତତ୍‌କ୍ଷଣାତ ବୁଝିବେ ବୋଲି ଏବେ କହନ୍ତି ।

ଭବାନୀଶଙ୍କର ବାବୁ ଏବଂ ବନପାଳ ବାବୁ ଦୁହେଁ ଦୁହିଁଙ୍କି ଦେଖି ନେଇ-ଛନ୍ତି । ଉଭୟଙ୍କ ମୁଖମଣ୍ଡଳରେ ଆନନ୍ଦର ଢେଉ । ମଦନ ଉପରେ ଏକ ତାଚ୍ଛଲ୍ୟ ଦୃଷ୍ଟି ପଡ଼ୁଛି ସେମାନଙ୍କର । ବନପାଳ ବାବୁ ମଦନଙ୍କୁ ନିଜ ଘରକୁ କାଠଟା ନେଇ ଯିବାକୁ କହିଲେ ଏବଂ ବନରକ୍ଷୀଙ୍କୁ ଡାକ ଦେଲେ । ଆଖପାଖରେ ବନରକ୍ଷୀ ବାବୁ ଏ ଅବସରରେ ବୁଲ୍‌ବୁଲ୍ କରୁଥିଲେ । ପାଞ୍ଚଜଣ ଯାକ ନିଜ ଗନ୍ତବ୍ୟ ସ୍ଥଳକୁ ଆଗେଇ ଚାଲିଲେ ।

ମଦନ ଘରକୁ ଫେରିଛି ଏବଂ କିଛି ସମୟ ବିଶ୍ରାମ ନେଇଛି । ଦେହରୁ କ୍ଳାନ୍ତି ଦୂରେଇ ଯାଇନାହିଁ କିନ୍ତୁ ଝାଳ ଶୁଖି ଯାଇଛି । ଏତିକି ବିଶ୍ରାମ ପରେ ମଦନ ଗାଧୋଇବାକୁ ଯାଇଛି । ସୁମାମାକୁ ମଦନ କହିଛି : ସେ ସୁନ୍ଦରଗଡ଼ ଯିବ । ଘାସ ଗୃଲିଣି ବଡ଼ା ଅଛି । ପହଞ୍ଚାଇ ଦେବାକୁ ହେବ ।

ଗାଡ଼ିଆକୁ ଯିବା ବାଟରେ ସେ ଇସ୍‌ମାଇଲ ଖାଁ ଏବଂ ଭୁବନକୁ ଦେଖିଛି । ସେମାନଙ୍କ ମୁଖମଣ୍ଡଳରେ ଅଦ୍ୟାପି ଏକ ଖୋଲା ପରିବେଶର ଗୁଞ୍ଜନ ନାହିଁ । ମଦନ ସେମାନଙ୍କୁ କିଛି ପଚାରି ନାହିଁ । ଏ ପ୍ରକାର ପଚାରିବାର ଆବଶ୍ୟକତାର ଅବକାଶ ଯେ ନାହିଁ ହୁଏତ ମଦନର ଆଖିରୁ ବୁଝାପଡ଼ୁଛି । ଇସ୍‌ମାଇଲ ଖାଁ ଏବଂ ଭୁବନ କିଛି କଥା ଆଶାରେ ନିଜକୁ ଏକ ଭିନ୍ନ ବେଗରେ ଗଢ଼ କରାଇଛନ୍ତି । କିନ୍ତୁ ପରେ ନିଜର ଲକ୍ଷ୍ୟ ସ୍ଥଳକୁ ଆଗେଇ ଚାଲିଛନ୍ତି । ମଦନ ଗାଡ଼ିଆର ପାଣିରେ ସିଧାସଳଖ ପଶି ଯାଇଛି । ସେ ପାଣିକୁ ନିରୀକ୍ଷଣ କରିନାହିଁ ।

ମଦନ ଟିକିଏ ଚଞ୍ଚଳ ହୋଇଯାଇଛି । କିନ୍ତୁ କ୍ଳାନ୍ତ ଆସିଲା ଭଳି ତରବର ହୋଇନାହିଁ । ଥିର୍ ଟିକିଏ ପିଇ ନେଇଛି । ଘାସ ଭାରକୁ ସଜାଡ଼ି ନେଲା । ଗତକାଲିରୁ ସୁନ୍ଦରଗଡ଼କୁ ଯାଇନାହିଁ । ବାବୁ ଜଣକେ ଘାସର ଅଭାବ ଅନୁଭବ କରୁଥିବେ । ଅବଶ୍ୟ ଏବେ ସେ ଧାନ ନଡ଼ାରେ କାମ ଚଳେଇ ନିଅନ୍ତି । ତଥାପି ସବୁଜ ଘାସରେ ତାଙ୍କର ଆଗ୍ରହ ବେଶି ।

ମଦନ ବାଟ ମଝିରେ ଚିନ୍ତା କରିବାକୁ ଲାଗିଲା ଯେ ବାବୁଜଣଙ୍କୁ କିପରି କହିବ ଘାସ ଆଉ ମିଳିବା ଅବସ୍ଥାରେ ନାହିଁ । ଏଣୁ ଏଣିକି ସେ ଆଉ ଘାସ ଯୋଗାଇ ପାରିବ ନାହିଁ, ଏକଥା ତା' ମୁହଁରେ ବାହାରିବ କିପରି । ବାବୁଜଣକେ ଯେତିକି କଥା କହନ୍ତି ସେଇଥିରେ ମମତା ଭରି ରହିଥାଏ । ସେ ଅବଶ୍ୟ ବୁଝି-ପାରି ନ ଥିବେ ଯେ ମଦନ କେବଳ ଶ୍ରମଲବ୍ଧ ଧନରେ ନିଜକୁ ବଞ୍ଚାଇ ରଖିଛି । ମଦନକୁ କିନ୍ତୁ ସ୍ୱଚ୍ଛଳ କରିଛନ୍ତି ସେ ବାବୁ ଜଣକ । ସେ ଏ ପର୍ଯ୍ୟନ୍ତ ଲାଞ୍ଛିତ

ହୋଇନାହିଁ କିମ୍ବା କେବେ ବି ଅନାବଶ୍ୟକ ହୋଇନାହିଁ । ଏବେ ସେ ଘାସ ଆଉ ଦେଇ ପାରିବ ନାହିଁ କହିଲେ କାଠ ହଣାରେ କିଛି ରୋଜଗାର କରିବା ସହଜ ହେବ । ମାନସିକ କ୍ଳାନ୍ତି ଏବଂ ଶାରୀରିକ କ୍ଳାନ୍ତି ଦୂର ହୋଇଯିବ । ମଦନର ଅନ୍ତର କିନ୍ତୁ ନୀରବ ରହେ ଏବଂ ନିରୁତ୍ତର ହୁଏ । ଉପର ବେଳାର ଖରାରୁ ମୁକ୍ତି ପାଇଯିବାକୁ ମଦନ ଗଛତଳେ କିଛିକ୍ଷଣ ବସି ରହିଲା ଏବଂ ଘାସ ବୋଝାରେ ଟିକିଏ ଆଉଜି ଗଲା । ଦକ୍ଷିଣ ଦିଗରୁ ଗରମ ପବନଟା ବି ବହିଆସି ମଦନର ଶରୀରର ଝାଳ ବିନ୍ଦୁଗୁଡ଼ିକୁ ଅଦୃଶ୍ୟ କରାଇବାକୁ କାହିଁକି ଯେ ଚେଷ୍ଟିତ ମଦନ ଆଉ ବୁଝିନାହିଁ । ମଦନର ଆଖି ଦୁଇଟା ବୁଜି ହୋଇ ଯାଇଛି ଏବଂ ଶରୀରଟା ଲଇଁ ଯାଇଛି । ମଦନ ଅନୁଭବ କଲା କିଏ ଯେପରି ଝିଙ୍କିଦେଲା । ମଦନ ଚଟାପଟ୍ ଠିଆ ହୋଇଗଲା । କାନ୍ଧରେ ଘାସ ଭାରଟା ଉଠାଇ ନେଲା । ହାଲୁକାଏ ପବନ ହଠାତ୍ ବହିଗଲା ।

ମଦନ ସିଧାସଳଖ ଚାଲିଗଲା ଶିକ୍ଷା ବିଭାଗର କର୍ମଚାରୀଙ୍କ ବସା ଘରକୁ । ମଦନ ଘାସକୁ ଯଥା ସ୍ଥାନରେ ରଖିଦେଲା । ଇତି ମଧ୍ୟରେ ବାବୁ ଜଣକ ଘର ଭିତରୁ ବାହାରି ଆସି ମଦନକୁ ନିରୀକ୍ଷଣ କରୁଛନ୍ତି ଏବଂ ତୃପ୍ତିର ଏକ ଗଭୀର ପ୍ରଶ୍ୱାସ ଛାଡ଼ୁଛନ୍ତି । ତାଙ୍କର ଦୃଷ୍ଟିପଥ ଏବଂ ମୁଖମଣ୍ଡଳର ସ୍ଥିତି ମଦନ ପ୍ରତି ଏକ ଗଭୀର ସମବେଦନା ପରି ବହନ କରି ଚାଲିଛି । ନିଜର ପ୍ରାଥମିକ କାମ ଶେଷକରି ଗୁହାଳକୁ ଲେଉଟି ମଦନ ଦେଖି ନେଇଛି ବାବୁଙ୍କୁ । ମଦନ ନମସ୍କାର କରିଛି । ବାବୁ ପ୍ରତି ନମସ୍କାର ଜଣାଇଲେ ଏବଂ ଓଷ୍ଠଧାରରେ ଫୁଟି ଉଠିଥିବା ଏକ ସ୍ପଷ୍ଟ ହସର ଗାମ୍ଭୀର୍ଯ୍ୟରେ କିଛିକ୍ଷଣ ବୁଡ଼ିଗଲେ ।

ବାବୁଙ୍କର ମନୋଭାବରେ ମଦନ ପରିବର୍ତ୍ତନ ଲକ୍ଷ୍ୟକଲା । ତା'ର ନିରୀହତାର ଆବରଣ ଭିତରେ ଫୁଟି ଉଠୁଥିବା ଉଦ୍‌ବେଗରେ ଅସ୍ବନକ ସଙ୍କୋଚନ ଅନୁଭବ କଲା । ମଦନ ଯେ ଆଉ ଘାସ ଯୋଗାଇ ପାରିବ ନାହିଁ ଏକଥା ବୋଧହୁଏ ବାବୁଜଣକ ଜାଣି ନେଇଛନ୍ତି । ତେଣୁ ପୂର୍ବ ଦିନ ପରି ତାଙ୍କର ଆନନ୍ଦ ନାହିଁ । ମଦନ ଦେଖିଲା ବାବୁଙ୍କର ମୁହଁରେ କ୍ରୋଧ କିମ୍ବା ବିରକ୍ତିର ସୂଚନା ନାହିଁ । ତଥାପି ନିଜକୁ ଦୋଷୀ ମନେ କରିବାକୁ ଲାଗିଲା । ମଦନର ନାସାଗ୍ରରେ ଝାଳ ଫୁଟି ବାହାରି ପଡ଼ିଲା । ବାବୁଙ୍କର ଏକ ଅସହାୟ ପରିବେଶରେ ନିଜକୁ ଗୁପ୍ତ ହୋଇଗଲା ପରି ମନେକଲା । ଅପରାହ୍ଣ ସୂର୍ଯ୍ୟର ତେଜ କମିଯାଇଛି କିନ୍ତୁ ବାୟୁରେ ତାତି ଅନୁଭୂତ ହେଉଛି । ମଦନ କିଛି କହି ପାରୁନାହିଁ । ଅଗତ୍ୟା ସବୁଦିନ ବାବୁ କିଛି କହନ୍ତି କିନ୍ତୁ ଆଜି ଏତେଗୁଡ଼ାଏ ମୁହୂର୍ତ୍ତ ଯେ ଚାଲିଗଲାଣି କିଛି କହୁ ନାହାନ୍ତି । ତା'ର ଅନ୍ତଃଚକ୍ଷୁ ଦେଖୁଛି ପର୍ବତର ଖୋଲ । ଶରୀର

ତା'ର ଦୂର ବୁଲୁଛି ମାମୁଁଆ ଶାମିରେ । ମନେପଡ଼େ ବନପାଳ ବାବୁଙ୍କ ଗହଣରେ ଠିକାଦାର ଗଛ କାଟିବାକୁ ପ୍ରସ୍ତୁତ ହୋଇଥିବା କଥା । ମନରେ ନୂଆ ଦମ୍ଭ ମୁଣ୍ଡି-ଉଠେ । ସେ ଗୁହେଁ ବାବୁଙ୍କୁ । ଏକ ଅନିର୍ଦ୍ଦିଷ୍ଟ କୃତଜ୍ଞ ହୃଦୟର ଶେଷାଂଶର ଅବ୍ୟ-ବହିତ ପୂର୍ବରୁ ବାବୁ କହିଲେ : ମଦନ, ତୋତେ ବୋଧହୁଏ ଦୁଃଖ ହେବ ।

ଦୁଃଖ କାହିଁକି ହେବ ବାବୁ, ଝଟିବା ତ ଆମର ଧର୍ମ । ଏ ଝଟଣି ମୋର ମନପିଜ, ଏଥିରେ ତ ଗୁଟନାହିଁ । ତଥାପି ମଦନ, ଏକ ନିର୍ଦ୍ଦିଷ୍ଟ ପଥରେ ଝଟିବାରେ ଯେଉଁ ଆନନ୍ଦ ଅଛି, ହୁଏତ ପଥ ପରିବର୍ତ୍ତନରେ ସେ ଆନନ୍ଦ ସାମୟିକ ବାଧା ଦେବ ଏବଂ ସେଇଥିରେ ଭରି ରହିଛି ଦୁଃଖ । ଏ ଦୁଃଖ ହୁଏତ ଅସ୍ଥାୟୀ ହୋଇପାରେ, ପରେ ହୁଏତ ପର୍ଯ୍ୟାପ୍ତ ଆନନ୍ଦ ମିଳିପାରେ ।

ପନ୍ଥର ଆନନ୍ଦ ପାଇଁ ସମ୍ପର୍କକୁ କିନ୍ତୁ ଭଙ୍ଗାଯାଇ ପାରିବ ନାହିଁ ବାବୁ; ମଦନ ବାଧ୍ୟ ହୋଇ ସେପରି କ କହୁଛି । ବାବୁ ଜଣଙ୍କ ମୁହଁରେ ଦୁଃଖ ଖେଳି-ଗଲା । ସେ ନିଜେ ମଦନ ହୁଏତ ସମ୍ପର୍କକୁ ଛିନ୍ନ କରୁଛନ୍ତି । କିନ୍ତୁ ଏହା ସେ ନିଜ ଜୀବନରେ ଅପରିହାର୍ଯ୍ୟ । ଯେ ପର୍ଯ୍ୟନ୍ତ ସେ ନିଜ ଜୀବନର ପଥ ବଦଳାଇ ନାହାନ୍ତି, ସେ ପର୍ଯ୍ୟନ୍ତ ତାଙ୍କୁ ବିଭାଗୀୟ ନିର୍ଦ୍ଦେଶ ମାନିବାକୁ ପଡ଼ିବ । ଶିକ୍ଷା ବିଭାଗର ଉଚ୍ଚ କର୍ତ୍ତୃପକ୍ଷଙ୍କଠାରୁ ଅନ୍ୟ ଏକ ସ୍ଥାନକୁ ବଦଳି ହୋଇ ଯିବାକୁ ତାଙ୍କୁ ନିର୍ଦ୍ଦେଶ ମିଳିଛି । ଅନ୍ୟମନସ୍କ ଭାବରେ ସେ ମଦନକୁ ପଚାରିଲେ : ଘାସ କେତେ ବଡ଼ା ଅଛି ।

ମଦନ ଚମକି ଉଠି ଅଟକି ନ ରହି ସାଙ୍ଗେ ସାଙ୍ଗେ ଉତ୍ତର ଦେଲା : ଗୁଳିଣ ବଡ଼ା ଘାସ ଅଛି ।

ବାବୁ ଜଣକ ଘର ଭିତରକୁ ଯାଉଁ ଯାଉଁ ସେ ଆସୁଛନ୍ତି ବୋଲି ମଦନକୁ ଜଣାଇ ଦେଲେ । ମଦନ ସମ୍ମୁଖସ୍ଥ ଗଳିକୁ ଲକ୍ଷ୍ୟ କରି ନିଜର ଅଖିକୁ ବୁଲାଇଲା । ଦେଖିଲା, ବାବୁଙ୍କର ଗାଈଟି ଗୁହାଳ ଉଦ୍ଦେଶ୍ୟରେ ଆସୁଅଛି । ଲମ୍ବା ଲମ୍ବା ପଦକ୍ଷେପ ଆଉ ଫୁର୍ତ୍ତି ଚେହେରା । ବାବୁଙ୍କର ବାଡ଼ାର ଗେଟ୍‌ଟି ବନ୍ଦ ଅଛି । ଗାଈଟି ଅଟକିଗଲା ।

ବାବୁ ଗୁରିଟି ଟଙ୍କା ଆଣି ପେଶନ୍ତି । ମଦନକୁ ଡାକଟାଏ ପକାଇ ଘର ବାରଣ୍ଡାରେ ଠିଆହେଲେ । ମଦନ ବାବୁଙ୍କ ସାମନାରେ ବାରଣ୍ଡାରେ ଠିଆହେଲା । ମଦନକୁ ଟଙ୍କା ବଢ଼ାଇ ଦେଇ ସେ କହିଲେ, କାଲି ଅନ୍ୟ ଏକ ସ୍ଥାନକୁ ସେ ଗୁଲିଯିବେ । ତାଙ୍କର ବଦଳି ହୋଇଯାଇଛି । ଅଜି ଶେଷ ଦିନରେ

ଦାନା ଘାଂଅଶ କରିବାରେ ବିଶେଷ ଅସୁବିଧା ହେଉଥାନ୍ତା । ଏଣୁ ଘାସ ତାଙ୍କର ସେ ଅସୁବିଧା ଦୂର କରିଦେବ । ଗାଈଟି ମଧ୍ୟ ଖୁସିରେ ରହିବ ।

ମଦନର ମନରେ ଦୁଃଖ ଯେ ବାବୁ ଏଠି ଆଉ ରହୁ ନାହାନ୍ତି । ଘାସ ପାଇଁ ସେ ଯେ ଲ୍ଲାନ୍ତ ଏକଥା ତା'ର ଅନ୍ତର କହି ଉଠୁଛି । ମଦନ ବାବୁଙ୍କୁ ପଚାରି ନେଲା : ତା'ହେଲେ ଘାସର ଆବଶ୍ୟକତା କାଲିଠୁଁ ଆଉ ନାହିଁ ।

ବାବୁ ଜଣକ କହିଲେ : ସେ ଯେତେବେଳେ ଯାଉଛନ୍ତି ଗାଈଟି ମଧ୍ୟ ସାଙ୍ଗରେ ଯିବ । ତେବେ ଘାସର ଆବଶ୍ୟକତା ଏଠି ଆଉ ନାହିଁ ।

ମଦନ ପଚାରିଲା ସେ କେଉଁଠାକୁ ଯିବେ ? ବାବୁ କହିଲେ : ସେ ବୀରମିତ୍ରପୁର ଯିବେ ।

ମଦନ ଫେରିବାକୁ ଉଦ୍ୟତ ହେଲା । ବାବୁଙ୍କୁ ନମସ୍କାରଟିଏ କଲା । ଖାଲି ଗେଣ୍ଡୁଆ ଭାରଟିକୁ କାନ୍ଧରେ ପକାଇ ନିଜ ଗାଁ ମାନମୁଣ୍ଡା ଉଦ୍ଦେଶ୍ୟରେ ବାହାରି ପଡ଼ିଲା । ବାବୁ ଘର ଭିତରକୁ ଗଲେ । ଗାଈଟି ଗେଟ୍ ପାଖରେ ଅଟକି ରହିଥାଏ । ମଦନ ଗେଟ୍ ଖୋଲୁଛି । ଗାଈଟି ସାଙ୍ଗେ ସାଙ୍ଗେ ଭିତରକୁ ପଶି ଆସିଛି । ମଦନର ଦେହରେ ନିଜ ଦେହକୁ ଘଷି ଦେଉଛି । ବାଆଁ ହାତରେ ଗାଈକୁ ମଦନ ଆଉଁସି ଦେଉଛି । ତା'ପରେ ଗେଟ୍‌ଟି ବନ୍ଦ କରି ଆଟକୁ ଚାଲିଲା ଏବଂ ପଛ ପାଖକୁ ଆଉ ଦେଖିନାହିଁ ।

ମଦନ ଠିକ୍ ସନ୍ଧ୍ୟାରେ ଘରକୁ ପହଞ୍ଚି ଯାଇଛି । ଗୋଡ଼ହାତ ଧୋଇ-ନେଲା । ଅଣ୍ଟାରୁ ଗାମୁଛାଟା ଖୋଲି ଗୋଡ଼ହାତ ପୋଛିନେଲା । ଘର ବାରଣ୍ଡାକୁ ଲାଗି ରହିଥିବା ବାରଣ୍ଡାରେ କାନ୍ଥକୁ ଆଉଜାଇ ହୋଇ ବସିଗଲା । ଆଶ୍ୱସ୍ତିର ଏକ ନିଶ୍ୱାସ ମୁହଁବାଟେ ଛାଡ଼ି ଭାଙ୍ଗ ଡବିଟା ଅଣ୍ଟିରୁ ବାହାର କରିନେଲା । ଜିଭରେ ଭାଙ୍ଗ ଫାଙ୍କେ ପକାଇ ଡବିଟା ପୁଣି ଅଣ୍ଟାରେ ଗୁଞ୍ଜି-ଦେଲା ।

ସୁମାନୀ ଦହିଲୁକୁ ଆଣି ମଦନ ପାଖରେ ବସାଇ ଦେଲା ଏବଂ ନିଜ ରନ୍ଧାବଢ଼ା କାମରେ ଲାଗି ପଡ଼ିଲା । ସମରୁ ଏଯାଏଁ ଘରକୁ ଆସିନାହିଁ । ପଡ଼ିଶା ଘରର ଛୁଆମାନଙ୍କ ସାଥିରେ ଖେଳିବାରେ ଲାଗିଛି । ମଝିରେ ମଝିରେ ତା'ର କଥା ଘରକୁ ଶୁଭୁଛି ।

'ଦହିଲୁ ଯେତେବେଳେ ମା'କୁ ଦେଖି କାନ୍ଦିବାକୁ ଉପକ୍ରମ କରୁଛି । ମଦନ ତାକୁ କୋଳକୁ ଟାଣି ଆଣିଛି । ଠିକ୍ ଏଇ ସମୟରେ ଭବାନୀଶଙ୍କର

ବାବୁ ତାଙ୍କର ଜଣେ ସହକାରୀ ଏବଂ ବସନ୍ତ ବାବୁ ମଦନ ପାଖକୁ ପହଞ୍ଚିଲେ । ମଦନ ଖଟଟିଏ ବାହାରକୁ ଆଣିବା ନିମନ୍ତେ ଦହଲୁକୁ ବସାଇ ଦେଇ ଘର ଭିତରକୁ ପଶିବାକୁ ଉଦ୍ୟତ ହେଲା । ଭଦ୍ର ଲୋକମାନେ ଖଟରେ ବସିବେ । ବସନ୍ତ ବାବୁ ମଦନର ଉଦ୍ଦେଶ୍ୟ ବୁଝି ପାରିଲେ ଏବଂ ଖଟ ଆଣିବାକୁ ମଦନକୁ ବାରଣ କଲେ । ସେମାନେ ପଦଟିଏ କଥା ହୋଇ ଶୀଘ୍ର ଚାଲିଯିବେ । ମଦନ ବାରଣ୍ଡା ତଳକୁ ଆସି ସମସ୍ତଙ୍କୁ ଜୁହାର କଲା ।

ବସନ୍ତ ବାବୁ ମଦନକୁ ପଚାରିଲେ : ସେ ଏବେ କ'ଣ କରୁଛି । ମଦନ ବୁଝି ନେଇଛି ଯେ ଏମାନେ ଗଛ କାଟିବା ନିମନ୍ତେ ଶ୍ରମିକ ଖୋଜୁଛନ୍ତି । ଏଣୁ ମଦନ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା : ସେ ଏବେ କିଛି କରୁନାହିଁ । ଘାସ ବିକୁଥିଲା । ଏବେ ଆଉ ଘାସ ମିଳୁନାହିଁ କିମ୍ବା ଅନ୍ୟ କିଛିକାମ ଧରିନାହିଁ ।

ବସନ୍ତ ବାବୁ ମଦନକୁ ପଚାରିଲେ : କାଲିଠୁଁ ସେ ଗଛ କାଟିବାକୁ ବାହାରି ପାରିବ କି ନାହିଁ ?

ମଦନ ସମ୍ମତ ହେଲା । ତା' ପାଇଁ ରୋଜଗାର ଦରକାର । ତା' ପାଇଁ ପାରିଶ୍ରମିକ ଆବଶ୍ୟକ । ପରିବାରକୁ ଥିର୍ ଟିକିଏ ଦରକାର । ସେ କାହିଁକି ଘର ପାଖରେ ରୋଜଗାର କରିବ ନାହିଁ ।

ସେମାନେ ସମସ୍ତେ ଚାଲିଗଲେ । ଅନ୍ଧାର ହୋଇ ଆସୁଛି । ସୁମାନୀର କାଖରେ ଦହିଁଲୁ ହସି ଉଠିଛି । ମା'ର ସ୍ନେହମୟ ଚୁମ୍ବନରେ ଦହଲୁର ହସ, ସମୁଦ୍ରର ଢେଉ ପରି ଖେଳି ଉଠୁଛି । ସମରୁ ଘରକୁ ଫେରିଛି । ଘର ପହଞ୍ଚି ନ ପହଞ୍ଚୁ ଥିର୍ ଟିକିଏ ପାଇଁ ମା'କୁ କହୁଛି । ସୁମାନୀ ସମରୁକୁ ଗୋଡ଼ହାତ ଧୋଇ ନେବାକୁ କହୁଛି । ସୁମାନୀର କାଖରୁ ମଦନ ନିଜ କାଖକୁ ଦହଲୁକୁ ନେଇ ଆସିଛି । ସୁମାନୀ ଡିବିରିଟାରେ ନିଆଁ ସଂଯୋଗ କରୁଛି । କୋଠରୀଟା ଆଲୋକରେ ଭରପୂର ହୋଇ ଯାଇଛି ।

ଏବେ ମହୁଲ ପଡ଼ିଲାଣି । ଗାଈଗୋରୁଙ୍କ ଖାଦ୍ୟ ନିମନ୍ତେ ମହୁଲ ଫୁଲ ସଂଗୃହୀତ ହୁଏ । ମହୁଲ ଫୁଲରୁ ମଦ ବି ତିଆରି ହୁଏ । ବ୍ୟବସାୟୀମାନେ ମହୁଲ ସଂଗ୍ରହ କରନ୍ତି । ଯିଏ ଯେତେ ବେଶି ସଂଗ୍ରହ କରିପାରେ ସେ ସେତେ ବେଶି ରୋଜଗାର କରେ । ଏବେ ସୁମାନୀ ବି କିଛି ମହୁଲ ସଂଗ୍ରହ କରେ ।

ସୁମାନୀ ମହୁଲ ସଂଗ୍ରହ କରେ । ମଦନ, ସମରୁ ଏବଂ ଦହଲୁର ଖାଦ୍ୟ ନିମନ୍ତେ । ଯାହାର ଘରେ ବେଶ ମୁଠାଏ ଖାଇବାକୁ ଅଛି, ସେ ନିଜ ଗାଈ-ଗୋରୁଙ୍କୁ ମହୁଲ ଖାଇବାକୁ ଦିଏ । ଯାହା ଘରେ ଥିର୍ ଟିକିଏ ନାହିଁ, ସେ

ମହୁଲକୁ ଜାକାଦେଇ ଖାଇଦଏ । ସେ ଖୋଲାଳ ନୁହେଁ । ଦୁନଆଁ ଜାଣେ ତା'ର ଧୂଲୀ ଉଦରକୁ ଦେଖି । ତା'ର ଖୁମ୍ପିର ଧ୍ୱଜ ଦେଖି ଏ ଖୁମ୍ପି ସେ କାଦୁଅଭାଙ୍ଗି ପୋଖରୀର ଜଳର ସାମାନ୍ୟ ରୂପ ଦର୍ଶକ ଯାହା ଜାଣି ପାରେନାହିଁ । ବନା ପରୀକ୍ଷାରେ ଅବାସ୍ତବ ଏ ଅନୁଭୂତରେ ବାସ୍ତବତାର ଏକ ଆଧାର । ଏବେ କଛି ବର୍ଷ ଅବଶ୍ୟ ବିତ ଯାଇଛି । ଏମାନେ ମହୁଲକୁ ଖାଦ୍ୟ ରୂପେ ବ୍ୟବହାର କର-ନାହାନ୍ତି । ମଦନର ସାର୍ଥକ ବ୍ୟବସ୍ଥାରେ ସୁମାନୀ କେବଳ ଲୁଣ ବଦଳାଇ ଆଣିବା ନିମନ୍ତେ ମହୁଲ ସଂଗ୍ରହ କରେ ତଥାପି ଅକାଳ ନିମନ୍ତେ କଛି ମହୁଲ ରଖେ । ଅକାଳ ଏମାନଙ୍କ ସେ ସାଥି । ମହୁଲ ଏମାନଙ୍କ ସହଜଲବ୍ଧ ଖାଦ୍ୟ । ହଠାତ୍ ଖାଦ୍ୟର ସନ୍ନିହିତ ଅଭାବ ଘଟିଲେ ସାଧାରଣ ଲୋକ ମହୁଲକୁ ଖାଇ ଦଏ । ବେଶ୍ ମୁଠାଏ ଖାଇଦଏ ଏବଂ ପାଣି ଢୋକେ ପିଇଦଏ । ଦୁନଆକୁ ପରଚୟ ଦଏ ଆଜି ସେ ଭୋକଲ ନୁହେଁ...... । ଅରୁଚକର ପଦାର୍ଥ ଲଭରେ ଏମାନଙ୍କର ଉଦର ଅନୁଦାର ନୁହେଁ ।

ଝଟିଖିଆର ପ୍ରଭୁ ଶ୍ରମିକକୁ ମହୁଲ କାଁକୋ ଦଏ । ସେ ଆନନ୍ଦତ ହୁଏ ସେ ତା'ର ଶ୍ରମିକକୁ କ୍ଷୁଧାରୁ ବଞ୍ଚାଇବାକୁ ଖାଦ୍ୟ ଯୋଗାଇଛି । ସାଧାରଣ ଲୋକେ ମହୁଲକୁ ଯେଉଁମାନେ ଖାଦ୍ୟ ରୂପେ ଗ୍ରହଣ କର ନେଇଛନ୍ତି ସେମାନେ ମଧ୍ୟ ମହୁଲ କାଁକୋ ନନୁରେ ତଆର କରନ୍ତି । ଶୁଖିଲ ମହୁଲକୁ ସେମାନେ ପରଷ୍କାର ଭାବରେ ଧୋଇ ଦଅନ୍ତି ଏବଂ ସିଝାଇ ଦଅନ୍ତି । ପୂରାପୂର ସିଝିଗଲ ପରେ ଓହ୍ଲାଇ ଦଅନ୍ତି ଏବଂ ମହୁଲରୁ ତାତ କମିଗଲ ପରେ ଚକଟି ରସ ନର୍ଗତ କରନ୍ତି । ଚକଟା ମହୁଲକୁ ଖରାରେ ଶୁଖାଇ ରଖନ୍ତି । ରସକୁ ସିଝାଇ ଶିରା କରାଯାଏ । ଶିରା ଦେହରେ ଶିମ୍ବ, ତେନ୍ତୁଳ ମଞ୍ଜି, ରାଶି ଆଦ ଦଆଯାଏ ଓ ଶେଷକୁ ଶୁଖା-ଯାଇଥିବା ଚକଟା ମହୁଲକୁ ଶିରାରେ ଘାଣ୍ଟି ମାଠିଆ ଦେହରେ ରଖାଯାଏ । ଏହାର ଏବେ ନାମ କାଁକୋ ।

ବେଳା ହେଲେ ମଦନ ଗଛ କାଟିବାକୁ ଯାଏ । ସୁମାନୀ କୁକୁଡ଼ା ଡକା ରାତର ତଳକୁ ଉଠିଯାଏ । ପାଖ ପଦାରେ ଅନେକ ଗୁଡ଼ାଏ ମହୁଲ ଗଛ ଅଛି । ଏ ଗଛଗୁଡ଼ିକର ନର୍ଦ୍ଦିଷ୍ଟ ଅଧିକାରୀ କେହି ନାହାନ୍ତି । ଯେଉଁ ସଂଗ୍ରହକାରୀର ଉପସ୍ଥିତ ସେଠି ଆଗ ପଡ଼େ ସେ ସେଠୁ ମହୁଲ ସଂଗ୍ରହ କରେ । ଏଥିପାଇଁ ପ୍ରତଯୋଗିତା ହୁଏ । କୌଣସି ନର୍ଦ୍ଦିଷ୍ଟ ବ୍ୟକ୍ତବଶେଷ ସହ ନୁହେଁ କମ୍ବା କୌଣସି ବ୍ୟକ୍ତକୁ ବଜୟ କରବାକୁ ନୁହେଁ । କ୍ଷୁଧାକୁ ଜୟ କରବାକୁ, ଆବଶ୍ୟକତାର ସମ୍ମୁଖୀନ ହେବାକୁ । ଏ ପ୍ରତଯୋଗିତାରେ ସମସ୍ତେ ସମସ୍ତଙ୍କର ପ୍ରତଯୋଗୀ । କନ୍ତୁ ସୁମାନୀ ନୁହେଁ । ସୁମାନୀର ଯେ ଆବଶ୍ୟକତା ନାହିଁ,

ଏକଥା ନୁହେଁ ଯଦଓ୍ ମହୁଲ ମୌଳିକ ଆବଶ୍ୟକ ହୋଇ ସେମାନଙ୍କର ନାହିଁ । ମଦନର ଆସ୍ଥ ସେମାନଙ୍କ ଚଳିଯିବାରେ ଏ ପର୍ଯ୍ୟନ୍ତ ପ୍ରତିବନ୍ଧକ ସୃଷ୍ଟି କରି-ନାହିଁ । ତଥାପି ସୁମାମି କମ ସମୟ ଭିତରେ ଯଥେଷ୍ଟ ମହୁଲ ସଂଗ୍ରହ କରିବାକୁ ଅଁଚୁହ୍ନା । ସେ ଗୁହେଁ ନିଜ ଡାଲକୁ ଭର୍ତ୍ତି କରିବ ଆଉ ଫେରି ଆସିବ ଘରକୁ । ଘରେ ଆଠ ନଅ ମାସର ପୁଅ । ଏବେ ବି ତା'ର ମୁଖ୍ୟ ଖାଦ୍ୟ ମା' ଦୁଧ । ସୁମାମି ବେଳଉଦାକୁ ଫେରିଆସେ ଘରକୁ । ବନେ ବନେ ଯଦଓ ନିଜ ପରିମିତ ଆଶାକୁ ସେ ପୂରଣ କରି ପାରି ନ ଥାଏ, ତା'ର ତଥାପି ଏକମାତ୍ର ଲକ୍ଷ୍ୟ ସମୟ । ନିର୍ଦ୍ଦିଷ୍ଟ ସମୟ ଭିତରେ ନିର୍ଦ୍ଦିଷ୍ଟ ପରିମାଣ ସାମଗ୍ରୀ ସଂଗ୍ରହ କରିବା ନୁହେଁ । ସୁମାମିର ଖାଲି ଗୁତ ତାକୁ ଯେତେ ବ୍ୟତିବ୍ୟସ୍ତ କରେ, ଖାଲି ଡାଲିଟା ସେତେ କରି ପାରେନାହିଁ । ଧୋବ ସରସର ମହୁଲ ତାକୁ ଯେତିକ ଆନନ୍ଦ ଦେଇ ପାରେନାହିଁ, ତା' ଠାରୁ ବହୁଗୁଣ ଆନନ୍ଦ ଦିଏ ଦହଲୁର ଶ୍ରେଷ୍ଠ କାଳିଆ ମୁହଁଟି । ଦହଲୁର ଖୋଲା ମୁହଁର ହସରୁ ଝରିପଡ଼େ ଗଣି ଗଣି ଅନୁପମ ସ୍ୱଚ୍ଛ ସାମଗ୍ରୀ । ସେ ହସର ଆକର୍ଷଣ ବଣର କାକଳିଭରା ସବୁଜିମାରେ ଉଙ୍କି ଆସିଥିବା ଅଂଶୁମାଳିଠାରୁ ଅଧିକ ଶକ୍ତିମାନ୍ । ଏ ହସର ମାଦକତା ଏତେ ବେଶୀ ଯେ ତା'ର ପ୍ରଥମ ସ୍ପର୍ଶରେ ଜାଣେ, ଯିଏ କି ଏ ହସର ପ୍ରତିଟି ଅଂଶ ସହିତ ପରିଚିତ, ହଠାତ୍ ମାତାଲ ହୋଇଉଠେ । ଆମ୍ବ ବାଧ୍ୟ ତ କିନ୍ତୁ ହୁଏନାହିଁ, ଅବଶ୍ୟ ସାମୟିକ ଆତ୍ମହରା ହୋଇ ଉଠୁଥିବ । ଆଉ ଯିଏ ଏ ହସର ପରିଚୟ ପାଇନାହିଁ, ସେ ବି ଅଗୃନକ ଚାଲିଯାଏ । କାରଣ ନ ଥିଲେ ବି ହସର ଝଲକ ହସ ଫୁଟାଏ ।

ସୁନେଲିବୋଲା ପୂର୍ବାକାଶର ଧାରେ ଧାରେ ସୁମାମି ମହୁଲ ଗୋଟାଉଥାଏ । ଶୂନ୍ୟତାକୁ ଲେପ କରି କରି ଡାଲି ତା'ର ଗୃଲିଥାଏ । ସୂର୍ଯ୍ୟ ଉଦୟ ହେବାକୁ ଆଉ ବିଳମ୍ବ ନାହିଁ । ଶୋଇଲା ଅବସ୍ଥାରେ ଦହଲୁ ଖୋଜେ ନିଜର ଆବଶ୍ୟକତା ପୂରଣ କରିବାକୁ । ଆଖି ସେ ଖୋଲି ନାହିଁ କି ହାତ ବଢ଼ାଇ ନାହିଁ । ଖଟରେ ଦୁଇ ଗ୍ରରିଥର ଗଡ଼ି ଯାଇଛୁ ଆଉ ଖୋଜିଛୁ କିନ୍ତୁ ପାଇ ପାରେନାହିଁ । ଅନୁଭବ କରେ ସେ ଖଟଟି ଖାଲି ପଡ଼ିଛୁ । କାନ୍ଦିଉଠେ, ଅନ୍ୱେଷଣ ତା'ର ବ୍ୟର୍ଥ ହୋଇଛୁ ।

ମଦନ ଚେଇଁଥାଏ । ଖଟର ଗୋଟିଏ ପାଖରେ ଶୋଇଛୁ ସମରୁ । ମଦନ ଅଳ୍ପ ସମୟ ପୂର୍ବେ ମୁଣ୍ଡ ପାଖରେ ରଖା ହୋଇଥିବା ଅଙ୍ଗଛୁଣା ସମରୁ ଦେହରେ ଘୋଡ଼େଇ ଦେଇଛୁ । ସମରୁର ଦେହକୁ ଲଗି ଗ୍ରତିରେ ସେ ଶୋଇ ଯାଇଥିଲା; କିନ୍ତୁ ଚେଇଁଲା ପରେ ବ୍ୟବଧାନ ରଖି ଶୋଇଛୁ । ଏ ଶୟନରେ

ଅବଶ୍ୟ ନିଦ୍ରା ନାହିଁ । ଦହଲୁର କାନ୍ଦ ମଦନକୁ ଅଧୀର କରିଦିଏ । ମଦନର ଆଖିରେ ଝଲସି ଉଠେ ସୁମାନୀ । ଖଟରୁ ଉଠିଯାଇ ଟିକିଏ ଥାପୁଡ଼ି ଦିଏ ସମରୁକୁ ଆଉ ଟାଣିଆଣେ ଦହଲୁକୁ ନିଜର ପ୍ରଶସ୍ତ ବକ୍ଷକୁ । ଦହଲୁର କାନ୍ଦ ବକ୍ଷର ସ୍ପର୍ଶରେ ଥମିଯାଏ । ମାତୃତ୍ୱହୀନ ଏ ଶରୀର ଦହଲୁକୁ ସାନ୍ତ୍ୱନା ଦିଏ ନାହିଁ, ସ୍ନେହ ଦିଏ । ଦହଲୁ କିନ୍ତୁ ପୁଣି ଖୋଜିବସେ ଅଥଚ ପାଏନାହିଁ ମାତୃତ୍ୱ ମମତା । ଦହଲୁ ନ ପାଇ କାନ୍ଦିଥାନ୍ତା କି ନାହିଁ କେଜାଣି, ପୁଣି ଶୋଇଯାଏ ମଦନର ଛାତିରେ । ମଦନର ସ୍ନେହ ମମତାଭରା କୋଳରେ, ସ୍ନେହଭରା ପାପୁଲି ଚାଳନାରେ ଆଉ ସକାଳର ଥଣ୍ଡା ପବନ ପରଶରେ ସେ ଶୋଇରହେ ।

ସୁମାନୀ ଘରକୁ ସନ୍ଧ୍ୟା ଆସିଛି । ମୁଣ୍ଡରେ ମହୁଲ ଡାଲା ଆଉ ଚାପିଲା ଓଠର କପାଳରେ କେତେ ବିନ୍ଦୁ ଝାଳ ଝରାଇ ଦେଇ । ଘର ଅଗଣାରେ ମଦନ ଧୀରେ ଧୀରେ ବୁଲୁଥାଏ । କାଉ ଦେଖାଉଥାଏ । କାଖରେ ଦହଲୁ ମିଟିମିଟି କରି ଦୁନିଆଁକୁ ନଜର ପକାଉଥାଏ । ସମରୁ ବାଡ଼ିଟାଏ ଧରି ବାସନ ଧୂଆ ସ୍ଥାନର କୁକୁଡ଼ାଗୁଡ଼ିକୁ ତଡ଼ିବାରେ ଲାଗିଥାଏ । ଶିମ୍ବ ଲତାରେ ସେଗୁଡ଼ା ଘେର ମାରୁଥାନ୍ତି । କେତେବେଳେ ସେ ବ୍ୟର୍ଥତାର ଚିତ୍କାର କରୁଛି ତ କେତେବେଳେ କୃତିର ହସ ଫୁଟାଉଛି ।

ବାଡ଼ର ଝାଟି ତାଟିଟା ଖୋଲି ସୁମାନୀ ଅଗଣା ଦେଇ ଚାଲିଆସେ । ଦହଲୁ ମା'କୁ ଦେଖି ଲଇଁଯାଏ ଏବଂ କାନ୍ଦିଉଠେ । ସୁମାନୀର ହୃଦୟଟା ଏତେବେଳେ ତେଇଁବୁଲେ ଏବଂ ମନଟା ଚଞ୍ଚଳ ହୋଇଯାଏ । କିନ୍ତୁ ମୁଣ୍ଡରେ ଯେ ବୋଝ ଆଉ ହାତଟା ମହୁଲ ରସରେ ଆଠାଳିଆ । ସମରୁ ସୁମାନୀର ଚାଲରେ ଲୁଗାର ଶବ୍ଦ ଶୁଣେ ଏବଂ ଲେଉଟି ଦେଖେ । ସେ ମା' ପାଖକୁ ଦୌଡ଼େନାହିଁ । ବାଡ଼ିଟା ପକାଇ ଦିଏ ଏବଂ ଚଞ୍ଚଳ ଚାଲିଯାଏ ମହୁଲ ଡାଲା ଥୁଆ ହୋଇଥିବା ସ୍ଥାନକୁ । ସୁମାନୀ ବାସନ ଧୁଆ ସ୍ଥାନର ପାଣିରେ ହାତ ଧୋଇ-ନେଲା । ପାଖରେ ଥିବା କୁକୁଡ଼ାମାନେ ଉଡ଼ିକିନା ଉଡ଼ିଗଲେ । ସମରୁ ଲେଉଟି ଦେଖେ ଏବଂ ହସିଉଠେ । ମଦନର କାଖରୁ ନିଜର କୋଳକୁ ସୁମାନୀ ନେଇଆସେ ଦହଲୁକୁ ଆଉ ପିନ୍ଧା ଲୁଗାକୁ ଆଡ଼େଇ ଦିଏ ବକ୍ଷର ଗୋଟିଏ ପାର୍ଶ୍ୱରୁ । ମଦନ ଘରକୁ ପଶି କୁରାଢ଼ି ବା ଟାଙ୍ଗିଆକୁ ବାହାର କରିନେଲା । ଶେକ୍ ବା ଧାର କରିବାକୁ କୁରାଢ଼ିର ଧାରକୁ ପଥରରେ ଘଷିଲା । ସେ ଆଜି ଗଛ କାଟିବାକୁ ଯିବ ।

ଭବାନୀଶଙ୍କର ବାବୁ ଅତି ସକାଳୁ ଗାଧୋଇ ନେଲେ । ନିଜର ସହଚରକୁ ଚାରି ପାଞ୍ଚଖଣ୍ଡ ରୋଟି ତିଆରି କରିବାକୁ କହିଲେ । ନିଜ ପାଇଁ ମଧ୍ୟ

କିଛି ରୁଟି ଉଠାଇ ନେବାକୁ କହିଲେ । ଖଣ୍ଡିଏ ପରିଷ୍କାର ଧୋତି ପିନ୍ଧିନେଲେ । ପରିଷ୍କାର ଗଞ୍ଜି ଖଣ୍ଡେ ଲଗାଇ ଗାମୁଛାଖଣ୍ଡିକ କାନ୍ଧରେ ପକାଇ ଦେଲେ । ଭବାନୀଶଙ୍କର ବାବୁ ବେଶ୍ ଆଳୁ ଭଜାରେ ରୁଟି ପାଞ୍ଚଖଣ୍ଡ ଖାଇନେଲେ । ସୁରେଇରୁ ମୁଣ୍ଟିଏ ଥଣ୍ଡା ପାଣି ଅଧଲିଟର ପିଇଦେଇ ଜଙ୍ଗଲକୁ ବାହାରି ପଡ଼ିଲେ । ଦିନ ଦୁଇଟା ସୁଦ୍ଧା ସେ ଆସିବେ ବୋଲି ମଧ୍ୟ କହିଲେ । ସହଚରଟି ଏକ ଗଭୀର ଭକ୍ତି ସହକାରେ ହୁଁ ଭରିଲା ।

ମଦନ ନିତିଦିନ ପରି ଆଜି ବାସି ଥର୍ ପିଇଦେଇ ଜଙ୍ଗଲକୁ ଚାଲିଲା । ଜଣ ଜଣ କରି ଗଛ କଟାଳି ସେଠାରେ ପହଞ୍ଚିବାକୁ ଲାଗିଛନ୍ତି । ଭବାନୀଶଙ୍କର ବାବୁଙ୍କଠାରୁ କିଛି ଦୂରରେ ସମସ୍ତେ ଠିଆହେଲେ । ଏକ ସାଙ୍ଗରେ ସମସ୍ତଙ୍କୁ କାମରେ ଲଗାଇବା ଉଦ୍ଦେଶ୍ୟରେ ସେ କାହାରିକୁ କିଛି ନିର୍ଦ୍ଦେଶ ଦେଇ-ନାହାନ୍ତି । ସେ ଜାଣନ୍ତି ପ୍ରଥମ ଦିନ କାମ ଧିମେଇ ଚାଲେ । ବାବୁ ଚିହ୍ନାଅ ଗଛଗୁଡ଼ିକ ମାପି ଦେଖୁଛନ୍ତି । ଥରେ ମାପି ସାରି ଗଛର ଉଚ୍ଚତା ସମ୍ବନ୍ଧରେ ଧାରଣା କରିବାକୁ ଉପରକୁ ନିରୀକ୍ଷଣ କରନ୍ତି । ନୀରବରେ କ'ଣ ସବୁ ଯୋଡ଼ନ୍ତି । ପୁଣି ଥରେ ଗଛକୁ ମାପି ନିଅନ୍ତି । ମନେମନେ ଗଛର ପରିଧି ବକଲ ତଳେ କେତେ ହେବ ହିସାବ କରନ୍ତି ଏବଂ ଉପରକୁ ଆଉ ଥରେ ନିରୀକ୍ଷଣ କରନ୍ତି । ପରକ୍ଷଣରେ ତାଙ୍କର ଆଖି ଯୋଡ଼ାକ ନିଷ୍ପଲକ ଭାବରେ ସଂଯୁକ୍ତ ହୋଇଥାଏ ଅନ୍ୟ ଏକ ଉଚ୍ଚ ବୃକ୍ଷର ଡାଳରେ । ତାଙ୍କର ଗଣନାରେ ପରିବର୍ତ୍ତନ ଦେଖା-ଦିଏ ଯେତେବେଳେ ସେ ଆଖି ବୁଜନ୍ତି ଏବଂ ଭ୍ରୂକୁଞ୍ଚନ କରନ୍ତି ତଥାପି ମୁଖ-ମଣ୍ଡଳରେ ଗାମ୍ଭୀର୍ଯ୍ୟ ଥାଏ । ଭବାନୀଶଙ୍କର ବାବୁ ଭୂମିକୁ ସମାନ୍ତର କରି ଯେତେବେଳେ ଆଖିଟି ରଖନ୍ତି, ତାଙ୍କର ଡାହାଣ ହାତର ତର୍ଜନୀ ଆଙ୍ଗୁଠିଟି ଖେଳିବୁଲେ ସେତେବେଳେ ଆଉ ମୁହଁରେ ଫୁଟିଉଠେ ହସ । ତା'ପରେ ଭାବାନ୍ତର ସୃଷ୍ଟି ହୋଇଛି, ସେ ଗଛ କଟାଳିମାନଙ୍କ ଆଡ଼କୁ ଆଖି ପକାଇଛନ୍ତି ।

ମଦନ ତଥା ଅନ୍ୟ ପନ୍ଦର ଜଣ ଯାକ କଟାଳି ଏ ମଧ୍ୟରେ ଏକତ୍ରିତ ହୋଇଗଲେଣି । ସେମାନେ ସମସ୍ତେ ବସି ଯାଇଛନ୍ତି ଏବଂ ଏକ ଆଲୋଚନା ଆସରେ ଭାଗ ନେଇଛନ୍ତି । ଏମାନଙ୍କର ଆଲୋଚ୍ୟ ବସ୍ତୁ ହେଲା, ଭବାନୀଶଙ୍କର ବାବୁଙ୍କର ଏକ କାଳ୍ପନିକ ଗୁଣ ଏବଂ ଆଶାଜନକ ବ୍ୟବହାର । ସେମାନେ ଅନେକ ଦେଖିଥିବା କେତେକ ଠିକାଦାରଙ୍କ ସହିତ ଏକ ତୁଳନାତ୍ମକ ବିବରଣୀ ଏଠି ଉତ୍ଥାପନ କରିବାରେ ଲାଗି ଯାଇଛନ୍ତି । ମଦନ କିନ୍ତୁ ନୀରବ । ତା'ର ବକ୍ତବ୍ୟ ମଝିରେ ମଝିରେ ମାତ୍ର ଏତିକି ଯେ ଧନୀ ଲୋକେ ଏ ବିବରଣୀମତେ ଭଲ ଲୋକ ହେବା ଉଚିତ ।

ଭବାନୀଶଙ୍କର ବାବୁ ସେମାନଙ୍କୁ ଡାକ ଦେଲେ । ଚାରିଟି ବଡ଼ ଗଛ ଚାରି ଚାରି ଜଣ ହୋଇ କାଟିବାକୁ ସେ ହୁକୁମ ଦେଲେ । ମଦନ ତା'ର ଅନ୍ୟ ତିନିଜଣ ସାଥି ସହିତ ଗଛ କାଟିବାରେ ଲାଗି ପଡ଼ିଲା ।

ଭବାନୀଶଙ୍କର ବାବୁ ତାଙ୍କର ଅନ୍ୟ ଜଣେ କର୍ମଚାରୀଙ୍କୁ ଶ୍ରମିକମାନଙ୍କ ନିମନ୍ତେ ରନ୍ଧାବଢ଼ା କରିବାକୁ କହି ପରା ଜଙ୍ଗଲରେ ବୁଲିବାକୁ ଲାଗିଲେ । ସେ ପ୍ରାୟ ଅଢ଼େଇ ଶହ ମିଟର ଦୂରକୁ ଅତିକ୍ରମ କରି ସର୍ଗି ଗଛଗୁଡ଼ିକୁ ନିରୀକ୍ଷଣ କରିବାକୁ ଲାଗିଲେ । ନିଜ ନାଆଁରେ ମଞ୍ଜୁର ହୋଇଥିବା ଗଛଗୁଡ଼ିକର ପରିଧି ସହିତ ସମତା ରଖି ପାରୁଥିବା କେତୋଟି ସନ୍ଦେହଯୋଗ୍ୟ ଗଛ ଠିକ୍ କରିବାରେ ସେ ଲାଗି ପଡ଼ିଲେ ।

ମଦନ ଏବଂ ଭୁବନ ଏକାନ୍ତର ଭାବରେ ପ୍ରାୟ ଦୁଇ ମିଟର ପରିଧି ବିଶିଷ୍ଟ ଗଛର ଗଣ୍ଡିରେ ଚୋଟ ପକାଇ ଚାଲିଛନ୍ତି । ଅନ୍ୟ ପାର୍ଶ୍ୱରେ ଆଉ ଦୁଇଜଣ । ଭୁବନ ଆରମ୍ଭ କରିଛି ବିଗତ ଦିନର ଏକ ଅତ୍ୟୁଜ୍ଜ୍ୱଳ ଘଟଣାର ସାର କଥା । ଏଇ ଗଛ କଟାଳିମାନଙ୍କର କୁରାଢ଼ିର ନିର୍ଘାତ ଶବ୍ଦ ଦୂରରୁ ଶୁଭେ । ଏଇ ଶବ୍ଦ ଭିତରେ ହଜିଯାଏ ସେମାନଙ୍କର କେତେ ଯେ ଅନୁଭୂତ ଘଟଣାବଳୀର ସାର-କଥା । ଲୁଚିଯାଏ କେତେ ଯେ ହସ, ଲୁଚିଯାଏ କେତେ ଯେ ଧମକ, ଆଉ ଲୁଚି ବି ଯାଏ ଚାପର ଆବରଣଭେଦୀ ସୂକ୍ଷ୍ମ ଚିତ୍କାର । କେହି ଜଣେ ନିଜର ପ୍ରତିକ୍ରିୟା ପ୍ରକାଶ ଯେତେବେଳେ କରେ ହୁଏତ ସେତେବେଳେ ତା'ର ନିଜ କୁରାଢ଼ି ଗର୍ଜନ କରେନାହିଁ ସତ । ସେ ଯେତେବେଳେ ଏ ପ୍ରତିକ୍ରିୟା ପ୍ରକାଶ କରିବାକୁ ଏକଚିତ୍ତ ଏକଥା ବି ସତ । ଏ କଥାରେ ଖୁସିର ହସ ଥାଇପାରେ ଅଥବା ଅନ୍ୟାୟର ପ୍ରତିବାଦ ଥାଇପାରେ । ଏ ପ୍ରତିକ୍ରିୟାରେ ମନର ସମସ୍ତ ଗ୍ଲାନିକୁ ଭେଦକରି ପାରିଥିବା କୌତୁକ ଥାଇପାରେ ଅଥବା ନିଜର ପରାକ୍ରମର ଏକ ବିଶ୍ଳେଷଣ ବି ଥାଇପାରେ । ନିଜକୁ ରୁଚି ଯାଇଥିବା ପ୍ରବୃତ୍ତିର ଅଭିମତ ହିଁ ପ୍ରତିକ୍ରିୟା । ତେଣୁ ଏ ବ୍ୟକ୍ତି କିମ୍ବା ବ୍ୟକ୍ତିଙ୍କର କୁରାଢ଼ି ଗର୍ଜନ କରେନାହିଁ । କିନ୍ତୁ ଅନ୍ୟମାନଙ୍କର କୁରାଢ଼ିର ନିର୍ଘାତ ଶବ୍ଦ ବାୟୁମଣ୍ଡଳକୁ କମ୍ପାଇ ଦେଉ-ଥାଏ । ଏ କମ୍ପନକୁ ଭେଦକରି ପ୍ରତିକ୍ରିୟାର ରୂପ ବାହାରେ ଫୁଟେ ନାହିଁ । ଅବଶ୍ୟ ଏ ପ୍ରତିକ୍ରିୟାର ଶବ୍ଦରେ ଫୁଟିଥିବା ରୂପର କିଛି ଅଂଶ ଫୁଟିଉଠେ । କୁରାଢ଼ିଗୁଡ଼ିକ ସୃଷ୍ଟି କରୁଥିବା ଶବ୍ଦର ବ୍ୟବଧାନ ଭିତରେ ଗତି କରିବାର ସୁଯୋଗ ପାଇ । କିନ୍ତୁ ଏହାର ପରିଚୟ ପାଇବା ଏତେ ସହଜ ନୁହେଁ ।

ମଦନ ଏମାନଙ୍କ ପ୍ରତି କଥାରେ ଭାଗ ନିଏ । ନିଜର ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରେ । କିନ୍ତୁ କଥାରେ ଜଡ଼ି ଯାଏନାହିଁ । ଯେ ଖଟିଥାଏ ସତ ।

ଶ୍ରମଲବ୍ଧ ଉପାର୍ଜନ ହିଁ ତା'ର ଦମୂଲ ତଥା ଧନ । ଧନରେ ସେ ମନିଷ ନୁହେଁ କମ୍ବା ଧନର ସେ ମଣିଷ ନୁହେଁ, ତଥାପି ସେ ମଣିଷ ସେ ମନେକରେ ଭବାନୀ-ଶଙ୍କର ବାବୁ ତାକୁ ଦେଖୁଛନ୍ତି । ନୀରବତା ଭିତରେ ଏ ପ୍ରକାର ପରିଶ୍ରମ କଷ୍ଟକର ହେଲେ ସୁଦ୍ଧା କଥାରେ ... ଉଠିବା ହୁଏତ ଏକ ଅବହେଳା ହୋଇପାରେ । ଏ ପରିବେଶ ଯଦି ତା'ର ଦୃଷ୍ଟିହୁଏ ଏବଂ ଭବାନୀଶଙ୍କର ବାବୁଙ୍କର ଦୃଷ୍ଟି ପଡ଼େ, ତା'ହେଲେ ତାକୁ କିଛି ଶୁଣିବାକୁ ପଡ଼ିପାରେ । ଏ ପ୍ରକାର କଥା ସେ ସହ୍ୟ କରିବା କଷ୍ଟକର । ଏ କଥାର ସେ ପ୍ରତିବାଦ ଟୋକେ କିନ୍ତୁ ପାଏନାହିଁ । କେବଳ ନିଜକୁ ନିଜେ କହେ ସେମାନେ ତ କଳ ନୁହନ୍ତି । ପୁଣି କିନ୍ତୁ ସେ ଭାବେ ସେମାନେ ଯେ କଳର ଗୃଳକ, ତା'ହେଲେ କଳ କେଉଁଟି ? ସେମାନେ ନିଜେ କଳ ନୁହନ୍ତି ତ... ?? ସେମାନେ ହିଁ କଳ । ବେଳେବେଳେ ନିଜେ ଏକ ସ୍ୱତନ୍ତ୍ର କଳ ଏବଂ ବେଳେବେଳେ ସେମାନେ ସମସ୍ତେ ଗୋଟିଏ କଳର ଅଂଶ, ଅବଶ୍ୟ ବିଭିନ୍ନତା ଥାଇପାରେ । କିନ୍ତୁ ଏମାନଙ୍କର କୋଷଗୁଡ଼ିକ ଯେ ଜୀବନ୍ତ । ଅନୁଭୂତ ଅଛି । ଯେଉଁଠି ଅନୁଭବ ଅଛି ସେଇଠି ସହାନୁଭବ ନିଶ୍ଚିତ ରହିବା କଥା । ଦିବା ଭାଗରେ ଆକାଶ ମେଘମୁକ୍ତ ନୁହେଁ ବୋଲି ଆଲୋକ ଯେ ନାହିଁ କହିବା କିପରି ?

ମଦନ ଏବଂ ଅନ୍ୟମାନେ ଯେଉଁ ଗଛଟି ହାଣିବାରେ ନିଯୁକ୍ତ ସେ ଗଛର ଗଣ୍ଡି ପ୍ରାୟ ଛିଣ୍ଡିଗଲଣି । କଟା ସ୍ଥାନରେ ଉପୁଡ଼ି ଯିବାର ଉପକ୍ରମରେ ଯେଉଁ ଶବ୍ଦ ସୃଷ୍ଟି ହୁଏ ସେ ପ୍ରକାର ଶବ୍ଦ ସାମାନ୍ୟ ସୃଷ୍ଟି ହେଲଣି । ମଦନ, ଭୁବନ ଏବଂ ଅନ୍ୟ ଦୁଇଜଣ କଟାଳ ସତର୍କତା ଅବଲମ୍ବନ କଲେଣି । ଗଛଟି ଟଳି ପଡିଲେ କେଉଁ ଆଡ଼କୁ ଢଳିବ ଅନୁମାନ କରି ହେଉନାହିଁ । ଭୁବନ ଗଛ ଉପରକୁ ଆଖି ପକାଇଲା । କିଛିକ୍ଷଣ ନିରୀକ୍ଷଣ କରି ଗଛଟି ଉତ୍ତର ଦିଗକୁ ଢଳୁ-ଥିବାର ଅନୁଭବ କଲା । ସେ ନିଜର ଅନୁମାନଟି ପ୍ରକାଶ କଲା । ଅନ୍ୟମାନେ ଭୁବନର ସଠିକତା ଜାଣିବାକୁ ଏବଂ ନିଜର ନିରାପତ୍ତା ପ୍ରତି ଦୃଷ୍ଟି ଦେଇ ଗଛକୁ ନିରୀକ୍ଷଣ କଲେ । ସେମାନେ ନିଶ୍ଚିତ ହେଲେ ଯେ ଭୁବନର ନିରୀକ୍ଷଣ ଠିକ୍ । ଭୁବନ ତା'ର କୃତ ପାଇଁ ଓଠ ଧାରରେ ହସ ଫୁଟାଇ ଦେଲା । ଅଣ୍ଟାରୁ ଅଙ୍ଗଛିଟି ଖୋଲି ଝାଳ ସରସର ମୁଖମଣ୍ଡଳରେ ଦୁଇଥର ବୁଲାଇ ଦେଲା । ମୁହଁ ବାଟେ ଜୋରରେ ଗ୍ରୁତଭଗ୍ ପବନ ଶୋଷିନେଇ ଦେହରେ ଭରି ଯାଇ-ଥିବା ଏଇ ପବନରେ ଗୋଳାଇ ଦେଇ ନିଃଶ୍ୱାସ ବାଟେ କେତେକାଂଶରେ ଛାଡ଼ିଦେଲା ।

ଅଳ୍ପ ଦୂରରେ ଅନ୍ୟ ସ୍ଥିରଜଣ ଗଛ କାଟିବାରେ ବ୍ୟସ୍ତ । ସେମାନେ ପ୍ରାୟ କୋଡ଼ିଏ ମିଟର ଦୂରରେ ଅବସ୍ଥିତ । ମଝିରେ ଅଛୁର କେତୋଟି ଗଛ । ମଦନ ଆଜି କାଟୁଥିବା ଗଛ ଅବଶ୍ୟ ସେମାନଙ୍କୁ ବିପଦରେ ପକାଇ ପାରିବ ନାହିଁ । ତଥାପି ଯେତେବେଳେ ଏତେ ଜୋରରେ ଗଛଟି ପଡ଼ିବ ତା'ର ଡାଳ ମଧ୍ୟ ସେମାନଙ୍କ ଦେହରେ ପିଟିହେଲେ ଭୀଷଣ କଷ୍ଟ ହେବ । ଭୁବନ ତେଣୁ ସେଆଡ଼େ ଗଛଟି ପଡ଼ୁଥିବାର ଜଣାଇ ଦେଲା । ସେମାନେ ତଳି ପଡ଼ୁଥିବାର ଗଛର ଗତିକୁ ନିରୀକ୍ଷଣ କରିବାକୁ ଲାଗିଲେ । ଗଛଟିର ଗତି ସେ ସ୍ଥାନରୁ ପରିଷ୍କାର ଜଣାପଡ଼ୁଛି । ଏହା ଯେ ସେମାନଙ୍କ ଆଡ଼କୁ ସିଧା ପଡ଼ିବ ଏ ପ୍ରକାର ସଠିକତା ସେମାନେ ନିରୂପଣ କରି ପାରିଲେ ନାହିଁ । ସେମାନଙ୍କ ଅଞ୍ଚଳକୁ ଗଛଟି ଆସୁଛି ଏକଥା ଯେ ଠିକ୍ ସେମାନେ ପୂରାପୂରି ଅନୁଭବ କଲେଣି । ଗଛ ଢଳିବାର ଉପକ୍ରମଟି ବେଶ୍ ପରିଷ୍କାର ହୋଇ ଯାଇଥିଲେ ମଧ୍ୟ ଧୀରେ ଧୀରେ ଗଛଟି ଢଳିଙ୍ଗିବାରେ ଲାଗିଥାଏ । ମଦନ ଏବଂ ଭୁବନର ଅନ୍ୟ ସାଥି ଯୋଡ଼ାକ ଉପୁରାଇ ଉପୁରାଇ ଦଶବାର ଚୋଟ୍ ଗଣ୍ଡିର କଟା ସ୍ଥାନରେ ପକାଇଲେ । ଗଣ୍ଡିଟି ଭାଙ୍ଗିଯିବାରୁ କଟା ସ୍ଥାନରେ ଗଛର ଶବ୍ଦ ସୃଷ୍ଟି କଲା । ଢଳିଙ୍ଗିବାର ବେଗଟି ବଢ଼ିଗଲା ଏବଂ କିଛିକ୍ଷଣ ଭିତରେ ଢଳିଙ୍ଗିଗଲା । ମଦନ, ଭୁବନ ଏବଂ ଅନ୍ୟ ଦୁଇଜଣ ତତ୍‌କ୍ଷଣାତ୍ ଦକ୍ଷିଣ ଦିଗକୁ ଦଶ ବାର ହାତ ଘୁଞ୍ଚିଗଲେ । ଗଛଟି ଭୀମ ଗର୍ଜନରେ ଭୂଇଁକୁ ସ୍ପର୍ଶ କଲା । ଗଛଟିରେ ଆଶ୍ରୟ ନେଇଥିବା ଗୁଣ୍ଡୁଚି ମୂଷାଟି ତୀବ୍ର ବେଗରେ ପଳାଇବାକୁ ଲାଗିଲା । ଅନ୍ୟ ଦୁଇଜଣ କଟାଳିଙ୍କ ଦୃଷ୍ଟିରେ ମୂଷାଟି ପଡ଼ିଛି । ଶିକାର ଉଦ୍ଦେଶ୍ୟରେ ସେମାନେ ହଠାତ୍ ଦୌଡ଼ିବାକୁ ଆରମ୍ଭ କଲେ । ଅବ୍ୟବହିତ ପୂର୍ବେ ଦୃଷ୍ଟ ବିଭ୍ରାଟରେ ଆତଙ୍କିତ ହୋଇ ଗୁଣ୍ଡୁଚି ମୂଷାଟି ନିଜର ଗତି ବଢ଼ାଇ ଦେଇଛି । ଶିକାର ଉଦ୍ଦେଶ୍ୟରେ କ୍ଷିପ୍ର ସମସ୍ତ ଅସ୍ତ୍ର ଏଣୁ ଲକ୍ଷ୍ୟଭ୍ରଷ୍ଟ ହେଉଥାଏ । ଟେଢ଼ା ଶୃଙ୍ଖଳ ପଥ ଦେଇ ଗୁଣ୍ଡୁଚି ମୂଷାଟି ଯେତେବେଳେ ଯାଇଛି କଟାଳିମାନଙ୍କର ଉଦ୍ୟମ ଅବ୍ୟାହତ ରହିଛି । ଗୁଣ୍ଡୁଚି ମୂଷାଟି ବୋଧହୁଏ ଜାଣିନେଲା ଯେ ସେ ଏକ ନୂତନ ବିପଦର ସମ୍ମୁଖୀନ ହୋଇ ଯାଇଛି । ତା'ର ଗତିପଥ ଶଙ୍କାସ୍ପିତ ହେଉଥିଲେ ସେ ବିପଦମୁକ୍ତ ନୁହେଁ ଅନୁଭବ କଲା । ତେଣୁ ସେ ଗୋଟିଏ ବୁଦାରେ ଲୁଚିଗଲା । କଟାଳି ଦୁହେଁ ତୀବ୍ର ବେଗରେ ଛୁଟିଛନ୍ତି । ଇତି ମଧ୍ୟରେ ଗୁଣ୍ଡୁଚି ମୂଷାଟି ନିଜର ଆଶ୍ରୟସ୍ଥଳୀ ଅନେକଥର ପରିବର୍ତ୍ତନ କରି ନେଲଣି ଏବଂ ବିପଦମୁକ୍ତ ସ୍ଥାନ ବାଛି ନେଲଣି ।

ଗଛଟି ଢଳିବା କ୍ଷଣି ପଥରଟାଏ ଗଛର ଖୁଣ୍ଟାରେ ଭୁବନ ଲକ୍ଷ୍ୟ ଦେଲା । ଏ ପଥରଟା ଖୁଣ୍ଟାରେ ସେ କାହିଁକି ଦେଲା ଜାଣେନାହିଁ । ସମସ୍ତେ

ପଥରଟିଏ ଖୁଣ୍ଟାରେ ବାଧନ୍ତ ବୋଲି ଗଛଟିଏ କଟା ହୋଇ ଯେତେବେଳେ ଟଳିଙ୍ଗି ଯାଉଛି, ସେ ପଥରଟି ଦେଉଛି । ଏ ସମ୍ବନ୍ଧରେ ସେ ଅନେକଟା ଶୁଣିଛି । କେଉଁ କଥାଟି ଠିକ୍ ସେ ଜାଣିନାହିଁ । ସବୁଠୁ ସତ୍ତ୍ୱକଥା ଠିକ୍ ସେ କେଉଁ କଥା ପାଇଁ ଏବେ ପଥରଟି ଖୁଣ୍ଟାରେ ମଢ଼େଇ ଦେଲା ଜାଣେନାହିଁ । ସେ ଶୁଣିଛି ପଥର ମଢ଼େଇ ଦେଲେ କଟା ଗଛଟି ଯୋଲ ହୁଏନାହିଁ । ପୁଣି ଶୁଣିଛି ଗଛଟି ଟଳିଙ୍ଗି ଗଲା ପରେ ପରେ ଯେଉଁ ଗର୍ଜନ କରେ ସେଥିରେ ଗୁଡ ଦୋହଲେ ନାହିଁ । ଆହୁରି ସେ ଶୁଣିଛି ଗଛଟି ପଥର ପାଲଟିଯାଏ ଏବଂ ଫାଟେ ନାହିଁ । କେତେକଙ୍କଠାରୁ ସେ ଶୁଣିଛି, ଗଛ କଟାଳିଙ୍କର ବନଦେବୀଙ୍କୁ ଗୋଟିଏ ପ୍ରାର୍ଥନା ଯେ କଟା ଗଛଟି କଟାଳିର ମୁଣ୍ଡରେ ନ ପଡ଼ୁ ଏବଂ ଏହି ପଥର ମାଧ୍ୟମରେ ଦୈବୀଶକ୍ତି ପ୍ରତିଫଳିତ ହେଉ । ଏଇସବୁ ଲୋକ ବିଶ୍ୱାସ ଉପରେ ମଦନ ଭୁବନକୁ ପଗ୍ଭରିଲା । ମଦନ ବି ବୁଝି ନ ଥିବା ଜଣାଇଲା । ଅବଶ୍ୟ ସେ ଜଣେ କାଠୁରିଆ, ହେଲେ ଗଛ କଟାହେଲେ ସବୁ ଯେଉଁରେ ପଥର ଦେବା କାହିଁକି ସେ ବିଷୟ ସେ ଅନୁସନ୍ଧାନ କରିନାହିଁ । ସେ ବି ଗଛ ହାଣିଛି ଏବଂ ପଥର ମଢ଼େଇଛି । ସେ କେବେ ଅନ୍ୟ କାହାରି ପାଇଁ ଗଛ କାଟି ନ ଥିଲା । ତା' ଜୀବନରେ ଏଇଟା ହେଲା ପ୍ରଥମ ।

ଅନ୍ୟ କଟାଳିମାନଙ୍କର ଗଛକଟା ଗ୍ଭଲିଥାଏ । ନିକଟରେ ଉତ୍ତର ବାଗରେ ଥିବା କଟାଳିମାନେ ଗଛଟିକୁ ଟାଳିଦେଲେ । ସେମାନେ ବି ଖୁଣ୍ଟା ଉପରେ ପଥରଟାଏ ମଢ଼େଇ ଦେଲେ । ମଦନ କହିଲା : ଗୁଡଟା ପଥର ହେଉ । ଗୁଡଟା ଦୋହଲି ଗଲେ ବି ହଲଚଲ ନ ହେଉ ।

କିଛି ଦୂରରେ ଭବାନୀଶଙ୍କର ବାବୁ ମନୋନିବେଶ କରି ପହାର ଗଛଗୁଡ଼ିକ ସହ ପରିଚିତ ହେଉଥିଲେ । ଏ ସମୟରେ ଜଣେ ନବାଗତ ଦେଖିଲେ ତାଙ୍କୁ ମନେ କରିବେ ଏଠି ଏ ବ୍ୟକ୍ତି ଜଣକ ଏହି କାମରେ ହିଁ ନିଯୁକ୍ତ । ସେ ଅନ୍ୟ କିଛି ଚିନ୍ତା କରି ମନକୁ ବିଚଳିତ କରିବା ବ୍ୟକ୍ତି ନୁହନ୍ତି । ମଦନ-ହାଣୁଥିବା ଗଛଟି ଯେତେବେଳେ ଟଳିଙ୍ଗିଛି ଭବାନୀଶଙ୍କର ବାବୁଙ୍କର କାନର ପର୍ଦାଟି ଜୋର୍‌ରେ ଦୋହଲାଇ ଦେଲା । କଟା ଗଛଟି ସୃଷ୍ଟି କରିଥିବା ଶବ୍ଦରେ କଟାଳିମାନଙ୍କର କର୍ଣ୍ଣ ଗହ୍ୱରରେ ଯେତେ କମ୍ପନ ସୃଷ୍ଟି କରିନାହିଁ, ସେମାନଙ୍କଠାରୁ ଅପେକ୍ଷାକୃତ ଦୂରରେ ଥିବା ଭବାନୀଶଙ୍କର ବାବୁଙ୍କର କାନର ପର୍ଦାରେ ବେଶି କମ୍ପନ ସୃଷ୍ଟି କଲା । ଶବ୍ଦ ସୃଷ୍ଟ ତରଙ୍ଗ ଗତିପଥରେ ଏଠି ଆସ୍ତେ ଆସ୍ତେ ଯେପରିକି ନିଜର କାୟା ବଢ଼ାଇ ଗ୍ଭଲିଛି । ଭବାନୀଶଙ୍କର ବାବୁ ନିଜର ପ୍ରତ୍ୟକ୍ଷ କର୍ମସ୍ଥଳୀକୁ କ୍ଷିପ୍ର ବେଗରେ ଫେରିବାକୁ ଲାଗିଲେ । ଗଛଟିଏ ଟଳିଗା

ଗଲାଣି । ଅନ୍ୟ ଗଛଗୁଡ଼ିକ ଏଭଳି କିଛି ସମୟ ଅନ୍ତରରେ ଢଳିଙ୍ଗି ଯିବ । ଗଛର ଗଣ୍ଡିକୁ ଆବଶ୍ୟକ ଅନୁସାରେ ଖଣ୍ଡ ଖଣ୍ଡ କରାଯିବ । ସୁବିଧା ସ୍ଥାନରେ କାଟି ପ୍ରତ୍ୟେକ ଗଛକୁ କେତୋଟି ଗୁଣ୍ଡିରେ ପରିଣତ କରାଯିବ । ସେ ପଦାର୍ଥିବା ପୂର୍ବରୁ ମନକୁ ମନ କେନ୍ଦ୍ର ଯଦି ଗୁଣ୍ଡି କରିଦିଏ ତା' ହେଲେ ହୁଏତ କୌଣସି କାମରେ ନ ଆସିବ ଏକଥା ନୁହେଁ; କିନ୍ତୁ ନିର୍ବୋଧତାର ପ୍ରମାଣ ଦେଇ ଉପଯୋଗୀ ବସ୍ତୁକୁ କାହିଁକି ଅନୁପଯୁକ୍ତ କରାଯିବ । ଜଣଙ୍କର ଉପଯୋଗ ମୂଳକ ଜ୍ଞାନର ଅନୁଭୂତି ନେଉଁଠି ଅଛି ସେଠି ଅନୁପଯୋଗ ଏକ ଅକ୍ଷମଣୀୟ ଅବହେଳା । ଏତଦ୍‌ଜନିତ କ୍ଷତିରେ ନିଜର ବ୍ୟକ୍ତିଗତ କ୍ଷତି ହୋଇଥାଇ ପାରେ ତଥାପି ଏହାର ବ୍ୟାପକତା ଏକ ସାର୍ବଜନୀନ ସାଧାରଣ କ୍ଷତି । ଏ କ୍ଷତିର ସ୍ୱରୂପରେ ପରିମାଣାତ୍ମକ ଗଣନାରେ ହୁଏତ ସାମାନ୍ୟ ବ୍ୟତିକ୍ରମ ଥାଇପାରେ କିନ୍ତୁ ଗୁଣାତ୍ମକ ଦୃଷ୍ଟିରେ ବ୍ୟବଧାନ ବଢ଼ି ଯେ ଚାଲିଥିବ ନିଶ୍ଚୟ ।

ପ୍ରାୟ ମଝି ବାଟରେ ଭବାନୀଶଙ୍କର ବାବୁ ଆହୁରି ଏକ ଗଛ ଢଳିଙ୍ଗିବାର ଶବ୍ଦ ଶୁଣିଲେ । ତାଙ୍କର ଚାଲିରେ ଚଞ୍ଚଳତା ତେଜି ଉଠିଲା । ପ୍ରଦୀପରେ ଜଳୁଥିବା ତେଲ କୁଡ଼ୁବୁଡ଼ୁ ସଳିତାର ମୂଳରେ ତେଲ ଟାଣି ଦିଆଯାଉଛି । ଦୀପ ଶିଖାଟିର ଉଚ୍ଚତା ବଢ଼ିଯାଇଛି ।

ମଦନ ଓ ଭୁବନର ସାଥି କଟାଳି ଦୁହେଁ ଗୁଣ୍ଡିଚ ମୁଣ୍ଡାଟିକୁ ଖୋଜି ପାଉନାହାନ୍ତି । ଗଛ ହଣାରେ ଶରୀରରେ ତ କ୍ଳାନ୍ତି ଆସି ଯାଇଥାଏ । ଗୁଣ୍ଡିଚ ମୁଣ୍ଡାଟିର ପଛରେ ଲାଗି ଏହାର ପରିସର ବଢ଼ିଗଲା । ବିଫଳତାରେ ମୁହଁଟି ମଳିନ ହୋଇ ଯାଉଛି ଏବଂ ଝାଳ ସରସର ଭେଜିଲା ମୁହଁଟି ଶୁଖି ସରୁଛି । ଶୁଖିଲା କାନଫଟା ପାଣିରେ ଭିଜିଯାଇ ଓଦା ହେଲେ ଯେପରି ଦିଶେ ଏମାନଙ୍କର ମୁହଁଟି ଠିକ୍ ସେପରି ଦିଶୁଛି ।

ଭବାନୀଶଙ୍କର ବାବୁ ଢଳା ଯାଇଥିବା ଗଛଗୁଡ଼ିକର ସମୀପବର୍ତ୍ତୀ ହୋଇଛନ୍ତି । ମଦନ ଆଜି ଢାଳିଥିବା ଗଛ ପାଖରେ ଯେ ଠିଆହେଲେ ଏବଂ ପରିଧିଟା ମାପିନେଲେ । ପରିଧି ପୂର୍ବପରି ପ୍ରାୟ ଦୁଇ ମିଟର କିନ୍ତୁ ବର୍ତ୍ତମାନ ଯେଉଁ ଅବସ୍ଥାରେ ଗଛଟି ଅଛି ସେଇ ଅବସ୍ଥାରେ ଗଛଟିର ଆକାର ବଢ଼ି ଯାଇଥିବା ଭଳି ପ୍ରତୀତ ଆସେ । ଏ ଗଛଟି ଠିଆ ଅବସ୍ଥାରେ ସବୁ ଜଣା ପଡ଼ୁଥାଏ । ଭବାନୀଶଙ୍କର ବାବୁ ଖୁସି ଜଣା ପଡ଼ୁଛନ୍ତି ।

ମଦନକୁ ଡାକ ଦେଲେ ଭବାନୀଶଙ୍କର ବାବୁ । ମଦନ ଦେହରେ ସାମାନ୍ୟ ଚମକ ଖେଳିଗଲା । ଠିକାଦାର ପୋ ଆସିଗଲେଣି, ଏମାନେ ଜାଣିପାରି ନାହାନ୍ତି ନରୁବା ଏପରି କିଛି କାମ ନ ଥିଲାପରି ବସି ନ ଥାନ୍ତେ ।

ସେମାନେ ଅବଶ୍ୟ ବିଶ୍ରାମ ନେଉଛନ୍ତି । ଗୋଟିଏ ଘଣ୍ଟିଆ କାମର ଶେଷରେ ସେମାନେ ସାମାନ୍ୟ ପରିବର୍ତ୍ତନ ଚାହାନ୍ତି । ସେମାନେ କ୍ଳାନ୍ତିର ଅପସାରଣ ନିମନ୍ତେ ଏକ ନୂତନ ଶକ୍ତିର ଆଶୀର୍ବାଦ ଚାହାନ୍ତି । ଅପାରତାର ନିଷ୍ଫଳ ମୁହୂର୍ତ୍ତର ଅବଦାନରେ ଧାରାବାହିକତାର ଭଙ୍ଗିରେ ମୁହୂର୍ତ୍ତଗୁଡ଼ିକ ଅନଗ୍ରସର ହୋଇଯାଏ ବୋଲି ଭବାନୀଶଙ୍କର ବାବୁ କିନ୍ତୁ ଧାରଣା କରି ପାରନ୍ତି । ଅନଗ୍ରସରତାରେ ଶକ୍ତିର ଆଶୀର୍ବାଦ କେଉଁଠି ବୋଲି ପ୍ରଶ୍ନ ବି ସେ କରି ପାରନ୍ତି । ଶାରୀରିକ ଶକ୍ତିର ଧାରାବାହିକ ବିନିଯୋଗରେ ମାନସିକ ଶାନ୍ତିର ସମ୍ପର୍କ ଯେ ଚାପ ଏବଂ ଅନେକ ପରି ପାରସ୍ପରିକ ଭାବରେ ଜଡ଼ିତ ବୋଧହୁଏ ଭବାନୀଶଙ୍କର ବାବୁ ଜାଣିଥିବେ ।

ମଦନ ନିଜ ପାଖରେ କୁଢ଼େର ଖଣ୍ଡିକ ରଖିଥିଲା । ବାବୁଙ୍କର କଥା କାନରେ ଯେପରି ପଡ଼ିଛି ହାତଟା ଆପେ ଆପେ କୁଢ଼େର୍‌ର ଚେଣ୍ଟା ବା ବେଣ୍ଟ ଉପରକୁ ଚାଲିଗଲା । ସେ ଧାଇଁ ଧାଇଁ ଠିକାଦାରଙ୍କ ନିକଟକୁ ଚାଲିଲା । ଅନ୍ୟମାନେ ଉଠିପଡ଼ି କଟା ଗଛ ନିକଟରେ ଥିବା ବୁଦା ପାଖକୁ ବଢ଼ି ଚାଲିଲେ । ବୁଦାତଳେ ସେମାନଙ୍କର କୁଢ଼େର ସବୁ ଥୁଆ ହୋଇଛି । ନିଜ ନିଜ କୁଢ଼େର ଧରି ସେମାନେ ଭବାନୀଶଙ୍କର ବାବୁଙ୍କର ପରବର୍ତ୍ତୀ ଆଦେଶ ପାଳନ କରିବାକୁ ବଢ଼ି ଚାଲିଲେ ।

ଭବାନୀଶଙ୍କର ବାବୁ ଆହୁରି ଥରେ ଗଛଟିକୁ ଦେଖିନେଲେ । ମଦନକୁ ପଚାରିଲେ ଗଛଟିର ବନ୍ଧନ ଅଛି ବୋଧହୁଏ । ମଦନ ସମର୍ଥନ କଲା ଏବଂ କହିଲା ଏହାର କାଠ ଖୁବ୍ ଶକ୍ତ ଅଛି । ଫିତାର ଗୋଟିଏ ମୁଣ୍ଡକୁ ମଦନକୁ ଧରିବାକୁ କହିଲେ ସେ ଏବଂ ବିଭିନ୍ନ ଦୈର୍ଘ୍ୟରେ ବୁଙ୍ଗି କରାଯିବାକୁ ଚିହ୍ନମାନ ଦେବାକୁ କହିଲେ । ଭୁବନ ନିଜ କୁଢ଼େର୍‌ରେ ଦାଗ ଦେଲା । ଅନ୍ୟ ଗଛ ଦୁଇଟି ମଧ୍ୟ ଢଳା ଗଲାଣି । ଏଣୁ ବାବୁ ବିଭିନ୍ନ ବ୍ୟାବହାରିକ ଦୃଷ୍ଟିକୋଣରୁ ଚିହ୍ନମାନ ଦିଆଇ ଦେଲେ । ଗଛ କଟାଳିମାନେ ନିଜ ନିଜ କାମରେ ଲାଗିଗଲେ ।

ପୂର୍ବାହ୍ଣର କାମ କରିବା ବେଳଟି ଗଡ଼ିଗଲାଣି ତଥାପି ସମସ୍ତେ କାମରେ ଲାଗି ପଡ଼ିଛନ୍ତି । ମଦନକୁ ଏହା ବାଧି ଯାଉଛି । ସେ କେଉଁ ଅଧିକ ସମୟ ପାଇଁ ଖଟୁଛି, କାହିଁକି ? ମାଲିକର ମନରେ ଖୁସି ଭରି ଦେବାକୁ । ଖଟଣିରେ ତା'ର ଶରୀର ଭାଙ୍ଗିଗଲେ ହୁଏତ ଶ୍ରମିକର ଅଭାବ ମାଲିକର ଆସିବ ନାହିଁ କିନ୍ତୁ ଶ୍ରମିକର ପରିବାରକୁ ଅଭାବ ଘଟିବ । ବ୍ୟକ୍ତିର ପରିବର୍ତ୍ତନ କରି ଶକ୍ତିର ଅଭାବ ମାଲିକ ଦୂରେଇ ଦେବ ସିନା କିନ୍ତୁ ପୂର୍ବୋକ୍ତ ବ୍ୟକ୍ତି ଉପରେ ନିର୍ଭର କରୁଥିବା କେତେଗୁଡ଼ିଏ ପ୍ରାଣୀ କାହାର ପ୍ରତି ବଦଳରେ ଶକ୍ତିର ରୂପ ଦେଖିବ । ଶେଷରେ ସେଇ ପ୍ରାଣୀଗୁଡ଼ିକ ଶକ୍ତିର ଅଭାବରେ ଶକ୍ତିଲାଭ ନିମନ୍ତେ ନିଜର ଜୀବନକୁ ଆହୁତି

ଦେବାକୁ ଆତ୍ମସମର୍ପଣ କରିବେ ଅଥବା ଶତ୍ରୁର କୃପା ଉପରେ ନିର୍ଭର କରି ନିଜର ଅପଳାପ କରିବେ । ଏହି ପରିସ୍ଥିତିରେ କିନ୍ତୁ ସେମାନଙ୍କ ହୃଦୟରେ ଖୁସି ଆସିବ ନାହିଁ ।

ମଦନ ପ୍ରତିବାଦ କରିବାକୁ ହୃଦୟ ଭିତରେ ଆନ୍ଦୋଳନ ସୃଷ୍ଟି କରେ । କୁଢ଼େଇକୁ ଠିଆ ରଖିବାକୁ ନିଜ ଗୋଡ଼ରେ ଉଧେଇ ଦେଇ ମଦନ ହାତକୁ ଘଷେ । କୁଢ଼େଇଟିକୁ ତୁଳନା କରି କରି ହାତ ପାପୁଲିରେ ବ୍ୟଥା ଆସି ଯାଉଛି । ଘଷିଦେଲେ ତୁଟିଯିବ । ଏହି ବିପଦମୁକ୍ତ ସମୟରେ ମଦନର ଶରୀରରେ ଜାଗି ଉଠିଥିବା ଆନ୍ଦୋଳନଟି ତେଜିଉଠେ । ହାତରେ କୁଢ଼େଇ ନାହିଁ । ମନ ଏଆଡ଼େ ସେଆଡ଼େ ହୋଇ କୁଢ଼େଇଟିର ତୁଳନାରେ ବ୍ୟତିକ୍ରମ ହେବାର ପ୍ରଶ୍ନ ନାହିଁ । ଏଣୁ ଏ ପ୍ରକାର ବିପଦର ଆଶଙ୍କା ବି ନାହିଁ । ମୁଣ୍ଡରେ ଜାଗି ଉଠିଥିବା ପ୍ରତିକ୍ରିୟାକୁ ସମ୍ପୂର୍ଣ୍ଣ ଭର୍ତ୍ତି କରିଦେଲେ ସୁଦ୍ଧା ଅନ୍ୟମନସ୍କର ଚିହ୍ନ ଦେଖାଯିବ ନାହିଁ କିମ୍ବା ଅବହେଳାର ବିଫଳତା ଆସିବ ନାହିଁ । ମଦନର ଶରୀର ଭିତରଟା ଏତେ ତାତି ଯାଏ ଯେ ତା'ର ସମସ୍ତ ଇନ୍ଦ୍ରିୟ ବାଷ୍ପ ହୋଇଯାଏ । ତା'ର ଆପାତତଃ କୋମଳ ଆବରଣକୁ ଫଟାଇ ଦେଇ ଏସବୁ ପଦାକୁ ବାହାରି ଆସି ନିଜର ସ୍ୱରୂପକୁ ଅନୁଭୂତ କରାଇବାକୁ ଚାହେଁ ।

ମଦନ ଚାହେଁ ତା'ର ଚାରିଆଡ଼େ ଘେରି ରହିଥିବା ଶ୍ରମିକମାନଙ୍କୁ । ଦେଖେ ସେମାନଙ୍କ ହାତ ସ୍ୱାଭାବିକ ଏବଂ ସେମାନଙ୍କ ମନ ବି ସ୍ୱାଭାବିକ । ସେମାନେ ମଦନ ଅପେକ୍ଷା କଷ୍ଟକର ଜୀବନ ବିତାଉଥିଲେ ସୁଦ୍ଧା କାମରେ ବୀତସ୍ପୃହ ନୁହନ୍ତି । ସେମାନଙ୍କର ମୁଖମଣ୍ଡଳରେ ଅଶାନ୍ତିର କୌଣସି ଚିହ୍ନ ପରି-ଲକ୍ଷିତ ହେଉନାହିଁ । ସେମାନେ ଅବଶ୍ୟ କିଛି ନା କିଛି ବାହାନା କରି କ୍ଳାନ୍ତି ଅପସାରଣ କରୁଛନ୍ତି । କିଏ କୁଢ଼େଇର ଧାରକୁ ପରଖି ନେଉଛି ତ କିଏ କୁଢ଼େଇକୁ ଲଗି ରହିଥିବା ଟେଣ୍ଟର ମୁଣ୍ଡକୁ ପଥର ଦେହରେ ଦୁଇ ଚାରି ଥର କଚାଡ଼ି ହୁଗୁଳା କୁଢ଼େଇଟିକୁ ମଜବୁତ କରୁଛି । କିଏ ଯେ ଅଣ୍ଟାରୁ ଖଇଁ ଡବାଟା ବାହାର କରି ଖଇଁ ଫାଙ୍କେ ଦାନ୍ତ ଓ ଓଠର ମଝିରେ ଚାପି ଦେଉଛି ତ କିଏ ଚୁଙ୍ଗି ପାଇଁ କଟା ଯାଉଥିବା ସ୍ଥାନର ଶ୍ରେଷ୍ଠ ଶ୍ରେଷ୍ଠ ଅଂଶଗୁଡ଼ିକୁ ସଫା କରି-ନେଉଛି । ତଥାପି ସେମାନଙ୍କଠାରେ ଅଧିକ ସମୟ ଖଟୁଥିବାର ପ୍ରତିବାଦର ସୂଚନା ତିଳେମାତ୍ର ଜଣା ପଡ଼ୁନାହିଁ । ଏମାନଙ୍କର ଏ ପ୍ରକାର ଜ୍ଞାନ ନାହିଁ, ମଦନ ବିଶ୍ୱାସ କରେନାହିଁ । ଏମାନେ ଏ ପ୍ରକାର ଅସୁବିଧା ପାଇଁ ସ୍ୱର ଉତ୍ତୋଳନ କରନ୍ତୁ ବା ନ କରନ୍ତୁ ସ୍ୱର ଉତ୍ତୋଳନ କରିବା ନିମନ୍ତେ ପ୍ରସ୍ତୁତ ଯେ ନୁହନ୍ତି, ଏକଥା ବି ମଦନ ବିଶ୍ୱାସ କରେନାହିଁ । ଅନ୍ୟ କୌଣସି ଫଳପ୍ରଦ ପନ୍ଥା ପ୍ରତିବାଦ

ନିମନ୍ତେ ଏମାନେ ପ୍ରକାଶ କରନ୍ତୁ ବା ନ କରନ୍ତୁ କର୍ମ କ୍ଷେତ୍ରରେ ବିରକ୍ତି ନିଶ୍ଚୟ ପ୍ରକାଶ କରନ୍ତି କିନ୍ତୁ ତାହା ବି ନାହିଁ । ଅନେକେ ଏନାୟୁ ନିମନ୍ତେ ପଶ୍ଚାଦ୍ ଭାଗରେ ସମାଲୋଚନା କରନ୍ତି ନିଶ୍ଚିତ ଭାବେ । ଏ ସମାଲୋଚନା ଯଥାର୍ଥ ହେଉ ବା ନ ହେଉ, ଫଳପ୍ରଦ ହେଉ ବା ନ ହେଉ ଅଥବା କାର୍ଯ୍ୟକାରୀ କରା-ଯିବାକୁ ସାମର୍ଥ୍ୟ ଥାଉ ବା ନ ଥାଉ ସମାଲୋଚନା ହେବ । କିନ୍ତୁ ଏହାର ପୂର୍ବାଭାସ ମୁଦ୍ଧା ଏଠି ପରିଲକ୍ଷିତ ହେଉନାହିଁ । ଯେଉଁ କର୍ମ କ୍ଷେତ୍ରରେ କର୍ମ ପ୍ରତି ଆନ୍ତରିକତା ଏବଂ ସ୍ୱାଭାବିକତା ଦୃଷ୍ଟ ହୁଏ ସେ କ୍ଷେତ୍ରରେ ପଶ୍ଚାଦ୍‌ଭାଗରେ ସମାଲୋଚନା ନାହିଁ । ସେ କର୍ମ କ୍ଷେତ୍ରର ଉପାଦେୟ ତଥ୍ୟ ସବୁର ବ୍ୟାଖ୍ୟା କରି କ୍ଷେତ୍ରର ଅନ୍ତରାଳରେ ଅନ୍ତର୍ନିହିତ ଉଦ୍ଦେଶ୍ୟ ସବୁ ଉତ୍ଥାପନ କରି ଏହାର ବିନିଯୋଗର ଉତ୍କର୍ଷତାରେ କିପରି ବ୍ୟତିକ୍ରମ ସୃଷ୍ଟି କରାଯାଇଅଛି ଯେପରି ବୁଝାଇଲେ ଅବା ଶ୍ରମିକ ମନରେ ନୂତନତା ଉଦୟ ହୁଅନ୍ତା । କିନ୍ତୁ ଜଣେ ଧନ ମଜୁରିଆ ପକ୍ଷେ ଏହା ସମ୍ଭବ କିପରି ? ହୁଏତ ସେ ନିଜେ କର୍ମ କ୍ଷେତ୍ରରୁ ଅପସରି ଯାଇପାରେ ଏବଂ ଅନ୍ୟମାନଙ୍କୁ ବି ଅପସରି ଯିବାକୁ ପ୍ରବର୍ତ୍ତା ଯାଇପାରେ କିନ୍ତୁ ଅନ୍ୟ ଧନ୍ଦାରେ ସେମାନଙ୍କୁ ନିୟୋଜିତ କରାଯିବାକୁ ପଥ ଫିଟାଇ ଦିଆ-ଯିବାପରେ ଅଥବା ଏ କାର୍ଯ୍ୟ କ୍ଷେତ୍ରକୁ ଆସିବା ନିମନ୍ତେ ସମସ୍ତଙ୍କୁ ବାରଣ କରିବାକୁ ବ୍ୟବସ୍ଥା କଲେ । ଏଥି ନିମନ୍ତେ କେତେଜଣଙ୍କୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିପାରେ । ଯେଉଁମାନେ କିନ୍ତୁ ସାଧାରଣ ପାରିଶ୍ରମିକ ଅଭାବରେ ନିଜର ଜୀବନକୁ ଉପଭୋଗ କରିବାରୁ ବଞ୍ଚିତ ସେମାନେ ନେତୃତ୍ୱ ଦେବେ କେଉଁ ଶକ୍ତିକୁ ଆଧାର କରି । ବଞ୍ଚିବାର ଅଧିକାର ଯାହାର ନାହିଁ, ତାହାର ସ୍ପନ୍ଦନଶୀଳ ପ୍ରାଣରେ ବଞ୍ଚାଇବାର ଅଧିକାର ନାହିଁ । ମଦନ କୁଢ଼େଇର ଟେଣ୍ଟକୁ ପୁଣି ଥରେ ଛଡ଼ାଏ । ଏକ ଦୀର୍ଘ ନିଃଶ୍ୱାସ ଛାଡ଼େ । ଏକ ଶୁଖିଲା ହସ ହସିଦେଇ ନିଜର ସାଥୀମାନଙ୍କୁ କହେ ସେ ଅଳ୍ପ ସମୟ ପରେ ବୁଙ୍ଗି ଗୋଟାଏ ବାହାର କରିବାକୁ କାଟି ଶେଷ କରିବ ।

ଭବାନୀଶଙ୍କର ବାବୁଙ୍କର କର୍ମଚାରୀ, ଯିଏ କି ଏଠି ରନ୍ଧାବଢ଼ାରେ ଲାଗିଥିଲା, ଜଣାଇ ଦେଲା ଯେ ରନ୍ଧା କାର୍ଯ୍ୟ ଶେଷ ହୋଇଗଲାଣି । ଭବାନୀଶଙ୍କର ବାବୁ କାମ ବନ୍ଦ କରିବାକୁ କହିଲେ । ମୁହୂର୍ତ୍ତକ ଭିତରେ ଗଛ କଟାଳି-ମାନଙ୍କର ହାତ ବନ୍ଦ ହୋଇଗଲା । ସେମାନେ ଯେପରିକି ବିଶ୍ୱସ୍ତ ଅନୁଚର ; ସେମାନେ ନିଯୁକ୍ତିକର ଏକାନ୍ତ ଅନୁଗତ ।

ଏକ ତରୁଣ ବରଗଛ ମୂଳେ ବିରଡ଼ି ପରେ ସମସ୍ତେ ଏକତ୍ରିତ ହେଲେ । ଏ ସମସ୍ତଙ୍କଠାରୁ ଏ ଗଛଟି ବୟସରେ ବଡ଼ କିନ୍ତୁ ବୃକ୍ଷର ପ୍ରତି ଅଂଶରେ ତାରୁଣ୍ୟ

ଖେଳ ଜରିଛି । ଗତଟିର ବୟସ ପ୍ରାୟ ପଚିଶ ବର୍ଷ ହେଲେ ସୁଦ୍ଧା ମନେହୁଏ ମାତ୍ର ଆଠ ଦଶ ବର୍ଷର ହେବ । ନିଜ ନିଜ କୁଢ଼ରଗୁଡ଼ିକ ପାଖେ ପାଖେ ଥୋଇଦେଇ ଶ୍ରମଜନିତ କ୍ଳାନ୍ତିର ଦୂରୀକରଣ ନିମନ୍ତେ ସତେ ଯେପରି କି ଏକ ବିଧିବଦ୍ଧ ପରିକଳ୍ପନା କାର୍ଯ୍ୟକାରୀ କରିବାକୁ ଏମାନେ ସମବେତ । ଏହି ଯୋଜନା ଭିତରେ କେଉଁ କେଉଁ ସଫଳତା ଭରିରହିଛି କେଜାଣି । ସେମାନେ ଯେତେବେଳେ ସମବେତ ହୋଇଛନ୍ତି ସେତେବେଳେ ସେମାନଙ୍କ ମନରେ ଏକ ବେଗବାନ୍ ଆନନ୍ଦ ଫେଣିଯାଇଛି । ସତେ କି'ଣ ଏମାନେ କ୍ଳାନ୍ତିର ବିନାଶ ନିମନ୍ତେ ଏ ଯୋଜନା ପୂର୍ବରୁ ଗଢ଼ିଥିଲେ ନା, ଏକ ପାରମ୍ପରିକ ଅନୁଭୂତ ସୂତ୍ରର ନିର୍ଦ୍ଦେଶରେ ଏକତ୍ରିତ ହୋଇଥିଲେ । ଏଥି ନିମନ୍ତେ ବାଧ୍ୟତାମୂଳକ ଉପସ୍ଥାନର ଆବଶ୍ୟକତା ରହିଛି ନା ଜଣେ ଅନୁପସ୍ଥିତରେ ନିଜକୁ ଦୋଷୀ ମନେ କରିବାର ଯଥେଷ୍ଟ କାରଣ ରହିଛି । ଏ ସମାବେଶରୁ ଜଣେ ନିଜକୁ ପୃଥକ ମନେକଲେ ମନରେ ବୋଧହୁଏ ସୃଷ୍ଟିହୁଏ ବିଭେଦର ଏକ ସ୍ୱୟଂଜାତ ନୂତନ ସମ୍ଭାବନା । ବୋଧହୁଏ ଏ ପ୍ରକାର ସମ୍ଭାବନାକୁ ଆହ୍ୱାନ ନ କରିବାକୁ ଏମାନେ ଏକତ୍ରିତ । ଏଠି କିଏ କାହାର ଆବାହକ ଏବଂ କିଏ କାହାର ସ୍ଥାନ ନିରୂପକ ଜାଣି ହୁଏନାହିଁ । ଜାଣି ହୁଏନାହିଁ କିଏ ଏହାର ଚାଳକ, କିଏ ଏହାର ଉଦ୍‌ଘାଟକ ଏବଂ କିଏ ଏହାର ଉଦ୍‌ଯାପକ । ବୋଧହୁଏ କେହି ନୁହେଁ ତଥାପି ବାସ୍ତବିକ ବିଚିତ୍ର ଏ ସମାବେଶ । ବାସ୍ତବିକ ବିଚିତ୍ର ସମସ୍ତଙ୍କ ଉପସ୍ଥାନ । ପରିବେଶ ଜନିତ ଶ୍ରମିକ ମନରେ ସାର୍ବଜନୀନ ସମାବେଶର ପୂର୍ଣ୍ଣ ଉପସ୍ଥାନ ଯଦି ଦ୍ୱିଧାଶୂନ୍ୟ ମୁହୂର୍ତ୍ତରେ ଏତେ ସଂଗଠିତ ତେବେ ଶ୍ରମ-ଅବଲମ୍ବୀ ଶ୍ରମିକ ଜୀବନର ନିୟନ୍ତ୍ରିତ ସମାବେଶରେ ଏକ ନୂତନ ପର୍ଯ୍ୟାୟ ଅଭ୍ୟୁଦୟ କୌଣସି ଏକ ମୁହୂର୍ତ୍ତରେ କାହିଁକି ସୁଦୃଢ଼ ମନୋବଳ ସୃଷ୍ଟି କରି ଶ୍ରମ ନିୟୋଜକମାନେ ଜଡ଼ିତ ସମସ୍ତ ଅଙ୍ଗକୁ ସୁଦୃଢ଼ କରିଦେବ ନାହିଁ ।

ସମସ୍ତେ ଶୁଣି ପାରିବା ସ୍ୱରରେ କୁରେଇକାଠ ଖଣ୍ଡେ ଆଣିବାକୁ ଯାଉଥିବା କଥା ଭୁବନ ଶୁଣେଇ ଦେଲା । ଦୁଇ ଅଙ୍ଗୁଳି ମୋଟା ଖଣ୍ଡିଏ ଶୁଖିଲା କୁରେଇକାଠ ଏବଂ ଆଙ୍ଗୁଳାଏ ମୋଟର ଆଉ ଖଣ୍ଡିଏ ଶର କାଠି ଭୁବନ ସଂଗ୍ରହ କଲା । ମୋଟା କାଠିର ଗୋଲଟା କୁଢ଼େଇରେ ଖୁଞ୍ଚିଦେଲା ଏବଂ କାଣ୍ଡ ଅଂଶରୁ ବି କିଛି ଖୁଞ୍ଚିଦେଲା । ଚଞ୍ଚା କାଠରେ ଦାଗଟିଏ ଦେଖି ସରୁ କାଠିର ଗୋଟିଏ ମୁଣ୍ଡକୁ ସାମାନ୍ୟ ଗୋଜିଆ କଲା । ମୋଟା କାଠିଟାକୁ ଭୁବନ ଗୋଡ଼ ଦୁଇଟାରେ ଚାପି ରଖିଲା । ଦାଗ ଉପରେ ସରୁ କାଠିଟା ଲମ୍ବ ଭାବରେ ରଖି ଜମ୍ପକୁ ଜୋର୍‌ରେ ଚାପ ଦେଇ ବୁଲେଇବାକୁ ଲାଗିଲା । କାଠର ତଳେ ଛଅ ସାତଟି ଶୁଖିଲା ପତ୍ର ଥୋଇଛି । ଅତ୍ୟଧିକ ଚାପ ଏବଂ ଘର୍ଷଣ ଫଳରେ କାଠରୁ ଗୁଣ୍ଡ

ଅଂଶ ବହିର୍ଗତ ହୋଇ ଗଣ୍ଠିଟିଏ ସ୍ପଷ୍ଟ ହୋଇ ଗ୍ଲଲଥାଏ । ଶେଷରେ ଏହି ଗୁଣ୍ଡରେ ଅଗ୍ନି କଣିକା ଦେଖା ଦେଉଛି । ଶୁଖିଲ ପତ୍ରଗୁଡ଼ିକ ଜଳି ଉଠିଛି । ଭୁବନ କାହାଳଟା ବାହାର କରି ନିଆଁ ସଂଯୋଗ କଲା ଏବଂ ଦୁଇ ଚାରି ଚୋଙ୍କ ଟାଣିନେଲା । କାହାଳର ଧୂଆଁ ଯେ ଯେତେଦୂର ପର୍ଯ୍ୟନ୍ତ ବ୍ୟାପିଗଲା ସେତେଦୂର ଯାଏ ଭୁବନ ଦେଖିଲା ଆନନ୍ଦର ବଳୟ ସୀମା ।

ଶ୍ରମିକ ଷୋହଳଜଣଯାକ ଏଠି ଗୋଟିଏ ଜୀବନର ମଧ୍ୟାହ୍ନ, ବିଭିନ୍ନ ଅଂଶ ପରି ଗୋଟିଏ ପିଣ୍ଡରେ ଖଣ୍ଡି ହୋଇ ଯାଇଛନ୍ତି । ଶ୍ରମିକ ଜଣେ ନିଜର ଅଙ୍ଗୁଛି ଝାଡ଼ିକି ବୁଲାଇ ପ୍ରଚୁର ଚଳନ୍ତ ପବନ ପାଇବା ଆଶାରେ ଲାଗି ପଡ଼ିଛି । ନିଜର ଝାଳ ଯେତିକି ଶୁଖିବାରେ ଲାଗିଛି, ଆନନ୍ଦ ସେତିକି ମିଳୁଛି । ଜଣେ ଝାଟି ଝାଡ଼ିଏ ହାତରେ ଧରି ଭୂଇଁରେ କେତେଗୁଡ଼ିଏ ଗାର କାଟି ଦେଉଛି । ସ୍ଥାନଟିରେ ଗାର ଭର୍ତ୍ତି ହୋଇ ଯାଇଛି ଯେତେବେଳେ ସେ ଅନ୍ୟ ଏକ ସ୍ଥାନ ବାଛି ନେଉନାହିଁ । ବରଂ ପୂର୍ବରୁ ଟଣା ଯାଇଥିବା ଗାରଗୁଡିକ ଲିଭାଇ ଦେଇ ପୁଣି ଗାର କାଟୁଛି ଏବଂ ପୂର୍ବ ସ୍ଥାନରେ ବସି ରହିଛି । ସେମାନଙ୍କ ଭିତରୁ ଜଣେ ଶୁଖିଲା ଘାସ ଛୁଣ୍ଡାଇବାରେ ଲାଗିଛି । ସମସ୍ତେ କିଛି ନା କିଛି କାର୍ଯ୍ୟରେ ଲାଗି ଯାଇଛନ୍ତି ଏବଂ ମଝିରେ ମଝିରେ ନିଜର ବକ୍ତବ୍ୟ କିଏ କେମିତି ଦେଉଛନ୍ତି ।

ହଠାତ୍ ପ୍ରସ୍ତାବ ଉଠିଲା ଗାଧୋଇ ଯିବାକୁ । ବେଳ ଗଡ଼ିଯାଇଛି । ଅପରାହ୍ନର କାମ ଆରମ୍ଭ କରିବାକୁ ସମୟ ଆସିଯିବ । ଯେତେ ଆଗରୁ ସେମାନେ ଗାଧୋଇବେ ସେତେ ଆଗରୁ ପେଟରେ କିଛି ଭର୍ତ୍ତି କରିଦେଇ ସାମାନ୍ୟ ବିଶ୍ରାମ ନେବେ । ସେ ବିଶ୍ରାମରେ ଆଶ୍ୱାସନା ଅଛି । ଆନନ୍ଦ ଅଛି ଏବଂ ସାମର୍ଥ୍ୟର ନୂତନତା ଅଛି ।

ତବିଟା ଅଣ୍ଟାରୁ ବାହାର କରି ଫାଙ୍କେ ଗୁଙ୍ଗ ମଦନ ଜିଭରେ ପକାଇ ଦେଲା ଆଉ ଭୁବନ ସହିତ ପାଦ ବଢ଼ାଇବାକୁ ଲାଗିଲା । ଭୁବନ ଯେ ମଦନର ପଡ଼ୋଶୀ, ସେମାନେ ମିଳି ଗୋଟିଏ ଦିଗକୁ ଯିବେ । ଗାଧୋଇବେ ଏବଂ ଫେରି ଠିକଏ ଠିକଏ ନିଜ ଘରେ ପିଇନେବେ । ସମସ୍ତେ କିନ୍ତୁ ସେହି ସ୍ଥାନରୁ ପଶ୍ଚିମ ଦିଗକୁ ବଢ଼ିଲେ ଅଥଚ ମଦନର ଘର ଦକ୍ଷିଣ ଦିଗରେ । ମଦନ ବୁଝି ପାରିଲା ନାହିଁ କାହିଁକି ଯେ ସେମାନେ ଗୋଟିଏ ସ୍ଥାନରେ ଗାଧୋଇବେ । ଯେଉଁ ସ୍ଥାନରେ ସେମାନେ ଗାଧୋଇବେ ହୁଏତ ସେ ସ୍ଥାନଟି ସେମାନଙ୍କୁ ପାଖ ପଡ଼ିବ କିନ୍ତୁ କେତେ ଜଣଙ୍କୁ ନିଜ ଘରକୁ ଯିବାକୁ ଦୂର ପଡ଼ିବ । ଯେଉଁଠା ଘରକୁ ପାଖ ପଡ଼ିବା ସ୍ଥାନରେ ଗାଧୋଇ ନେଲେ ତ ବିଶେଷ ସୁବିଧା ହୁଅନ୍ତା ??

ଭୁବନକୁ ମଦନ କହିଲା : ସେମାନେ କୁହନ୍ତି ତାଙ୍କ ଘର ନିକଟରେ ଗାଧୋଇଲେ ତ ସୁବିଧା ହେବ । ଯେପରି ହେଲେ ଗାଧୋଇବା ପରେ ଭିନ୍ନ ଭିନ୍ନ ବାଟରେ ଘରକୁ ଯିବାକୁ ହେବ । ଏକା ସାଥିରେ ଗାଧୋଇ ସମସ୍ତ ହୁରାଇବାରେ କି ଲାଭ ?

ଭୁବନ ଖୁସି ଏବଂ ତୃପ୍ତି ଭରା ସ୍ୱରରେ ଉତ୍ତର ଦେଲା : ଏଠି ସମସ୍ତେ ଏକାଠି ଖାଇବା । ନାଳ ପାଖରେ ରନ୍ଧାବଢ଼ାର ବ୍ୟବସ୍ଥା ଠିକାଦାର କରିଛନ୍ତି । ସେମାନଙ୍କ ଘରକୁ ଯିବାକୁ ପଡ଼ିବ ନାହିଁ ।

ମଦନର ଚିନ୍ତାଧାରାରେ ଏକ ପାଚେରୀ ଠିଆ ହୋଇଗଲା । ସେ ଅନୁଭବ କଲା ନାହିଁକି ସେମାନେ ଖଟିଲେ । ସେ ମୁଠାଏ ଖାଇବାକୁ ଖଟେ । ଖଟେ ଢୋକେ ପିଇବାକୁ । ମୁଠାଏ ଖୁଆଇବାକୁ ଏବଂ ଢୋକେ ପିଆଇବାକୁ ବି ସେ ଖଟେ । ଚିନ୍ତାଧାରାରେ ଚିନ୍ତାର ମୂଳ ବସ୍ତୁ କଳ୍ପନାରେ ବି ପରିଣତ ହୋଇ ଉଭେଇ ଯାଇଛି ।

ମଦନର ମୁଣ୍ଡ ଭିତରେ ଗଢ଼ି ଉଠିଥିବା ପାଚେରୀରେ ଫାଟ ଦେଖା-ଦେଲା । ଜଣେ ଯେତିକି ଖାଇବ ତା'ର ଦାମ ତ ଅତି କମ୍‌ରେ ଏକ ଟଙ୍କା ହେବ ଏବଂ ଏହା ଯଦି ନିଜ ପାରିଶ୍ରମିକରୁ କଟିଯାଏ ତା' ହେଲେ ନିଜ ପରିବାର ମାନି ନେଇ ଗୋଟିଏ ଟଙ୍କା ଢନକୁ ପାଇବ । ପୁଣି ସନ୍ଧ୍ୟାରେ ଘରେ ଥିର୍ ପିଇବାକୁ ପଡ଼ିବ । ଏଇଥିରେ ତ କୌଣସି ପ୍ରକାରେ ଲାଭର ସୂଚନା ନାହିଁ । କେବଳ ନିଜର ପେଟକୁ ଘର ରନ୍ଧାଠାରୁ ଟିକିଏ ଉନ୍ନତ ଧରଣର ଖାଦ୍ୟ ମୁଠାଏ ଯିବ । ଯେଉଁ ପରିବାରର ମୁଖ୍ୟ ନିଜ ଅନ୍ୟାନ୍ୟ ସଭ୍ୟଙ୍କଠାରୁ ଉନ୍ନତ ପରିବେଶ ମଧ୍ୟରେ ନିଜକୁ ଜଡ଼ିତ କରାଇବାରେ ଆନନ୍ଦିତ ସେ ମୁଖ୍ୟର ମାନବିକତାର ମାନ ନିର୍ଦ୍ଧାରଣ ଅନ୍ୟର ମାପକାଠିରେ ମପା ଯାଇପାରେ ସେକଥା ମଣିଷ ଜଣେ ସ୍ଥିର କରି ପାରିବା ସମ୍ଭବ କପରି । ମଦନର ମୁଣ୍ଡ ଭିତରେ ଗଢ଼ି ଉଠିଥିବା ପାଚେରୀଟା ଅଦୃଶ୍ୟ ହୁଏ । ବିରାଟ ବାଲୁକା ପ୍ରାନ୍ତରରୁ ମରୀଚିକାଟି ପ୍ରଖର ମଧ୍ୟାହ୍ନର ଗଗନବୃତ୍ତରେ ବି ବିନା ବର୍ଷାର ମେଘର ଛାୟାରେ ଉଭେଇଯାଏ । ଛାୟାର ଆବିର୍ଭାବରେ ମାୟାର ଜଟିଳତା ଲୋପପାଏ ।

ମଦନ ଭୁବନକୁ କହେ ପାରିଶ୍ରମିକକୁ ସଂଖ୍ୟାରେ ଗଣିବାକୁ । ଘରର ଲୋକେ ସପ୍ତାହ ଶେଷରେ ଗୁହିଁ ରହିଥିବେ । ଯଦି ଏମାନେ ଖାଇବାକୁ ବସିବେ ସଂଖ୍ୟାଟି ସଂକ୍ଷିପ୍ତ ହୋଇଯିବ । ଯେଉଁ ପ୍ରକୃତ ନିଜର ପରିବେଷ୍ଟନୀର ପ୍ରକୃତକୁ ନ୍ୟୂନ କରିବାକୁ ଏକ ଅବ୍ୟର୍ଥ ମାଧ୍ୟମ ରୂପେ ଛିଡ଼ାହୁଏ ସେ ପ୍ରକୃତର ମାରାତ୍ମକତା, ତା'ର ପ୍ରୟୋଗ ପୂର୍ବରୁ କଳନା କରି ଉପଲବ୍ଧି କରିନେବା

ଉଚିତ । ବିଶାଳ ବୃକ୍ଷର କୋଡ଼ରେ ଅଙ୍କୁର ଉଠିଥିବା ବଟଗଛଟିକୁ ଉପାଡ଼ି ନ ଦେଲେ ବୃକ୍ଷର ଭବିଷ୍ୟତ ଅନିଶ୍ଚିତ ମୃତ୍ୟୁ ଦିଗକୁ ଟାଣି ହୋଇଯିବା ନିଶ୍ଚିତ । ସ୍ୱାଭାବିକ ବି ।

ଭୁବନ ଶୁଣୁଥିବା ଶବ୍ଦ କେତେଟାରେ ସାଙ୍ଗେ ସାଙ୍ଗେ କହିବାକୁ ଲାଗିଲା ଯେ ଏହି ଖାଦ୍ୟ ପାଇଁ ମଜୁରୀରୁ କିଛି କଟାଯିବ ନାହିଁ । ଘରକୁ ଯିବା ଆସିବାରେ ଶ୍ରମିକମାନେ କ୍ଲାନ୍ତ ହୋଇଯିବେ ଏବଂ କାମରେ ଶକ୍ତିର ହ୍ରାସତା ଯେପରି ଅନୁଭୂତ କରି ନ ଯିବ ସେଥିପାଇଁ ଏ ବ୍ୟବସ୍ଥା । ସାଧାରଣ ହାରରେ ଯେଉଁ ପାରିଶ୍ରମିକ ପାଇବାକୁ ଚୁକ୍ତି ହୋଇ ଯାଇଛି, ଏଥିନିମନ୍ତେ ଦୈବାତ୍ ଅନୁପସ୍ଥିତ ରହିଲେ ସୁଦ୍ଧା ସେଇ ଦିନର କ୍ଷତି ଏଇଥିରୁ ଭରଣା ନିଆଯିବ ନାହିଁ । ସେ ପୂର୍ବରୁ ଅନେକଥର କାମ କରିଛି ଏବଂ ଗଛ କଟାରେ ଏ ପ୍ରକାର ବ୍ୟବସ୍ଥା ସେ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିଛି ।

ମଦନ ଭବାନୀଶଙ୍କର ବାବୁଙ୍କୁ ମନେମନେ ଧନ୍ୟବାଦ ଦେଲା ଏବଂ ଏକ ଦୀର୍ଘଶ୍ୱାସ ପରେ ନୀରବରେ ସାଥିମାନଙ୍କ ସହିତ ଚାଲିବାକୁ ଆରମ୍ଭ କଲା । ଅନ୍ୟମାନେ କେତେକଥା କହି କହି ଚାଲିଛନ୍ତି । ସେମାନେ ପ୍ରାୟ ତିନି ଚାରି ଗୋଷ୍ଠୀରେ ବିଭକ୍ତ ହୋଇ ଅଟେଇ ଚାଲିଛନ୍ତି । ଭୁବନ ସେଇସବୁ ଗୋଷ୍ଠୀ ଭିତରୁ ଗୋଟିକରେ ସଭ୍ୟ ହୋଇଗଲାଣି । ଅଛେ ପଛେ ସେମାନଙ୍କ ଚାଲି ବାଟରେ ନୀରବରେ ଏକାକୀ ମଦନ ବଢ଼ି ଚାଲିଛି । ସେ ସମସ୍ତଙ୍କ ଭିତରେ ନିଜକୁ ବି ଜଣେ ବୋଲି ଅନୁଭବ କରୁଛି ।

ଭବାନୀଶଙ୍କର ବାବୁ ନିଜ ବସାକୁ ସାଇକେଲଟାରେ ଚାଲିଗଲେଣି । ସକାଳ ଭୋଜନ ସମାପନ କରି ପୁଣି ସେ ଆସିବେ ନିଜର କ୍ଷେତକୁ । ତାଙ୍କର ରନ୍ଧା କାର୍ଯ୍ୟରେ ନିଯୋଜିତ କର୍ମଚାରୀଜଣକ ଇତି ମଧ୍ୟରେ ଗାଧୁଆ ସାରି ତାଙ୍କୁ ଅପେକ୍ଷା କରିଛି । ପଡ଼ାରୁ କିଛି ମୁଢ଼ି କିଣି ଆଣି ସ୍ନାନ ପରବର୍ତ୍ତୀ ଖାଦ୍ୟରୂପେ ବ୍ୟବହାର ସେ କରି ନେଇଛି । ବାବୁଙ୍କର ଭୋଜନ ପରେ ନିଜର ସକାଳ ଭୋଜନ ସେ କରିବେ ।

ଝରିରେ ଝାଳରେ ଦିନ ଦୁଇଟାରେ ଭବାନୀଶଙ୍କର ବାବୁ ପହଞ୍ଚି ଯାଇଛନ୍ତି । ପ୍ରାୟ ଦଶ ପନ୍ଦର ମିଟର ଦୂରରୁ ସେ ସାଇକଲ ଘଣ୍ଟିରୁ ଶବ୍ଦ କଲେ । ଘଣ୍ଟିର ଏକ ପରିଚିତ ଛନ୍ଦରେ ଝିଙ୍କୁଣିଆ ବାହାରି ପଡ଼ିଲା । ବାବୁ ଯେପରି ଓହ୍ଲାଇଛନ୍ତି ସାଇକେଲଟି ସେ ନିଜ ଆୟତ୍ତକୁ ନେଇ ଆସିଲା । ବାବୁ ନିଜ କୋଠରୀକୁ ପଶି ଖଟରେ ବସିଗଲେ । ନିଜ କାମିଜର ବୋତାମଗୁଡ଼ିକ କଲି

ଧାର ଖୋଲିଦେଇ କାମିଜଟାକୁ ଗଣ୍ଡିରୁ ବାହାର କରିଦେଲେ । ଖଟର ବାମ ପାଖରେ କାମିଜଟାକୁ ଥୋଇଦେଲେ । ଗଞ୍ଜିଟାକୁ ଛାତି ପର୍ଯ୍ୟନ୍ତ ଟାଣିଦେଲେ । ହାତ ଦୁଇଟାକୁ ଖଟର ପଛ ପାଖରେ ଠେକିଦେଇ ଗଣ୍ଡିର ସମସ୍ତ ବୋଝକୁ ଲଦିଦେଲେ ଏବଂ ଏକ ଦୀର୍ଘଶ୍ୱାସ ଛାଡ଼ିଲେ । ମୁଣ୍ଡଟାକୁ ପିଠି ପଛକୁ ଝୁଲେଇ ଦେଲେ ।

ରାନ୍ଧୁଣିଆ କୋଠରୀକୁ ଆସିନ୍ତି । ଆଖିରେ ଗୋଡ଼ରେ ତଥା ହାତରେ ଚଞ୍ଚଳତା ଭେଦ ଉଠୁଛି । ଭବାନୀଶଙ୍କର ବାବୁଙ୍କ ସେ ତରତର ଗୃହରେ ହାତ ପଙ୍ଖାଟା ଧରାଇ ଦେଲା । ଭବାନୀଶଙ୍କର ବାବୁ ପଙ୍ଖାଟିକୁ ଧୀରେ ଧୀରେ ବୁଲାଉ ବୁଲାଉ ଆଶ୍ୱସ୍ତିକର ଏକ ମୋଟା ଶବ୍ଦ ଉଚ୍ଚାରଣ କରି ଗୋଟିଏ ଦୁଇଟା ଦୀର୍ଘଶ୍ୱାସ ନାକବାଟେ ଟାଣି ମୁହଁବାଟେ ଛାଡ଼ିଲେ ।

ରାନ୍ଧୁଣିଆ ବାସନଗୁଡ଼ିକ ସଫା ଉଷୁମ ପାଣିରେ ଧୋଇନେଲା । ଏଥିନିମନ୍ତେ ବ୍ୟବହୃତ ଏକ ସ୍ୱତନ୍ତ୍ର କପଡ଼ାରେ ସେସବୁ ପୋଛିଦେଲା । ଆସନ ଖଣ୍ଡିକ ପକାଇ ଦେଲା । ଆଙ୍ଗୁଳାଏ ଗଭୀର କମ୍ ଗଡ଼ୁଏ ପାଣି ବାବୁଙ୍କୁ ବଢ଼ାଇ ଦେବାର ଉପକ୍ରମ କରି ଏକ ସାର୍ଥକ ଢଙ୍ଗରେ ବାବୁଙ୍କର ସମ୍ମୁଖରେ ଠିଆ ହୋଇ ରହିଲା । ହାତ ପଙ୍ଖାଟା ଖଟରେ ଗୋଟିଏ କୋଣରେ ଥୋଇଦେଇ ବାବୁ ଗଞ୍ଜିଟାକୁ ଅଣ୍ଟା ପର୍ଯ୍ୟନ୍ତ ଟାଣିଦେଲେ । ପାଣି ଗଡ଼ୁଟା ରାନ୍ଧୁଣିଆ ହାତରୁ ସେ ନିଜ ପାଖକୁ ଆଣିଲେ । ରାନ୍ଧୁଣିଆ ଡାଲି ତରକାରୀ ବାଢ଼ିବାକୁ ଲାଗିଲା । ହାତ ଗୋଡ଼ ପୋଛି ବାବୁ ବସି ଯାଇଛନ୍ତି ଯେପରି ସେ ସ୍ୱତ ବୁଝିଛି ଏବଂ ଧୀରସ୍ଥିର ଭାବରେ ନିଜ କାମ ଆଗେଇ ନେଇଛି ।

ପ୍ରଥମ ଚୁଣ୍ଡା ଭାତକୁ ମୁଣ୍ଡ ପର୍ଯ୍ୟନ୍ତ ଟେକି ଭବାନୀଶଙ୍କର ବାବୁ ଅଦୃଷ୍ଟ ହାତରେ ଅର୍ପଣ କଲେ ଏବଂ ଭୋଜନ ଆରମ୍ଭ କଲେ । ଯେତେବେଳେ ବାବୁ ନିଜ ଅନ୍ଧାରରୁ ଚଉଠ ଶେଷକରି ସାରିଛନ୍ତି, ରାନ୍ଧୁଣିଆ ଆରମ୍ଭ କଲା ନିଜର ବିଶ୍ୱାସରେ ପରାକାଷ୍ଠାର ଏକ ନିଦର୍ଶନ । ଜିଜ୍ଞାସୁ ଦୃଷ୍ଟିରେ ବାବୁଙ୍କୁ ଦେଖି ସେ ପଚାରିଲା : ଭଲ ଗଛ ବାହାରିଛି ନା ନାହିଁ । ଏଠାକାର ମାଟିକୁ ଦେଖିଲେ ଭଲ ଗଛ ଥିବ ବୋଲି ପରିଚିତ ହୁଏ ।

ହସିଲା ମୁହଁରେ ଆଉ ଏକ ପ୍ରକାର ସନ୍ତୁଷ୍ଟ ଭାଷାରେ ଭବାନୀଶଙ୍କର ବାବୁ କହି ଉଠିଲେ ଗଛ ଉତ୍ତମ ଜଣାପଡ଼ୁଛି । ଏଠି ପୁଞ୍ଜି ବିନିଯୋଗରେ ଦୁଇ ପଇସା ଅଛି ଏବଂ ଖର୍ଚ୍ଚରେ ଲାଭ ଅଛି ।

ଖାଇବା ସମୟରେ ସେ କଥାବାର୍ତ୍ତା ପସନ୍ଦ କରନ୍ତି ନାହିଁ ରାନ୍ଧୁଣିଆ ଜାଣେ । ଏଥିନିମନ୍ତେ ସେ ଅନେକଥର ବିରକ୍ତି ପ୍ରକାଶ କରିଛନ୍ତି ଏବଂ ଭୋଜନ

ପରେ ସେ ପ୍ରକାର କଥାବାର୍ତ୍ତା ଉପଯୋଗୀ ମନେହେଲେ କରାଯିବ ବୋଲି ମତ ପ୍ରକାଶ କରନ୍ତି । ଘନ୍ତୁଣିଆ କିନ୍ତୁ ଜାଣେ ଯେଉଁ କଥାବସ୍ତୁରେ ତୃପ୍ତି ଅଛି ତାହା କେଣେ ଯଦି ଭୋଜନ ସମୟରେ ପ୍ରକାଶ କରନ୍ତି ତା'ହେଲେ ସେଥିରେ ବ୍ୟର୍ଥତାର ଉପାଦାନ ଆଉ କିଛି ନାହିଁ । ସଫଳତା କିନ୍ତୁ ସାଚଞ୍ଚା ସେଇ କଥାବସ୍ତୁର ବ୍ରତ ଅଂଶେ ଉଶଉଠେ । ଘନ୍ତୁଣିଆ ନିଶ୍ଚିତ ହୋଇଛି ଯେ କେତୋଟି ଗଛ ଉଳଙ୍ଗା ହୋଇଥିବଣି ଏବଂ ସେହାର କଟା ସ୍ଥାନର ପ୍ରତିଟି ଗଛର ଉପଯୋଗିତା ସମ୍ପର୍କରେ ଭବାନୀଶଙ୍କର ବାବୁଙ୍କର ସ୍ଥୂଳ ଧାରଣା ଆସିଥିବଣି । ଏ ମୁହୂର୍ତ୍ତରେ ଏଥର ଘନ୍ତୁଣିଆ ନିଜ ପାଇଁ ଖଣ୍ଡିଏ ଭଲ ଧୋତି ଗୁହାଁଛି । ଖୁସି ମନରେ ପିନ୍ଧିଥିବା ପୁରୁଣା ଧୋତିଟା ବାବୁଙ୍କୁ ସେ ଦେଖାଇ ଦେଇଛି ଯଦିଓ ବାବୁ ଏଇ ଜିନିଷଟିକୁ ଦେଖି ନାହାନ୍ତି । କିନ୍ତୁ ଲକ୍ଷ୍ୟ କରିଛି ବାବୁ ତାଙ୍କର ଖାଇବାର ସାଧାରଣ ଗତିଟା ମନ୍ଥର କରିଛନ୍ତି ଏବଂ ଭାତ ଗୁଣ୍ଡାକରେ ଡାଲି ଗୋଳେଇବାରେ ଅପାଉତ୍ୟ ଦୀର୍ଘ ସମୟ ନେଇଛନ୍ତି ତଥା ମୁଖମଣ୍ଡଳରେ ପ୍ରସନ୍ନତା ଭରି ରହିଛି । ଘନ୍ତୁଣିଆ ପୁନରାୟ ପ୍ରକାଶ କରିଛି ଯେ ପୁରୁଣା ଧୋତିଟା ବି ବାବୁ ତାକୁ ଦେଇଛନ୍ତି । ଭାତ ଥାଳରେ ହାତଟା ରଖି ଏବଂ ମୁହଁରେ ଥିବା ଗଣ୍ଡାକ ନିଜର ଉଦର ନିମନ୍ତେ ଖାଲିକରି ବାବୁ କହିଲେ ଏବେ ସେ ଯେତେବେଳେ ଏକ ଆଶାନୁରୂପ ଲାଭ ପାଇବାର ସମ୍ଭାବନା ରହିଛି ସେମାନଙ୍କ ନିମନ୍ତେ କାହିଁକି ପୁରସ୍କାରର ବ୍ୟବସ୍ଥା କରାଯିବ ନାହିଁ । ଘନ୍ତୁଣିଆ ପ୍ରଚ୍ଛନ୍ନ ଆଶାର ଅନୁକୂଳ ସ୍ରୋତରେ ଆସିଛି ଦୋହରି ଭାତ ଡାଲି ଆଉ ବାଢ଼ିବାକୁ । ନିଜ ପାଇଁ ଖାଦ୍ୟର ଅଭାବ ଘଟିପାରେ ଏକଥା ଚିନ୍ତାକୁ ନ ନେଇ ବାବୁଙ୍କୁ ସେ ବେଶି ଖୁଆଇବାର ବ୍ୟବସ୍ଥା କରି ବସିଛି । ଅବିଶ୍ୟ ପୂର୍ବରୁ ସେ ଏ ପ୍ରକାର ବ୍ୟବସ୍ଥା କରିନାହିଁ ଅଥବା ଏ ପ୍ରକାର ଅଭାବ ପୂରଣ ଏଇ ମୁହୂର୍ତ୍ତରେ ଯେ କରାଯାଇ ପାରିବ ତାହା ମଧ୍ୟ ଚିନ୍ତା କରିନାହିଁ । ନିଜର ଅଭାବ ଯେ କେତେ ଭରି ରହିଛି ସେ ଜାଣେ । ଏଥିଭିତରୁ ଗୋଟି ଗୋଟି କରି ଦୂରେଇବାକୁ ସେ ଚେଷ୍ଟାକରେ । ଯଥାସମ୍ଭବ କେତେଟା ପୂରଣ ହୁଏ - ଆଉ କେତେଟା ଆବଶ୍ୟକ ସମୟରେ ଅପୂରଣୀୟ ହୋଇ ରହିଯାଏ ଏବଂ ଏକ ବିବର୍ଣ୍ଣତାର ପରିବେଶରେ ଗତିଶୀଳ ଜୀବନରେ ବାଧାପ୍ରାପ୍ତ ସଂକୁଚିତ ଅବସ୍ଥାରେ ମଧ୍ୟ କୌଣସି ପ୍ରକାରେ କାଳ ଶସ୍ତ୍ରରେ ଚଳିଯାଏ । ଚଢ଼ାଣିର ଗତି ଏବଂ ଗଡ଼ାଣିର ଗତିରେ ଅବଶ୍ୟ ପାର୍ଥକ୍ୟ ରହିଛି । ଏକ ପ୍ରକାର ନିଶ୍ଚିତ ମୁହୂର୍ତ୍ତ ଅବଶ୍ୟ ଦୁର୍ଘଟଣା ସୃଷ୍ଟିକରେ କିନ୍ତୁ ଘନ୍ତୁଣିଆ ପ୍ରତ୍ୟେକ ଦିଗରୁ ନିୟନ୍ତ୍ରିତ ।

ମଦନ, ଜୀବନ ଏବଂ ଅନ୍ୟମାନେ ନାଳର କୂଳରେ ଗୋଟିଏ ଗଛତଳେ କିଛି ସମୟ ବସି ରହିଲେ । ସେମାନେ ଧୀରେ ଧୀରେ ଗୁଣୁଥିଲେ ନାଳ କୂଳକୁ ଏବଂ ଗଛର ଛାଇ ତଳେ ତଳେ ଆସୁଛନ୍ତି । ଲୁଛ ଝଡ଼ ଏବଂ ତପ୍ତ ବାୟୁରେ ଶ୍ରମ ଏବଂ ଖାଲି ପେଟରେ ସେମାନେ କିଛି କ୍ଲାନ୍ତି ଅନୁଭବ କରନ୍ତି । ସେଥି-ପାଇଁ ସେମାନେ କିଛି ସମୟ ପାଇଁ ବିଶ୍ରାମ ନେଇଛନ୍ତି ।

ସୁମାଣିକୁ ମଦନ କହି ରଖିଛି ଏଇ ପାଖ ଖମନ୍‌ରେ ସେ ଗଛ କାଟିବ । ସେଥିପାଇଁ ସେ ସାମାନ୍ୟ ଥର୍ ପିଇ କାମକୁ ବାହାରି ଯାଇଛି । ଠିକ୍ ସମୟରେ ଫେରିଆସି ମୁଠାଏ ସେ ଖାଇଦେବ । ଖାଇବା ବେଳ ଗଡ଼ିବାକୁ ଲଗିଛି । ଦହଲୁ ମା' ସହିତ ଦୁଧ ପିଇଁ ପିଇଁ ଖଟରେ ଶୋଇ ଯାଇଛି । ସମରୁ ଖେଳରେ ମାତି ଯାଇଥିଲା । ଗୋଟିଏ ଖେଳର ଶେଷରେ ଆଉ ନୂଆ ଖେଳର ଆରମ୍ଭରେ ସମରୁ ହାଇ ମାରେ । ସୁମାଣି ଖଟରୁ ଅନୁଭବ କରୁଛି ସେ ତାକୁ ତନ୍ଦ୍ରା ଘାରୁଛି । ଦହଲୁ ଶୋଇଯିବା ପରେ ସୁମାଣି ଖଟରୁ ଉଠି ଆସିଛି । ସେ ସମରୁକୁ କହୁଛି ଦହଲୁ ସହିତ ଶୋଇ ଯିବାକୁ । ଶୋଇ ଉଠିଲେ ପୁଣି ସେ ଖେଳିବ । ସମରୁ ମା'ର କଥା ଶୁଣୁ ଶୁଣୁ ଦୁଇ ଗୁରଥର ହାଇ ମାରୁଛି । ସୁମାଣି କୋଠରୀରୁ ବାହାରି ଆସି ବାରଣ୍ଡାରେ ଠିଆହେଲା । ସମରୁ ଶୃଙ୍ଖଳିତ ସୈନ୍ୟପରି ନିର୍ଦ୍ଦେଶ ମାନି-ନେଲା । କିଛି ସମୟ ପାଇଁ ଶୋଇ ଯିବାକୁ ଦହଲୁ ଶୋଇଥିବା ଖଟରେ ଚଢ଼ିଲା । ସୁମାଣି ସମରୁକୁ ଉପଦେଶ ଦେବା ଢଙ୍ଗରେ କହୁଛି : ସେ ସୁନ୍ଦର ଭାବରେ ଶୋଇଯାଉ ଯେପରିକି ଦହଲୁ ଉଠିବ ନାହିଁ । ଦହଲୁକୁ ହଲଚଲ କଲେ ସେ ଉଠିଯିବ ଏବଂ କାନ୍ଦିବ । ସମରୁ ଏପରି ଭାବରେ ଶୋଇବାକୁ ଲଗିଲା ଯେ ଦହଲୁ ଯେପରି ନ କାନ୍ଦେ । ସମରୁର ମନକୁ ସୁମାଣିର ଅନ୍ୟ କଥାସବୁ ଭେଦ କରନାହିଁ । ଭେଦ କରୁଛି ଯେପରି ଦହଲୁ ନ କାନ୍ଦେ । ଖଟକୁ ସେ ଯେପରି ଚଢ଼ିଛି ଦହଲୁର ସର୍ବାଙ୍ଗକୁ ନିରେଖିଛି ଏବଂ ଏକ ହସୋଜ୍ଜ୍ୱଳ ଓଠର ପ୍ରଭାବରେ ଫୁଲି ଉଠିଥିବା ଗାଲର ସ୍ଥିତାବସ୍ଥାରେ ତନ୍ଦ୍ରା ଧୀରେ ଧୀରେ ଆଖି ଦୁଇଟିରେ-ବି ହସ ଭରି ଦେଇଛି ।

ଗୁମ୍ ମାରି ବସିଯାଇଛି ସୁମାଣି ବାରଣ୍ଡାରେ । ଦହଲୁ ଶୋଇ ଯାଇଥିବା ଖଟଟି ବସିବା ସ୍ଥାନରୁ ପରିଷ୍କାର ଦେଖା ଯାଉଛି । ଏକ ପ୍ରକାର ସନ୍ଦିଗ୍ଧ ଆଖିରେ ସେ ଥରେ ଥରେ ଗୁହେଁ ସମରୁକୁ । ସମରୁ ଯେତେବେଳେ ଶୃଙ୍ଖଳିତ ଭାବରେ ଶୋଇଯିବାର ଉପକ୍ରମ କରୁଛି ସୁମାଣିର ଗୁରୁତା ପ୍ରସାରିତ ହୋଇଯାଏ । ତା'ର ସମସ୍ତ ଶରୀରରେ ଏକ ସମବେଦନାଭରା ଭଙ୍ଗୀ ଫୁଟିଉଠେ । ଏ ସମବେଦନା କାହା ପ୍ରତି କାହିଁକି ବୁଝିବା ଯେତିକି କଷ୍ଟକର ଏ ସମବେଦନାର ରୂପ ନିର୍ଣ୍ଣୟ କରିବା ସେତିକି କଷ୍ଟକର । ଏ ସମବେଦନା ହୁଏତ ସମରୁ ପ୍ରତି

ହୋଇପାରେ କାହାକୁ ନା ସମରକୁ ବି ଶୃଙ୍ଖଳ ନୁହେଁ । ସମରକୁ ସେ ସନ୍ଦେହର ପାତ୍ର ନୁହେଁ । ସମରକୁ ବୃଥା ଭାବନାର ବାହାରେ ଅଥଚ କଳ୍ପନାର ଭିତରେ ଅଟଥାଏନେ ସେ କେତେ ଯେ ଶାସ୍ତି ପାଉଛ ତା' କଳନା କରି ଦେଉ ନ ଥାଏ । ଅବଶ୍ୟ ସେ ଦଣ୍ଡ ପାଇଥାନ୍ତା । ବିଶୃଙ୍ଖଳକୁ ତ ଯେ କୌଣସି ପ୍ରକାରେ ଦଣ୍ଡ ଆବଶ୍ୟକ । ତାକୁ ଉପଦେଶଟା ବି ଦଣ୍ଡ ଆଉ କ୍ଷମା ବି ଦଣ୍ଡ ଅଥଚ ଯେ ପ୍ରକାର ପରିବେଶ ସମରକୁ ସୃଷ୍ଟି କରିନାହିଁ । ସେ ଶୃଙ୍ଖଳିତ । ବୃଥାଟାରେ ସେ ଦଣ୍ଡ ପାଇ ସାଉଛୁ ଏଣୁ ସମବେଦନା ସୃଷ୍ଟିଯାଏ । ସୁମାମାର ମନ କଳ୍ପନା କରିଛୁ ଦଣ୍ଡ ଦେବାକୁ ଏବଂ ଶେଷରେ ମଜ ସମବେଦନା ଦେଇଛୁ ଅଥଚ ସମରୁ ଜାଣେନାହିଁ ।

ସୁମାମା ଯେତେବେଳେ ବୋଧ କରେ ସମରୁ ଶୋଇ ସାଉଛୁ ସେତେ-ବେଳେ ତା'ର ମନର ପରଦାକୁ ଶିଶୁ ଦୁଇଟିର ଛବି ଝାପ୍‌ସା ଦେଖାଯାଏ ଆଉ ତଳକୁ ଖସିଆସେ ହୃଦୟର ସ୍ୱୟଂସମ୍ପୂର୍ଣ୍ଣ ଫଳକକୁ । ଏଇଠି ଛବିଗୁଡ଼ିକ ଏପରି ଭାବରେ ସଂରକ୍ଷିତ ଯେ, ଯେ କୌଣସି ସମୟରେ ଦେଖିଲେ ଏସବୁ ସ୍ୱୟଂସମ୍ପୂର୍ଣ୍ଣ । ସୁମାମାର ମନର ପରଦାରେ ଝାପ୍‌ସା ଭାବରେ ଦେଖାଯାଏ ମଦନର ଛବି । ସୁମାମାର ମନ ଚଞ୍ଚଳ ହେବାକୁ ଲାଗେ । ସେ ବସିଥିବା ସ୍ଥାନରୁ ଉଠିପଡ଼େ ଆଉ କୋଠରୀଟାକୁ ପ୍ରବେଶ କରେ । ପରଖି ନଏ ସମରୁ ଶୋଇ ଗଲଣି । ଶରୀରର ପ୍ରତ୍ୟେକ ପରଦାରେ ଛବି ଦୁଇଟା ଖେଳିଯାଏ ତଥାପି ସୁମାମା ଆଖି ଦୁଇଟାକୁ ଫେରାଇ ଆଣେ । ସେ ଦୁଇଟି ନଖୁଣ ଅଭୁଲ ରୂପର ପୀଠରୁ ଏବଂ କବାଟଟା ଅଉଯାଇଦଏ ।

ମଦନ ଏପର୍ଯ୍ୟନ୍ତ ଆସିନାହିଁ । ଏଇ ନିକଟରେ ସେ କାମକରେ । ବେଳେ-ବେଳେ କୁହେଳିର ଶବ୍ଦ ବି ଶୁଭେ ଆଉ ବି ଶୁଭେ ଗଛ ତଳକୁ ଯିବାବେଳେ ଦାରୁଣ ଚିତ୍କାର । ତଥାପି ମଦନ ଆସିନାହିଁ । ମଦନର ପଡ଼ୋଶୀ ଭୁବନ ବି ମଦନ ଯେଉଁଠିକୁ କମାଣି କରିବାକୁ ଯାଇଛୁ ସେଠାକୁ ଯାଇଛୁ । ସୁମାମା ପଚ୍ଚରି-ନେବ ଭୁବନର ସ୍ତ୍ରୀକୁ ଭୁବନ ଫେରିଲଣି କି ନାହିଁ । ମଦନ ସମ୍ପର୍କରେ ସେଠ ସଠିକ ଖବର ମିଳିବ ।

ଭୁବନ ଘରକୁ ଘେରି ରହିଥିବା ବାଡ଼ର ପ୍ରବେଶ ପଥରେ ଠିଆ ସୁମାମା ଭୁବନର ସ୍ତ୍ରୀକୁ ଡାକଦେଲା । ଅନୁରୋଧ ସ୍ୱରରେ ତା' ସ୍ତ୍ରୀକୁ ପଚ୍ଚରିଲା । ମାତ୍ର ସୁମାମାକୁ ଭିତରକୁ ଆସିବାକୁ ଅନୁରୋଧ କଲା । ବାଡ଼ର ଝାଟି ତାଟିଟାକୁ ଖୋଲି ସୁମାମା ଭିତରକୁ ଗଲା । ଘରର ବାରଣ୍ଡା ପାଖାପାଖି ହେଲା ବେଳକୁ ଭୁବନର ସ୍ତ୍ରୀକୁ କ'ଣ କରୁଛୁ ବୋଲି ସୁମାମା ପଚ୍ଚରିଲା ।

ଛୁଆଟି ଏ ପର୍ଯ୍ୟନ୍ତ ଶୋଇ ନ ଥିବାରୁ ଶୁଆଇ ଦେଉଛନ୍ତି । ସୁମାନୀ ମନରେ ଅଶାନ୍ତି ଆସି ଯାଉଛି । ସେ ବୁଝିଗଲାଣି ଯେ ଭୁବନ ଘରେ ନାହିଁ । ଖୁସି ମନରେ ସନ୍ଦେହ ଜନ୍ମେ । କାଳେ ସେ ଘରକୁ ଆସିଯାଇ ଥିବଣି ଏବଂ ଗାଧୋଇବାକୁ ଯାଇଥିବ । ଏମାନେ ସମସ୍ତେ ତ କାମଶାଳାରୁ ଫେରିବା ବାଟରେ ଗାଧୋଇ ନଅନ୍ତି, ତା'ହେଲେ କ'ଣ ଗାଧୁଆ ପାଧୁଆ ସାରି ସେ କାମଶାଳକୁ ଚାଲିଗଲାଣି । ଏତେ ଆଗରୁ କିନ୍ତୁ କାହିଁକି ? ହୁଏତ ଅନ୍ୟ କେଉଁଠି କାମ ଥିବ । କାମଶାଳରୁ ଆସି ଏଇ ଅବସରରେ ନିଜର ସାମୟିକ କାମଟି ତୁଟାଇ ଦେବାକୁ ଯାଇଥିବ । ସୁମାନୀ କୋଠରୀକୁ ପଶି ଆସିଛି । ଭୁବନର ସ୍ତ୍ରୀ ବସିବାକୁ କହୁଛି । ସୁମାନୀ କିନ୍ତୁ ବ୍ୟଗ୍ରତାର ସ୍ୱରରେ ଧୀରେ କହିଲା ହରବର ଥିବାରୁ ସେ ଶୀଘ୍ର ଚାଲିଯିବ ।

ଭୁବନର ସ୍ତ୍ରୀ ସୁମାନୀକୁ ପଚାରିଲେ : ଖିଆପିଅ ସରିଲାଣି କି ନାହିଁ । ଛୁଆମାନେ ତ ଶୋଇଥିବେ ଏଣୁ ଖିଆପିଆ ସେ ସରିଯାଇ ଥିବଣି । ମରଦମାନେ ଯେଠି ଠିକାଦାର ଯୋଗାଡ଼ କରି ଦେଇଥିବା ଖାନା ଖାଇ ଆରାମ କରୁଥିବେ ଯେତେବେଳେ ଏମାନଙ୍କର ଖିଆପିଆ ଏଠି ସରି ନ ଥିବ କାହିଁକି ।

ସୁମାନୀ ବୁଝି ନେଇଛି ଯେ ଭୁବନ ବି ଘରକୁ ଆସିନାହିଁ । ସେ ଆଶ୍ୱସ୍ତ ହୋଇଛି ଯେତିକି ଆଶ୍ଚର୍ଯ୍ୟ ହୋଇଛି ସେତିକି । କାମ କରାଇବା ଲୋକ ଖିଆ-ପିଆର ବ୍ୟବସ୍ଥା କରିଛି । ସୁମାନୀ ଖାଲି ପଡ଼ିଥିବା ଖଟରେ ବସିଛି । ଭୁବନର ସ୍ତ୍ରୀ ନିଜ ଛୁଆଟିକୁ ଥରେ ଦୁଇଥର ଥାପୁଡ଼ାଇ ଦେଇ ଖଟରୁ ଉଠିପଡ଼ି ସୁମାନୀ ସହିତ ଖଟରେ ବସି ଯାଇଛି । ଖୁସିରେ ସେ କହିବାକୁ ଲାଗିଲେ ଯେ ଗଛ କଟାରେ ଏତିକି ଲାଭ କି ମଜୁରୀକୁ ମଜୁରୀ ମିଳେ ଏବଂ ସକାଳ ବେଳାର ଖିଆପିଆର ସୁବିଧା ଠିକାଦାର ସମସ୍ତ କଟାଳିଙ୍କ ପାଇଁ କରେ । ଯେଉଁ କେତେଦିନ ଗଛକଟା ହୁଏ ଘରେ ମୁଠାଏ ରାନ୍ଧିଦେଲେ ଚଳିଯାଏ ।

ସୁମାନୀ ଏକ ଦୀର୍ଘ ଶ୍ୱାସଟାଏ ଛାଡ଼ିଛି । ପେଟରେ ଭୋକ ଦେଖା-ଦେଲାଣି । ଭୁବନର ସ୍ତ୍ରୀକୁ ସେ କହିଲା : ଘରକୁ ଯିବ ବୋଲି । ଥିର୍ ଟିକିଏ ପିଇବ । ସୁମାନୀ ଆଉ ବେଶି କିଛି ପଚାରିବାକୁ ଚାହିଁନାହିଁ । ଭୁବନର ସ୍ତ୍ରୀର କଥାରେ ସେ ପୂର୍ଣ୍ଣ ବିଶ୍ୱାସ କରି ନେଇଛି ଯେ ମଦନ ସେଠି ଖିଆପିଆ କରିବ ଏବଂ ଏକାବେଳକେ କାମସାରି ସନ୍ଧ୍ୟାରେ ଘରକୁ ଫେରିବ । ମୁଣ୍ଡରୁ ତା'ର ସମସ୍ତ ଅଯଥା ଚିନ୍ତା ଉଭେଇଗଲା; କିନ୍ତୁ ମୁଖମଣ୍ଡଳରେ ଗୋଟାଏ ଗ୍ଲାନି ଖେଳିଗଲା । ଠିକାଦାରର ଖିଆପିଆ ବ୍ୟବସ୍ଥା କରିବା ପରି ଏକ ନୂତନ କଥା-ବସ୍ତୁର କିମ୍ବଦନ୍ତୀ । ସେଥିପାଇଁ ମୁଖର ଜ୍ୟୋତି ପରିଷ୍କାର ଫୁଟିଉଠୁ ନ ଥାଏ ।

ଅନ୍ୟମାନଙ୍କ ପରି ଗାଧୋଇ ସାରି ମଦନ ମଧ୍ୟ ଗାମୁଛା ବା ଅଙ୍ଗୋଛା ରୂପେ ବ୍ୟବହାର କରୁଥିବା ଧୋତିଟାକୁ ସିଝିନେବ । ଏ ପ୍ରକାର ସିଝାସିଝି କରିବା ଏମାନଙ୍କ ନିତିଦିନିଆଁ ଘଟଣା । କୃଷକକୁଳିଆ ଲୁଗା ପରେ ଆପେ ସିଧାସଳଖ ହୁଏ । ଏଥିପାଇଁ ଲୁଗାର ସଫା ହକୁ ନିଆଯାଏ ମାତ୍ର ଆଧୁନିକତା ନ ଥାଏ । ଏଠି ଗାଧୋଇବାରେ ଏଣୁ କୌଣସି ଅସୁବିଧା ନାହିଁ । ତେଲ ଲଗାଇବା ଏମାନେ କ'ଣ ଶରୀର ଜାଣେ ଯେ, କେବେ କେମିତି ହୁଏ । ଘରେ ଥିଲେ ପୁଣି ଭୂରି ତେଲ । ଏଥିନିମନ୍ତେ ସାରା ବର୍ଷରେ ଆସେ ମାତ୍ର କେତୋଟି ଦିନ । ଦେହକୁ ଚିକ୍କଣ କରେ ତେଲ ଆଉ ମନକୁ ବି ସେଇଦିନ ଚିକ୍କଣ କରେ ତେଲ ।

ମଧ୍ୟାହ୍ନର ଝରା ଟାଣ ହେଲଣି । ମଝିରେ ମଝିରେ ହାଲୁକାଏ ହାଲୁକାଏ ଗରମ ପବନ ବହୁଛି । ପବନଟା ଗରମ ହେଲେ ବି ଗଛତଳେ ମଦନ ଓ ତା'ର ସାଥିମାନଙ୍କୁ ବେଶ୍ ଆରାମପ୍ରଦ ବୋଧ ହୋଇଛି । ସମସ୍ତେ ସ୍ଥିର କରିନେଲେ କିଛି ସର୍ଗି ପତର ସଂଗ୍ରହ କରିନେବେ ଗାଧୋଇବା ପୂର୍ବରୁ । ଧାତୁ ନିର୍ମିତ ବାସନର ଏଠି ବ୍ୟବସ୍ଥା କରାଯାଇ ନାହିଁ । ନିଜ ନିଜ ଖାଇବା ନିମନ୍ତେ ଆବଶ୍ୟକୀୟ ଆଧାର ନିଜକୁ ପ୍ରସ୍ତୁତ କରିବାକୁ ପଡିବ । ସର୍ଗି ପତରରେ ନିଜ ପାଇଁ ଗୋଟିଏ ଲେଖାଏଁ ଖଲି ଏବଂ ଗୋଟିଏ ଲେଖାଏଁ ଦନା ସେମାନେ ପ୍ରସ୍ତୁତ କରିନେଲେ । ସମସ୍ତେ ଦୃଷ୍ଟି ଦେଲେ ଯେପରିକି ପାଣିରେ ଶାଗ ଦନାରେ ଗଳି ନ ଯିବ ଏବଂ ଖଲିରେ ଭଲ ଭାବରେ ଭାତ ରହି ପାରିବ ।

ମଦନ ଏବଂ ତା'ର ସାଥିମାନେ ଏକା ସାଙ୍ଗରେ ଉଠିଲେ ଗଛର ଛାଇରୁ ଏବଂ ସମସ୍ତେ ଗାଧୋଇବାକୁ ଚାଲିଲେ ନାଳର ସେପାଖ କୂଳକୁ ଏବଂ କୂଳର ଅଧାରୁ ଅଧିକ ଓସାର ମାଡ଼ି ବସିଥିବା ଶ୍ରେଷ୍ଠ ଦରହକୁ ପାଣି କେଉଁଠି କେମିତି ଦୁଇ ମିଟରରୁ ପ୍ରାୟ ଅଧିକ ଗଭୀର । ଏଇ କୂଳରେ ଦରହର ଧାରେ ଧାରେ ଚାରି ପାଞ୍ଚଟି ଘଷା ପଥର । ପଥରଗୁଡ଼ିକର ଦୈର୍ଘ୍ୟ କିମ୍ବା ପ୍ରସ୍ଥ ଅଧ ମିଟରରୁ କମ୍ ନୁହେଁ । ପଥରଗୁଡ଼ିକର ଉପରିଭାଗ ପ୍ରାୟ ଚିକ୍କଣ । ପଥରଗୁଡ଼ିକର ତଳଅଂଶ ଏତେ ଚିକ୍କଣ ନୁହେଁ । ପ୍ରାୟ ସବୁ ପଥରର ତଳ ଭାଗରେ ଅନେକାଂଶରେ ନେଳି ବସି ଯାଇଛି । ଧାରରେ କୁଢ଼େର ଘଷା ଦାଗ ରହିଛି । ଏଠି ସେ ତାକୁ ପାଣିଧାର କରେ । ମଦନ ଏବଂ ତା'ର ସାଥିମାନେ ଆଗପଛ ହୋଇ ନିଜକୁ ସୁବିଧାଜନକ ବୋଧ ହେଲା ଭଳି ସ୍ଥାନମାନଙ୍କରେ ଗାଧୋଇବା ନିମନ୍ତେ ଦରହ ଭିତରକୁ ପଶିବାକୁ ଲାଗିଲେ । ଆଗେ ଏଇ ଦରହ ପଥର ଚଟାରେ ସୁନାମୀ ନିଜ ମୁହଁ ଅନେକଥର ପରଖି ଦେଖିଛି । ମଦନର ପିଠିରୁ ମଇଳା ସବୁ ଘଷି ଛଡ଼ାଇଛି । ଗାଧୁଆ ତୁଠରେ ଅନେକ ମନକଥା କୁହାକୁହି ହୋଇଛନ୍ତି । ଫଗୁଣରେ ଅନେକ ଗୀତ ବି

ଗାଇଛନ୍ତି ଏଇ ପଥର ଚଟାରେ । ଏଠି ଏକାନ୍ତରେ କାହ୍ନୁ ମଦନ ଓ ଗୋପୀ ରାଧା ସୁମାନି ମନକଥା, ମନାନ୍ତର କଥା କହୁ ସୁମାନୀ ମଦନ ହାତରୁ ଅନେକ ଥର କ୍ରେଇ ଫୁଲ ଝୁମ୍ପା ମୁଣ୍ଡର ଜୁଡ଼ାରେ ଖୋସି ନେଇଛୁ । ମଦନ ଓ ତା'ର ସାଥିମାନେ ଅଗପଛ ହୋଇ ନିଜକୁ ସୁବିଧାଜନକ ବୋଧ ହେଲା ଭଳି ଗାଧୋଇ ନିଜର ବ୍ୟକ୍ତିଗତ ଧୋତି ଖଣ୍ଡିକ କିଛି ଦୂରେ କୂଳରେ ଥୋଇବାରୁ ଅଣି ପାରୁଥିଲେ । ଯିଏ ଗାଧୋଇବାକୁ ପଶିନାହିଁ ସେ ଦୃଷ୍ଟି ଦେଇଛି ଅନ୍ୟ-ଜଣଙ୍କର ଧୋତି, ଖଲି ଏବଂ ଦନା ଉପରେ । ଏଥିନିମନ୍ତେ ଏମାନଙ୍କ ପୂର୍ବ ପରିକଳ୍ପନା ନାହିଁ କିମ୍ବା ଜଣେ ନିଜ କାମ କରିସାରିବା ପରେ ଅନ୍ୟ ଜଣେ କରିବ ଏପରି ବି କିଛି ନାହିଁ ।

ଖଣ୍ଡିଏ ଦୂରରୁ ବଙ୍କି ହୋଇ ମଦନ ଏବଂ ତା'ର ସାଥିମାନେ ଗାଧୋଇ ସାରି ଫେରୁଛନ୍ତି ମୁଠାଏ ଖାଇବାପାଇଁ । ଓଦା ଧୋତିଗୁଡ଼ାକ ଯୋଡ଼ା ଯୋଡ଼ା କରି ଧରି ଚାଲିଛନ୍ତି ସେମାନେ । ଏ ଧୋତିଗୁଡ଼ାକ ଅତି କମ୍ ସମୟ ଭିତରେ ଶୁଖୁ ସେମାନେ ଚାହାନ୍ତି । ଏଇ ଧୋତି ସେମାନଙ୍କ ପରବର୍ତ୍ତୀ ପିନ୍ଧା ଏବଂ ରାତିର ଶେଷ ତଥା ସୁପାତ ।

ଭବାନୀଶଙ୍କର ବାବୁଙ୍କ କର୍ମଚାରୀଜଣକ ଇତି ମଧ୍ୟରେ ଖାଇନେଲେଣି । ଶ୍ରମିକଙ୍କୁ ସବୁକିଛି ଯେ ବାଢ଼ିଦେବେ । ଶ୍ରମିକ ଯେପରି ଧାରଣା ନ କରେ ଯେ ସେ ପରେ ଖାଇବେ ସେଇଥିପାଇଁ ଏଇଥିରୁ କିମ୍ବା ସେଇଥିରୁ ବେଶି ରଖିଛନ୍ତି । ଏ ପ୍ରକାର ନିର୍ଦ୍ଦେଶ ସେ ଭବାନୀଶଙ୍କର ବାବୁଙ୍କଠାରୁ ପାଇଛନ୍ତି । ବାବୁଙ୍କର ଉଦ୍ଦେଶ୍ୟ ଯାହାହେଉ କର୍ମଚାରୀଜଣକର ଭାବନା ଏହା ଯେ ଶ୍ରମିକମାନଙ୍କ ଖାଇବା ପରେ ହୁଏତ ଯଥେଷ୍ଟ ଖାଦ୍ୟ ତାଙ୍କୁ ମିଳି ନ ପାରେ । ଏଣୁ ପୂର୍ବରୁ ନିଜ ସ୍ୱଇଚ୍ଛାରେ ଖିଆପିଆ କରିନେବା ଭଲ । ଏଇଥିରେ ଅଶାନ୍ତିର କାରଣ ନାହିଁ । ଯେଉଁ କିମ୍ବାରେ ସ୍ୱାର୍ଥପରତାର ଉଦ୍ଦେଶ୍ୟ ସୁପରିକଳ୍ପିତ ଭାବରେ ନିହିତ ତାହା ସହ ବାଦାନୁବାଦ ସହିତ ଯେ କିମ୍ବା ଯେ ସନ୍ତୋଷଜନକ ନିଷ୍ପତ୍ତି । ଏହାର ନୈତିକ ମାନ ଶୃଙ୍ଖଳାର ନାମରେ ଏକ ଆବରଣ ତଳେ ଲୁଚି-ରହେ ।

ଏଇ ଛାୟା ଶୀତଳ ସ୍ଥାନରେ ଏମାନଙ୍କ ନିମନ୍ତେ ରନ୍ଧାବଢ଼ାର ବ୍ୟବସ୍ଥା ହୋଇଛି । ମଦନ ଏବଂ ସାଥିମାନେ ଏହି ଛାୟାର କିଛିଦୂରେ ଖରାରେ ନିଜର ଧୋତିଗୁଡ଼ିକ ଶୁଖାଇ ଦେଲେ । ସମସ୍ତେ ଗୋଟିଏ ଧାଡ଼ିରେ ଛାୟାରେ ବସିଗଲେ । ଧାଡ଼ିର ପ୍ରଥମେ ବସିଛି ଭୁବନ ଏବଂ ଶେଷରେ ବସିଛି ମଦନ । ଭୁବନ ହରିବୋଲ ଦେଇ ଖାଇବା ଆରମ୍ଭ କରିବ । କର୍ମଚାରୀଜଣକ

ଖାଉ ଆଉ ବାଡ଼ିବାରେ ଲାଗିଲେ । କିଏ କେତେ ନେବେ କିଛି ନ ଥାଏ । କର୍ମଶକ୍ତି ଜଣକ ପେଟ କାଟି ବାଢ଼ି ଦେଉଥାଏ । ଘର ଅପେକ୍ଷା ବଣରେ ଖାଇବା ବେଶି ହୁଏ । ଏ ଖାଉ କାଠିମାରୀ ଖାଉ ।

ମଦନ ସନ୍ଧ୍ୟାରେ ଘରକୁ ଫେରେ । ସୁମାମୀ ଖିଆପିଆ ସମ୍ପର୍କରେ ଆଗେ ମଦନକୁ ପଚାରେ । ମଦନ କିନ୍ତୁ ସାଧାରଣ କଥାରେ କହିଦିଏ କେତୋଟି କଥାରେ ସାରିଦିଏ । ବେଶି କିଛି କହିବାକୁ ପସନ୍ଦ କରେନାହିଁ । ମଦନ କହେ ସେମାନେ ଝଟ୍କୁଛନ୍ତି ମୁଠାଏ ଖାଉଛନ୍ତି । ସେମାନେ ସେଠିକା ରକ୍ତ ବହାଇ ଦେଉଛନ୍ତି ସେଠିକା ରକ୍ତ ପାଇପାରୁ ନାହାନ୍ତି । ଏ ଦେଉଁ କଠୋର କଟକଣାରେ ସେମାନେ ଖାଉବାଗଣ୍ଡାକ ପାଇଁ ଗଲଛନ୍ତି ତା' ଅପେକ୍ଷା ସେମାନଙ୍କ ନିମନ୍ତେ ବିଶ୍ରାମ ହିଁ ମୂଲ୍ୟବାନ । ସେମାନେ ଶରୀରକୁ ସୁହେଇଲା ଭଳିଆ ପରିଶ୍ରମ କରିବାକୁ କୌଣସି ଚିନ୍ତା କରନ୍ତି ନାହିଁ । ମରିବା ପରେ ବଞ୍ଚି ରହିବା ଏମାନଙ୍କ ଭାଗ୍ୟରେ ତ ନାହିଁ ପ୍ରାୟ କିନ୍ତୁ ବଞ୍ଚିବା ଭିତରେ ମରିବାକୁ ବା କିଏ ଚାହେଁ । ମଣିଷଜନିତ ପରିବେଶ ଦ୍ୱାରା ଏମାନଙ୍କର ଭାଗ୍ୟ ନିୟନ୍ତ୍ରିତ । ମଣିଷ-ପ୍ରତି ଭଗବାନଙ୍କର ଇଚ୍ଛା ଏଠି ମଣିଷ ବି ମଣିଷକୁ ପୂରଣ କରିବାକୁ ଦିଏନାହିଁ । ମଣିଷ ଅଳକ୍ଷ୍ୟ ଉପରେ ନିଜକୁ ଅର୍ପଣ କରିଦିଏ ଭଗବାନଙ୍କ ନାମରେ ସ୍ରଷ୍ଟାର କରୁଣା ବୋଲି ସିନା କିନ୍ତୁ ବ୍ୟତିକ୍ରମ ଭରି ଯାଇଛି । ଏଥିରେ ସ୍ରଷ୍ଟା ପ୍ରତି ଅବମାନନା ନ ଥାଇପାରେ କିନ୍ତୁ ସୃଷ୍ଟି ପାଇଁ କାହିଁକି ନ ଥିବ । ସ୍ରଷ୍ଟା ଏବଂ ସୃଷ୍ଟି ଭିତରେ ପାର୍ଥକ୍ୟ ସ୍ରଷ୍ଟା ଜାଣେନାହିଁ କିମ୍ବା ସୃଷ୍ଟି ଜାଣେନାହିଁ ।

ସୁମାମୀ କିନ୍ତୁ ପ୍ରୀତ ହୁଏ । ମନେ ମନେ ଠିକାଦାରଙ୍କୁ ପ୍ରଶଂସା କରେ । ମଦନ କହେ ଖାଦ୍ୟ ରୁଚିକର ଥିଲା, କୌଣସି ବ୍ୟତିକ୍ରମ ନ ଥିଲା ବା ନିକୃଷ୍ଟତା ନ ଥିଲା, ସୁମାମୀ ଓଠଧାରରେ ହସ ଫୁଟେ । ମଦନ ଦେଖେନାହିଁ ଅଥଚ ପାରିଶ୍ରମିକରୁ ପଇସାଟିଏ ଊଣା ହୋଇନାହିଁ । ସୁମାମୀ ମନର ଖୁସି ଓଠରେ ଲହର ମାରେ ।

ମଦନ କିନ୍ତୁ ଗୁରୁତ୍ୱ ଆରୋପ କରୁନାହିଁ କିମ୍ବା ଭାଛୁଲା ବି ମନେକରୁନାହିଁ ସୁମାମୀର ହସଖୁସିକୁ । ସୁମାମୀ ମଦନକୁ ଦେଖେ । ସେ ସେଥିପାଇଁ ପ୍ରଶଂସା ମୁଖର ହୁଏନାହିଁ ଅଥଚ ପ୍ରଶଂସା ନ କରିବାକୁ ମଦନ ମୁହଁରେ ଗାମ୍ଭୀର୍ଯ୍ୟ ନାହିଁ । ମଦନ ପରିଶ୍ରମ ଜନିତ କ୍ଳାନ୍ତ ଓ ଶାନ୍ତ ପାଇଛି । ସୁମାମୀ ଖୁସି ରହିଛି ବାବୁଙ୍କ ନୈତିକତାର ପରିଭାଷା ଓ ପରିବାର ପ୍ରତି ଜଣକର ଆଶୀର୍ବାଦ ଅଯାଚିତ ଥିବା ପାଇଁ । କର୍ମ ନିର୍ବାଚନ ପ୍ରତି ଶ୍ରମର ଏପରି ନିର୍ବାଚନ ସୁମାମୀକୁ ଶାନ୍ତ ଦେଉଥିବାବେଳେ ଶ୍ରମିକ ମନରେ ଅଙ୍କୁରନ୍ତ ବିଦ୍ରୋହ ହୁଙ୍କାର ଦେଉଥିବା ସାଧାରଣରେ ସୁମାମୀ ଠଉରାଇ ପାରେନାହିଁ ।

ମଦନ ଓ ସୁମାନୀ ଦୁହେଁ ଏଠି ଯୁକ୍ତ କିନ୍ତୁ ବିଯୁକ୍ତ ନିଜ ନିଜ ପରିସୀମାରେ ଯାହା ପ୍ରତ୍ୟକ୍ଷ ନୁହେଁ ପରୋକ୍ଷ । ସମ୍ଭାବନା ମଧ୍ୟ ନୁହେଁ ଉପେକ୍ଷା ମଧ୍ୟ ନୁହେଁ କେବଳ ସମୟର ଆବେଗ ।

ପାରମ୍ପରିକ କର୍ତ୍ତବ୍ୟ ପରେ ରାତି ଯାପନ । ମଦନ ଓ ସମରୁ ଏବଂ ସୁମାନୀ ଓ ଦହିଲୁ ଶୋଇପଡ଼ି ରହିଲେ । ମଦନ କ୍ଲାନ୍ତ ଶରୀର ଭିତରେ ଶ୍ରମ ଜନିତ ବିଦ୍ରୋହ ନିଶାରେ ଶୋଇ ରହିଲା ଏବଂ ସୁମାନୀ ମର୍ମବେଦନାରେ ଶୋଇଗଲା ସବୁଦିନ ପରି ସେଇ ସ୍ୱପ୍ନଭରା ବିନିଦ୍ର ଆଖିରେ ।

ଆଜି ବି ସମସ୍ତ ଗାଁର ଚିତ୍କାର ମଧ୍ୟରେ ହେଟା ବାଘ ଆସିଛି ଦାମୁଡ଼ି ଟାଣି ନେଇ ଯିବାକୁ । ଫେରୁ ବି ରାବିଛି କାହା ଗୁହାଳଘର ମଥାନ ଉପରେ । କାହାର କାଳ ରାତିର ସୂଚନା ବି ଦେଉଛି । ଚନ୍ଦ୍ର ଜୋଛନା ଦାଣ୍ଡର ଛପର ଫାଙ୍କରେ ଚିକି ଚିକି ମଦନ ଓ ସୁମାନୀକୁ ଉଠାଉଛି ଓ କହୁଛି ଉଠ ମଦନ ତୋ ବସ୍ତାଶତ ଗ୍ରନ୍ଥରେ ମତେ ଥରେ ଧରନେ । ମଦନ ନିସ୍ତୁକ କୁଡ଼େର ପ୍ରହାର କରି ବୁଢ଼ି ମଥାନ ଉପରେ ପଥର ଲଦି ଦେଇଥିବାରୁ ବେଧଡ଼କ ଗୁଡ଼ରେ ଶୋଇ ଯାଇଛି ଚିତ୍ ହୋଇ । ସୁମାନୀ ପ୍ରତି ସେ ସଜାଗ ନାହିଁ, ସୁମାନୀର ପ୍ରୀତି ପ୍ରତି ଆଦର ଅନାଦର ନାହିଁ ଅଛି କେବଳ ଯଥେଷ୍ଟ ନିଦ୍ରାରେ କିଛିଟା ଶ୍ରମ ଶକ୍ତି । ପରବର୍ତ୍ତୀ ଦିନ ପାଇଁ ପ୍ରସ୍ତୁତ ।

ସୁମାନୀ ଏପରି ପରିସ୍ଥିତିରେ ନିଜର ବୁକୁଚିରା ଗୁଡ଼ଟା ଆଉଜାଇ ଦେଲା ମଦନ ଉପରେ ଓ ତା'ର ଶ୍ରମ ଜନିତ ଉପକାର ପ୍ରତି କୋମଳ ଶିଷ୍ଟ ଦୁଇଟିକୁ ସୋହାଗର ଗଭୀର ଯନ୍ତ୍ରଣା ଜଣାଇ କୁକୁଡ଼ା ଡକା ପ୍ରହରକୁ ଅପେକ୍ଷା କଲା ।

ସକାଳେ ସୁମାନୀ କିଛି ମହୁଲ ସଂଗ୍ରହ କରି ଫେରେ ଏବଂ ମଦନ ଅପେକ୍ଷା କରେ ତା'ର ପ୍ରତ୍ୟାବର୍ତ୍ତନକୁ । ମହୁଲ କାଁ ଭାଁ ପଡ଼ୁଛି । ଯେତେବେଳେ ମହୁଲ ସବୁ ଗଛରେ ପଡ଼ିବ ସେତେବେଳେ ଦିନକେ ଯେତିକି ସଂଗୃହୀତ ହେବ ହୁଏତ ଏବେ ସପ୍ତାହରେ ସେତିକି ବି ହେବନି । ତଥାପି ଏମାନେ ଏଇ ଅଳ୍ପକୁ ସଂଗ୍ରହ କରୁଛନ୍ତି । ଅଳ୍ପକୁ ବିରାଟ ରୂପରେ ଦେଖିହୁଏ ବୋଲି ବୋଧହୁଏ ଏମାନଙ୍କର ଅନୁଭବ ଅଛି । ଏମାନେ ବୋଧହୁଏ ଜାଣନ୍ତି ଯେ ବିରାଟର ରୂପ ଗୋଟିଏ ଏବଂ ଅଳ୍ପର ରୂପ ଅନେକ । ବିରାଟର ଅନ୍ୟ ରୂପ ଅସମ୍ପୂର୍ଣ୍ଣ ଅଥବା ଭ୍ରମ କିନ୍ତୁ ଅଳ୍ପର ଅନ୍ୟ ରୂପଗୁଡ଼ିକ ରୁଚିକର । ଯିଏ ଅଳ୍ପର ବ୍ୟବହାର ଜାଣେନାହିଁ ସିଏ ବା ବିରାଟର ବ୍ୟବହାର ଜାଣିବ କିପରି ? ଯିଏ ଅଳ୍ପକୁ ନଷ୍ଟ ହେବାକୁ ଦିଏ ସେ ବିରାଟକୁ କେଉଁ ଅବସ୍ଥାରେ ଯେ ଯତ୍ନ କରିବ ତାହା ଅନ୍ୟ ଜଣେ କଳନା ବା କରିବ କିପରି ? ହୁଏତ ଏହା ବି ଅଳ୍ପ ହୋଇପାରେ ।

ମଦନର ମନରେ ତେଜ ନାହିଁ । ତଥାପି ସେ ବାଡ଼ଷ୍ଟ ନୁହେଁ । କାମ୍ନ ଶାଳକୁ ସେ ବାହାରପଡ଼େ । ଅନ୍ୟମାନଙ୍କ ସହିତ ସମତାଳରେ ଚାଲିଛି, ଅନ୍ୟ କୌଣସି ଧନ୍ଦାର ସେ ଚନ୍ତା ବି କରୁନାହିଁ ।

ଚହ୍ନିତ ଗଛଗୁଡ଼ିକ କଟା ହୋଇ ଗଲାଣି । ଭବାନୀଶଙ୍କର ବାବୁଙ୍କ ନିର୍ଦ୍ଦେଶମତେ କଟା ଗଛଗୁଡ଼ିକୁ ବ୍ଲକ୍‌ରେ ପରିଣତ କରାଯାଇ ସାରିଛି । ପ୍ରତ୍ୟେକ ବ୍ଲକ୍‌ର ଅଗ୍ରଭାଗ ଏବଂ ପଶ୍ଚାଦ୍ ଭାଗରେ ଅର୍ଧମିଟର ଲେଖାଏଁ ଛାଲି ରଖାଯାଇ ବାକିତକ ଛାଲି ବାହାର କରି ଦିଆଗଲା । ବ୍ଲକ୍‌ଗୁଡିକର ଛାଲିରୁ ଜଣେ ନୂତନ ବ୍ୟକ୍ତି ଗଛଟିକୁ ସହଜରେ ଚହ୍ନିନେବ ।

କେତେଜଣ ବିଭାଗୀୟ କର୍ମଚାରୀ ଆସି ଜଙ୍ଗଲରେ ସେଇ ନିର୍ଦ୍ଦିଷ୍ଟ ଅଞ୍ଚଳର ଉପାନ୍ତରେ ଥିବା କଟା ଗଛରୁ ପ୍ରାୟ ଏକ ଶହ ମିଟର ଦୂରତା ଭିତରେ ବୁଲିବୁଲି କରି ଜଙ୍ଗଲର ଅବସ୍ଥା ପରଖି ନେଲେ । ଜଙ୍ଗଲରେ ପୁରାତନ ଖୁଣ୍ଟାର ଅଭାବ ନାହିଁ । କେତେ ଯେ ବଡ଼ ବଡ଼ ଗଛ କଟି ଯାଇଛି ତା'ର ଗଣତି ନାହିଁ । ଗଛଗୁଡ଼ିକର ବଣାଳତା ସମ୍ପର୍କରେ ସତର୍କତା ନିରୂପଣ କରିବା ଏହି ବର୍ତ୍ତମାନରେ ସମ୍ଭବ ନୁହେଁ । ବଞ୍ଚି ରହିବାର ମୂଳକୁ ଏଗୁଡ଼ିକର ବର୍ତ୍ତମାନ ରୂପ ଅବଶ୍ୟ ଏକ ସ୍ଥୂଳ ଧାରଣା ଦିଏ । ଏ ରୂପର ରେଖା ଆଉ ଅଙ୍କନ କରାଯାଇ ପାରୁନାହିଁ । କର୍ମଚାରୀମାନେ ଚହ୍ନିତ ଖୁଣ୍ଟା ବ୍ୟତୀତ ଆଉ କିଛି ଦେଖି ନାହାନ୍ତି । ଏଣୁ ସେମାନେ ସେତିକି ଆନନ୍ଦିତ ତା'ଠାରୁ ବେଶି ପରିମାଣରେ କୃତଜ୍ଞତା ଭବାନୀଶଙ୍କର ବାବୁଙ୍କ ଉପରେ ସେମାନଙ୍କ ମାନବିକ ଗୁଣ ଭିତରେ ଫୁଟି ଉଠୁଛି । ଭବାନୀଶଙ୍କର ବାବୁଙ୍କ ସାଧୁତା ଉପରେ କମ୍ପା କର୍ତ୍ତୃପକ୍ଷଙ୍କ ଆଦେଶ ପାଳନ କରାଯାଇ ଥିବାରୁ ଯେ ଏ କୃତଜ୍ଞତା କେବଳ ସଂଶ୍ଳିଷ୍ଟ ବ୍ୟକ୍ତିମାନେ ହିଁ ବୁଝି ପାରିବେ । ଅନୁମାନସିଦ୍ଧ ଭଙ୍ଗିରେ ସତ୍ୟତା ପାଇପାରେ କିନ୍ତୁ ତହିଁରେ ଯେ ନିର୍ଦ୍ଦିଷ୍ଟ ଭାବରେ ସଠିକତା ଅଛି, ତାହା କଳନା କରିବାରେ ବିଭିନ୍ନତା ଦେଖାଦେବା ଅସମ୍ଭବ ନୁହେଁ । ଏଣୁ ଏହାର ରୂପର ସୀମା ଏଠି ନିରୂପିତ ହୁଏନାହିଁ । ଦିଗ୍‌ବଳୟ ପ୍ରାନ୍ତରେ ଧରଣୀର ବ୍ୟାପ୍ତି କେତେ ପରି ଏହା ପରିବ୍ୟାପ୍ତ । ଏଠି ଧରଣୀ ଶେଷ ହୋଇନାହିଁ ଅଥଚ ଧରଣୀଟି ବ୍ୟାପିଯାଇଛି ବୋଲି ଜାଣି ହୁଏନାହିଁ ।

କର୍ମଚାରୀମାନେ ବିଭାଗୀୟ ନିୟମ ଅନୁସାରେ ପ୍ରତ୍ୟେକ ବ୍ଲକ୍‌ରେ ଚହ୍ନ ଦେଲେ । ଏବେ ଠିକାଦାର ଏଗୁଡ଼ିକୁ ଅନ୍ୟତ୍ର ସ୍ଥାନାନ୍ତର କରି ପାରିବେ । ସମସ୍ତ ଶ୍ରମିକ ବିଭାଗୀୟ କର୍ମଚାରୀମାନଙ୍କୁ ସାହାଯ୍ୟ କଲେ । ମଦନ ନିଜର କାମ ସୁରୁଖୁରୁରେ ତୁଲାଉ ଥିଲା । ଭବାନୀଶଙ୍କର ବାବୁ କାମ ସମୟରେ ଯେପରି ତତ୍ପର

ଅଚଳ ଡାମ ମରିବା ପରେ ସେପରି ମୂର୍ତ୍ତି ଥିଲେ । ପ୍ରତ୍ୟେକଙ୍କ ମୁହଁରେ ସଫଳତା, ସଠିକତା ଅଥବା ଅତୃପ୍ତିର ହସ ଫୁଟି ଉଠୁଥିଲା ।

ବୃକ୍ଷଗୁଡ଼ିକ ନିର୍ମିତ ହେଲା ପରେ ସମସ୍ତେ ଆଚ୍ଛାଦିତ ଏକ ସ୍ଥାନରେ ଏକତ୍ରିତ ହେଲେ । ମଧ୍ୟାହ୍ନ ହେବାକୁ ଯଥେଷ୍ଟ ସମୟ ବାକି ଅଛି । ତଥାପି ଶ୍ରମିକମାନେ ଆଜି ଏଠି ବସିବାର ସୁବିଧା ଉପଭୋଗ କରୁଛନ୍ତି ।

ଏକ ସୁନ୍ଦର ଟେବୁଲ ଉପରେ ବସିଥିଲେ ଜଙ୍ଗଲ ବିଭାଗର କର୍ମଚାରୀମାନେ ଏବଂ ଭବାନୀଶଙ୍କର ବାବୁ । ଆଜି ଏମାନଙ୍କ ମଧ୍ୟରେ ବସନ୍ତ ବାବୁ ମଧ୍ୟ ଅଛନ୍ତି । ସେ ହସିଲା ମୁହଁରେ ସରଳ ଭାବରେ ଆଜି ଏମାନଙ୍କ ମଧ୍ୟରେ ଉପବିଷ୍ଟ ଅଛନ୍ତି । ମଦନ ଏବଂ ତା'ର ସାଥୀମାନେ ନିକଟରେ ଏକ ତେରପାଲ ଉପରେ ବସିଛନ୍ତି । ସମସ୍ତଙ୍କର ଦୃଷ୍ଟି ବିଭାଗୀୟ କର୍ମଚାରୀମାନଙ୍କ ଉପରେ ଅବଦ୍ଧ । ସେମାନଙ୍କ ଭିତରେ ମଦନ କିନ୍ତୁ ଜଣେ ପୃଥକ୍ ମଣିଷ ପରି ଏକ ଗ୍ରାମ୍ୟାବଛ ମୁଖମଣ୍ଡଳରେ ଦୃଷ୍ଟି ନିକ୍ଷେପ କରିଛି କର୍ମଚାରୀମାନଙ୍କୁ ଭେଦ କରି ଅଧିକ ଦୂରକୁ । ସେଉଁ ଦୂରତା ଭିତରେ ଲୁଚି ରହିଛନ୍ତି ସୁମାନୀ, ସମରୁ ଏବଂ ଦାହାଲୁ । ସେମାନେ ତିନିହେଁ ଯେଉଁଠି ଅଛନ୍ତି ତା'ର ଊର୍ଦ୍ଧ୍ୱାଂଶକୁ ମଦନ ଦେଖି ପାରୁଛି କିନ୍ତୁ ସେମାନଙ୍କର ଅବସ୍ଥିତି ସେ ଅନୁଭବ କରି ପାରୁନାହିଁ । ଅନୁମାନ ଅବଶ୍ୟ କରେ ଝାପ୍‌ସା ଭାବରେ ବେଳେବେଳେ ସେ ଏଥିରେ ମନୋନିବେଶ କରେନାହିଁ, ନତୁବା ପରିଷ୍କାର ଭାବରେ କିଛି ଦେଖି ପାରନ୍ତା ।

ସମସ୍ତେ କିଛି ସମୟ ଏକାଠି ବସିବା ପରେ ଅଳ୍ପ ସମୟ ଧରି ବ୍ୟାପି ଯାଇଥିବା ନୀରବତା ଭଙ୍ଗ କରି ବନପାଳ ବାବୁ କହିଲେ : ବେଶ୍ ସାଧୁତା ସହକାରେ ଭବାନୀଶଙ୍କର ବାବୁ ନିଜ କାମ କରିଥିବାରୁ ପ୍ରକୃତରେ ସେ ଧନ୍ୟବାଦାର୍ହ । ବିପୁଳ ସମ୍ପଦ ଭିତରେ ନିର୍ଦ୍ଦିଷ୍ଟ ସମ୍ପଦ ଉପରେ ନିଜକୁ ସନ୍ତୁଷ୍ଟ ରଖି ପାରିବା ଭଳି ମହନୀୟତା ଯେଉଁମାନଙ୍କର ଅଛି ସେମାନେ ବା କାହିଁକି ପ୍ରଶଂସା ପାଇବେ ନାହିଁ ? ଅଧସ୍ତନ କର୍ମଚାରୀଙ୍କୁ ସେ ଯେତେବେଳେ ଜିଜ୍ଞାସୁର ଦୃଷ୍ଟିରେ ଦେଖିଛନ୍ତି । ଏ ଅଞ୍ଚଳ ପାଇଁ ନିଯୁକ୍ତ ବନରକ୍ଷକ କହି ଉଠିଲେ : ନିଜର ଅଧିକାରକୁ ଯିଏ ଭୁଲେନାହିଁ ସେ ବିପୁଳ ସମ୍ପଦରେ କାହିଁକି ସାମାନ୍ୟ ସମ୍ପଦ ଭିତରେ ନିଜକୁ ଅସାଧୁ କରିଦିଏ । ବନପାଳଙ୍କ ମୁହଁରେ ହସ ଫୁଟି ଉଠିଲା । କୌଣସି ଏକ ଅଜ୍ଞାତ ଚାପରେ ଭବାନୀଶଙ୍କର ବାବୁ ହସି ପାରିଲେ ନାହିଁ । ଅଧ ଖୋଲା ଭାବରେ ହସିଲେ ବସନ୍ତ ବାବୁ । ଏପରି ବୋଧ ହେଉଥିଲା ଯେ ଏ ପ୍ରକାର ସାଧୁତା ବସନ୍ତ ବାବୁ ଆଶା କରନ୍ତି ଏବଂ ତାହା ସଫଳ ହୋଇଛି । ଏ ସଫଳତା ସତେ ଅବା ତାଙ୍କର ନିଜର କିନ୍ତୁ ଏ ସବୁର ହିସାବ ସେ କରି ନ ଥିଲେ କିମ୍ବା ଏସବୁ ସମ୍ପର୍କରେ ସେ କଳ୍ପନା ମଧ୍ୟ କେବେ କରି ନ ଥିଲେ ।

ବିଭାଗୀୟ କର୍ମଚାରୀମାନେ ମଧ୍ୟ ପରସ୍ପରକୁ ଚାହିଁ ହସି ଉଠିଲେ । ଯେପରିକି ବର୍ତ୍ତମାନ ସେମାନେ କିଛି ନା କିଛି ପରିମାଣରେ ହସିବାକୁ ବାଧ୍ୟ । ଏ ସମସ୍ତଙ୍କର ହସିଲା ମୁହଁକୁ ଚାହିଁ ଗଛ କଣ୍ଟାଳମାନେ ମଧ୍ୟ ହସି ଉଠିଲେ । ଯଦିଓ ସେମାନେ ଜାଣନ୍ତି ନାହିଁ ଯେ ସେମାନେ କାହିଁକି ହସି ଉଠିଛନ୍ତି । ଏ ସମସ୍ତେ ଯଦି ଓଠ ଧାରରେ ହସୁ ନ ଥାନ୍ତେ ତା'ହେଲେ ଏ ଅଞ୍ଚଳରେ ଏକ ଅଗ୍ନିକାଣ୍ଡ ସୃଷ୍ଟି ହୋଇ ଯାଇଥାନ୍ତା ହୃଦୟର । ହୃଦୟର ତେଜରେ ହୃଦୟର ତେଜ ମାଡି ଯାଇଥାନ୍ତା ହୃଦୟର କେନ୍ଦ୍ରସ୍ଥଳୀ ଶାନ୍ତ ନ ହେବାଯାଏଁ ।

ମଦନ କାନରେ ସ୍ପଷ୍ଟ ଭାବରେ ଶୁଭୁଛି ଭବାନୀଶଙ୍କର ବାବୁଙ୍କର ସାଧୁତା ସମ୍ପର୍କରେ । ବିପୁଳ ସମ୍ପଦ ଭିତରେ ବାବୁଙ୍କର ଏ ସମ୍ପଦ ସାଧୁ ସମ୍ପଦ । ମଦନ ଏ ଭିତରେ ଏତେ ଜୋର ବୁଡ଼ିଗଲା ଯେ ସେଠି ସମସ୍ତଙ୍କଠାରୁ ବିଚ୍ଛିନ୍ନ ହୋଇଗଲା । ସେ ନିଜକୁ ସମ୍ପୂର୍ଣ୍ଣ ଏକାକୀ ମନେକଲା । ବର୍ତ୍ତମାନର ଏଇ ଅଳ୍ପ କେତେଜଣଙ୍କ ମଧ୍ୟରେ ସେ କିଏ, କେହି ଜାଣନ୍ତି ନାହିଁ କହିଲେ ଚଳେ । ଏଠି ଯେଉଁମାନେ ଅଛନ୍ତି ସେମାନଙ୍କ ମଧ୍ୟରେ ସେ ଏକାକୀ ଏବଂ ଅନ୍ୟ ସମସ୍ତେ ଗୋଟିଏ, ଏ ପ୍ରକାର ଭାବ ମଧ୍ୟ ଏଠି ଆଦୌ ଫୁଟିନାହିଁ ତଥାପି ମଦନ ନିଜକୁ ଜଣେ ପୃଥକ୍ ମଣିଷ ବୋଲି ଧାରଣା କରି ନେଇଛି ନିଜକୁ ନିଜେ । ନିଜର ସାଥିମାନେ ସମସ୍ତେ ଯେତେବେଳେ ବସିଛନ୍ତି ମଦନ ଅନୁଭବ କରିଛି ଆଘାତ । ସେ ନିଜକୁ ପ୍ରଶ୍ନ କରିଛି ବ୍ୟାଘାତର ଲାଘବ ନିମନ୍ତେ ଚିତ୍କାର କରିବ ଅଥବା ଏମାନଙ୍କ ସହିତ ହସିବାକୁ ବାଟ ଲୋଡି କଷ୍ଟକୁ ଭୁଲିଯିବାକୁ ଚେଷ୍ଟା କରିବ । ସେ ସାଙ୍ଗେ ସାଙ୍ଗେ ଉତ୍ତର ପାଏ ଯେ ସେ ହସୁ । ମଦନ ସେମାନଙ୍କ ସାଥିରେ ହସେ । ଜଣେ ଯିଏ ଜାଣିଛି, ମଦନ ଏ ପରିବେଶରେ ନିଜକୁ କୌଣସି କାରଣରୁ ଜଡ଼ିତ କରିପାରୁ ନାହିଁ ସେ ହିଁ ଜାଣି ପାରିବ ଯେ ମଦନର ହସରେ ଭିନ୍ନତା କିଛି ଅଛି ।

କାମ ସରି ଯାଇଥିବାରୁ ଭବାନୀଶଙ୍କର ବାବୁଙ୍କୁ ବନପାଳ ନିଜ କର୍ମକେନ୍ଦ୍ରକୁ ଫେରିଯିବେ ବୋଲି ଜଣାଇଲେ । ଭବାନୀଶଙ୍କର ବାବୁ ହସିଲା ମୁହଁରେ କହି ଉଠିଲେ : ବର୍ତ୍ତମାନ ଖାଇବା ସମୟ । ଏଠି ସମସ୍ତଙ୍କ ନିମନ୍ତେ ଯଥାସମ୍ଭବ ବ୍ୟବସ୍ଥା କରାଯାଇଛି । ସ୍ୱାଭାବିକ ସମୟରେ ଜଣକ ନିମନ୍ତେ ଖାଇବା ପାଇଁ ବ୍ୟବସ୍ଥା କରିବା ଏକ ମାନବିକ ପରମ୍ପରା । ବାବୁ ତାଙ୍କ ବକ୍ତବ୍ୟ ଏପରି ଭାବରେ ଦେଲେ ଯେ ତାଙ୍କ ମୁହଁରେ ଦେଖା ଦେଇଥିବା ହସ ବକ୍ତବ୍ୟର କୌଣସି ଶବ୍ଦରେ ପ୍ରଭାବ ବିସ୍ତାର କରି ନ ଥିଲା । ସ୍ପଷ୍ଟ ଭାବରେ ପ୍ରତ୍ୟେକ ଶବ୍ଦ ଫୁଟି ଉଠିଥିଲା । ବନପାଳ ବାବୁ ସମ୍ମତ ହେଲେ । ନିଜର ଅଧସ୍ତନ କର୍ମଚାରୀମାନଙ୍କୁ କିଛି ସମୟ ଧରି ରହି ଯିବାକୁ ବାଧ୍ୟ ଜଣାଇ ଦେଲେ । ବର୍ତ୍ତମାନ ଗଲେ ମଧ୍ୟ ସେମିତି କିଛି କାମ ନାହିଁ ।

ରାନ୍ଧୁଣିଆ ଜଣକ ଆସି ଜଣାଇ ଦେଲେ ଯେ ରନ୍ଧାବଢ଼ା ଶେଷ ହେବା ଉପରେ । ସମସ୍ତେ ଗାଧୋଇ ପାଧୋଇ ଆସି ଖିଆପିଆ କରିବାକୁ ଅନୁରୋଧ କଲେ । ଭବାନୀଶଙ୍କର ବାବୁ କର୍ମଗୃହୀମାନଙ୍କୁ ଗାଧୋଇବା ସମ୍ପର୍କରେ ପଚାରିଲେ । କର୍ମଗୃହୀମାନେ ଗାଧୋଇ ସାରିଥିବାରୁ ଜଣାଇ ଦେଲେ । ବସନ୍ତ ବାବୁ ମଧ୍ୟ କହିଲେ ଯେ ସେ ଗାଧୋଇ ସାରିଛନ୍ତି । ମଦନ ଏବଂ ଅନ୍ୟମାନେ ଗାଧୋଇ ନଥିନ୍ତୁ ବୋଲି ବସନ୍ତ ବାବୁ ମଦନଙ୍କୁ କହିଲେ ।

ମଦନ ଏବଂ ତା'ର ସାଥିମାନେ ଗାଧୋଇ ଆସିବା ଭିତରେ ବନପାଳ ଏବଂ ଅନ୍ୟମାନେ ଖାଇବା ନିମନ୍ତେ ବସିଗଲେ । ଅତି ଉତ୍ତମ ବ୍ୟବସ୍ଥା କରି ଯାଇଥିଲା । ସେମାନେ ଆୟୋଜିତ ରୁଚିକର ଖାଦ୍ୟରେ ସନ୍ତୋଷ ପ୍ରକାଶ ନ କରି ରହି ପାରିଲେ ନାହିଁ ।

ମଦନ ନିଜ ସାଥିମାନଙ୍କ ସହିତ ଗାଧୋଇ ସାରି ଫେରିଛି ଯେତେବେଳେ ପ୍ରଥମ ଦଳ ଖାଇ ସାରିଥିଲେଣି । ସେମାନେ ନିଜେ ନିଜର ଖଲି ଦନା ଠିକ୍ କରୁଥିଲେ ଏଣୁ ସାମାନ୍ୟ ବିଳମ୍ବ ଘଟିଛି କିନ୍ତୁ ସେମାନେ ଜାଣି ନାହାନ୍ତି ସମସ୍ତଙ୍କ ନିମନ୍ତେ ପୂର୍ବରୁ ଆଧାର ଯୋଗାଡ଼ ହୋଇଛି । ଆଜି ଭବାନୀଶଙ୍କର ବାବୁ ନିଜେ ଏ ସମସ୍ତ ବ୍ୟବସ୍ଥା କରାଇଛନ୍ତି ।

ଭବାନୀଶଙ୍କର ବାବୁଙ୍କ ସୁନ୍ଦର ବ୍ୟବହାର ଏବଂ ସଙ୍ଗତ ନିମନ୍ତେ ଧନ୍ୟବାଦ ଦେଇ ବନପାଳ ବିଦାୟ ନେଲେ । ମଦନ ଏବଂ ଅନ୍ୟମାନେ ବସିଲେ ମୁଠାଏ ଖାଇବାକୁ । ଆଜିର ରୁଚିକର ଖାଦ୍ୟ ସେମାନଙ୍କୁ ବି ଅଫ୍ୟାୟିତ କରିଛି ।

ସାମାନ୍ୟ ବିଶ୍ରାମ ପରେ ଭବାନୀଶଙ୍କର ବାବୁ ନିର୍ଦ୍ଦେଶ ଦେଲେ ଗୁଣ୍ଡିଗୁଡ଼ିକ ଏକତ୍ର କରିବାକୁ । ପ୍ରତ୍ୟେକ ଯୋଡ଼ା ଲୋକରେ ଗୋଟିଏ ଗୋଟିଏ ଅଡ଼ା ଯୋଗାଡ଼ କରାଗଲା । ଅଡ଼ା ନିମନ୍ତେ ଆଗାମୀ ଦିନର ସୁବିଶାଳ ବୃକ୍ଷ କେତେଟାକୁ କାଟି ଦିଆଗଲା । ପ୍ରତ୍ୟେକ ଯୋଡ଼ାକୁ ଗୋଟିଏ ଲେଖାଏଁ ଲୁହା ତାର ଦିଆଗଲା । ପ୍ରାୟ ସମାନ ଉଚ୍ଚତାର ଲୋକେ ଯୋଡ଼ି ବାନ୍ଧିଲେ । ଆଠ ଯୋଡ଼ା ଲୋକରେ ସମସ୍ତ ଗୁଣ୍ଡି ଏକତ୍ରିତ କରାଯିବାରେ ଅସୁବିଧା ପ୍ରାପ୍ତ ହେବ ନାହିଁ । କେତେକ ଅଡ଼ାକୁ ଧାର କରି ଯାଇଥିଲା । ତା' ସହାଯ୍ୟରେ ଖୁନ୍ଦାମାରି ତାର ରଖିବାକୁ ସୁବିଧା ଜନକ ହେଲା ।

ମଦନ ଆଜି ଭବାନୀଶଙ୍କର ବାବୁଙ୍କର ତତ୍ତ୍ୱାବଧାନରେ ଗୁଣ୍ଡିମାନ ଏକତ୍ରିତ କରିବାରେ ଲାଗିଲେ । କେଉଁ ଗୁଣ୍ଡିକୁ ଦୁଇ ଯୋଡ଼ା, କେଉଁ ଗୁଣ୍ଡିକୁ ତତୋଧିକ ବା ସମସ୍ତେ କାନ୍ଧେଇ ଏକତ୍ରିତ କଲେ ।

ଆଜି ଟିକିଏ ଅନ୍ଧାର ପର୍ଯ୍ୟନ୍ତ କାମ ଚାଲିବ । ସକାଳେ ଶ୍ରମିକମାନେ ବିଶ୍ରାମ ନେଇଥିଲେ ସୁଦ୍ଧା ଦିନକର କାମ ଯେତିକି ହେବା କଥା ସେତିକି ହୋଇ ଯାଇଛି ।

ମଦନ ଘରକୁ ମୁହଁ ଅନ୍ଧାରରେ ଫେରିଲେ । ସମରୁ ଏବଂ ଦହିଲୁ ଶୋଇ ସାରିଥିଲେ । ସୁମାନୀ ମଦନକୁ ଅପେକ୍ଷା କରିଥିଲା । ଡିବିରିଟା ଦୁଆର ମୁହଁରେ ଜଳୁଥିଲା । ମଦନକୁ ଦେଖି ସୁମାନୀ କିଛି ପଚାରି ନାହିଁ । ଲୋଟାରେ ସେ ମଦନକୁ ପାଣି ବଢ଼ାଇ ଦେଲା । ମଦନ ଥରେ ପିଇବାକୁ ବସିଛି ଏବଂ ସାଙ୍ଗେ ସାଙ୍ଗେ ସୁମାନୀକୁ ମଧ୍ୟ ବସିବାକୁ କହିଲା । ନିଜ ପାଇଁ ଆଜି କିଛି ଆବଶ୍ୟକ ପଡ଼ିବ ନାହିଁ ବୋଲି ମଦନ ହେକଟୋକ ଜଣାଇ ଦେଲା । ଏଣୁ ଅଯଥା ବିଳମ୍ବ ନ କରିବାକୁ ସୁମାନୀକୁ କହିଲା । ସୁମାନୀ ବି ମଦନର କଥା ମାନିନେଲା । ସୁମାନୀ କ୍ଷୁଧିତ ଥିବ ମଦନ ଅନୁଭବ କରିଛି । ତେଣୁ ନିଜର ସୁବିଧା ସେ ଚାହିଁନାହିଁ । ମଦନ ଜାଣିଛି ଯେ ସେ ଯେତେ ବେଶି ଖାଇବ ସୁମାନୀ ସେତେ କମ ଖାଇବ । ସେମାନଙ୍କର ରନ୍ଧା ସୀମିତ । ଯେତେବେଳେ ଜଣକର କ୍ଷୁଧା ନିର୍ଦ୍ଦିଷ୍ଟ ସୀମା ଲଙ୍ଘନ କରେ ସେତେ-ବେଳେ ପରିବାରର ଅନ୍ୟ ଜଣକୁ କିମ୍ବା କେତେ ଜଣଙ୍କୁ ସୀମାର ପଶ୍ଚାଦ୍‌ଭାଗରେ ସନ୍ତୁଷ୍ଟ ରହିବାକୁ ପଡ଼େ । ଦରିଦ୍ରର କ୍ଷୁଧା, କ୍ଷୁଧାର ଅନୁପସ୍ଥିତିରେ ନିବାରିତ ହୁଏନାହିଁ ବରଂ କ୍ଷୁଧାରେ ହିଁ ହୁଏ ।

ସୁମାନୀ ନିଜପାଇଁ ବାଢ଼ି ବସିଲା । ହାଣ୍ଡିରେ କିଛି ପଖାଳ ଭାତ ଆଉ ବେଶି ଥିଲା ଛାଡ଼ିଦେଲା । ନିଜ ପାଇଁ ଖୁରିଏ ଥିଲା ଆଉ କେଇମୁଠା ପଖାଳ ଭାତ ବାଢ଼ିଲା । ମଦନ ପାଖରେ ବସିଗଲା ସୁମାନୀ । ପଖାଳରେ ଲୁଣ ଟିକିଏ ଗୋଳେଇ ଦେଲା ଏବଂ ଅତି ଖୁସିରେ ଖାଇବାକୁ ଆରମ୍ଭ କରିଦେଲା । ସୁମାନୀ ଜାଣେ ଜଙ୍ଗଲରେ ମଦନ ପେଟଭରି ଖାଏ । ସେ କ୍ଷୁଧିତ ନୁହେଁ । ସେଇଥିପାଇଁ ସେ ଆହୁରି କିଛି ଚାହିଁନାହିଁ ଏବଂ ତାକୁ କହିଛି ଖାଇ ଦେବାକୁ । ଯେବେ ବି ମଦନ ସହିତ ସୁମାନୀ ଏକ ସାଙ୍ଗରେ ଖାଇବାକୁ ବସେ, ଖୁସି ରହେ । ଏକା ସାଙ୍ଗରେ ଖାଇ ବସିବା ଯୋଗ ଏମାନଙ୍କ ଘଟେନାହିଁ । ମଦନ ଖୁବ୍ ଝଟେ, ସେ ଅଡ଼ିଆ ଯୋଗାଏ । ପରସ୍ପରର କ୍ଳାନ୍ତ ଶରୀରକୁ ଶାନ୍ତ କରିବାକୁ ସେମାନଙ୍କର ସୃଷ୍ଟି ବୋଲି ସୁମାନୀ ନିଜେ ଅନୁଭବ କରେ । ମଦନକୁ ଯେତେ-ବେଳେ ସେ ଦେଖିଛି ଏକ କ୍ଳାନ୍ତ ପରିବେଶରେ ସେତେବେଳେ ଦୁନିଆଁର ସମସ୍ତ ବନ୍ଧୁ ସୁମାନିର ଆଖିରେ ଲିଭି ଯାଇଛି । ଅବଶ୍ୟ ମଦନର ବାହ୍ୟ ଅବୟବ ବ୍ୟତୀତ ନୀରବ ଦୁଇଟି ମାନବ ଶିଶୁର ଛାୟା ମଦନ ଏବଂ ନିଜ ମଝିରେ ବେଳେବେଳେ ଦେଖାଦିଏ । ସମରୁ ଏବଂ ଦହିଲୁ । ଦହିଲୁ ଏବଂ ସମରୁ ।

ସୁମାମାଙ୍କୁ ଲକ୍ଷ୍ୟ କରନ୍ତି ମଦନ । ସୁମାମାର ଆଖିରେ ସେ ଆନନ୍ଦ ଦେଖିଛି । ଯେଉଁ ମଣିଷର ଆଖିରେ କିଛି ନାହିଁ ସେଇ ମଣିଷର ସର୍ବାଙ୍ଗରେ କିଛି ନାହିଁ, ଏ ମଣିଷ ଅନ୍ଧ ବ ହୋଇପାରେ ଅଥବା ବିକଳାଙ୍ଗ । ମଦନର ତନୁରେ ଭରିଉଠିଛି କାରୁଣ୍ୟ । ଏଇ କିଛିଦିନ ଭିତରେ ଆଜି ସନ୍ଧ୍ୟାରେ ହିଁ ସୁମାମା ବେଶ ଖାଇବାକୁ ସୁବିଧା ପାଇଛି ତେଣୁ ଖୁସି ଅଛି ଜାଣି ମଦନ ହୁଏତ କରୁଣ ହୋଇଛି । ଅନେକ ସମୟ ଧରି ସୁମାମା ମଦନଙ୍କୁ ଅପେକ୍ଷା କରି କ୍ଷୁଧାର୍ତ୍ତ ଥିଲେ ସୁଦ୍ଧା ସୁମାମା ବୁଝିପାରିବା କଥା ଯେ ମଦନ ଆଜି କାହିଁକି କାମରୁ ଅାସିଲା । ସେ ଖଟି ଖଟି କ୍ଲାନ୍ତ ନା ନୁହେଁ, ଏଇ ଖଟଣି ଭିତରେ ଯେ କ୍ଷୁଧାର୍ତ୍ତ ନା ନୁହେଁ ଅଥବା କ୍ଷୁଧାର ପ୍ରଶ୍ନ ଆଦୌ ନାହିଁ । ଏଇଥିପାଇଁ ମଦନ ଅବଶ୍ୟ କାରୁଣ୍ୟ ଅନୁଭବ କରିବା କଥା । ଆଜି ମଦନଙ୍କୁ ବେଶି ଖଟିବାକୁ ପଡ଼ିଛି ଏବଂ ଖଟଣି ଭିତରେ କ୍ଷୁଧା ସେମାନଙ୍କୁ ଅନେକ ଥର ସତର୍କ କରି ଦେଇଥାଏ ତଥାପି ଏକ କିଷ୍କପଟ ହୃଦୟର ଭାଷା ମଦନ କଣ୍ଠରେ ଫୁଟାଇ ଦେଇଛି । ସୁମାମା ଖିଅଖିଆ କରିଦେଇ । ସୁମାମାର ଆଖିରେ ମଦନ କ୍ଷୁଧା ଦେଖି ପାରିଥିଲା ଯେତେବେଳେ କି ସେ ନିଜର ଆଖିରେ ଅନୁଭବ କରୁଥିଲା ସୁମାମା, ସମସ୍ତ ଏବଂ ଦହିଲୁର ତୃପ୍ତି । ସୁମାମାର ପ୍ରଥମ ଭାଷାରୁ ଯେ କିଛି ଅନୁଭବ କରି ପାରିଛି ତୃପ୍ତି ଅଥଚ ସୁମାମାର କୌଣସି ଅଙ୍ଗରେ ତୃପ୍ତି ସେ ଦେଖି ପାରିଲା ନାହିଁ ଯଦିଓ ସୁମାମା ଥିଲା ତୃପ୍ତ ।

ମଦନ ନିଜେ କ୍ଷୁଧାର୍ତ୍ତ ତଥାପି ତା'ର ଅନୁଶୋଚନା ନାହିଁ ଯେ ସୁମାମା ବେଶି ଖାଇଛି । ଅନୁଶୋଚନା ନାହିଁ ଯେତେବେଳେ କାରୁଣ୍ୟ ବା ଆସିବ କିପରି । ଏଇ ଖାଦ୍ୟରେ ବି ସୁମାମାର ଦେଖା ଦେଇଥିବା ଆନନ୍ଦରେ ମଦନର ହୃଦୟରେ ଅନୁକମ୍ପା ଜାତ ହୋଇଅଛି । ସର୍ବାଙ୍ଗରେ କାରୁଣ୍ୟ ଭରି ଯାଇଛି । ମଦନ ଆଜି ରୁଚିକର ଖାଦ୍ୟ ବ୍ୟବହାର କରିଛି, ତଥାପି ସେ କ୍ଷୁଧାର୍ତ୍ତ ଅଥଚ ସୁମାମା··· । ସୁମାମା ମାମେର ଶାଗରେ ପଖାଳ ଖାଇଛି । ସୁମାମା ଖୁସି, ବହୁତ ଖୁସି । ସୁମାମାର ଶରୀରରେ ତୃପ୍ତି ନାଚି ଉଠୁଛି । ମଦନ ଉତ୍ତେଜିତ ହୁଏ । ଏ ଉତ୍ତେଜନା ମଉଳିଯାଏ ନିଜ କୁଡ଼ିଆର ଅନ୍ଧକାର କୋଠରୀ ଭିତରେ ରସି ଭିଡ଼ା ଖଟରେ ଶୋଇ ଯାଉଁ ଯାଉଁ ଧୀରେ ଧୀରେ ଭାବନାର ଏକ ଦୁର୍ଭେଦ୍ୟ ରାଜ୍ୟରେ ବିଭ୍ରାଟ ଭାବନା ରାଶିର ଗଣ୍ଡଗୋଳ ଭିତରେ ।

ଆଜି ସୁମାମା ମହୁଲ ଗୋଟେଇବାକୁ ଯାଇନାହିଁ । ମଦନ ଥରେ ପିଇ କାମଶାଳକୁ ବାହାରି ଗଲା । ଗତକାଲିଠାରୁ ଆଦେଶ ହୋଇଛି ସେମାନଙ୍କୁ ଫୁଲ୍‌ଫୁଲ୍ କୁକୁଡ଼ା ଡକାରୁ ଆସିବାକୁ । ମଦନ ଏବଂ ତା'ର ସାଥୀମାନେ ପହଞ୍ଚି ଗଲେ ଯେଉଁଠି ବୁଙ୍ଗିଯାକ ଏକଜ କରାଯାଇଛି । ଏମାନଙ୍କ ପୂର୍ବରୁ ସେଠି

ଭବାନୀଶଙ୍କର ବାବୁଙ୍କ କର୍ମଚାରୀ ଦୁଇଜଣ ପହଞ୍ଚି ଯାଇଥିଲେ । ନୂତନ ଭାବରେ ଆଜି କୋଡ଼ିଏ ଜଣ ଶ୍ରମିକ ଏଠି ନିଯୁକ୍ତ ହୋଇଛନ୍ତି । କିଛି ଦୂରରେ ଜଙ୍ଗଲ ବାହାରର ଜଣେ କର୍ମଚାରୀ ଠିଆ ହୋଇଛନ୍ତି ।

କିଛି ସମୟ ପରେ ଟ୍ରକ୍‌ଟାଏ ଠିଆହେଲା ଗୁଣ୍ଡି ଯାକ ଏକାଠି କରି ଯାଇଥିବା ପଡ଼ିଆ ନିକଟରେ । ଭବାନୀଶଙ୍କର ବାବୁ ଟ୍ରକ୍‌ରୁ ଓହ୍ଲାଇଲେ ପରେ ପରେ ଅନ୍ୟ ଏକ ଟ୍ରକ ଠିଆହେଲା । ଟ୍ରକ ଦୁଇଟିରେ ଗୁଣ୍ଡି ଯାକ ଲଦିବାକୁ ଭବାନୀଶଙ୍କର ବାବୁ ନିର୍ଦ୍ଦେଶ ଦେଲେ । ଦୁଇ ଦଳରେ ବିଭକ୍ତ ହୋଇ ମଦନ ଏବଂ ତା'ର ପ୍ରଥମ ପନ୍ଦର ଜଣ ସାଥି ଟ୍ରକ ଦୁଇଟିରେ କାଠ ଗୁଣ୍ଡିମାନ ଲଦି-ବାକୁ ଆରମ୍ଭ କଲେ । ପରେ ନିଯୁକ୍ତ ହୋଇଥିବା କୋଡ଼ିଏ ଜଣ ଶ୍ରମିକ ଏଠି ସେଠି ପଡ଼ି ରହିଥିବା ଗୁଣ୍ଡିଗୁଡ଼ିକୁ ଏକତ୍ରିତ କରିବାରେ ଲାଗିଲେ । କିଛି ସମୟ ପରେ ଆବଶ୍ୟକ ପରିମାଣ କାଠ ଟ୍ରକରେ ବୋଝେଇ ହୋଇ ଯାଇଛି । ପ୍ରତ୍ୟେକ ଟ୍ରକରେ ନିଯୁକ୍ତ ହୋଇଥିବା ଶ୍ରମିକମାନେ ଟ୍ରକର କାଠଗଦା ଉପରେ ବସିଗଲା ପରେ ଟ୍ରକ ବାମଣ୍ଡା ଅଭିମୁଖେ ଚାଲିଲା । ଏମାନଙ୍କ ଭିତରେ ମଦନ ଏକ ନୂତନ ପର୍ଯ୍ୟାୟରେ ପ୍ରବେଶ କଲା । ଟ୍ରକ ଯେତେବେଳେ ଗତିଶୀଳ ହୋଇ ଉଠିଛି, ପ୍ରତ୍ୟେକ ଶ୍ରମିକ ମୁହଁରେ ଫୁଟିଛି ଉତ୍ସାହର ହସ କିନ୍ତୁ ମଦନ ମୁହଁରେ ଫୁଟିଛି ଅସ୍ୱସ୍ତିର ହସ ।

ଜଙ୍ଗଲ ଦେଇ କିଛିଦୂର ଟ୍ରକ୍‌ଟି ଗଲା ପରେ ଗ୍ରାମ୍ୟ ସଡ଼କରେ ଚାଲିଛି । ଶୁଖିଲା କ୍ଷେତ ଦୁଇ ପାଖରେ ଲମ୍ବି ଯାଇଛି । ଏଇ କ୍ଷେତମାନଙ୍କରେ ଆଜି ଘାସ ନାହିଁ କମ୍ବା ଧାନ ଗଛର ମନୋହର ବର୍ଣ୍ଣ ନାହିଁ । ସବୁ ଆଡ଼ରେ କେବଳ ଧୂସର ପୃଷ୍ଠ । ଜୀବନରେ ପ୍ରଥମଥର ପାଇଁ ତୀବ୍ର ବେଗରେ ମଦନ ଆଜି ଏଗୁଡ଼ିକୁ ଗୋଟିକ ପରେ ଗୋଟିଏ ଅତିକ୍ରମ କରି ଚାଲିଛି । ମଦନ ବସିଛି କାଠର ଧୂସର ପୃଷ୍ଠରେ । କାନ୍ଧରେ ଶୁଷ୍କ କାଠର ଧୂସର ରୂପ ଲମ୍ବି ନାହିଁ । ବାହୁଙ୍ଗା ନାହିଁ । ବାହୁଙ୍ଗାର ଉଭୟ ମୁଣ୍ଡରେ ଝୁଲୁନାହିଁ ଧୂସର ଫାଳ, କାଠର ବିଡ଼ା; କିନ୍ତୁ ମଦନକୁ ଛାଡ଼ୁନାହିଁ ଏ ଧୂସର ରଙ୍ଗ । ବସିଛି ସେ ଧୂସର କାଠରେ ଆଉ ଉଡ଼ୁଛି ଧୂସର ଧୂଳି । ଟ୍ରକଟି ଯେତେବେଳେ ପ୍ରଧାନ ରାସ୍ତାକୁ ଛୁଇଁଛି ଅଧିକ ବେଗରେ ଗଡ଼ିବାକୁ ଲାଗିଲା । ମଦନର ଗତିପଥର ପଶ୍ଚାଦଭାଗର ବାୟୁମଣ୍ଡଳ ଧୂଳିରେ ରଞ୍ଜିତ ହୋଇଯାଇଛି । ଯାହାକୁ ନିକଟରେ ସ୍ପଷ୍ଟ ଭାବରେ ଦେଖିଛି ତାହା ଆଉ ଦୃଷ୍ଟ ହେଉନାହିଁ । ମଦନର ଚକ୍ଷୁ ଭେଦ କରି ପାରୁନାହିଁ ଏ ଧୂସର ବାୟୁମଣ୍ଡଳ । ଧୂସର କାଠକୁ ଦଂସତ କରିବାକୁ ଭିଡ଼ା ହୋଇଥିବା ଧୂସର ରସିକୁ ମଦନ ଜାବୁଡ଼ି ଧରିଛି । ସାମନାରୁ ଜୋର୍‌ରେ ପିଟି ହେଉଥିବା ପବନ

ମଦନର ଆଖିରେ ଲୋତକ ଆଣି ଦେଉଛି । ସେ ଯେତେବେଳେ ଅନ୍ତର୍ଦ୍ୟୁଷ୍ଟେ ହୋଇ ପଛକୁ ଘୂରେ ଧୂସର କାଠରେ ଲୋତକ ଝରିପଡ଼େ । ନାକଟରେ ନିର୍ବିକାର ଭାବରେ ବସି ରହିଛି ଟ୍ରକର ଖଲାସୀ ।

ମଦନ ଅତିକ୍ରମ କରିଯାଉଛି ନୂତନ କେତେ ପଡ଼ିଆ, ନୂତନ ନାଳ । କିଏ ସେ ନାଳକୁ ବାଲ୍ଟିଆଁରୁ ପାଣି ଆଣିବାକୁ ଯାଉଛି ଆଉ କିଏ ସେ ଫେରୁଛି । କିଏ ସେ ଗାଧୁଥିବା, କିଏ ସେ ସ୍ନାନ କରିନେବ ଏଇ ଅବସରରେ ଆଉ କିଏ ସେ ଅଳନ ଦେଇଛି ସ୍ନାନ ଶେଷ କରି । ଏମାନଙ୍କର ଗତିରେ ସ୍ୱାଭାବିକତା ରହିଛି । ଏମାନଙ୍କ ଦୃଷ୍ଟି ପଡ଼େ ଏଇ ଗତିଶୀଳ ଟ୍ରକ୍ ଉପରେ ଯେତେବେଳେ ସେମାନଙ୍କୁ ମଦନ ଦେଖେ, ଦେଖେ ଏକ ସ୍ୱାଭାବିକ ଚକ୍ଷୁରେ । ଦୂରେ ସେ ଅନୁଭବ କରେ ପାହାଡ଼, ବୃକ୍ଷଲତାସବୁ ସମତାଳରେ ଧାବନ କରୁଅଛି ବିପରୀତ ଦିଗକୁ; କିନ୍ତୁ ଏଇ ପଲ୍ଲୀର ନାରୀମାନେ ନିଜର ସୁବିଧାଜନକ ଗତିରେ ଚାଲିଛନ୍ତି । ମଦନ ଏ ସବୁକୁ ବୁଝିବାକୁ ଚେଷ୍ଟା କରିନାହିଁ ବା ଏ ସବୁର ଗତିକୁ ବୁଝିବାକୁ ଚେଷ୍ଟା କରେନାହିଁ । ତା'ର ଭାବନା ରାଜ୍ୟ ଏତିକିବେଳେ ଶୂନ୍ୟ ହୋଇଛି । ବୋଧଶକ୍ତିର କେଉଁଠି ଲୋପ ହୋଇଛି ଏବେ ତା' ପକ୍ଷେ ଖୋଜିବା କଷ୍ଟକର ।

ଟ୍ରକ୍ ତା'ର ଲକ୍ଷ୍ୟ ସ୍ଥଳରେ ପହଞ୍ଚିଛି । କରତ କଳର ତୀବ୍ର ଶବ୍ଦରେ ନିଜର ଶବ୍ଦ ଲୁଚି ଯାଇଛି । କରତ କଳର ପରିସର ମଧ୍ୟରେ ଟ୍ରକ୍‌ଟି ପ୍ରବେଶ କରିଛି ଯେତେବେଳେ କରତ କଳଟି ଆହୁରି ଜୋର୍‌ରେ ଗର୍ଜି ଉଠୁଛି ଯେପରି । ଟ୍ରକ୍‌ଟିରେ ବୋଝେଇ ହୋଇଥିବା ସାମଗ୍ରୀ ଯେତେକୁ ସେ କେଇଟି ମୁହୂର୍ତ୍ତରେ ହଜମ କରିଦେବ ଯେପରି ଜଣାଇ ଦେଉଛି । ଗର୍ଜନ ଏଠି ଶକ୍ତିର ପରିଚୟ ଦିଏ ।

କରତ କଳର ପରିସୀମାଟି ଦାକଳରେ ଘେରା ହୋଇଛି । କଳର ଉପରି ଭାଗଟି ଟିଣ ଚଦରରେ ଘୋଡ଼ା କରାଯାଇଛି । ପରିସରର ଉତ୍ତର ଦିଗକୁ ଲାଗି ଠିକ୍ ମଝିରେ କଳଟି ଠିଆ ହୋଇଛି । କଳରେ ନିଯୁକ୍ତ ଶ୍ରମିକମାନେ ଯେପରି ସ୍ୱଚ୍ଛନ୍ଦରେ କାମ କରିପାରିବେ ସେତିକି ସ୍ଥାନ ଘୋଡ଼ି ଉତ୍ତର ଦିଗରେ ଲମ୍ବି ଯାଇଛି ତୃଣଟି କୋଠରୀ । ପୂର୍ବ କୋଠରୀରେ କରତ ଗୁଣ୍ଡର ଭଣ୍ଡାର, ତା' ପାଖକୁ କରତ କଳର କାର୍ଯ୍ୟାଳୟ । ତା' ପାଖକୁ କରତ କଳର ଠିକ୍ ଉତ୍ତରକୁ ଲାଗି ରହିଥିବା କୋଠରୀଟା ହେଲା କଳ ନିମନ୍ତେ ଆବଶ୍ୟକ ସାମଗ୍ରୀର ଗୋଦାମ ଏବଂ ପଶ୍ଚିମ କୋଠରୀଟା ପୁରୁଣା ଏବଂ ଅଦରକାରୀ କରତ ପତ୍ରର ଗୋଦାମ । ପଶ୍ଚିମ ପଟେ କରତ କଳର ପରିସରକୁ ଲାଗିରହି ଶ୍ରମିକମାନଙ୍କ ନିମନ୍ତେ ତୃଣଟି ବସାଘର । ପୂର୍ବପଟେ କରତ କଳ ମାଲିକଙ୍କ ନିଜ ଘର ଏବଂ ଦକ୍ଷିଣ ପଟେ ତୋରଣକୁ ଲାଗି ଜଗୁଆଳର ବସାଘର । ପରିସର ମଧ୍ୟରେ ଏଠି ସେଠି

ଜମା ହୋଇଛି କାଠ । ଭିନ୍ନ ଭିନ୍ନ ଧରଣର କାଠ ପାଇଁ ବିଭିନ୍ନ ଗଦା । ସବୁ କାଠ ଗଦା ନିକଟରେ ଟ୍ରକ୍‌ଟିଏ ଠିଆ କରାଗଲା । ଟ୍ରକ୍‌ଟିରୁ ବର୍ତ୍ତମାନ ଅଡ଼ ଖୋଲି ନିଆଯିବ ନାହିଁ । ମଦନ ଏବଂ ତା'ର ସାଥୀଙ୍କ ସାଥିଲୁ ନିର୍ଦ୍ଦେଶ ଦିଆଗଲା କାଠ ସବୁକୁ ଅଲଗା ଦେବାକୁ । ଭବାନୀଶଙ୍କର ବାବୁ ସିଧାସଳଖ ଗ୍ଲିଗଲେ କାର୍ଯ୍ୟାଳୟକୁ ।

କରତ କଳର ଗୋଦାମ ପାଖରେ ଏକ ଛୋଟିଆ ଗୋଦାମ । ଏଠି ପରିତ୍ୟକ୍ତ କରତଗୁଣ୍ଡ ସବୁ ରହିଛି । ସହରର ବାବୁ ଓ ସାଧାରଣ ଗରିବ ଲୋକେ ଏହାକୁ ଜାଳେଣି ପାଇଁ ବସ୍ତାରେ ନେଉଥାନ୍ତି । ଯାହା ମଦନ ସୁନ୍ଦରଗଡ଼ରେ ବାବୁଙ୍କ ଘରେ ଦେଖିଛି ।

ବିଦ୍ୟୁତ୍‌ଚାଳିତ କରତ କଳଟି ଗ୍ଲୁଥାଏ ତୀବ୍ର ଗର୍ଜନ କରି । ଗୋଟିଏ ପରେ ଗୋଟିଏ ଗୁଣ୍ଡି ଫଡ଼ା ଚାଲୁଥାଏ । କଳର ଶ୍ରମିକମାନେ ଏକ ନୂତନ ପୁଲକରେ କାମ କରି ଯାଉଛନ୍ତି । କାର୍ଯ୍ୟାଳୟରୁ ନିଜେ ମାଲିକ ଏବଂ ଭବାନୀଶଙ୍କର ବାବୁ ବାହାରି ଆସିଲେ । ମାଲିକ ମାତ୍ର କିଛିକ୍ଷଣ ଠିଆ ହୋଇ ନିଜ ଶ୍ରମିକମାନଙ୍କ କାମ ଦେଖିନେଲେ । ଭବାନୀଶଙ୍କର ବାବୁ ନିଜ ଟ୍ରକ୍ ଅଡ଼େ ଦୃଷ୍ଟି ଦେଲେ । ଗଛ ଅଜଡ଼ା ସରିବା ଉପରେ । ଯେତେବେଳେ ନିଜ ଶ୍ରମିକଙ୍କ ଉପରେ ଦୃଷ୍ଟି ନିକ୍ଷେପ କରି ମାଲିକଙ୍କ ମୁହଁରେ ଗମ୍ଭୀରତା ଦେଖାଯାଉଛି ସେତେବେଳେ ନିଜ ଶ୍ରମିକମାନଙ୍କ ତତ୍ପରତା ନିମନ୍ତେ ଭବାନୀଶଙ୍କର ବାବୁଙ୍କର ସଫଳତାର ହସ । ମାଲିକଙ୍କ ପାଦ ଯେତେବେଳେ ଟ୍ରକ୍ ଆଡ଼କୁ ବଢ଼ିଛି ଭବାନୀଶଙ୍କର ବାବୁ ମଧ୍ୟ ବଢ଼ିବାକୁ ଲାଗିଲେ । ମାଲିକଙ୍କ ମୁହଁରେ ହସ ଅଥଚ ଭବାନୀଶଙ୍କର ବାବୁଙ୍କ ମୁହଁରେ ଏକ ବ୍ୟବସାୟିକ ଗାମ୍ଭୀର୍ଯ୍ୟ ଏକ ବସ୍ତୁ ଅଧିକାଂଶ ବିକ୍ରେତାର ।

କଳ ମାଲିକ ଏବଂ ଭବାନୀଶଙ୍କର ବାବୁଙ୍କ ପହଞ୍ଚିବାର କିଛି ମୁହୂର୍ତ୍ତ ପୂର୍ବେ କାଠ ଅଜଡ଼ା ସରିଛି । ଟ୍ରକ୍ ନିକଟରେ ସେ ଦୁହେଁ ଯେତେବେଳେ ଠିଆ ହୋଇଛନ୍ତି, ଭବାନୀଶଙ୍କର ବାବୁଙ୍କ ନିକଟରେ ମୁଣ୍ଡ ଆଉଁସି ଆଉଁସି ଟ୍ରକ୍‌ଟିର ଚାଳକ ଠିଆହେଲା । କିଛି କହିବା ଯେପରିକି ତା'ର ଇଚ୍ଛା । ଚାଳକର ହାବଭାବରୁ ଭବାନୀଶଙ୍କର ବାବୁ ବୁଝିନେଲେ ଏବଂ ଜିଜ୍ଞାସା କଲେ । ଏଇ ନିକଟରେ କାମ ଥିବାରୁ ନମ୍ରତାର ସହିତ ଜଣାଇ କିଛି ଟଙ୍କା ସେ ନେବ ବୋଲି ଚାଳକଟି କହିଛି । ପରିମାଣଟି କେତେ ବୋଲି ଭବାନୀଶଙ୍କର ବାବୁ ଯେତେବେଳେ ପଚାରିଛନ୍ତି, ଚାଳକ କହିଲା : ଚାରି ପାଞ୍ଚ ଟଙ୍କା ହେଲେ ଚଳିଯିବ । ଭବାନୀଶଙ୍କର ବାବୁ ବୁଝିନେଲେ ପାଞ୍ଚ ଟଙ୍କା ଆବଶ୍ୟକ ହେଲେ ଚାରିଟଙ୍କାରୁ କମ୍ ହେଲେ ଚଳିବ ନାହିଁ ।

ସେ ପାଞ୍ଚ ଟଙ୍କା ବଢ଼ାଇ ଦେଇ ଦେଇ କହିଲେ : ଟ୍ରକ୍‌ଟିକୁ କଡ଼େଇ ଦେବାକୁ ଯେପରିକି ଅନ୍ୟ ଟ୍ରକ୍‌ଟି ଆସିଗଲେ ସୁବିଧାରେ କାଠ ଏଠି ଅନଲୋଡ଼ ପାରିବ । ଅତ ଉପର ମଣିଷପଣରେ ଡ଼୍ରାଇଭରେ ସମ୍ମତିର ଅଙ୍ଗୀକାର କରିଛି ଚାଲକଟି ମଧ୍ୟ ଓ ବର୍ତ୍ତମାନ ସିଏ ଗୃହେଁନାହିଁ ଟ୍ରକ୍‌ଟିକୁ ଚଳାଇବାକୁ ଏବଂ କୌଣସି ଏକ ଭିନ୍ନ ଦିଗରେ ଯେ ସମସ୍ତ ଖର୍ଚ୍ଚ କରିବାକୁ ଗୃହେଁ । ସେ ବର୍ତ୍ତମାନର ସେ କୌଣସି ମୁହୂର୍ତ୍ତ ପୂର୍ବରୁ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚି ଯିବାକୁ ଗୃହେଁ । ସେ କିନ୍ତୁ ନିଜକୁ ସନ୍ତୋଷ କରିବାକୁ ଭବାନୀଶଙ୍କର ବାବୁମାନଙ୍କ ଅସନ୍ତୋଷ ଯେପରି ନ ହୁଏ, ଉପଲବ୍ଧି କରିଛି ଏଣୁ ତୃପ୍ତି ଶୂନ୍ୟ ଖୁସିରେ କାମ ତୁଲେଇ ନେଇଛି ।

ମାଲିକ ଏବଂ ଭବାନୀଶଙ୍କର ବାବୁ ଉଭୟେ ଫିତାର ଗୋଟିଏ ଗୋଟିଏ ମୁଣ୍ଡକୁ ଧରି ପ୍ରତ୍ୟେକ ଗୁଣ୍ଡିର ଦୈର୍ଘ୍ୟ ଏବଂ ମଧ୍ୟ ପରିଧି ମାପିବାରେ ଲାଗିଲେ । ନିଜ ଟିପାଖାତାରେ ମାଲିକ ପ୍ରତ୍ୟେକ ଗୁଣ୍ଡିର ଦୈର୍ଘ୍ୟ ଆଦି ମାପ ଲେଖିବାକୁ କଲେ । ଏଇ ସମସ୍ତରେ ଅନ୍ୟ ଟ୍ରକ୍‌ଟି ପହଞ୍ଚିଛି । ନିର୍ଦ୍ଦିଷ୍ଟ ସ୍ଥାନରେ ଗଡ଼ ଅନଲୋଡ଼ିବାକୁ ମାଲିକ ନିଜେ ନିର୍ଦ୍ଦେଶ ଦେଲେ । ତାଙ୍କ କଥାରେ ଆନନ୍ଦ ଏତେ ବେଶି ଯେ ନେପରିକି ଏଇ କାଠର ସର୍ବାଧିକାରୀ ସିଏ । ଭବାନୀଶଙ୍କର ବାବୁ ସମର୍ଥନ କଲେ ଏବଂ ଏଠି ତାଙ୍କର କାଠ ଅନଲୋଡ଼ା ଯାଉଛି କହିଲେ ।

ଭବାନୀଶଙ୍କର ବାବୁଙ୍କ ଜିନ୍ଦ୍ରୁଣିଆ ଟ୍ରକ୍‌ଟିରୁ ଓହ୍ଲାଇଲା । ଟ୍ରକ୍‌ର ଡାଲା ଉପରେ ସେ ଉପବିଷ୍ଟ ଥିଲା । ପ୍ରଥମ ଟ୍ରକ୍‌ର କାଠ ମପା ସରିଛି ଏଣୁ ସେ ନିର୍ଦ୍ଦେଶ ଦେଲେ ଟ୍ରକ୍‌ଟିରୁ କାଠ ଅନଲୋଡ଼ିବାକୁ ଓ ପରେ କହିଲେ : ଏକ ଭୋଜନାଳୟରେ ମଦନ ଆଦିଙ୍କର ଖାଇବା ବନ୍ଦୋବସ୍ତ କରୁ । ମନେମନେ ହିସାବ କରି ଦେଢ଼ କିଛି ଟଙ୍କା ନିଜ କର୍ମଚାରୀ ହାତକୁ ବଢ଼ାଇ ଦେଲେ ।

ସୁନ୍ଦରଗଡ଼କୁ ମଦନ ଯେବେ କାଠଭାର ବା ଘାସ ନେଇଛି କେବେ କମିତ ପିପଲ ତଳିଆ ହୋଟେଲକୁ ପକୁଡ଼ି, ଜିଲେବି କିଣି ଖାଇଛି ବା ହୋଟେଲବାଲା କାଠ ରଖି ବକ୍‌ସିସ ସ୍ୱରୂପ ଦେଇଥାଏ । ଝିଅଙ୍କ ପାଇଁ ନିତି ସେ ଲୁଗାକାନରେ ପକୁଡ଼ି ଆଣିଛି । ତା' ପୂର୍ବରୁ ସୁମାମା ପାଇଁ ସେ ଶରଧାରେ କାନରେ ବାନ୍ଧି ଆଣିଛି । ହୋଟେଲ ଖିଆ ତା' ଭାଗ୍ୟରେ ଜୁଟିନାହିଁ । ହୋଟେଲର ସାମଗ୍ରୀମାନଙ୍କ ନାମ ସେ ଶୁଣିଛି, ଜାଣିନାହିଁ ସେ ସବୁକୁ । ଶ୍ରମଜୀବୀର କାଠିଣ୍ୟ ଓ କାରୁଣ୍ୟ ଏଇଠି ।

ସମସ୍ତେ ଆସିବାକୁ କର୍ମଚାରୀ ଜଣକ ସମସ୍ତଙ୍କୁ କହିଲେ । କାହିଁକି ସେ ଡକା ହେଉଛି ମଦନ ଅବଶ୍ୟ ଜାଣେନି ତଥାପି ସେ ସମସ୍ତଙ୍କୁ ଡାକଦେଲା ।

ସେମାନଙ୍କ ଭିତରୁ ଅନେକେ କାଠ କରତା ଦେଖିବାକୁ କରତ କଳ ନିକଟରେ ମିଶିଯାଇ ଯାନ୍ତ୍ରିକ ସଫଳତା ଉପଭୋଗ କରୁଥିଲେ ଓ ହାତ କରତ ଅପେକ୍ଷା ଏହାର କାର୍ଯ୍ୟ କ୍ଷମତା ନିରୀକ୍ଷଣ କରୁଥିଲେ । ଶ୍ରମଜୀବୀ ତଥାପି ଭରସା ରଖେ ଶ୍ରମ ଉପରେ ଓ ହାତ ଦଣ୍ଡା କରତରେ । ମଦନର ଡାକ ଯେତେବେଳେ ସେମାନେ ଶୁଣିଛନ୍ତି ମଦନକୁ ଚିହ୍ନିଛନ୍ତି କିନ୍ତୁ ସେଇଠି ଅଧିକ କିଛି ସମୟ ରହିବାକୁ ସେମାନେ ଚାହାନ୍ତି ବୋଧେ । ତେଣୁ ସେମାନେ ନିଜର ଇପ୍ସିତ ସ୍ଥଳକୁ ମୁହଁ ବୁଲାଇ ନେଉଥିଲେ । ମଦନ ଲକ୍ଷ୍ୟ କରିଛି ସେମାନଙ୍କ ମନୋଭାବ ଏବଂ କର୍ମଚାରୀମାନଙ୍କୁ ଇଙ୍ଗିତ ଦେଇଛି କର୍ମଚାରୀଙ୍କ ଆଡ଼କୁ ଅଙ୍ଗୁଳି ଦେଖାଇ । ସେମାନେ ସାଙ୍ଗେ ସାଙ୍ଗେ ଅନ୍ୟମାନଙ୍କୁ ଜଣାଇଦେଲେ ଯେ ସମସ୍ତଙ୍କୁ ଡକା ଯାଇଛି । ସମସ୍ତେ ଚାଲିଆସି ମଦନ ନିକଟରେ ଠିଆହେଲେ । କର୍ମଚାରୀ ଜଣକ କହିଲେ ସମସ୍ତେ ଖାଇବାକୁ ଯିବେ । କର୍ମଚାରୀ ଜଣକ ଯେତେବେଳେ ହୃଦ୍‌ବୋଧ କରିଛନ୍ତି ଯେ ଭବାନୀଶଙ୍କର ବାବୁଙ୍କର ଦୃଷ୍ଟି ସେମାନଙ୍କ ଉପରେ ପଡ଼ୁ ନ ଥିବାର ସମ୍ଭାବନା ବେଶି ସେତେବେଳେ ନିଜ ମୁଣିରୁ ନୋଟ୍‌ତକ ବାହାର କରି ଗଣିବାରେ ଲାଗିଲେ । ସେ ଜାଣନ୍ତି ଯେ ଭୋଜନାଳୟରେ ସାଧାରଣ ଭୋଜନ ଅଢ଼େଇ ଟଙ୍କାରେ ମିଳେ । ହୁଏତ ଭବାନୀଶଙ୍କର ବାବୁ କୋଡ଼ିଏଟି ଟଙ୍କା ଦେଇଥିବେ । କିନ୍ତୁ ଗଣିଲା ପରେ କର୍ମଚାରୀ ଜଣକ ଦେଖିଲେ ଚବିଶ ଟଙ୍କା ଅଛି । ସେ ନିଜ ଭିତରେ ଭରିଦେଲେ ଏକ ନୂତନ ନିଷ୍ଠା ଏବଂ ନିପୁଣତା ।

ଭୋଜନାଳୟରେ ଭିନ୍ନ ଏକ ସ୍ଥାନରେ କର୍ମଚାରୀ ଜଣକ ବସିଗଲେ ଏବଂ ଅନ୍ୟମାନଙ୍କୁ ଦୁଇଟି ବେଞ୍ଚରେ ବସିବାକୁ କହିଲେ । ସେମାନଙ୍କ ନିମନ୍ତେ ସାଦା ଭୋଜନ ଦେବାକୁ କହି ନିଜ ପାଇଁ ଅଧାଥାଳି ଭାତ ଏବଂ ମାଂସ ଏକ ଥାଳି ପାଇଁ ଆଦେଶ ଦେଲେ ।

ମଦନର ସାଥିମାନେ ଅତି ଖୁସିରେ ଭୋଜନ କରି ଚାଲିଲେ । ଯଦିଓ ନିଜକୁ ଲଜ୍ଜିତ ମନେ କରୁଥାଏ ମଦନ । ଖାଇ ଚାଲିଥାଏ । ପ୍ରତିବାଦ କରିବାକୁ ସେ ଚାହିଁନାହିଁ କିମ୍ବା ପ୍ରତ୍ୟାଖ୍ୟାନ କରିବାକୁ ଉଚିତ ମନେ କରିନାହିଁ । ନିଜକୁ ଏ ଢାଞ୍ଚାରେ ସେ ଗଢ଼ାଇ ନେବାକୁ କେବେ ପ୍ରସ୍ତୁତ ହୋଇ ନ ଥିବାରୁ ଏ ପ୍ରକାର ଭୋଜନକୁ ନିଜଠାରୁ ଉଚ୍ଚସ୍ଥାନ ଦେଇ ସେ ଲଜ୍ଜାବୋଧ କରୁଛି । କିନ୍ତୁ ସାଥିମାନଙ୍କ ଗହଣରେ ନିଜକୁ ସେ କୌଣସିମତେ ଅନୁପଯୁକ୍ତ ବିବେଚନା ନ କରି ସଜାଇ ଦେଇଛି ।

ଭୋଜନ ପରେ କର୍ମଚାରୀ ଜଣକ ଭବାନୀଶଙ୍କର ବାବୁଙ୍କୁ ସାକ୍ଷାତ କରିଛନ୍ତି । ସେ ସେତେବେଳେ କରତ କଳର କାର୍ଯ୍ୟାଳୟରେ ମାଲିକଙ୍କ ସହି

ଆଲୋଚନାରତ । କିରଡ ଜଲ ନାକଂଟକୁ କର୍ମଚାରୀଙ୍କ ପଛେ ପଛେ ମଦନ ମଧ୍ୟ ଯାଇଛନ୍ତି । କାଠ କରତା ସମ୍ପର୍କରେ କିଛି ଧାରଣା କରିବାକୁ ସେ ଇଚ୍ଛା ପୋଷଣ କରିଛି । ହୁଏତ କଥା ପ୍ରସଙ୍ଗରେ ଭବିଷ୍ୟତରେ କିଏ ତାକୁ ପରିଚିତ ଦେଇ ପାରନ୍ତି, ସେ ଯେତେବେଳେ କରତ କଲଟାଏ ଦେଖିଛି । ସେ ଠିଆ ହୋଇ କଳକୁ ଚାହିଁ ରହିଲା । କଳରେ ମଦନର ଚକ୍ଷୁ ନିବଦ୍ଧ ରହିଛି ଅଥଚ କଳର ଶ୍ରମିକମାନେ କେଜାଣି କାହିଁକି ଏକ କ୍ରୋଧ ଏବଂ ବିରକ୍ତି ମିଶ୍ରିତ ଚକ୍ଷୁରେ ଥରେ ଥରେ ମଦନକୁ ଚାହିଁଛନ୍ତି । ମଦନ ଅବଶ୍ୟ ଏସବୁ ଅନୁଭବ କରିପାରୁ ନାହିଁ । ଆଖି ଦୁଇଟି ତା'ର ବରଂ କାର୍ଯ୍ୟାଳୟରେ ବସିଥିବା ବାବୁମାନଙ୍କୁ ଦେଖି ଶିଖନ୍ତି କିନ୍ତୁ କଳର ଶ୍ରମିକମାନଙ୍କୁ ନୁହେଁ । ଶ୍ରମିକମାନେ ମଦନର ପଛକୁ ବାଆଁ ଭାଗରେ ରହି ଯାଇଛନ୍ତି ।

କର୍ମଚାରୀ ଜଣକ ଯେତେବେଳେ ବାବୁଙ୍କୁ ସାକ୍ଷାତ କରିଛନ୍ତି ପ୍ରଥମ ଟକ୍‌ଟିକୁ ନେଇ ଯିବାକୁ ବାବୁ ଆଦେଶ ଦେଲେ । ସେ ନିଜେ ଅନ୍ୟ ଏକ ଟକ୍‌ରେ ଯିବେ ବୋଲି କହିଲେ ଏବଂ ଦ୍ୱିତୀୟ ଟ୍ରକ୍‌ରେ ଥିବା ଶ୍ରମିକମାନଙ୍କୁ କିଛି ଟଙ୍କା ଦେଲେ । ନିଜ ଅଫିସ୍ କିଛି ବିଶ୍ରାମ ଦେବାକୁ ସମଗ୍ର ମୁଣ୍ଡଟାକୁ ସାମାନ୍ୟ ହଲେଇଛି ମଦନ ଏବଂ ଏଇ ବାଗରେ ଦେଖିଛି ନୋଟ ପୁଳାଏ ଭବାନୀଶଙ୍କର ବାବୁଙ୍କୁ କଲ ମାଲିକ ବଢ଼େଇ ଦେଲେ ଏବଂ ଭବାନୀଶଙ୍କର ବାବୁ ଗଣିବାକୁ ଆରମ୍ଭ କଲେ । ମଦନ ଚାହିଁଛି କର୍ମଚାରୀ ଜଣକୁ କଲର ସାମନାକୁ ଆସିବାପାଏ ଏବଂ ଏକାନ୍ତ ଅନୁଗତ ପରି କର୍ମଚାରୀଙ୍କ ପଛେ ପଛେ ଝଡ଼ିଜନା ଗୋଡ଼ ବଢ଼ାଇ ଦେଲେ ।

ଗଣି କୋଡ଼ିଏଟି ଟଙ୍କା କର୍ମଚାରୀ ଜଣକ ଭୁବନକୁ ବଢ଼ାଇ ଦେଲେ । ଗୁଲିକଟିକୁ ପାଞ୍ଚ ଟଙ୍କା ଧାଆସିବାରୁ ସେ ପ୍ରଥମେ ଅନିଚ୍ଛା ପ୍ରକାଶ କରୁଥିଲେ । କିନ୍ତୁ କର୍ମଚାରୀ ଜଣକ କହିଲେ : ପ୍ରଥମ ଗାଡ଼ିର ଗୁଲିକ ନିଜେ ମାଗି ଯେତେବେଳେ ପାଞ୍ଚଟି ଟଙ୍କା ନେଇଛନ୍ତି ସେ କାହିଁକି ସେଇ ପରିମାଣ ଟଙ୍କା ପାଇବାକୁ ନୈତିକତାର ସମର୍ଥନ ପାଇବ ନାହିଁ । ଟ୍ରକ୍‌ର ସମସ୍ତ କର୍ମଚାରୀ ସୁନ୍ଦର ଭାବରେ ଚଳିଯିବାକୁ ନିଜ ମାଲିକଂଠାରୁ ଗୁଲିକ ଯଥେଷ୍ଟ ଟଙ୍କା ପାଇଛି । ତେଣୁ ସେ ଅନ୍ୟ ଜଣକଠାରୁ କିଛି ଗ୍ରହଣ କାହିଁକି ? ନିଜ ମାଲିକଠାରୁ ଉଚିତରେ ଅବା ନିମ୍ନରେ ସେ ଯିଏ ବା ଯୁଅନ୍ତୁ ନା କାହିଁକି, ନିଜକୁ ଯିଏ ନିଜ ପରିବେଶ ମଧ୍ୟରେ ତୃପ୍ତ କରିନାହିଁ ତାକୁ ବାହ୍ୟ ପରିବେଶ ଏକ ବିଭ୍ରାନ୍ତ ପଥର ପଥିକ କରି ଦେଇପାରେ । ସେ ପରିବେଶ ବ୍ୟତିରେକେ ଯଦି ଜଣକର ଅଗ୍ରଗତି ବ୍ୟାହତ ହୋଇ ନ ଥାଏ । ହୁଏତ ଭବାନୀଶଙ୍କର ବାବୁ ସବୁବେଳେ ଅଲ୍ପ

ପରିମାଣ ହେତୁ ଚାଳକଟି ନେଇନାହିଁ ଅଥବା ନିବବେ ଜଣେ କର୍ମଚାରୀ ନିଜ ମାଲିକର ସମ୍ପତ୍ତି ଅନ୍ୟ ଜଣକର ସୌଜନ୍ୟରେ ବି ବ୍ୟବହୃତ ହେବାଟା କଳ୍ପନା କରିପାରିବ କିପରି । ତେଣୁ ସେ ପାଞ୍ଚଟଙ୍କିଆ ବଡ଼ ନୋଟ୍‌ଟି ନେଇଛି ଏବଂ ନିଜର ସହାୟକକୁ ବଢ଼ାଇ ଦେଇଛି ।

ଭୁବନ ଯେତେବେଳେ ଜାଣି ନେଇଛି ଯେ ତାକୁ ମିଳିଥିବା ଟଙ୍କା ଶ୍ରମିକମାନଙ୍କ ଭୋଜନ ନିମନ୍ତେ ଉଦ୍ଦିଷ୍ଟ ସେ ନିଜର ସାଥୀମାନଙ୍କୁ ନେଇ ଚାଲିଛି ଏବଂ ଟ୍ରକ୍‌ର ଚାଳକ ମଧ୍ୟ ନିଜର ସହଯୋଗୀମାନଙ୍କୁ ଏଇ ଅବସରରେ ଭୋଜନ ପାଇଁ କହୁଛି ।

କର୍ମଚାରୀ ଜଣକ ପ୍ରଥମ ଟ୍ରକ୍‌ର ଚାଳକଙ୍କୁ ଜଙ୍ଗଲକୁ ଯିବାକୁ କହିଲେ । ପଛ ଗାଡ଼ିରେ ବାବୁ ଆସିବେ ଏବଂ ଏଇ ଟ୍ରକ୍‌ରେ ସେ ଯିବ । ଚାଳକଟି ବେଶ୍ ଖୁସିରେ ଅଛି । ସାଙ୍ଗେ ସାଙ୍ଗେ ଟ୍ରକ୍‌ରେ ସେ ଚଢ଼ିଗଲା ଏବଂ ଟ୍ରକ୍‌ଟି ବର୍ତ୍ତମାନ ବଢ଼ି ଚାଲିବ । ଏଣୁ ସଙ୍କେତ ଦେଲା ଅନ୍ୟମାନଙ୍କ ବିଳମ୍ବ ପ୍ରତି ସତର୍କ କରିଦେବାକୁ ।

ମଦନ ଟ୍ରକ୍‌ରେ ବସିଛି । ପଛ ଡାଲାରେ ବସି କାମଶାଳକୁ ପ୍ରତ୍ୟାବର୍ତ୍ତନ କରୁଛି । ମଦନର ମନରେ ଅନେକ ଭାବନା ପଶି ଯାଇଛି । ଏ ସବୁର ସମାଧାନ ଚାହେଁ ମଦନ; କିନ୍ତୁ ନିଜ ସାଥୀମାନଙ୍କ ଭିତରେ ସେପରି କାହାରିକୁ ଦେଖେ-ନାହିଁ । ଯେଉଁ ଜଣକ କିଛି କହି ପାରନ୍ତେ ସେ ଟ୍ରକ୍‌ର ଅଗପଟେ ଚାଳକଙ୍କ ନିକଟରେ ବସି ଯାଇଛନ୍ତି । ହୁଏତ ସେ ସମସ୍ତ ବିବରଣୀ ଦେବାକୁ ସମ୍ମତ ନ ହେଲେ ସୁଦ୍ଧା ନିଜକୁ ସନ୍ତୁଷ୍ଟ କରିବାକୁ କିଛିଟା ସେ ନିଶ୍ଚୟ ପାଇଯିବ । ଏ ସବୁର ପ୍ରକୃତ ଉଦ୍ଦେଶ୍ୟ କିପରି ଭାବରେ ଚାଲିଛି ସେସବୁ ଭବାନୀଶଙ୍କର ବାବୁଙ୍କର କର୍ମଚାରୀ ଆକାରରେ ସେ ବୋଧହୁଏ କହିବାକୁ ଚାହିଁବେ ନାହିଁ । ହୁଏତ କେତେଟା କଥା ନିଜର ବଡ଼ିମା ଦେଖାଇ ଦେବାକୁ ମଦନକୁ ନିରୀହ ମନେ କରି ସେ କହି ଚାଲିବେ । ମଦନ ଯାହା କିଛି ଜାଣିବାକୁ ଚାହିଁନାହିଁ ସେ ସବୁ ବି କିଛି ଜାଣିଯିବ ।

ଟ୍ରକ୍‌ଟି ଠିଆ ହୋଇଛି ପୂର୍ବ ପରିଚିତ ପଡ଼ିଆରେ ଯେପରି କି ସୁବିଧାରେ କାଠ ଲଦି ହେବ । ମଦନ ଏବଂ ତା'ର ସାଥୀମାନେ ଓହ୍ଲାଇ ଏକତ୍ରିତ ହେଲେ । କର୍ମଚାରୀଜଣକ କାଠ ଲଦିବାକୁ ନିର୍ଦ୍ଦେଶ ଦେଲେ । ସମସ୍ତେ ଭିଡ଼ି ପଡ଼ିଲେ । ମଦନ ବି ନିଜ କାମରେ ଅଣ୍ଟା ଭିଡ଼ିଛି । ମଦନ କିଛି ବୁଝି ପାରିଲା ନାହିଁ । ଏଠି ନୂଆ ଗଛର କେତେ ଯେ ବୁଙ୍ଗି ସଜ୍ଜିତ ହୋଇଛି । ସେ ଏବଂ ତା'ର ପନ୍ଦର

ଜଣ ସାଥି ଯେଉଁ ଗଛସବୁ କାଟି ଗଣ୍ଡି କରିଥିଲେ ସେ ଜାଣେ । ସେ ସବୁକୁ ନିଜେ ସେତେବେଳେ ନିଜ ଆଖି ଆଗରେ ବିଭିନ୍ନ ମାପରେ ଖଣ୍ଡ ଖଣ୍ଡ କରିଛୁ ନ ଜାଣିବ ବା କିପରି । ସେ ଯଦିଓ କୌଣସି ଗଣ୍ଡିରେ ସେପରି କିଛି ଚିହ୍ନ ଦେଇନାହିଁ ତଥାପି ନିଜ ଅଙ୍ଗୁଳିସ୍ପର୍ଶ ପାଇଥିବା ଗୋଟିଏ ବସ୍ତୁକୁ ଜଣେ ନ ଚିହ୍ନିବ ବା କିପରି । ଚିହ୍ନା ପାଇଁ ଚିହ୍ନ ସେ କେବଳ ଏକମାତ୍ର ମାଧ୍ୟମ ଆଉ ଚିହ୍ନ ବିନେ ପ୍ରତ୍ୟକ୍ଷ ଅନୁଭୂତ ବି ଅଗ୍ରାହ୍ୟ ଏକଥା ଜଣେ ପରିସ୍ଥିତିର ଗୃହରେ ମାନି ଯାଇପାରେ କିନ୍ତୁ ନିଜର ହୃଦୟ ମାନିବ କିପରି ? ଯେଉଁ ବନେନ ସନ୍ଧାନ ନୁହେଁ ସେତ ମଣିଷକୁ ନିୟନ୍ତ୍ରଣ କରୁଥିବା ପ୍ରକୃତ ସଫଳତାର ସହ ବିଜୟ ଘୋଷଣା କରିବ କିପରି ।

ଆଗରୁ ଚିହ୍ନିତ ହୋଇଥିବା କାଠଯାକ ସ୍ଥାନାନ୍ତରିତ ହୋଇନାହିଁ ଅଥଚ ନୂଆ କାଠ ବୋଝେଇ ହେବ କିପରି । ମଦନ ଆହୁରି ବେଶି ବୁଝି ପାରିଲା ନାହିଁ ।

ପ୍ରଥମ ଥର ଟ୍ରକ୍‌ରେ କାଠ ବୋଝେଇବାକୁ ଏମାନଙ୍କୁ ଏତେ ଫୁର୍ତ୍ତି ଲାଗି ନ ଥିଲା । ଟିକିଏ ଅକଳିଆ ବା ଏକାକୀ ବୋଧ ହେଲା । କିନ୍ତୁ ଏଇ ପାଳିରେ ଶ୍ରମିକମାନେ ଅତ୍ୟନ୍ତ ଦେପରି ଲାଗି ପଡ଼ିଲେ । କିଛି ସମୟ ପରେ ବୋଝେଇ ସରିଲା । ଟ୍ରିପ୍ ଭଡ଼ା ହୋଇଗଲା । ପ୍ରଥମ କର୍ମଗୃହୀଜଣକ ଅନ୍ୟ ଜଣଙ୍କୁ କହିଲେ ଟ୍ରକ୍‌ରେ ଯିବାକୁ ! ସେ ନିଜେ ଦ୍ୱିତୀୟ ଟ୍ରକ୍‌ରେ ଯିବ । ଏଇ ସମୟରେ ଅନ୍ୟ ଟ୍ରକ୍‌ଟି ପହଞ୍ଚିଛି । ଭବାନୀଶଙ୍କର ବାବୁ ପ୍ରଥମ ଟ୍ରକ୍‌ରେ ନିଜେ ଯିବାକୁ କହି ଏବଂ କିଛି ସମୟ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଲେ ।

ସନ୍ଧ୍ୟା ହେବାକୁ ଖୁବ୍ ସମୟ ବାକି ଥିଲେ ମଧ୍ୟ ଦ୍ୱିତୀୟ ଟ୍ରକ୍‌ଟି ବାମଣ୍ଡାରେ ସେତେବେଳେ ପହଞ୍ଚିବ ଅନ୍ଧାର ହୋଇଯିବ । ଆଜି ନିମନ୍ତେ ନବ ନିଯୁକ୍ତ କୋଡ଼ିଏ ଜଣଯାକ ଶ୍ରମିକ ଏକା ଟ୍ରକ୍ କାଠ ଯୋଗାଡ଼ କରିଥିଲେ ସୁଦ୍ଧା ଯଥେଷ୍ଟ । ଭବାନୀଶଙ୍କର ବାବୁ ସେମାନଙ୍କୁ ଏକ ଶହ ଟଙ୍କା ଦେଇଦେଲେ ଏବଂ ଭିନ୍ନ ଭାବେ ଏଗାର ଟଙ୍କା ଦେଲେ ପିଆନ ଏବଂ ଶୋଗୁଗନ ଖେନା ନିମନ୍ତେ । ସେମାନଙ୍କୁ ଶହେଟି ଟଙ୍କା ଗ୍ରହଣ କରିବାରେ ଯେଉଁ ଆନନ୍ଦ ମିଳିନାହିଁ, ସେ ଆନନ୍ଦ ମିଳିଛି ଏଇ ଏଗାର ଟଙ୍କାରେ । ଏଇ ଏଗାର ଟଙ୍କାରେ ସେମାନଙ୍କୁ ମିଳିଯିବ ଦଶ ଲିଟରର ମହୁଲ ମଦ ଏବଂ ବେଶ୍ ବଡ଼ୁଆ ଚଣାଭଜା । ସେମାନଙ୍କୁ ଏକ ସାଙ୍ଗରେ ଶହେ ଏଗାର ଟଙ୍କା ଦେଇଥିଲେ ଏବଂ ପିଆନ କଥା କହିଥିଲେ ଏତିକି ଆନନ୍ଦ ମିଳି ନ ଥାନ୍ତା । ଯଦିଓ ସେମାନଙ୍କ ପ୍ରାପ୍ତିରେ କୌଣସି ଫରକ ଆସି ନ ଥାନ୍ତା ।

ଯେତେକ ଲୋକ ସାଧାରଣ ଲୋକଙ୍କ ସମ୍ପର୍କରେ ଅନୁଚିନ୍ତା ସମସ୍ତେ ପ୍ରାୟ ଏକ ପଥରେ ଚାଲିଛନ୍ତି । ଯଦିଓ ଗୋଷ୍ଠି ସାମୂହିକ ଦେଉନାହିଁ ! କେତେକ ନଗଣ୍ୟ ବ୍ୟକ୍ତି ବିଶେଷ ନିଜର ସୁଖ ସୁବିଧାକୁ ଏ ପର୍ଯ୍ୟନ୍ତ ଅବଶ୍ୟ ସେମାନଙ୍କ ସୁଖ ସୁବିଧା ନିମନ୍ତେ ଜଳାଞ୍ଜଳି ଦେଇଛନ୍ତି । ଯେଉଁଠି ଏକ ଗୋଷ୍ଠୀ ଏ ପ୍ରକାର ଉଦ୍ଦେଶ୍ୟରେ ନିୟୋଜିତ ବୋଲି ପରିଚୟ ଦିଏ ସେ ଭିତରେ ମଧ୍ୟ ବିଭିନ୍ନତା ଅଛି ଏବଂ ସମସ୍ତେ ସନ୍ତୁଷ୍ଟ ରହିଲା ଭଳି ପଦକ୍ଷେପରେ ସେମାନେ ଚାଲିଛନ୍ତି । ଯିଏ ବା ଯେଉଁ ଗୋଷ୍ଠି ସାଧାରଣ ଲୋକଙ୍କ ମନକୁ ଆପଣାର କରୁଛି ସିଏ ଭଲ ବୋଲାଉଛି ଏବଂ ଯିଏ ଏମାନଙ୍କ ଦୁଃସ୍ଥିତି କଥା ଚିନ୍ତା କରୁଛି ଆଉ ସେଇଥିରୁ ଉଦ୍ଧାର କରିବାକୁ ନୀତିଗତ ପଥରେ ଚାଲିଛି ସେ ନିଜ ସୁବିଧା ଚାହିଁଛି ବୋଲି ଏକଲା ହୋଇ ରହିଯାଇଛି । ଏମାନଙ୍କୁ ଜଣେ ଶହେ ଏଗାରଟି ଟଙ୍କା ଦେଇ ଅଥବା ତଦୂର୍ଦ୍ଧ୍ୱ ଟଙ୍କା ଦେଇ ସନ୍ତୁଷ୍ଟ କରିପାରି ନ ଥାନ୍ତା । ଯଦିଓ ସେମାନେ ନିଜେ ନିଜେ ସଂଗ୍ରହ କରି ନିଜର ଇଚ୍ଛା ପୂରଣ କଲାପରେ ମଧ୍ୟ ଅଧିକ ଲାଭବାନ ହୋଇଥାନ୍ତେ । ସେଠି ଏମାନେ ହୃଦବୋଧ କରିଥାନ୍ତେ ନିଜ ପାଇଁ ନିଜେ ଖର୍ଚ୍ଚ କଲେ କିନ୍ତୁ ଏତେ ଖଟି ସୁଦ୍ଧା ସେମାନେ ଅନୁଗ୍ରହ ପାଇଲେ ନାହିଁ । ମଣିଷର ଲାଳାୟିତ ମନର ପଥକୁ ଯିଏ ପାଇଛି ସିଏ ମଣିଷକୁ ବି ପାଇଛି । ମଣିଷକୁ ମଣିଷ ପାଇବାରେ ବିଶେଷତ୍ୱ ଅଛି ନିଶ୍ଚୟ କିନ୍ତୁ ମଣିଷର ପଥକୁ ସୁପଥରେ ପରିଚାଳନା କରିବାର ନିହ୍ନନସ୍ୱତା ବିଜିତ ମଣିଷର ନ ଥିଲେ ସେ ବି ଦିନେ ଏଇ ମଣିଷ ଭିତରେ ଲୁଚିଯିବ । ବହୁକଥା ଜଳର ଜଳାଶୟ ପୃଷ୍ଠରେ ପଡିଲା ବର୍ଷାପାଣି କିଛି ସମୟ ଟଳଟଳ ହୋଇ ମୁକ୍ତାର କାନ୍ତି ଫୁଟାଇ ଦିଏ ଅଥଚ କିଛିକ୍ଷଣ ପରେ ମିଳାଇଯାଏ ଅବାରିତ ଭାବେ । ସେ ନିଜ ବିନ୍ଦୁର ସ୍ୱାତନ୍ତ୍ର୍ୟ ଖୋଜି ପାଏନାହିଁ ।

ପରେ ନିଯୁକ୍ତ ହୋଇଥିବା ଶ୍ରମିକମାନଙ୍କ ଭିତରୁ ଜଣେ ଗଣିଲେ ଟଙ୍କାତକ । ମଦନ ବି ନିଜେ ଗଣି ନେଉଥାଏ ମନେ ମନେ ଏବଂ ଶହେଟଙ୍କା ହେଲା ।

ଦ୍ୱିତୀୟ କର୍ମଚାରୀ ଜଣକୁ ଏଇ ଟ୍ରକରେ ଯିବାକୁ କହି ଭବାନୀଶଙ୍କର ବାବୁ ଟ୍ରକ୍‌ରେ ବସିଲେ ଏବଂ କର୍ମଚାରୀଟିକୁ ମଧ୍ୟ ଆଗକୁ ଆସିବାକୁ କହିଲେ । ସେ କିନ୍ତୁ ପସନ୍ଦ କରେ ଶ୍ରମିକଙ୍କ ସହିତ ଗପ କରିବାକୁ । ତେଣୁ ଟ୍ରକ୍‌ର ଡାଲାରେ ପଛ ପାଖରେ ବସିଯିବ ବୋଲି କହିଲା । ତାଙ୍କ ପ୍ରିୟ କର୍ମଚାରୀଟି ସମ୍ମତ ଥିବାରୁ ଭବାନୀଶଙ୍କର ବାବୁ ଖୁସିହେଲେ ଏବଂ ହସ୍ମିତ ଗଳାରେ କହିଲେ : ଆଚ୍ଛା ହେଉ । ଟ୍ରକ୍‌ଟି ଆଗକୁ ବଢ଼ିଛି । ମଦନର ମନ ଉର୍ଦ୍ଧ୍ୱମାରି

ଖୋଲି ଯିବାକୁ ବସିଛି । ସେ କେତୋଟି କଥା ବୁଝିବ ଏଇ କର୍ମକର୍ତ୍ତାଙ୍କୁ ପଚାରି ।

ଏ କାଠ ଯେଉଁ କରତ କଳକୁ ଯାଉଛି ସେ କଳରେ ଭବାନୀଶଙ୍କର ବାବୁଙ୍କର କି ଆଂଶିକ ଅଧିକାର ଥିବ ବୋଧହୁଏ । ମଦନ ଯେପରି ଜାଣେ ସେ ଅଛି ତେଣୁ ସେଇ ବିଷୟରେ ପଚାରିଲା । କର୍ମକର୍ତ୍ତା ଜଣକ କହିଲେ : କରତ କଳରେ ବାବୁଙ୍କର ଅଧିକାର ନାହିଁ । କଳର ମାଲିକ ଏପରିକି ବାବୁଙ୍କର ସମ୍ପର୍କୀୟ ବି ନୁହନ୍ତି । କରତ କଳର ମାଲିକଠାରୁ ବି ବାବୁଙ୍କର ବ୍ୟବସାୟ ବଡ଼ ଆଉ ପୁଞ୍ଜି ବଡ଼ । କର୍ମକର୍ତ୍ତା ଜଣକ ଓଲଟି ମଦନକୁ ପ୍ରଶ୍ନ କଲେ ସେ ସେ କିପରି ଭାବିଥିଲା ବାବୁଙ୍କର କଳରେ ଅଧିକାର ଅଛି ବୋଲି । ମଦନ ନିରୀହତାର ଭିତରେ କହିଲା : ପହିଲିଥର ଯେତେବେଳେ ଭବାନୀଶଙ୍କର ବାବୁ କରତ କଳର କାର୍ଯ୍ୟାଳୟରେ ବସିଥିଲେ କଳର ମାଲିକ ଗୁଚ୍ଛାଏ ନୋଟ ତାଙ୍କୁ ବଢ଼ାଇ ଦେଲେ । କର୍ମକର୍ତ୍ତା ଜଣକ ତତ୍‌କ୍ଷଣାତ୍ କହିଲେ : ଯେଉଁ କାଠ ସବୁ କରତ କଳକୁ ଯାଉଛି, ସେଇ କାଠର ବିକ୍ରୀମୂଲ୍ୟ ବାବୁଙ୍କୁ କଳ ମାଲିକ ଦେଇଥିବ । ଯେତେ କାଠ ବାବୁଙ୍କର ଅନ୍ୟ କାମରେ ଆସିବ ସେତିକି କାଠ ଫଡ଼ା ହୋଇ ଅନ୍ୟତ୍ର ନିଆଯିବ । ଏପରିକି ଫଡ଼ା କାଠର ବାକଳର ମୂଲ୍ୟ ବି ବାବୁ ପାଇବେ । ଲୋକେ ବାକଳକୁ ଜାଳେଣି କାମରେ ଲଗାନ୍ତି । ଓଜନ କରି ବିକାଯାଏ । କରତ କଳ ନିକଟରେ ମଦନ କ'ଣ ଦେଖି ନ ଥିବ ଯେ କିଛି ଠକା ହୋଇଛି ।

ମଦନ ଦେଖିଛି ବୋଲି କହି ନୀରବ ହେଲା । ତା' ମନରେ ବିଚିତ୍ରତା ଆସିଛି । ଗଲା ଦିନର ଜଙ୍ଗଲ କଥା ମନରେ ତା'ର ଆଘାତ ଦେଉଛି । ବଳି ଗମ୍ଭୀର ନାଦରେ 'ଜାତୀୟ ସମ୍ପଦ' ଶବ୍ଦଟା ମୁଣ୍ଡରେ କେତେଥର ସେ ନିର୍ଘାତ ଠେସ ଦେଲା । ଠିକ୍ ସେଇ ସ୍ୱରରେ, ସେଇ ଭଙ୍ଗୀରେ, ସେଇ ଉଚ୍ଚାରଣରେ ଏବେ ବି ଶୁଭୁଛି ତା'ର କାନରେ, ଏଇମାନଙ୍କୁ କଠୋର ଦଣ୍ଡ ଦିଆ ନ ଗଲେ ଏମାନେ ଜାତୀୟ ସମ୍ପଦକୁ ନଷ୍ଟ କରିଦେବେ । ଅବଶ୍ୟ ସେ ବ୍ୟକ୍ତିମାନେ ଏଠାରେ ନାହାନ୍ତି କିନ୍ତୁ ସେମାନଙ୍କର ପୋଷାକ ଏବଂ କର୍ତ୍ତବ୍ୟ ତ ଏଠି ଅଛି । ଏତେଟା ପାର୍ଥକ୍ୟ କାହିଁକି ? ଜଣେ ନିର୍ଦ୍ଧନକୁ ଜାତୀୟତାର ମହାନୀୟତା ଭିତରେ ଦଳି ଦିଆଯାଇ ଅଛି ଯେତେବେଳେ ଜଣେ ଧନୀକୁ ଉଦାର ଦୃଷ୍ଟିରେ ଦେଖି କାହିଁକି ସମ୍ମାନିତ କରାଯାଉଛି । ନିତିଗତ ଜୀବନ ବିତାଇବାକୁ ଜଣକୁ କଠୋର ଶୃଙ୍ଖଳା ଭିତରେ ଗୁଡ଼ିବାକୁ ପଡ଼ୁଛି ଯେତେବେଳେ ଜଣକୁ ଏ ସବୁର ଆବଶ୍ୟକତା ଅନୁଭବ କରିବାକୁ ବି ପ୍ରୟୋଜନ ନ ଥିବାର ଜଣାଇ ଦିଆଯାଇଛି କାହିଁକି ? କଣକର

ପଶୁଠାରୁ ପୃଥକ୍ ରହିବାର ଉଦ୍ୟମକୁ ପରାହତ କରାଯାଇଅଛି ଯେତେବେଳେ ଜଣକୁ ମଣିଷଠାରୁ ଦୂରେଇ ଯିବାକୁ ସାହାଯ୍ୟ ସୁଯୋଗ ଯୋଗାଇ ଦିଆଯାଇଅଛି କାହିଁକି ? ସେ ତ ଘରେ କାଠ ମାଡ଼ି ନିଏ । ଗୋଟିଏ ଗଛରୁ ଦଶଶହ ଟନରୁ ଅଧିକ କାଠ ବାହାରିବ । ମଦନର ଆଖିରେ ଦିଶିଯାଏ ଅଗଣିତ କ୍ଷୁଧିତ ମଣିଷର ଅଭିଯାନ । ଦେହ ନାଚଉଠେ । ଏଇ ମୁହୂର୍ତ୍ତରେ ରାସ୍ତାର ଖାଲରେ ଟ୍ରକ୍‌ଟି ନାଚ ଉଠିଛି । ମଦନ କିନ୍ତୁ ଠିକଏ ଧିମେଇଗଲା ଯେତେବେଳେ ଏଇ ଅଗଣିତ ଲୋକଙ୍କର ପ୍ରତିଦିନର ଫାଳ କାଠଗୁଡ଼ିକୁ ଗଛରେ ଗଛରେ ପରିଣତ କଲା । ଦିନକୁ କେତେ ଯେ ଟ୍ରକ୍ କାଠ ହୋଇଗଲା । ପୁଣି ଦେଖେ ସେମାନେ ଯେ ଅକର୍ମଣ୍ୟ ଗଛକୁ ଫାଳ କାଠ କରନ୍ତି । କିଛିଦିନ ପରେ ସେଗୁଡ଼ିକ ନଷ୍ଟ ହୋଇ ଯାଇଥାନ୍ତା । ଭବାନୀଶଙ୍କର ବାବୁ ତ ଯେଉଁ ଗଛଗୁଡ଼ିକ ନେଉଛନ୍ତି ସେ ସବୁ ନଷ୍ଟ ହୋଇଥାନ୍ତା କିଛିକାଳ ପରେ । କିନ୍ତୁ ଏଇ ନୂଆ ଗଛଗୁଡ଼ିକ କଟା ହେଲା କାହିଁକି ? ଏଗୁଡ଼ିକ ତ ବିନା ଅନୁମତିରେ କଟା ହୋଇଥିବ ?? ପ୍ରଥମ ଦିନ ତ ତାଙ୍କର ସମସ୍ତ ଗଛରେ ଚିହ୍ନ ଦିଆଗଲା କିନ୍ତୁ ? ମଦନର ମନ ବୁଝିଲା ନାହିଁ । ଏହାର ପ୍ରତିବାଦରେ ଗର୍ଜି ଉଠିବ ସେପରି । ସେମାନେ ନିଜକୁ ଢିଲା ଢିଲା କରି ଜାଳିଦେବେ···ଏପରିକି ନିଜର ପାଉଁଶର ବି ସତ୍ତା ନ ଥିବ ଅଥଚ ଅନ୍ୟମାନଙ୍କର ପାଦଚିହ୍ନ ଗଣା ଯାଉଥିବ । ଏମାନେ ହେଲେ ଶାସକ, ପ୍ରଶାସକ ଆଉ ପ୍ରଥମ ଶ୍ରେଣୀର ମଣିଷ, ଅଗ୍ରଗଣ୍ୟ, ଅଗ୍ରପୂଜ୍ୟ । ଏମାନେ ମଣିଷ ଭିତରେ ଭିନ୍ନ ନାମରେ ନାମିତ ହୁଅନ୍ତି, ଯେଉଁ ନାମରେ ଅଛି ଇତିହାସର ଅଧ୍ୟାୟ । କିଏ ଯେ ନିଜେ ଶୋଷଣ କରି ଏମାନଙ୍କ ବିରୁଦ୍ଧରେ କହିବାର ବାହାନାରେ ଇତିହାସର ଅଧ୍ୟାୟ ସୃଷ୍ଟି କରୁଛି ତ କିଏ ସେପରି ଇତିହାସକୁ ଜୀବନ୍ତ କରିବାକୁ ଲୁଚି ରହୁଛି ଅଥଚ ଇତିହାସର ସ୍ରଷ୍ଟା ଦଳିତ ହୋଇଛି ବହୁବାର ଆଉ ବଞ୍ଚି ରହିଛି ମାତ୍ର କେତୋଟି ସମସ୍ୟାକୁ ନେଇ ଧୂଷ୍ଟ ଅଧ୍ୟାୟରେ ମହାମାନବର ଭିଡ଼ରେ ନିଜକୁ ମିଶାଇବାର ସୁଯୋଗ ନେଇ । ମଦନ ଖୋଜେ, ସେ ଯେତିକି ଜାଣେ ସେଇ ଭିତରେ ଖୋଜେ ଅଥଚ ପାଏନାହିଁ ।

ତା'ର ସାଥି ଶ୍ରମିକ ଜଣେ ଭାଙ୍ଗ ଡବଟା ବଢ଼ାଇ ଦେବାକୁ ମଦନକୁ ଅନୁରୋଧ କଲା । ମଦନ କିଛି ସମୟ ପରେ ଶୁଣିଲା ସେପରି ଠିକଏ ବିଳମ୍ବରେ ଅଣ୍ଟାରୁ ଡବଟା ଖୋଜି ବଢ଼ାଇ ଦେଲା । ମଦନର ସାଥି ଅବଶ୍ୟ ଆହୁରି ଥରେ ମାଗିବାକୁ ମୁହଁ ଖୋଲିଥିଲା । କିନ୍ତୁ କଥା ଫୁଟାଇ ନ ଥିଲା । ମଦନର ଭାବନାରେ ଭଟ୍ଟାପଡ଼ି ଯାଇଛି । ମଦନ ଡବଟା ବଢ଼ାଇ ଦେଉଁ ଦେଉଁ ଗୁଣ୍ଡିର ଗୋଟିଏ ପ୍ରାନ୍ତରେ ଦେଖିବାକୁ ପାଇଲା ବିଭାଗୀୟ ଚିହ୍ନ । ଗଛରେ ଏହି ଚିହ୍ନ ବ୍ୟବହାର

ନିମନ୍ତେ ଉଠାଯାଇ ପାରିବା ଭଳି । ମଦନ ଅନ୍ୟ ଦୁଇଟି ଗୁଣ୍ଡିରେ ଦୃଷ୍ଟି ପକାଇଲା । ସେଇଁଗୁଡ଼ିକର ଚିହ୍ନ କି ସ୍ପଷ୍ଟ ଭାବରେ ଦେଖିହେବ । ଏ ଦୁଇଟିରେ ବି ଚିହ୍ନ ସ୍ପଷ୍ଟ ଦେଖା ଯାଉଅଛି । ମଦନ ନିଜକୁ ବିଭ୍ରାନ୍ତ ମନେ କରନ୍ତି କାଳେ ଅଥବା ସନ୍ଦେହରେ ନିଜକୁ ଚିମୁଟି ଦେଉଛି । ମଦନ ନିଜର ସୀମିତ ଜ୍ଞାନ ଭିତରେ ବୁଝିବାକୁ ଚେଷ୍ଟା କରୁଥାଏ । ଏ ଭିତରକୁ ପଶିବାକୁ ହୁଏତ ଚେଷ୍ଟା କରନ୍ତା; କିନ୍ତୁ କେଉଁ ଶକ୍ତି ବଳରେ । ସେ ଶକ୍ତିକୁ ପାଇବାକୁ ସେ ଅଣ୍ଡାଳି ଦେଖେ କିନ୍ତୁ ଅନ୍ଧକାର ଏତେ ବେଶି ଘେରିଯାଏ ଯେ ସେ ନିଜର ଅଙ୍ଗ ପ୍ରତ୍ୟଙ୍ଗକୁ ଦେଖି ପାରେନାହିଁ ।

ଟ୍ରକ୍‌ଟା ବାମଣ୍ଡାର କରତ କଳ ନିକଟରେ ପହଞ୍ଚିଲା । ଭବାନୀଶଙ୍କର ବାବୁ କାଠଗୁଡ଼ିକୁ ଅଜାଡ଼ିବାକୁ କହିଲେ । ମଦନ ଦେଖିଛି ଭଲ ଭାବରେ ଏଇ ସ୍ଥାନଟି । ପୂର୍ବଥର ଏଠି ଯେଉଁ କାଠ ଅଜାଡ଼ା ଯାଇଥିଲା ସେ ଭିତରୁ ଅନେକଟା ଆଉ ପଡ଼ିନାହିଁ । ବୋଧହୁଏ ଅନ୍ୟ କେହି କିଣି ନେଇଥିବେ ଅଥବା ବିଭିନ୍ନ ଆବଶ୍ୟକତା ଭବିଷ୍ୟତରେ ପୂରଣ କରିବାକୁ କରତ କଳ ସେଗୁଡ଼ିକୁ ଫାଡ଼ିଦେଇ ଥିବଣି । ମଦନ ଏବଂ ଅନ୍ୟମାନେ କାଠଗୁଡ଼ିକୁ ଅଜାଡ଼ି ଦେଲେ । ଟ୍ରକ୍‌ଟିକୁ ସୁବିଧା ସ୍ଥାନକୁ ନେଇ ଦିଆଗଲା । ମଦନର ଆଖିରେ ଝଲସି ଉଠୁଥାଏ ପ୍ରତ୍ୟେକ ଗୁଣ୍ଡିର ବିଭାଗୀୟ ଚିହ୍ନମାନ । ଏସବୁ ଅନ୍ୟମାନଙ୍କ ଆଖିରେ ପଡ଼ୁଛି କି ନାହିଁ କେଜାଣି କିନ୍ତୁ ମଦନର ଆଖିରେ ସ୍ପଷ୍ଟ ଦେଖାଯାଉଛି । ଏସବୁ ଚିହ୍ନ ମଦନକୁ ଧନୁର ତୀବ୍ର ଶର ଭଳି ଭେଦ କରୁଥାଏ । ମଦନର ସାଥୀମାନେ କଥାହେଲେ କଳର ପରିସର ବାହାରକୁ ଯିବେ ଏବଂ କିଛି ହାଟ କରିବେ । ସେମାନେ ଭବାନୀଶଙ୍କର ବାବୁଙ୍କର କର୍ମଚାରୀ ଜଣଙ୍କଠାରୁ ଅନୁମତି ନେଉଥିଲେ । ଶୀଘ୍ର ଆସିବାକୁ କହି ସେ ହଁ ଭରିଲେ । ମଦନ ବି ସେମାନଙ୍କ ସହିତ ଚାଲିଗଲା । ଏ ମୁହୂର୍ତ୍ତଗୁଡ଼ିକ ତା' ପାଇଁ ହେବ ଆଶୀର୍ବାଦ । ଗୁଣ୍ଡିମାନଙ୍କରେ ଥିବା ଚିହ୍ନ-ଗୁଡ଼ିକ ଆଉ ପ୍ରତ୍ୟକ୍ଷ ଭାବରେ ଦେଖାଯିବ ନାହିଁ ।

ଦୋକାନଗୁଡ଼ିକ ଯେଉଁ ଅଞ୍ଚଳରେ ସଜସଜ ମେଲିଛନ୍ତି, ମଦନ ତା'ର ଅନ୍ୟ ସାଥୀମାନଙ୍କ ସହ ସେଇ ଅଞ୍ଚଳକୁ ଯାଇଛି । ଘରେ ବ୍ୟବହାର କରା-ଯାଉଥିବା ଜିନିଷଗୁଡ଼ିକ କିଏ କେମିତି କିଣିବାକୁ ଲାଗିଲେ । କିଏ ଡାଲି ପିଆଜ କିଣିଲା ଥିର୍ ପିଇବାକୁ, ଆଉ କିଏ କିଣିଲା ଶୁଖିଲା ମଗି ଖାଇଂ, ଚୂନ ଆଉ ବା ଶୁଖିଲା ଲଙ୍କାମରିଚ ରୁଚିକରଭାବେ ଥିର୍ ଟିକିଏ ପିଇବାକୁ । କିଛି କିଛି ଲୁଣ ପ୍ରାୟ ସମସ୍ତେ କିଣିଲେ । ମଦନ କିଛି ହଳଦୀ ଆଉ କିଛି ଅଳ୍ପ ପରିମାଣର ଜୀରା ଧନିଆଁ ।

ଶୀଘ୍ର ଫେରି ଆସିବାକୁ କୁହାଯାଇ ଥିବାରୁ ସମସ୍ତେ ବୁଲାବୁଲି କଲେ-ନାହିଁ । ସେମାନେ ଯେତେବେଳେ କରତ କଳକୁ ଫେରିଲେ ଅନ୍ୟ ଟ୍ରକ୍‌ର

କାଠଡକ ଅଜଡ଼ା ସରଥାଏ ଏବଂ ମନ୍ଦାଦରେ କାମ ଥିବାରୁ ସେଇ ଟ୍ରକ୍‌ର ଶ୍ରମିକମାନେ ଅଳ୍ପ ସମୟ ପାଇଁ ଯିବାକୁ ଅନୁମତି ଲୋଡ଼ୁଥିଲେ । ଏକଥା ଭବାନୀଶଙ୍କର ବାବୁଙ୍କର କାନରେ ପଡ଼ିଛି । ସେମାନଙ୍କୁ ତାଙ୍କର କର୍ମଗୃଷ୍ଟ କିନ୍ତୁ କହିବା ପୂର୍ବରୁ ଦୁଇଘଣ୍ଟା ନିମନ୍ତେ ବୁଲାବୁଲି କରି ଏବଂ ଅନ୍ୟାନ୍ୟ କାମସବୁ ତୁଟାଇ ନିଜ ନିଜ ଟ୍ରକ୍ ନିକଟକୁ ଫେରି ଆସିବାକୁ ଅନୁମତି ଦେଲେ । ନିଜ କର୍ମଗୃଷ୍ଟମାନଙ୍କୁ ଡାକି ସେ ପଚିଶଟି ଟଙ୍କା ବଢ଼ାଇ ଦେଲେ । ଏହି ଭିତରେ ସମସ୍ତେ ମୁଠାଏ ମୁଠାଏ ଖାଇ ନେବାକୁ ଭୋଜନାଳୟ ଆଡ଼କୁ ବଢ଼ିଲେ । ଥିଲାର ଏ ଉଦାରତାରେ ବାକ୍‌ଶୂନ୍ୟ ହେବାର ମନୁଷ୍ୟୋଚିତ ବ୍ୟବହାର ନିଜ ମନ ଭିତରେ ମଦନ ଯେତିକି ପାଏ ଅନୁଗ୍ରହରେ କାଷ୍ଟଲିକ୍ ପ୍ରତାରଣାର ସଫଳ ପ୍ରୟୋଗର ସୂଚନା ହୃଦୟ ଭିତରେ ସେତିକି ପାଇଁ ତେଜିଉଠେ । କିନ୍ତୁ ସମସ୍ତେ ସେ ବୁଝୁ ନ୍ତି ବାସ୍ତବ ଅନୁଗ୍ରହ ବୋଲି । ଥିଲା ଯେ ଉଦାର, ବାସ୍ତବିକ ସ୍ମରଣୀୟ ଆଉ ନିରୁଦ୍ଦେଶ୍ୟ ଭାବେ ଉଦାରତା ଯଦି ତା'ର ମୂଳି ଉଠୁଥାଏ ବାସ୍ତବତାକୁ ଯଦି ମୂଳ ଆଧାର କରି ତେବେ ବନ୍ଦନୀୟ ବି ହୋଇପାରେ ।

ସେମାନଙ୍କ ସନ୍ଧ୍ୟାକାଳୀନ ଭଲମନ୍ଦ ପାଇଁ ଭବାନୀଶଙ୍କର ବାବୁ ଟ୍ରକ୍‌ର ଚାଳକମାନଙ୍କୁ ଦଶଟଙ୍କା ଲେଖାଏଁ ଦେଲେ । ହାତରେ ଟଙ୍କା ଧରି ଜଣେ ଚାଳକ ଅତ୍ୟନ୍ତ ଖୁସିରେ ନମସ୍କାର କରିଛି ଯେତେବେଳେ ଅନ୍ୟ ଚାଳକଟି ଅପ୍ରସ୍ତୁତ ଭାବରେ ହାତଟା ଉଠାଇ ଦେଇଛି । କାହିଁକି ଓ କାହାର ଉଦ୍ଦେଶ୍ୟରେ ହାତଟି ସେ ଉଠାଇଲା ସେମିତିକି ସେ ଜାଣେନାହିଁ । ଭବାନୀଶଙ୍କର ବାବୁ ସେମାନଙ୍କୁ ନିଜ ନିଜ କାମ ଏହି ଭିତରେ ସାରି ଦେବାକୁ କହିଲେ । ସେ ସେମାନଙ୍କ ମାଲିକଙ୍କ ସହିତ କଥାବାର୍ତ୍ତା ବର୍ତ୍ତମାନର ଘଣ୍ଟାଏ ଭିତରେ କରିନେବେ ।

କଳ ମାଲିକଙ୍କ ସହ ନିଜ କାମ ଭବାନୀଶଙ୍କର ବାବୁ ତୁଟାଇ ନେଲେ ଏବଂ ଟ୍ରକ୍ ମାଲିକଙ୍କ ନିକଟକୁ ଚାଲିଗଲେ । ସେମାନଙ୍କର ପ୍ରତ୍ୟେକ ଟ୍ରିପ୍ କାଠ ଅଣା ଯାଇଥିବା ଭଡ଼ା ଦୁଇଶହ ପଞ୍ଚସ୍ତରି ଟଙ୍କା ହିସାବରେ ତୁଟାଇ ଦେଲେ ଏବଂ ପରଦିନ ନିମନ୍ତେ ଟ୍ରକ୍ ସମ୍ବନ୍ଧରେ କଥାବାର୍ତ୍ତା କରିନେଲେ । ଟ୍ରକ୍‌ଗୁଡ଼ିକ ରାତିରେ ସେଠାକୁ ଚାଲିଯିବ ଏବଂ ସକାଳକୁ କାଠ ବୋଝେଇ ଆରମ୍ଭ ହେଲେ ଦିନକୁ ତିନିଥର କାଠ ଅଣାଯାଇ ପାରିବ । ଏଥିରେ ଉଭୟ ପକ୍ଷର ସୁବିଧା ରହିବ ।

ପ୍ରଥମ ଟ୍ରକ୍‌ର ମାଲିକ ନିଜେ ଏବଂ ଦ୍ୱିତୀୟ ଟ୍ରକ୍‌ର ଜଣେ ପୁରୁଣା କର୍ମଗୃଷ୍ଟ ଭବାନୀଶଙ୍କର ବାବୁଙ୍କ ସହିତ ଟ୍ରକ୍‌ଗୁଡ଼ିକ ଯିବାକୁ ନିର୍ଦ୍ଦେଶ ଦେବାକୁ

ଆସିଲେ । ଏମାନେ ଏଠି ପହଞ୍ଚିବା ପୂର୍ବରୁ ସମସ୍ତ ଶ୍ରମିକ, ଟ୍ରକ୍‌ର କର୍ମଚାରୀ ଏବଂ ଭବାନୀଶଙ୍କର ବାବୁଙ୍କର କର୍ମଚାରୀ ଦୁହେଁ ଟ୍ରକ୍ ନିକଟରେ ଉପସ୍ଥିତ ଥିଲେ । ଭବାନୀଶଙ୍କର ବାବୁଙ୍କ ସହିତ ଯିବାକୁ ନିର୍ଦ୍ଦେଶ ପାଇ ଚାଳକ ଦୁହେଁ ସମ୍ମତି ଜଣାଇଦେଲେ ଏବଂ ଆଗକୁ ବଢ଼ିବାକୁ ଲାଗିଲେ ।

ଶ୍ରମିକମାନଙ୍କ ମୁହଁରେ ମଝିରେ କେତେ ଯେ କଥା ଫୁଟିଛି । ସେମାନେ ନିଜର ଅତୀତକୁ ଅନେକ ଭାବେଇ ଥିଲେ ସୁଦ୍ଧା ଭୁଲି ଯାଉଛନ୍ତି ଏବଂ ଭବିଷ୍ୟତକୁ ସେମାନେ ନିରୀକ୍ଷଣ କରୁନାହାନ୍ତି ଯେ ଅତୀତ ଫେରି ଆସୁଛି । ଜୀବନର ଆପାତତଃ ଉନ୍ନତ ମୁହୂର୍ତ୍ତରେ ମଣିଷର ଶ୍ରେଣୀ ଗୋଟିଏ ଏଠି ମାଦକତାର ନିଶାରେ ଶୋଇ ଯାଇଛି । ଏଠି ସେ ସମ୍ପୃକ୍ତ କୌଣସି ଘଟଣା ପ୍ରତି ଅବଗତ ନୁହେଁ । ମଦନ କିନ୍ତୁ ଏଠି ସହଯାତ୍ରୀ ହୋଇ ସୁଦ୍ଧା ଚାଲିପଥରେ ସେମାନେ ଚାଲୁଥିଲେ ପଥର ପ୍ରାନ୍ତରେ ନିଜେ ଚାଲିଛି । ଜୀବନକୁ ମୃତ୍ୟୁ ପର୍ଯ୍ୟନ୍ତ ସେମାନେ ଚଳାଇ ନେବେ । ସେମାନେ ଆଗାମୀ ପ୍ରତ୍ୟେକ ପଦକ୍ଷେପରେ କେତେ ଯେ ଅତିକ୍ରାନ୍ତ ଯାତ୍ରୀଙ୍କ ଅଭିଜ୍ଞତା ନିଜେ ଲାଭ କରିବାକୁ । ମଦନ ମନରେ ଅନ୍ୟ ଭାବ ସୃଷ୍ଟି କରିଛି ଏବଂ ଏକ ଅପ୍ରକାଶ୍ୟ ଦ୍ୱନ୍ଦ୍ୱରେ ନିଜେ ଚାପି ହୋଇ ଯାଇଛି । ଯିଏକି ମଣିଷ ଭିତରେ ମଣିଷ ସୃଷ୍ଟି ପଥର ଦୂରେ ପରିତ୍ୟକ୍ତ ହୋଇ ସୁଦ୍ଧା ମଣିଷର ସମ୍ମାନାସ୍ପଦ ହେବାର ଗୁଣ ଫୁଟାଇ ଦେଇଛି ପ୍ରତ୍ୟେକ ନିର୍ଭୁଲ ମୁହୂର୍ତ୍ତରେ । ବୁଦ୍ଧି ଧାରୁନାହିଁ ଗରିବର ତ୍ରୁଟି କେଉଁଠି ଏବଂ ଯିଏ ନୁହେଁ ତା'ର ତ୍ରୁଟିଶୂନ୍ୟତା କେଉଁଠି । ନା, ଜଣେ ହୁଏତ ନ ଜାଣି ତ୍ରୁଟି କରୁଥିବ ଅଥଚ ସ୍ୱୀକାରି ଦେଲେ ନିଜକୁ ଦଳିତ ମନେ କରୁଥିବ ଏବଂ ଅନ୍ୟ ଜଣେ ତ୍ରୁଟିଶୂନ୍ୟ ହୋଇ ନିଜକୁ ସମୃଦ୍ଧ କରି ପାରୁଥିବ । ହୋଇପାରେ ଜଣେ ବିପଥରେ ଚାଲି ଅସହାୟ ହୋଇ ନିଜକୁ ନିଷ୍ପେଷିତ ବୋଲି ଅଭିଯୋଗ କରୁଥିବ ଏବଂ ଅନ୍ୟ ଜଣେ ଠିକ୍ ପଥରେ ଚାଲି ନିଜର ସାମର୍ଥ୍ୟ ପରିଚୟ ଦେଇ ନିଜକୁ ଉନ୍ନତ ବୋଲି ପରିଚିତ କରାଉଥିବ । ହୁଏତ ଏଥିରେ ପକ୍ଷପାତିତା ଏବଂ ହେୟମନ୍ୟତା ବି ଥାଇପାରେ ଅବା ପକ୍ଷପାତିତା ତଥା ଅନୁଗୃହୀତ କିମ୍ବା ବାଞ୍ଛିତ ହେବାର ପ୍ରଚ୍ଛନ୍ନତା ନ ଥାଇପାରେ । ମଦନ ନିଜକୁ ସେପରି ଅବହେଳିତ, ନିଷ୍ପେଷିତ ତଥା ଲାଞ୍ଛିତ ମନେକରେ । ସେ ନିଜର ବିବେକକୁ ଯଦିଓ ସେବେ ବି ପଚାରେ, ବିବେକ ବି ଏହି ସେ ତ୍ରୁଟିଶୂନ୍ୟ ଏବଂ ସଠିକ୍ ପଥର ଯାତ୍ରୀ, ହୁଏତ ଅଜ୍ଞତା ଥାଇପାରେ । ମାନବିକତା ଲାଭ କରିବାକୁ ଯଦି ଅଜ୍ଞତାବଶତଃ ଜଣକୁ ବଞ୍ଚିତ କରାଯିବାର ଯଥାର୍ଥତା ଅଛି ତା'ହେଲେ ସେଠି କେହି ବି ଜଣେ ନିଜର ଅଭୀପ୍ସା ପୂରଣ କରିବା ଯଥେଚ୍ଛାଚାର । ଉପଦେଶ ହୁଏତ ସେଠି

ସହନଶୀଳତାର ଉଦ୍ରେକ କରନ୍ତା କିନ୍ତୁ କାହିଁ ସେଇଠି ଅଜ୍ଞତା ଅଛି ସେଇଠି ଅଛି ଯଥେଚ୍ଛାଗୃହୀର ପ୍ରତିକୂଳ ଅବସ୍ଥାର ଅପସାରଣ ନିମନ୍ତେ ମନ୍ଦାନତାର ବଳିଦାନ ।

ମଦନ ଭାବିପାରେ, ଅତୀତରେ ସରକାଠ ବିକିବା ନିମନ୍ତେ ଅନୁମତି ପତ୍ର ମିଳିବାର ବ୍ୟବସ୍ଥା ଯେ ନ ଥିଲା ଏକଥା ନୁହେଁ । ବିନା ଅନୁମତିରେ କାଠ ବିକିବା ଦୋଷ ବୋଲି ସେ ଜାଣେ । ଏଥିନିମନ୍ତେ କିନ୍ତୁ ତା' ପରି ମଣିଷ ନିମନ୍ତେ ଉଦାର ବ୍ୟବସ୍ଥା ନାହିଁ । ଏହା ତା' ପ୍ରତି ମାତ୍ର ଏକ ଅନୁଗ୍ରହ । ସେ କେତେଥର ଗୃହିଣୀ ନିଷ୍ପ୍ରମାଲମ୍ଭୀ ହେବାକୁ; କିନ୍ତୁ ସେ ସୁମାଣୀ, ସମରୁ ଓ ବହିଲି ପରି ମଣିଷର ମୁରବୀ ହୋଇ ସୁଦ୍ଧା ମଣିଷର ମୁରବୀ ପଣିଆଁକୁ ମାନିବାରେ ନିଜର ମୁରବୀତ୍ୱ ଅଚଳ ଅବସ୍ଥାରେ ପହଞ୍ଚି ବସେ । ଯଦ୍ୟପି ସେ ଯେ କୌଣସି ପ୍ରକାରର ମୁରବୀତ୍ୱକୁ ମଣିଷର ମାନିନିଏ ଏବଂ ମାନିବାକୁ ସେ କୁଣ୍ଠାବୋଧ କରିବ, ଏକଥା ସ୍ୱପ୍ନରେ ସୁଦ୍ଧା ସେ କେବେ ବି ଦେଖିନାହିଁ ଅବା ଭବିଷ୍ୟତ ପାଇଁ କଳ୍ପନା ବି କରିନାହିଁ । ନିଜକୁ ବଞ୍ଚାଇ ରଖିବାର ସଫଳତା ଅନ୍ୟ କେତେଜଣଙ୍କ ଭିତରେ ସେ ଦେଖି ପାରିଥିବାରୁ ନିଜର ଜୀବନର ଯେ ମୁହୂର୍ତ୍ତ ଗୁଡ଼ିକୁ ନ ହେଲେ ବି ମୁହୂର୍ତ୍ତ କେତୋଟିର ସମଷ୍ଟିକୁ ଜବତ କରିବାକୁ ବାଧ୍ୟ ହୁଏ । ସେ ପରିତ୍ୟକ୍ତ ମଣିଷ ନୁହେଁ ତେଣୁ ତା'ର ବାଧ୍ୟ ହୋଇ ବଞ୍ଚି ରହିବାଟା କାହିଁକି ଗ୍ରହଣ କରି ନ ପାରିବ । ତେଣୁ ନିୟମର କିଛି ଦୂରରେ ସୀମିତ ଜୀବନ ବିତାଇ ଥିଲା ।

ମଦନର ଧାରଣା ବଦଳି ପାରିବ ନାହିଁ ଯେ ଭବାନୀଶଙ୍କର ବାବୁଙ୍କର କାର୍ଯ୍ୟ ତ୍ରୁଟିଶୂନ୍ୟ । ତାଙ୍କର ଅନୁଗ୍ରହ ସମବେଦନାରେ ଭରା ନୁହେଁ ବୋଲି ସେ ବୁଝିଛି । ବିଭାଗୀୟ କର୍ମଚାରୀମାନେ ତାଙ୍କଠାରୁ କିଛି ଆଶା କରନ୍ତି ବୋଲି ସେ ଅନୁଭବ କରିଛି । ସେଇଠି ଅବାଞ୍ଛିତ ଅଂଶ ଅଛି ସେଇଠି ବ୍ୟତିକ୍ରମ ଅଛି । ଏଣୁ ମଦନ ଆଜି ଭାବପ୍ରବଣ ନୁହେଁ, ସେ ସ୍ୱାଭାବିକତା ଗୃହେଁ । ସେ ଆବଶ୍ୟକତାର ମୂଲ୍ୟାଙ୍କନ କରୁଛି । ସେ ଆଜି ଆଉ ଅଯଥା ଚିନ୍ତା କରୁନାହିଁ, ମଦନ ନିଜକୁ ନିଜେ କହେ ଏବଂ ନିଜ ସର୍ବାଙ୍ଗରେ ନୂତନ ଶକ୍ତି ଦେଖେ ।

ନିଜ ଚିନ୍ତାରେ ଆପେ ଆପେ ପରିବର୍ତ୍ତନ ଆସି ଯାଇଥିବାରୁ ପର ମୁହୂର୍ତ୍ତରେ ମଦନ ପୁଣି ସେଇ ଚିନ୍ତାରେ ନିଜକୁ ନିକ୍ଷେପ କରେ । ଅତୀତରେ ମଦନ ସୁବିଧାରୁ ବଞ୍ଚିତ ହୋଇଥିପାଇଁ ଈର୍ଷାନ୍ୱିତ ନୁହେଁ ତ । ନିଜର ପ୍ରକାଶ୍ୟ ଦୁର୍ବଳତାକୁ ଚପାଇ ଦେବାକୁ ଅନ୍ୟର ଦୁର୍ବଳତା ଅଛି ବୋଲି ଜଣାଇ ଦେବାର ଉଦ୍ଦେଶ୍ୟରେ ସମ୍ଭାବନା ସେ ଖୋଜୁନାହିଁ ତ ? ନିଜର ନୈତିକ ମାନ ବଜାୟ ରଖିବାକୁ ଅନ୍ୟର ନୀତିର

ବ୍ୟକ୍ତିତ୍ୱ ଦେଖାଇ ଦେବାକୁ ସେ ଚାହୁଁନାହିଁ ତ । ମଦନ କହେ ନା, ସେ ପ୍ରତିହିଂସା ପରାୟଣ ନୁହେଁ କମ୍ଵା କାହାର ବିରୁଦ୍ଧରେ ପ୍ରତିଶୋଧ ନେବାକୁ ସେ କେବେ ବି କୌଣସି ଚିନ୍ତା କରିନାହିଁ । ଏପରିକି ଏପରି ଏକ ଯୋଜନାରୁ ନିବୃତ୍ତ ହେବାକୁ ସେ ଉପଦେଶ ଦିଏ । ସେ ଚାହେଁ ନୀରବ ସାଙ୍କେତିକ ପ୍ରୟୋଗ । ଏକମାତ୍ର ଉଦ୍ଦେଶ୍ୟ ନିମନ୍ତେ ଉଦ୍ଦିଷ୍ଟ ନୀତିର ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ପ୍ରୟୋଗ କରାଯିବାରେ ଯେଉଁ ତାରତମ୍ୟ ରହୁଛି ସେଠି ପ୍ରକୃତ ନୀତି ଦୁର୍ନୀତିଗ୍ରସ୍ତ ହିଁ ଅଟେ । ସେ ପୁଣି ଅନ୍ୟର ନୈତିକ ବଳ ଅପହରଣ କରିବ କାହିଁକି ? ଏବଂ ଏକ ଆଦର୍ଶରେ କଳଙ୍କ ଲେପି ଦେବାର ଦୁଃସାହସ କରିବ କାହିଁକି ? ଦୁର୍ବଳ ନିଜକୁ ବଞ୍ଚାଇ ନ ପାରେ କିନ୍ତୁ ଅନ୍ୟ ଜଣେ ଦଳିଦେବ କାହିଁକି ? ଯେଉଁଠି ନିଜକୁ ଦୀର୍ଘଜୀବୀ କରିବାକୁ ଦୁର୍ବଳର ଦଳନ ଆବଶ୍ୟକ ସେଇଠି ସବଳକୁ ଦୀର୍ଘସ୍ଥାୟୀ କରିବାକୁ ପାଳନ କାହିଁକି ? ଯଦି ଏହା ନିଜର ଦୀର୍ଘ ଜୀବନ ନିମନ୍ତେ ସ୍ପୃହଣୀୟ ନୁହେଁ । ଯେଉଁ ପରିମାଣ ଆଳସ୍ୟ ଯୌନିକ କ୍ଷତିକାରକ ଠିକ୍ ସେଇ ପରିମାଣ ପ୍ରାଚୁର୍ଯ୍ୟ ମେଦିନ କ୍ଷତିକାରକ ।

ଟ୍ରକ୍‌ଟି ଭବାନୀଶଙ୍କର ବାବୁଙ୍କର ବସାଘର ନିକଟକୁ ପହଞ୍ଚି ଯାଇଛି । ସମସ୍ତେ ନିଜ ନିଜ ଘରକୁ ବାହାରି ପଡ଼ିଲେ କିନ୍ତୁ ମଦନ ଅପେକ୍ଷା କଲା ଭୁବନକୁ ସାଥି ହୋଇ ଯିବାକୁ । ଠିକ୍ ପରେ ପରେ ଅନ୍ୟ ଟ୍ରକ୍‌ଟି ପହଞ୍ଚିଛି ।

ପରଦିନ ନିମନ୍ତେ ପ୍ରସ୍ତୁତ ହେବାକୁ ନିଜ ନିଜ ଘରକୁ ମଦନ ଏବଂ ଭୁବନ ଗୋଟିଏ ବାଟରେ ଚାଲିଲେ । ରାତ୍ରୀର ଅନ୍ଧକାର ଭିତରେ ବି ପଥଟି ପରିଷ୍କାର ଦେଖାଯାଉଛି । ଦୂରେ ସେହି ପଥର ପୃଷ୍ଠରୁ ମିଳିତ କଣ୍ଠରେ ସ୍ଥାନୀୟ ଅଧିବାସୀର ଗୀତ ଶୁଭୁଛି । ଖୁସିର ଗୀତ । ସେମାନଙ୍କ ସ୍ୱରରେ ମଦ ନିଶାର ଆଭାସ ଫୁଟି ଉଠିଛି । ମଦନ ଏବଂ ଭୁବନ ଯେତେ ଯେତେ ଆଗକୁ ବଢ଼ୁଛନ୍ତି ଗୀତଟି ସେତେ ସେତେ ନିକଟତର ହେଉଛି । ପରସ୍ପରର ବିପରୀତ ଦିଗରେ ସେମାନେ ଚାଲିଛନ୍ତି । ତେଣୁ ସେମାନଙ୍କ ଭିତରେ ନୈକଟ୍ୟ ଦ୍ୱିଗୁଣିତ ହୋଇ ଚାଲିଛି । ସେମାନେ ଯେତେବେଳେ ପରସ୍ପରକୁ ଭେଟିଛନ୍ତି ମଦନ ଏବଂ ଭୁବନ ସେମାନଙ୍କୁ ଚିହ୍ନିଲେ । ପରେ ନିଯୁକ୍ତ ହୋଇଥିବା ଶ୍ରମିକମାନଙ୍କ ଭିତରୁ ସେମାନେ ତିନିଜଣ । ସେମାନଙ୍କ ଗନ୍ତବ୍ୟ ସ୍ଥଳ ସମ୍ପର୍କରେ ଭୁବନ ସେମାନଙ୍କୁ ପଚାରିଲା । ସେମାନେ ପ୍ରଶଂସାମୁଖର ହୋଇ କହିଲେ : ଦଶଟି ଟଙ୍କା ପିଆଇ ଏବଂ ଗୋଟିଏ ଟଙ୍କା ଖେନା ନିମନ୍ତେ ସେମାନେ ବାବୁଙ୍କଠାରୁ ପାଇଥିଲେ । ସେ ଭଲ ଲୋକ । ଗର୍ବର କଥା ସେ ବୁଝି ପାରିଛନ୍ତି । ସେମାନେ ଭାଟିଅ ଦୋକାନରୁ ମଦ ପିଇ ଖୁସିରେ କେତେ ଗପ କରି ଏବେ ଘରକୁ ଫେରୁଛନ୍ତି । ସେମାନଙ୍କୁ ସେମାନେ ପାଇଥିବା ମଜୁରିର ପରିମାଣ ମଦନ ପଚାରିଲା । ଜଣେ କହିଲେ :

ଜଣକୁ ପାଞ୍ଚଟଙ୍କା ଲେଖାଏଁ ପଡ଼ିଲା । ଏକ ଟ୍ରକ୍ ବୋଝେଇ ଗଛ କାଟି ପ୍ରସ୍ତୁତ କଲେ ଶହେ ଟଙ୍କା ମିଳେ । ଆଜି ପ୍ରଥମ ଦିନ । ଏଣୁ ଏକ ଟ୍ରକ୍ କାଠ ଠିକ୍ ହେଲା । କାଲି ଦୁଇ ଟ୍ରକ୍ କାଠ ଯୋଗାଡ଼ ହୋଇଯିବ । ଜଣକୁ ଦଶ ଟଙ୍କା ମିଳିଯିବ । ମଦନ କଥାର ବେଗ ଭିତରେ ମୁକ୍ତି ପରିଷ ନେଲା : ଅଚ୍ଛା ସେ ଗଛଗୁଡ଼ିକ କଟାଯିବା ପୂର୍ବରୁ ହେଗୁଡ଼ିକରେ ଜଙ୍ଗଲ ବିଭାଗର ମୋହର ପଡ଼େ ନା ନାହିଁ । ପଡ଼େନାହିଁ କନ୍ଟ୍ରାକ୍ଟରେ ପଡ଼େ । ମଦନ ନୀରବ ହୋଇଗଲା । ଭୁବନ କହିଲା ବେଳ ମାଡ଼ି ଆସୁଛି । କଥାବାର୍ତ୍ତା ହେବାକୁ ସମୟ ନ ଥାଏ । ଯଦିଓ ନିଜର ସମସ୍ତ ସଉଜାଏ କଥା ସରେନାହିଁ । ଭୁବନର ହାତଧରେ ମଦନ ଚାଲିଲା । ସେ ହୃଷ୍ଟ ଅଥଚ ଉଦ୍‌ବେଳିତ । ତା'ର ମନରେ ଭରିଗଲା ପ୍ରଫୁଲ୍ଲତା । ହୃଦୟରେ ପୂରିଗଲା ଅଦମ୍ୟ ଦମ୍ଭ । ରୋମର ପ୍ରତ୍ୟେକ ମୂଳରେ ନୂତନ ଏକ ଜାଗରଣ ଖେଳିଗଲା । ସେ ଆଜି ସନ୍ଧାନ ନେଇଁ ଯେ ଭବାନୀଶଙ୍କର ବାବୁ ନିୟମ ବହିର୍ଭୂତ କାମ କରିଛନ୍ତି । ଅବଶ୍ୟ ସ୍ଥାନୀୟ ଲୋକେ ପ୍ରତିବାଦ କରିବା ଉଚିତ । ଆବଶ୍ୟକସ୍ଥଳେ ପ୍ରତିରୋଧ ନ କରିବାକୁ ଆଗେଇ ଆସିବା ଉଚିତ । ନିୟମ ବହିର୍ଭୂତ କାର୍ଯ୍ୟକଳାପକୁ ଯେଉଁଠି ସ୍ଥାନୀୟ ଲୋକେ ପ୍ରତିବାଦ କରନ୍ତି ନାହିଁ, ପ୍ରତିରୋଧ କରନ୍ତି ନାହିଁ ସେଠି ତାଙ୍କର ପ୍ରଚ୍ଛନ୍ନ ଉପସ୍ଥିତି ଏକ ଅବାଧ ଉତ୍ସାହ । ସେମାନଙ୍କର ନୀରବସ୍ଥିତି ଉପସ୍ଥିତି ନିୟମ ବହିର୍ଭାବରେ ସକ୍ରିୟ ସହ-ଯୋଗର ଏକ ଜୀବନ୍ତ କାରଣ । ସେମାନେ କିନ୍ତୁ ଜଡ଼ିତ ଥିଲେ ସୁଦ୍ଧା ଅଜ୍ଞତା-ବଶତଃ ନିଷ୍କ୍ରିୟ । ସେମାନଙ୍କ ଉପରେ ଦୋଷ ଲଦି ଦେଇ ଯେଉଁମାନେ ନିଜକୁ ଉଚ୍ଚ ସ୍ତରରେ ଆସୀନ ହୋଇ ଗୌରବର ଅଧିକାରୀ ରୂପେ ନିଜକୁ ସଜାଇ ପାରନ୍ତି । ସେମାନେ ନିଜର ନୈତିକତାକୁ ପ୍ରଶ୍ନ କରନ୍ତି ନାହିଁ ଯେ ବାସ୍ତବତାକୁ ଦଳି ଦେଇଛୁ କଏ ? ଯେଉଁଠି ବାସ୍ତବତା କ୍ଷୁର୍ଣ୍ଣ ହୁଏ ସେଠି ସଂଶ୍ଳିଷ୍ଟ ସମସ୍ତେ ଯେ ବାସ୍ତବ ବନ୍ଧନତାର ବିସ୍ଫୋରଣରେ ବିକ୍ଷିପ୍ତ ହେବେ ନିଶ୍ଚିତ । ଦୃଷ୍ଟି ଗ୍ରାସିତ ମାନର ଚାଳକ ସଙ୍କଟ ମୁକ୍ତ ନୁହେଁ । ମଦନ ହୃଦ୍‌ବୋଧ କରେ ଆଜି ସମସ୍ତ ଶ୍ରମିକ ତା'ର ପଶ୍ଚାଦ୍ ଭାଗରେ ଠିଆ ହୋଇଛନ୍ତି । ସେମାନଙ୍କର ସାମୂହିକ ସମ୍ପଦକୁ, ଜାତୀୟ ସମ୍ପଦକୁ ତା'ର ସଦ୍ ବିନିଯୋଗ ନିମନ୍ତେ ଆବଶ୍ୟକ ଭିତ୍ତିରେ ବଞ୍ଚାଇ ରଖିବାକୁ ହେବ । ସେମାନେ ସ୍ୱର ଉତ୍ତୋଳନ କରିପାରୁ ନ ଥିଲେ ସୁଦ୍ଧା ସ୍ୱର ମିଳେଇ ଚାଲିଛନ୍ତି ।

ସେ ଦୁହେଁ ପହଞ୍ଚି ଯାଇଛନ୍ତି ଘର ନିକଟକୁ । ଭୁବନ ନିଜ ଘରକୁ ଯିବାକୁ କହୁଛି । ମଦନ ହଁ କହୁଛି ଏବଂ ଚାହିଁଛି ଆକାଶକୁ ଏକ ନିଃଶ୍ୱାସ ଛାଡ଼ିବାକୁ । ନିଜର ସମସ୍ତ ମନୋଭାବକୁ ସେ ଯେପରିକି ବାନ୍ଧି ଦେବାକୁ

ଚାହେଁ ବାୟୁମଣ୍ଡଳରେ ଉର୍ଦ୍ଧ୍ୱରେ । ମଦନ ଆକାଶରେ ଦେଖେ ବହୁସଂଖ୍ୟକ ତାରା ମିଞ୍ଜି ମିଞ୍ଜି ଜଳୁଛନ୍ତି । ସେମାନେ ଯେପରିକି ଲଢ଼ିଯିବେ କିନ୍ତୁ ଲିଭୁ ନାହାନ୍ତି ଅଥବା ଅନ୍ଧକାରର ଶରୀରକୁ ଆଲୋକିତ ବି କରି ପାରୁନାହାନ୍ତି । ଅଷ୍ଟମୀର ଚନ୍ଦ୍ର ଉଦୟ ହେବାକୁ ଅଳ୍ପ ସମୟ ବାକିଅଛି । ସେତେବେଳେ ଅନ୍ଧକାର ଚାଲିଯିବ ଆଉ ଚନ୍ଦ୍ରିକାରେ ନଜର ପହଞ୍ଚି ପାରୁଥିବା ପ୍ରକାଶ ବିକିରଣ କରୁଥିବ ଓ ଏମାନେ ମିଞ୍ଜି ମିଞ୍ଜି ହୋଇ ଜଳୁଥିବେ ।

ମଦନ ସୁମାନୀକୁ ଡାକୁଛି । ପ୍ରଥମ ଡାକଟି ସ୍ୱପ୍ନରେ ସୁମାନୀ ଶୁଣିଛି । ଦ୍ୱିତୀୟ ଡାକରେ ସେ ଜାଗ୍ରତ ହୋଇଛି । ତୃତୀୟ ଡାକ ମଦନର ଶେଷ ଡାକ । ସୁମାନୀ ଶୁଣିଛି ପରିଷ୍କାର ଭାବରେ ଏବଂ ବୁଝିଛି ସେ । ମଦନ ଭିତରକୁ ଆସି ଯିବାକୁ ଡାକୁଛି । ସୁମାନୀ ଉଠୁଥିବାର ସୂଚନା ଦେଇଛି । ମଦନ ନିଜର ଡାକରା ବନ୍ଦ କରିଛି । ଡାକରା ଶୁଭିଛି ସେ ଜାଣି ନେଇଛି । ମୁଣ୍ଡ ପାଖର ଶେଯତଳୁ ଦିଆସିଲି ବାହାର କରି ଡିବିରିଟିକୁ ଜଳାଇ ଦେଲା । ମଦନକୁ ଆଲୋକର ସୁବିଧା ଦେବାକୁ ନିଜେ ଆଲୋକିତ ହୋଇଛି । ସୁମାନୀ ଝିଙ୍କାଟା ଖୋଲି-ଦେଲା । ସୁମାନୀ କୋଠରୀକୁ ପଶିଛି ଯେତେବେଳେ ଦୃଷ୍ଟି ଦୌଡ଼ି ଯାଇଛି ସମରୁ ଏବଂ ଦହଲୁ ଉପରକୁ । ଦୁହେଁ ସୁମାନୀର ଖଟରେ ଶୋଇ ଯାଇଛନ୍ତି । ମା'ର ମୁଣ୍ଡ ପାଖରେ ଦହଲୁ ଏବଂ ଗୋଡ଼ ପାଖରେ ସମରୁ ।

ସୁମାନୀ ଡିବିରିଟାକୁ ହାତରେ ଉଠାଇ ଆଣିଛି ଏବଂ କୋଠରୀରୁ ବାହାରିବା ଉଦ୍ଦେଶ୍ୟରେ ପାଦ ବଢ଼ାଇଛି । ମଦନ ସୁମାନୀକୁ ସେ କ'ଣ କରିବାକୁ ବଢ଼ୁଛି ବୋଲି ପଚାରିଲା । ସୁମାନୀ ଖିଆପିଆର ବ୍ୟବସ୍ଥା କରିବାକୁ କହୁଛି । ରାତ୍ରୀ ବହୁତ ହେଲାଣି ଏବଂ ଭୋକ ଜଳି ଯାଇଥିବ ନିଶ୍ଚୟ । ମଦନ କହିଲା : ଦିନକର କାମ କରିସାରି ସେ ଖାଇପିଇ ଫେରୁଛି । ଡିବିରିଟା ଲିଭାଇ ଦିଆଯାଉ ଅଯଥାରେ ଜଳୁଥିବ କାହିଁକି ? ସୁମାନୀ ଡିବିରିଟା ତଳେ ଥୋଇ-ଦେଲା । ସେ ମଦନର କଥାକୁ ବିଶ୍ୱାସ କରୁଛି । ସେ ଜାଣିଛି ଯେ ଗଛ କଟାରେ ଖାଇବାର ସୁବିଧା କରାଯାଇଛି । ଶୋଇବା ନିମନ୍ତେ ପ୍ରସ୍ତୁତ ହେବାକୁ ସୁମାନୀ ସ୍ନେହଭରା ସ୍ୱରରେ ସମରୁକୁ ଦୁଇଥର ଡାକ ପକାଇ ସାମାନ୍ୟ ଥାପୁଡ଼ି ଦେଇ ମଦନର ଖଟରେ ଶୁଆଇ ଦେଲା । ନିଜର ଖଟରେ ବସିପଡ଼ି ସୁମାନୀ ଡିବିରିଟା ଲିଭାଇ ଦେଲା ଏବଂ ମଦନ ଅନ୍ଧାର ଭିତରେ ନିଜ ଖଟରେ ଶୋଇ ଯିବାକୁ ଲମ୍ବ ହୋଇଛି ।

ମଦନ ଯଦିଓ କ୍ଳାନ୍ତ ସେ ଶୋଇ ପାରୁନାହିଁ । ସେ ସମସ୍ତଙ୍କୁ ଏକତ୍ରିତ କରି ପ୍ରତିବାଦ କରିବାକୁ ଚାହେଁ । ସେମାନେ କେହିହେଲେ ଏ କାମ କରିବେ

ନାହିଁ । ଯଦି ଭବାନୀଶଙ୍କର ବାବୁ ଅନ୍ୟଅର୍ତ୍ତ୍ଵ ତୃମିକ ଅଣିବେ ତା'ହେଲେ ତ ଏମାନଙ୍କ ପ୍ରତିବାଦ ପ୍ରତିବାଦରେ ରହିବ ଅଥଚ ସେମାନେ ନିଜର ଉଦ୍ଦେଶ୍ୟକୁ ଫଳପ୍ରଦ କରିନେବେ । ତା'ହେଲେ ଏମାନେ ମିଳିତ ଭାବରେ ପ୍ରତିରୋଧ କରିବେ କିନ୍ତୁ ଏମାନଙ୍କୁ ଅସନ୍ନ କ୍ଷୁଧାରୁ କିଏ ବଞ୍ଚାଇ ରଖିବ ? ସେଠି ତ ବିନା ପାରିଶ୍ରମିକରେ ଅଗେଇବାକୁ ହେବ । ଏମାନେ ବିଭାଗୀୟ କର୍ମଚାରୀମାନଙ୍କୁ ପ୍ରତିରୋଧ କରିବାର ଶକ୍ତି ବି ତ ରହିବା କଥା । ଯେତେବେଳେ ସେ ସ୍ତବ୍ଧ ହୋଇଯାଏ ଚକ୍ଷୁରେ ଆକାଶଟା ଝଲସି ଯାଏ । ଅନେକ ତାରକା ଭିତରେ ନିଜର ସାଥିମାନଙ୍କୁ ଦେଖେ ଆଉ ନିଜକୁ ସ୍ପଷ୍ଟ ଦେଖେ ଆପାତତଃ ଏକ ବଡ଼ ତାରକା ଭିତରେ । ଚନ୍ଦ୍ର କିନ୍ତୁ ଉଦୟ ହୋଇନାହିଁ ଏବଂ ଆକାଂକ୍ଷିତ କ୍ଷେତ୍ରରେ ଆଲୋକ ବିସ୍ତୃତ ହୋଇନାହିଁ । ମଦନର ମନରେ ବସନ୍ତ ବାବୁଙ୍କ କଥା ମନେପଡ଼େ; କିନ୍ତୁ ମଦନ ଅନୁଧ୍ୟାନ କରି ଦେଖେ ସେ ସୂର୍ଯ୍ୟ । ସେ ମହାନ୍ ଆଲୋକ ପ୍ରଦାନ କରେ ସତ କିନ୍ତୁ ତା' ରୂପ ତ ଦୂରର କଥା, ଏପରିକି ଚନ୍ଦ୍ର ନିଷ୍ପ୍ରଭ ରହିଯାଏ । ମଦନ ନିଜ ପରିବେଶରେ ଖୋଜିଛି ଅନେକ; କିନ୍ତୁ ପାଇଛି କମ୍ । ତେଣୁ ସେ ସାମୟିକ ପ୍ରତିବାଦ କିମ୍ବା ପ୍ରତିରୋଧ କଥା ଆଉ ଚିନ୍ତା କରିବାକୁ ଅଗ୍ରସର ହେଉନାହିଁ । ସେ ନିଜେ ଆଉ କାମଶାଳାକୁ ଯିବନାହିଁ, ଏହା ହିଁ ହେବ ତା'ର ପ୍ରତିବାଦ ଏବଂ ପ୍ରତିରୋଧ ବା କରିବ କାହିଁକି ବା କିପରି କରିବ, କେତେବେଳେ ? କେତେବେଳ ପର୍ଯ୍ୟନ୍ତ କରିବ ଏବଂ କାହାପାଇଁ··· ?

ଏବେ ମହୁଲ ବେଶି ପଡ଼ିବାକୁ ଆରମ୍ଭ କଲାଣି । ସେ ସୁମାନୀ ସାଙ୍ଗେ ମହୁଲ ଗୋଟାଇବ । ନିଜର ପାରିଶ୍ରମିକ ସେ ନିଶ୍ଚୟ ପାଇବ । ଏ କାମ ସ୍ତ୍ରୀ ଲୋକ ପକ୍ଷରେ ଯଥେଷ୍ଟ ହେଲେ ବି କେବଳ ଯେ ସ୍ତ୍ରୀ ଲୋକ ନିମନ୍ତେ ଉଦ୍ଦିଷ୍ଟ ଏପରି କିଛି ତ ନାହିଁ । ପରମ୍ପରା ଅନୁସୃତ ବୃତ୍ତିର ବ୍ୟତିକ୍ରମ ଯେ ମାତର ବ୍ୟତିକ୍ରମ କୁହାଯାଇ ନ ପାରେ । ହୁଏତ ବିଶ୍ୱାସର ପରିବର୍ତ୍ତନ କୁହାଯିବ କିନ୍ତୁ ବିଶ୍ୱାସ ଯେ ଉପସ୍ଥିତ ପରିଚୟ ଦ୍ୱାରା ପ୍ରଭାବିତ । ନିଜର ଉପାର୍ଜନ ଆବଶ୍ୟକ । ତା'ର ସାମନାରେ ସୁଲଭ ମହୁଲର ବହୁସଂଖ୍ୟକ ଗଛର ଜଙ୍ଗଲ ଲମ୍ବି ଯାଇଛି ଯଥେଷ୍ଟ ଓସାରରୁ । ସେ ଏହା ହିଁ କରିବ । ସମସ୍ୟାକ୍ରମେ ମଦନ ଶୋଇ ଯାଇଛି ।

ଖୁବ୍ ସକାଳୁ ଫୁଲ୍‌ଫୁଲରୁ ମଦନର ଅଗଣାରୁ ମଦନକୁ ଭୁବନ କାମଶାଳକୁ ଯିବାକୁ ଡାକିଛି । ମଦନ ଅବଶ୍ୟ ଘର ଛାଡ଼ିବାକୁ ପ୍ରସ୍ତୁତ ହୋଇଗଲଣି । ସୁମାନୀ ବି ଘରୁ ବାହାରକୁ ଯିବାକୁ ପ୍ରସ୍ତୁତ ହୋଇଯାଇଛି । ଭୁବନର 'ମା' ପାଖକୁ ଯାଇ କେବଳ ସେ କହିଥାନ୍ତା ତାଙ୍କ ଘରକୁ ଟିକିଏ ଦୃଷ୍ଟି ଦେବାକୁ । ସେ ଶୀଘ୍ର ଫେରି ଆସିବ । ଭୁବନର ମା' ଅବଶ୍ୟ ହଁ ଭରିବେ ତେଣୁ ସେ ନିଜକୁ

ପ୍ରସ୍ତୁତ କରି ନେଉଛନ୍ତି । ଭୁବନର ମା' ଏତେ ବୁଢ଼ୀ ନୁହନ୍ତି । ତାଙ୍କର ଦୃଷ୍ଟିଶକ୍ତି ବିଶେଷ କିଛି ଲୋପ ପାଇନାହିଁ । କୌଣସି ବିଶେଷ କାମ ନ ପଡ଼ିଲେ ସେ ବାହାର କାମରେ ଯାଆନ୍ତି ନାହିଁ । ତାଙ୍କ କାମ ବୋଇଲେ ପାଖାପାଖିରୁ ଶାଗ ସଂଗ୍ରହ ଘର ସାଉଁଟି କରିବା ଏବଂ ଘରର ଛୁଆମାନଙ୍କୁ ସମ୍ଭାଳିବା । ଛୁଆ ମା' ସାଙ୍ଗରେ ଗଲେ କର୍ମ ତତ୍ପରତାରେ ବାଧା ଆସେ । ସେ କେତେକ ଥର ମଦନର ଘର ଜଗି ଦେଇଛନ୍ତି । ଖାଲି ଘରେ ଚୋରି ହେବାଟା ଏମାନଙ୍କ ସାଧାରଣ କଥା । ଅନେକେ ଘର ଖୋଲା କରି ଯାଆନ୍ତି ନାହିଁ । ସୁମାନୀ ବି ଘର ଛାଡ଼ିବାକୁ ସହଜରେ ରାଜି ହୁଏନାହିଁ । ଯଦି ଭୁବନର ମା' ରାଜି ହୁଅନ୍ତି ନାହିଁ । ଏବେ କିନ୍ତୁ ଭୁବନର ମା' ପ୍ରାୟ ଘରେ ରହନ୍ତି । ଭୁବନ ଜଙ୍ଗଲକୁ ଯାଏ ଆଉ ଭୁବନର ସ୍ତ୍ରୀ ବି ଜଙ୍ଗଲକୁ ମହୁଲ ଗୋଟାଇବାକୁ ଯାଏ । ତେଣୁ ବୁଢ଼ୀ ଘର ଜଗନ୍ତି ଏବଂ ଘରର ଛୁଆମାନଙ୍କୁ ଖେଳାନ୍ତି । ସାଙ୍ଗରେ ଗ୍ରେଣ୍ଟ କାଠ ଚକ ଅବା ଗେଣ୍ଡୁଆ ଚକ ନେଇ ଛୁଆମାନେ ଖେଳନ୍ତି । ବେଳେବେଳେ ଫିରିମରି ଉଡ଼ାନ୍ତି ।

ମଦନ କାନରେ ଭୁବନର ଡାକ ଶୁଭିଛି । ଘରୁ ବାହାରୁ ବୋଲି ଜଣାଇ ଦେଲା । ମଦନ ଶୀଘ୍ର ବାହାରକୁ ଆସି ଭୁବନକୁ ସାକ୍ଷାତ କଲା । ମଦନକୁ ପ୍ରସ୍ତୁତ ଅବସ୍ଥାରେ ଦେଖି ବିଳମ୍ବ ଯେପରି ନ ହୁଏ ଶୀଘ୍ର ଯିବାକୁ କହିଲା । ମଦନ କିନ୍ତୁ ପ୍ରତ୍ୟାଖ୍ୟାନ କଲାଭଳି କଥାରେ ନ କହି କହିଲା : ସେ ଏ ପ୍ରକାର କାମରେ ଅଭ୍ୟସ୍ତ ନୁହେଁ ଏଣୁ ସେ କ୍ଲାନ୍ତ ତଥା ଅବସନ୍ନ ହୋଇ-ଯାଇଛି । ଆଜିଠାରୁ ସେ ଭିନ୍ନେ କାମ କରିବ । ଯେ କୌଣସି ପ୍ରକାରେ ଦୈନନ୍ଦିନ ଖର୍ଚ୍ଚ କିଛି ଚଳିଗଲେ ହେଲା ।

ଚିନ୍ତାଶୀଳ ହୋଇ ମଦନ ଯେଉଁ ବେଶରେ ନିଜର ମନୋଭାବ ପ୍ରକାଶ କରେ ସେସବୁ ଉଭେଇ ଯାଇଛି ଯେତେବେଳେ ଭୁବନ ଆଗରେ ଆଉ ଯିବାକୁ ଚାହୁଁନାହିଁ । ସେ ମନେ କରୁଛି ସତେ ଯେପରିକି ତା' ସହିତ ଯିବାକୁ ଭୁବନକୁ ସେ ପ୍ରତ୍ୟାଖ୍ୟାନ କରି ଦେଉଛି । ଭୁବନର ସର୍ବାଙ୍ଗରେ ସେ ଦେଖିଛି ବାସ୍ତବ ସରଳତା ଏବଂ ଶରୀରର ପ୍ରତ୍ୟେକ ଅବୟବ ଏତେ କୋମଳ ଜଣାଯାଉଅଛି ଯେ ସତେ ଯେପରି ମଦନର କଥାର ମାମୁଲି ଧାରରେ ସେସବୁ କଟିଯିବ । ମଦନ ନିଜର ସାଥିକୁ କ୍ଷତ କରିବାକୁ ଚାହେଁନାହିଁ । ମଦନ ହସିଲା ମୁହଁରେ ନିଜର ଅଭିପ୍ରାୟ ଜଣାଇଛି । ପ୍ରକୃତରେ ସେ ଏ କାମ ପାଇଁ ନୂଆ । ଏଣୁ ଭୁବନ ବି ନିଜକୁ ଏକମତ କରାଇ ନେଲା । ଭୁବନ କହିଲା : ତୁମେ ନିଶ୍ଚୟ କ୍ଲାନ୍ତ ଶ୍ରାନ୍ତ ହୋଇ ଯାଇଥିବ ଏଣୁ ଅଯଥା ବିଳମ୍ବ ନ କରି ଆଗକୁ ସେ ପାଦ ବଢ଼ାଇଲା । ମଦନର ମୁଖମଣ୍ଡଳରେ ଗ୍ଲାସ୍ୟ ଖେଳିଗଲା । ଆଜି ସେ ଯାଇପାରି ନ ଥିବାରୁ ଭୁବନକୁ କଷ୍ଟ ତ ହୋଇ ନ ଥିବ ? ଅବଶ୍ୟ ହୋଇଥିବ କିନ୍ତୁ ତା'ର ହୃଦୟ

ହସେ ନାହିଁ । କାମଶାଳରେ ଏବଂ ଭବାନୀଶଙ୍କର ବାବୁଙ୍କର ଉପସ୍ଥିତିରେ ମନ ବି କିଛି କହେନାହିଁ । ମଦନ ମନ ଆଉ ହୃଦୟକୁ ପାଶୋରି ଦିଅନ୍ତି ଯତି ବିବେକ ତା'ର ଚେତନାଶୂନ୍ୟ ହୋଇଯାନ୍ତି । କିନ୍ତୁ ବିବେକ ଜାଗ୍ରତ ହୋଇ ଶରୀରର ସମସ୍ତ କ୍ରିୟାକୁ ବାରମ୍ବାର ଜଣାଇ ଦିଏ ।

ଭୁବନ ପାଖରୁ ମଦନ ଲେଉଟି ଆସିଛି ଏବଂ ସୁମାନୀକୁ କିଛି ନ କହି ନିସ୍ପୃହ ଭାବରେ ପିଣ୍ଡାରେ ବସିଛି । ମନରେ ତା'ର ବୈପ୍ଳବିକ ଭାବ ଲୁଚିରହିଛି ସତ କିନ୍ତୁ ଜାଗ୍ରତ ହେଉନାହିଁ ବରଂ କାମକୁ ନ ଯିବାକୁ ପ୍ରତିବାଦ କରି ଅନୁଭବ କରୁଛି ଯେ ସେ ଏକଲା ହୋଇଯାଇଛି । ସୁମାନୀ ପାଖରେ ଏକଥା ପ୍ରକାଶ କରିବାକୁ ସମର୍ଥନ ବି ହୃଦୟ ଭିତରେ ପାଇପାରୁ ନାହିଁ । ହୁଏତ ନିଜର ପରିବେଷ୍ଟନୀକୁ ଅନୁଧ୍ୟାନ କରି ସୁମାନୀ କହିପାରେ ଏତେବଡ଼ କଥା କହି କି ଲଭ । ଯେଉଁ କଥା କହି ନିଜେ ସମ୍ଭାଳି ହୁଏନାହିଁ ସେ କଥା ନିଜେ ନ କହି ଅନ୍ୟ ଜଣେ କହିଲେ ବରଂ ହଁ ଭରି ଏକ ସନ୍ଦିଗ୍ଧ ପରିବେଶ ସୃଷ୍ଟି କରିଯାଇ ପାରିବ । ମଦନକୁ ମୃଦ ସୁମାନୀ ପଚାରେ, ଏକ ସଫଳ ଉଦ୍ୟୋଗ ନିମନ୍ତେ ଏକାକୀ ଅଗ୍ରସର ହୋଇପାରିବାର ଆତ୍ମବିଶ୍ୱାସ ତଥା ଆତ୍ମବଳ ତା' ପାଖରେ ଅଛି କି ନାହିଁ । ମଦନ ନିଜକୁ କାଠ ଭରିଆ ରୂପେ ଦେଖେ ଏବଂ ସେମାନେ ସମସ୍ତେ ସମାନ ସ୍ୱାର୍ଥରେ କପରି ଜଡ଼ିତ ମନେକରେ । ଅଦୃଷ୍ଟ ଉପରେ ନିଜର ସମର୍ଥନକୁ ମଦନ ଛାଡିଦେଇ ସୁମାନୀକୁ କହିଛି : ଆଜିଠାରୁ ସେ ଗଛ କାଟିବାକୁ ଯିବନାହିଁ । ଯିଏ ଗଛଟିଏ ଲଗାଇ ନାହିଁ ଯିଏ ଗଛ କାଟିବାର ଅଧିକାର ପାଇବ କେଉଁଠୁ ? ତାକୁ ବେଶ୍ ଖାଇବାକୁ ଆଉ ଭଲ ମୁଠାଏ ସେଠି ମିଳେ ସତ । ହେଲେ ବେଶୀ ଖଟିବାକୁ ପଡ଼େ । ସେ ଅଭ୍ୟସ୍ତ ନୁହେଁ ଏଣୁ ବସି ନ ରହି ଅନ୍ୟ କିଛି କାମ କଲେ ଭଲ । ସୁମାନୀ ବି ଜାଣେ ମଦନ ଏ କାମ କରିବାରେ ଅଭ୍ୟସ୍ତ ନୁହେଁ । ତେଣୁ କାହିଁକି ମଦନ କାମକୁ ନ ଯିବ କହୁନାହିଁ କିନ୍ତୁ ଆଉ କେଉଁ କାମ ସେ କରିବ ପଚାରିଲା । ସୁମାନୀ ସହିତ ମହୁଲ ଗୋଟାଇବାକୁ କହିଛି ମଦନ ଏବଂ ଯେ କୌଣସି କାମରେ ବି ପେଟ ପୋଷିବା କଥା । ସୁମାନୀ ମୁରୁକି ହସିଛି ଏବଂ ମଦନକୁ ଏ କାମରେ ଆଗ୍ରହ ଅଛି କି ବୋଲି ପଚାରିଛି । ମଦନ ହଁ ଭରିଛି । ଯେଉଁ କାମ ବି ହେଉ ଅନାଗ୍ରହ ଏବଂ ସଙ୍କୋଚ ଥିଲେ ସେ କାମ କରିବାକୁ ଜଣେ ସମ୍ମତି ପ୍ରକାଶ କରିବ କାହିଁକି ? ତଥାପି ସୁମାନୀ ମଦନକୁ କହିଲା : ଆଜିକି ସେ ଘରେ ରହୁ ଏବଂ ଦହିଲୁକୁ ବି ସେ ସାଙ୍ଗରେ ନେବନାହିଁ । ଗତଦିନ ଝୁଲପଲାରୁ ସେ କାମଶାଳକୁ ଗଲା ଏଣୁ ଦହିଲୁକୁ କାଖେଇ ସେ ଗତକାଲି ମହୁଲ ଗୋଟେଇ-ବାକୁ ଗଲା ଏବଂ ଆଜି ବି ଯାଇଥାନ୍ତା । ଭୁବନର ମା'କୁ ସମରୁକୁ ଏବଂ ଘରକୁ

ଦେଖିବାକୁ କହିଥାନ୍ତି । ମଦନ ସେ ଘରେ ରହୁଛି ଏଣୁ ଛୁଆଙ୍କ ପାଇଁ ଏବଂ ଘରପାଇଁ ବିଶେଷ ବ୍ୟବସ୍ଥାର ଆବଶ୍ୟକତା ନାହିଁ । ଆଜି ଅନ୍ୟ ଦିନ ଅପେକ୍ଷା ସୁମାନି ବିଳମ୍ବରେ ଜଙ୍ଗଲକୁ ଗଲି ।

ମଦନ ମନର ବିକ୍ଷୋଭ ଭାବକୁ ଅପ୍ରକାଶ୍ୟ ଭାବେ ରଖିଲି । ବାରଣ୍ଡା କାନ୍ଥରେ ପିଠିକୁ ଆଉଜି ଦାହାଲୁ ପ୍ରତି ଦୃଷ୍ଟି ନିବେଶ କଲି ।

ଭୁବନ କାମଶାଳାରେ ପହଞ୍ଚିଛି ଅଥଚ ମଦନ ନାହିଁ । ଭୁବନକୁ କର୍ମଚାରୀ ଜଣକ ମଦନ ସମ୍ପର୍କରେ ପଚାରିଲେ । ଭୁବନ କହିଲି : ଆଜି ମଦନ ଆସି ପାରିବ ନାହିଁ । ସେ କ୍ଲାନ୍ତ ହୋଇ ଯାଇଛି । ସେ ନିଜେ ଜାଣେ ଯେ ଏପରି କାମ ପୂର୍ବରୁ ସେ କରି ନ ଥିଲି ।

କର୍ମଚାରୀ ଜଣକ ଜାଣନ୍ତି ଏ ସମୟରେ କାମଶାଳାରୁ ଜଣେ ଅନୁପସ୍ଥିତ ରହିବା ଆଦୌ ଅନୁକୂଳ ନୁହେଁ । ଅନୁପସ୍ଥିତ ଜଣେ ସାଧାରଣ ଶ୍ରମିକର ହୋଇଥିଲେ ବି ଏକ ସଙ୍କଟ ସୃଷ୍ଟି କରି ଦେଇପାରେ । ଭୁବନର କଥିତମତେ ମଦନର ଅନୁପସ୍ଥିତିରେ ଅବଶ୍ୟ ସେତେ ଗୁରୁତ୍ୱ ନ ଥିବାର ସମ୍ଭାବନା ସେ ଦେଖି ପାରିଥିଲେ ସୁଦ୍ଧା ସେ ସାଙ୍ଗେ ସାଙ୍ଗେ ଭବାନୀଶଙ୍କର ବାବୁଙ୍କୁ କଥାଟା ଜଣାଇ ଦେଲେ । ସେ ଭବାନୀଶଙ୍କର ବାବୁଙ୍କୁ ବି ଜଣାଇ ଦେଲେ ଯେ ମଦନ ଏ ପ୍ରକାର କାମ କେବେ କରି ନ ଥିବାରୁ କ୍ଲାନ୍ତ ଅନୁଭବ କରୁଛି ତେଣୁ ଆସିପାରି ନାହିଁ ।

କଥାର ପ୍ରାରମ୍ଭରେ ଭବାନୀଶଙ୍କର ବାବୁ କର୍ମଚାରୀର କଥାକୁ ହାଲୁକା ଭାବରେ ଶୁଣୁଥିଲେ ଏବଂ ଟ୍ରକ୍‌ର କାଠ ବୋଝେଇ କରୁଥିବା ଶ୍ରମିକମାନଙ୍କ ଉପରେ ଦୃଷ୍ଟି ରଖିଥିଲେ କିନ୍ତୁ ଜଣେ ଅନୁପସ୍ଥିତ ଥିବା ଜାଣି ଗମ୍ଭୀର ହୋଇଗଲେ । ବାବୁଙ୍କର ଏ ଗମ୍ଭୀରତା ଭିତରେ କର୍ମଚାରୀ ଜଣକ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ଉପଯୁକ୍ତ ସମୟରେ ମାଲିକଙ୍କ ଉପଯୁକ୍ତ କାମ କରି ପାରିଥିବାରୁ ସେ ଭବାନୀଶଙ୍କର ବାବୁଙ୍କର ପ୍ରଶଂସାର ପାତ୍ର ନିଶ୍ଚୟ । ଏ ମୁହୂର୍ତ୍ତରେ କିନ୍ତୁ ଉଭୟେ ନୀରବ ।

ନୀରବତା ଭଙ୍ଗ କରି ପ୍ରଥମେ କର୍ମଚାରୀ ଜଣକ କହିଲେ : ମଦନର ଅନୁପସ୍ଥିତିଟା ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ପରି ଜଣାପଡ଼େ । ସେ ଯଦିଓ ଏକ ଗମ୍ଭୀର ଲୋକ ତଥାପି ସରଳ ଓ ଶାନ୍ତ । ମଦନର ବ୍ୟବହାରରେ ମଧ୍ୟ କୌଣସି ତ୍ରୁଟି ଲକ୍ଷ୍ୟ କରାଯାଇ ନାହିଁ । ଅବଶ୍ୟ ସେ ତୋଷାମଦ କ'ଣ ଜାଣେନାହିଁ କିମ୍ବା କେବେ ବି ଏହାର ପରିପୋଷକତା କରୁଥିବା ଅନୁମାନ କରାଯାଇ ନାହିଁ ।

କର୍ମଚାରୀଙ୍କ କଥା ସ୍ପଷ୍ଟ ଭାବରେ ଭବାନୀଶଙ୍କର ବାବୁଙ୍କର କାନରେ ପଶିଛି । ସବୁକଥା ଏ କାନରେ ପଶି ସେ କାନରେ ବାହାରି ଯାଉଛି ସିନା, ମଦନ ଉତ୍ତମ ବ୍ୟବହାର କରେ, ସେ ଗମ୍ଭୀର ଏବଂ ତୋଷାମଦ କ'ଣ ଜାଣେ ନାହିଁ । ଏସବୁ କଥା ତାଙ୍କ ମସ୍ତିଷ୍କ ଭିତରେ ପଶି ଯାଇଛି । ତାଙ୍କର ଅଙ୍ଗରେ ଖେଳି ଯାଇଛି । ନିଜର କର୍ମଚାରୀଙ୍କୁ ସେ ମଦନ ନିକଟକୁ ଯିବାକୁ କହିଲେ । ମଦନକୁ କୁହାଯାଉ ଆଉ ତିନି ଚାରି ଦିନ ନିମନ୍ତେ ସେ ବା କେତେ କ୍ଲାନ୍ତ ଅନୁଭବ କରିବ । ଯେତେବେଳେ ସେମାନେ କାମଟା ଆରମ୍ଭ କରିଛନ୍ତି ଶେଷ କରି ଦିଅନ୍ତୁ । ଏ କାମଟା ସବୁଦିନ ପାଇଁ ତ ନୁହେଁ । ତା' ପରେ କେଉଁ ବର୍ଷ ଏଠି ତ କେଉଁ ବର୍ଷ ଅନ୍ୟଠି । ଅନ୍ୟଠି କାମ ପଡ଼ିଲେ ଅବଶ୍ୟ ଜଣାଶୁଣା କର୍ମଚାରୀଙ୍କୁ ଡକାଯାଏ କାରଣ ତାଙ୍କ ଇଚ୍ଛାର କଥା । ଭବାନୀଶଙ୍କର ବାବୁ ଅଥଚ ମନେ ମନେ ସ୍ଥିର କରୁଛନ୍ତି ଯେ ଏଥରକ ମଦନ ଶେଷ ପର୍ଯ୍ୟନ୍ତ କାମକରୁ ଅନ୍ୟ ଥରକ ତା' ପରି ପ୍ରକୃତର ଲୋକକୁ କାମ ସମ୍ପର୍କରେ ବି ଜଣାଇବା କଥା ନୁହେଁ ।

କର୍ମଚାରୀ ଜଣକ ମଦନ ପାଖକୁ ଚାଲିଲେ । କାଲେ ମଦନ ଅନ୍ୟସ ଯାଇ ଥିବ, ଗଛକଟାର ଅନୁଭୂତି ପ୍ରକାଶ କରୁଥିବ । ହୁଏତ ସେ ନିର୍ଭୀକ ଭାବରେ କହୁଥିବ ଅଥବା ଦୁଃଖ କିମ୍ବା ସୁଖ କଥା କହୁଥିବ । କେହି ଜଣେ ସେଇଥିରୁ କିଛି ବାହାର କରି ଅନର୍ଥ ବି ସୃଷ୍ଟି କରିପାରେ । ମାନବ ସୁଲଭ ପ୍ରକୃତିବଶତଃ ନିଜର ତିକ୍ତ ଅନୁଭୂତି ସବୁ ବର୍ଣ୍ଣନା କରି ଚାଲିଥିବ ମଦନ ନିଜର ସ୍ଥିତିକୁ ପ୍ରତିପାଦନ କରିବା ନିମନ୍ତେ ।

ମଦନ କୋଠରୀ ଭିତରେ ଦଉଡ଼ିକୁ ଶୁଆଇ ଦେଇଛି । କୋଠରୀର କବାଟଟା ସେ ଖୋଲି ଦେଇଛି ଏବଂ ସମରୁ ସହିତ ଖେଳୁ ଖେଳୁ ପିଣ୍ଡାରେ ବସିଛି । ମଦନର ପିଠିରେ ଝୁଲି ଯାଇଛି ଯେତେବେଳେ ସମରୁ ହସି ଉଠିଛି ଆଉ ଲୁଚି ରହିଥିବା ଅନନ୍ଦର ଏକ ନିର୍ମଳ ହସ ଫୁଟି ଉଠୁଛି ମଦନର ମୁହଁରେ, ଫୁଟି ଉଠେ ସାରା ଶରୀରରେ । ସମରୁ କେତେ ଯେ କଥା ମଦନକୁ ପଚାରେ ଏବଂ ମଦନ ଯାହା ଜାଣେ କହେ । କେତେଦିନ ପରେ ସମରୁ ଆଜି ସୁଯୋଗ ପାଇଛି ନିଜ ବାପା ସହିତ ଖେଳିବାକୁ । ଆଜି ସେ ଭୁଲିଯାଇଛି ପଡ଼ିଆର ଧୂଳି, ଭୁଲି ଯାଇଛି ତା'ର ସମବୟସ୍କ ସାଥିମାନଙ୍କୁ, ଭୁଲିଯାଇଛି ଅତି ଆପଣାର ପ୍ରିୟ ତା'ର ଚକ୍ର କଣ୍ଢେଇ, ଭଙ୍ଗା ଗୁଞ୍ଜୁଡ଼ି, ଝାଟି ଆଉ ମାଟି ଚକରେ ତିଆରି ଶଗଡ଼ ଗାଡ଼ି । ଖେଳାଳୀ ସାଥି ସହ ପ୍ରତିଯୋଗିତାରେ ପଛେଇ ଯାଉଥିବାର ଜଳ ଜଳ ଆଖି ସମରୁର ଏଇ ଖେଳରେ ନାହିଁ । ଅନୁନ୍ନତ ତଥା ଅଳ୍ପସଂଖ୍ୟକ ଖେଳଣା

ଥିବାରୁ ଦପ୍ତମାପ୍ତତା ଆଉ ବ ସବଳ ଖେଳାଳୀର ଆକ୍ରମଣରେ ଚକ୍ଷୁକୋଣରେ 'ଅଶ୍ରୁ ନାହିଁ । ମଦନ ଉଦ୍ଦତ ଯୌବନର ଏକ ମୂର୍ତ୍ତି । ଯଦର୍ଓ କ୍ରୀଡ଼ା ଧୂଳାଗାର ସେ ଆରାଧ୍ଯ । ସମସ୍ତେ ଭୁଲିଯାଇଛୁ ଧୂଳି ଘରର ଦେବତା, ଧୂଳିର ଦେବତା । ଏ କ୍ରୀଡ଼ାରେ ମଦନ ଏକ ବାସ୍ତବ ପ୍ରତଯୋଗୀ ଯେତେବେଳେ ସମସ୍ତେ କ୍ରୀଡ଼ା କ୍ଷେତ୍ରରେ ଖେଳାଳୀ ରୂପେ ଅବତୀର୍ଣ୍ଣ ଏବଂ ସାଥି ଖେଳାଳୀ ରୂପେ ସମସ୍ତେ ନିଜେ ଅନୁଭବ କରେ ପ୍ରତ୍ୟେକ ପ୍ରଚେଷ୍ଟାରେ ଉତ୍କର୍ଷତା ।

କର୍ମଚାରୀଜଣକ ସାଇକଲର ଗତି ମଦନର ବାଡ଼ର ପ୍ରବେଶ ପଥ ନିକଟରେ ବନ୍ଦ କଲେ । ସାଇକଲରେ ବସିଯାଇ ଗୋଟିଏ ପାଦ ବାଡ଼ରେ ଭର ଦେଇ ପଚାରିଲେ ଘରେ କିଏ ଅଛନ୍ତି କି ? କର୍ମଚାରୀଙ୍କର ଉଦ୍ଦେଶ୍ୟ ଯେ ମଦନ ଯଦି ଘରେ ନାହିଁ, ତା' ସମ୍ପର୍କରେ ସୂଚନାଠାରୁ ଜାଣି, ସେ ମଦନ ପାଖକୁ ଯିବେ । ମଦନ କର୍ମଚାରୀଙ୍କର ଡାକ ଶୁଣିଛି ଏବଂ ଏକ ପରିଚିତ ସ୍ୱର ଭଳି ସେ ଅନୁଭବ କରିଛି । ଆଉଥରେ କର୍ମଚାରୀଜଣକ ଡାକିଲେ । ସେ ନିଶ୍ଚିତ ଯେ ଘରେ ଲୋକ ଅଛନ୍ତି । ଶିଶୁର ହସ ଏବଂ ହସଭରା କଥା ସେ ଶୁଣିଛି ।

ମଦନ ଯେତେବେଳେ ଜାଣି ପାରିଛି ଯେ ଭବାନୀଶଙ୍କର ବାବୁଙ୍କର କର୍ମଚାରୀ ଜଣକ ଡାକୁଛନ୍ତି, 'ଆଜ୍ଞା' କହି ନିଜର ଉପସ୍ଥିତିଟା ଜଣାଇ ଦେଇଛି । କର୍ମଚାରୀ ଜଣକ ନିଜ ଆଡ଼କୁ ଅଳ୍ପ ସମୟ ପାଇଁ ଆସିବାକୁ ଅନୁରୋଧ କଲେ ।

ମଦନ ଆସୁଛି ବୋଲି ଜଣାଇ ଦେଲା । ସମସ୍ତଙ୍କୁ ସେଇଠି ଖେଳିବାକୁ ମଦନ କହିଲା ଏବଂ ଦହିଲୁକୁ ଦେଖିବାକୁ କହିଲା । ସମସ୍ତଙ୍କୁ ନ ଉଠାଇବାକୁ କହି ମନକୁ ମନ ଯଦି ଉଠିଯାଏ ତା' ସହିତ ଯେ ଖେଳିବ ଯେପରି କି ସେ ଖଟରୁ ନ ପଡ଼େ । ମଦନ କର୍ମଚାରୀଙ୍କୁ ଦେଖା ଦେଇଛି । ହସ ହସ ହୋଇ ମଦନକୁ କର୍ମଚାରୀ କହିଲେ କି ଅସୁବିଧା ହେଲା ଯେ ମଦନ କାମ କରିବାକୁ ଯାଇ ପାରିନାହିଁ । ସେମିତି କିଛି ଅସୁବିଧା ତ ନାହିଁ କିନ୍ତୁ... । କର୍ମଚାରୀ ଜଣକ ମଦନର କଥାରେ ବାଧାଦେଇ କହିଲେ ଯେ ସେ ଖଟ ଗୋଟିଏ ବାହାର କରୁ । ଟିକିଏ ଫୁର୍ତ୍ତିରେ ବସି ଦୁଇ ଚାରି ପଦ କଥାବାର୍ତ୍ତା ହେବାରେ ଆନନ୍ଦ ମିଳେ । ମଦନ ଖଟ ବାହାର କରିବା ଉଦ୍ଦେଶ୍ୟରେ ଘରକୁ ଗଲା । କର୍ମଚାରୀ ଜଣକ ସାଇକଲଟା ମଦନର ଭିତର ଅଗଣା ପର୍ଯ୍ୟନ୍ତ ଗଡ଼ାଇ ନେଇ ଠିଆକଲେ-ଆଉ ଅପେକ୍ଷା କଲେ ମଦନ ସହିତ ଆଳାପ ମାଧ୍ୟମରେ କାମ ଶାଳକୁ କାହିଁକି ଗଲାନାହିଁ ଜାଣିବାକୁ । ମଦନର ଉପସ୍ଥିତ ମତାମତ ସଂଗ୍ରହ କଲାପରେ ଭବିଷ୍ୟତ ମତାମତ ସଂଗ୍ରହ କରିବାକୁ ଏବଂ ଏକ ସାଧାରଣ ଧନ୍ଦା

ନିର୍ଣ୍ଣୟ କରିବାକୁ ସେ ଯଥାସାଧ୍ୟ ଉଦ୍ୟମ କରିବେ ଅଥବା ତା'ର କାର୍ଯ୍ୟକଳାପ ପ୍ରତି କି ପ୍ରକାର ସତର୍କତା ଅବଲମ୍ବନ କରାଯିବ ସେ ସମ୍ପର୍କରେ ପର୍ଯ୍ୟାଲୋଚନା କରିବାକୁ ନିଜଠାରୁ କ୍ଷମତାସମ୍ପନ୍ନ ବ୍ୟକ୍ତିଙ୍କୁ ସଂପୂର୍ଣ୍ଣ ସଠିକ ବିବରଣୀ ତଥା ନିଜର ମତାମତ ସହିତ ଦେବେ । ଏଇ କିଛିଟା ମୁହୂର୍ତ୍ତି ସ୍ଥିର ହୋଇ ସେ ମଦନର ଘର ପ୍ରତି ଏକପ୍ରକାର ମାପ ନିର୍ଣ୍ଣୟ କରୁଥିବା ଚକ୍ଷୁରେ ଦେଖୁଛନ୍ତି ।

ମଦନ ମନେ ମନେ ଭାବି ନେଇଛି ଯେ ତା'ର ମନୋଭାବ ବୋଧହୁଏ ଏମାନେ ଜାଣି ପାରିଛନ୍ତି । ସେ ତ ଅନ୍ୟ କାହାରିଠାରେ ନିଜର ପ୍ରତିକ୍ରିୟା ପ୍ରକାଶ କରିନାହିଁ କିମ୍ବା କୌଣସି ସମୟରେ ଅନ୍ୟମନସ୍କତାବଶତଃ ନିଜ କରୋତି କର୍ମରେ ତ୍ରୁଟି କରିନାହିଁ । ସେ ଅନାବଶ୍ୟକତା ଭିତରେ ଅବଶ୍ୟ ଆଦୌ ଜଡ଼ିତ ନ ଥିଲି, ସେ ଥିଲି ନୀରବ ଆଉ ଅବସରର ମୁହୂର୍ତ୍ତିଗୁଡ଼ିକ ନିଜ ନିମନ୍ତେ ସେ ବ୍ୟବହାର କରିଛି । ସେ ମୁହୂର୍ତ୍ତିଗୁଡ଼ିକ ହୁଏତ ନିଜ ଜୀବନ କାଳର ସ୍ଥାଣୁ ମୁହୂର୍ତ୍ତି ବି ହୋଇପାରେ କେତେକଙ୍କ ମତରେ । ହୁଏତ ଉକାରର ପ୍ରାସାଦ ପ୍ରାଙ୍ଗଣର ଆତ୍ମସ୍ଥ ବି ହୋଇପାରେ । ଏଇ ପରିବେଶରୁ ବି ଯଦି ତା' ପ୍ରତି ସେମାନେ ଆତଙ୍କିତ, ମଦନର ଏହା ହିଁ ସୁଯୋଗ ନିଜ ହୃଦୟରେ ଲୁଚି ରହିଥିବା ଭାବାବେଗକୁ ଶାନ୍ତ ଭାବରେ ଉପସ୍ଥାପନ କରିବ । ସେ ପ୍ରଥମରୁ କିନ୍ତୁ ନିଜେ କୌଣସି ପଦକ୍ଷେପ ନେବନାହିଁ । ତା'ର ଗତି ପରିବର୍ତ୍ତନ କରିବାରେ କ୍ରିୟାର ପ୍ରତିକ୍ରିୟା ହିଁ ସମର୍ଥ । ମଦନ ନିଶ୍ଚିତ ହୋଇଛି ଯେ ସେ ସମୟର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିବ ନାହିଁ । ସେଇ ଆହ୍ୱାନରେ ମିଶାଇ ଯିଏ ନିଜକୁ ଯେତିକି ଆଗୁଆ କରିଛି ନିଜକୁ ସେ ସେତିକି ପ୍ରତିଷ୍ଠିତ କରାଇବାର ସୁଯୋଗ ପାଇଛି । ମଦନ ସୁଯୋଗର ଉପଯୋଗ କରିବ, ସେ ପ୍ରତିଷ୍ଠିତ ହେଉ ଅବା ଧକ୍କାରେ ଝଡ଼ିପଡ଼ି ନିଶ୍ଚିହ୍ନ ବି ହୋଇଯାଉ । ନୂତନତାର ବିସ୍ତୀର୍ଣ୍ଣ ସବୁଜ ପ୍ରାନ୍ତରରେ ସେ ଏକ ସତେଜ ସବୁଜ ଘାସ । ଅବଶ୍ୟ ଗୋଟିଏ ଘାସର ବିୟୋଜନରେ ସବୁଜିମା କ୍ଷୁଣ୍ଣ ହେବନାହିଁ କିନ୍ତୁ ପ୍ରତିଟି ଘାସକୁ ସବୁଜିମାରୁ ଅନ୍ତର କରାଯାଇ ନ ପାରେ ।

ମଦନ ଖଟଟା ଆଣି କର୍ମଚାରୀଙ୍କୁ ବସିବାକୁ କହିଲା । କର୍ମଚାରୀ ଜଣକ ଖଟରେ ବସି ନିଜ ପାଖରେ ମଦନକୁ ବସିବାକୁ ଅନୁରୋଧ କରେ । ମଦନ ବସିଛି । ସମସ୍ତରୁ ଏକ ପ୍ରଶ୍ନବାଚୀ ଚକ୍ଷୁରେ ଆଗନ୍ତୁକଙ୍କୁ ଦେଖିବାରେ ଲାଗିଛି । ଦହିଲୁ ନିଦ୍ରାରେ ଅଭିଭୂତ । ମଦନକୁ କର୍ମଚାରୀ ଜଣକ ପଚାରିଲେ :- ତୋର ପୁଅଝିଅ କେତୋଟି ? ମଦନ କହୁଛି : ଏଇ ପୁଅ ଦୁଇଟି ଆଉ ଝିଅ ନାହିଁ । କର୍ମଚାରୀ ଜଣକ ପଚାରିଲେ : ଘରେ ତୋର ବାପା ମା' ଅଛନ୍ତି ? ମଦନ

କହିଲ : ଅଉ କେହି ନାହାନ୍ତି । ସେ ଛୋଟ ଥିଲା ଅବସ୍ଥାରେ ବାପା ଚାଲିଗଲେ । ଏପରିକି ତା'ର ବାପାଙ୍କ କଥା ମନେନାହିଁ । ମା' ପ୍ରାୟ ତିନି ବର୍ଷ ହେବ ଚାଲିଗଲେଣି । ମଦନର ନିଜ ଭାଇ ଭଉଣୀ କେତୋଟି ? ନାହାନ୍ତି । ସେ ପିତାମାତାର ଏକମାତ୍ର ସନ୍ତାନ । ଏଇ ଗାଁରେ ବନ୍ଧୁବାନ୍ଧବ ଅଛନ୍ତି କି ? ନାହାନ୍ତି । ସେଉଁମାନେ ଅଛନ୍ତି ସେମାନେ ଜାତି ବନ୍ଧୁ କିନ୍ତୁ ସମ୍ପର୍କୀୟ ବନ୍ଧୁ-ବାନ୍ଧବ ନାହାନ୍ତି । ଆଚ୍ଛା ମଦନ : ତୁମର କିଛି ଗୃହ ଜମି ଅଛି ? ଆଜ୍ଞା ନାହିଁ । ତା'ହେଲେ ତୁମେ ଚଳ କିପରି । ମୂଲ ଖଟି । ଯାହା ପାରିଶ୍ରମିକ ମିଳେ ସେଇଥିରେ ସେମାନେ ଚଳିଯାନ୍ତି । କିଛି ସଞ୍ଚୟ ତ କରୁଥିବ, ନ ହେଲେ ଭଲ-ମନ୍ଦରେ ମୂଲ ଖଟି ନ ପାରିଲେ ଚଳ କିପରି ? ପେଟରୁ କାଟି ସେମାନେ କିଛି ସଞ୍ଚୟ କରନ୍ତି ଏଇଥିରୁ ଲୁଗାପଟା, ଭଲମନ୍ଦ ଚଳେ । ତୁମେ ତ ଆବଶ୍ୟକ ସ୍ଥଳେ ଋଣ ବି କରୁଥିବ । ନା ଆଜ୍ଞା, ଏ ପର୍ଯ୍ୟନ୍ତ ତ ସେପରି ଦୁର୍ଗତି ଆସିନାହିଁ । ଏହା ହିଁ ତା'ର ସଂସାର ପ୍ରତି ଭଗବାନଙ୍କର ସର୍ବଶ୍ରେଷ୍ଠ ଆଶୀର୍ବାଦ । ତୁମେ କ୍ଳାନ୍ତ ହୋଇଯାଇ ଥିବାରୁ କାମଶାଳକୁ ଆଜି ଯାଇନାହଁ ଜାଣି ଭବାନୀଶଙ୍କର ବାବୁ ତାଙ୍କୁ ଏଠାକୁ ପଠାଇଛନ୍ତି । ତାଙ୍କ ପାଖରେ କାମ କରୁଥିବା କେହି ଜଣେ ଲୋକ କାମ ଚାଲିଥିବା ସମୟ ଭିତରେ କୌଣସି ଅସୁବିଧାର ସମ୍ମୁଖୀନ ହେଲେ ଆମର ନୈତିକ କର୍ତ୍ତବ୍ୟ ଯେ ସେ ଜଣକର ସୁବିଧାଜନକ ବ୍ୟବସ୍ଥା କରିବା । ତୁମର ସେମିତି କିଛି ଅସୁବିଧା ବ୍ୟକ୍ତିଗତ ଭାବରେ ଅଛି କି ? ନା, ସେମିତି କିଛି ନାହିଁ । ନିଜେ ଏ ପ୍ରକାର କାମରେ କେବେ ଅଂଶ ଗ୍ରହଣ କରି ନ ଥିବାରୁ ଅବସନ୍ନ ରହିବାର ଯଥେଷ୍ଟ କାରଣ ରହିଛି । କୌଣସି ଏକ କାମରେ ଯେ ନିଜକୁ ସମ୍ପୂର୍ଣ୍ଣ ରୂପେ ଜଡ଼ିତ କରି ଦେଇଛି ନିଜ ଇଚ୍ଛାରେ, ସେଥିରେ ସେ କ୍ଳାନ୍ତ ଅନୁଭବ କରେନାହିଁ । ମଦନ ନୂଆ ଆଉ ମଦନର ମନଟା ବି ନୂଆ । କର୍ମଚାରୀ ଜଣକ କହିଲେ : ମଦନ ନିଜେ ତ ଅନେକ ଥର ଗଛ କାଟିଥିବ ? ତେବେ ଦୀର୍ଘଦିନ ଧରି ଏପରି ସେ ଖଟି ନ ଥିବ । ଏବେ ତ ଅନ୍ୟମାନେ ଯାହା କିଛି ଗଛ କାଟିବେ ଆଉ ପୂର୍ବର ଶ୍ରମିକମାନେ ଟ୍ରକ୍‌ରେ କାମ କରିବେ । ସେଥିରେ କ୍ଳାନ୍ତ ଆସିବାର ସମ୍ଭାବନା କମ୍ । ତା'ପରେ ଆଉ ତିନିଦିନ ଏ କାମ ଚାଲି-ପାରେ । ତେବେ ଏତେଦିନର ସୁସମ୍ପର୍କରେ ବିଚ୍ଛିନ୍ନତା କାହିଁକି ଅଣାଯିବ ।

ମଦନର ମୁଣ୍ଡ ହଠାତ୍ କାନ୍ଦିଗଲା । ତା'ର ମୁଣ୍ଡ ଭିତରଟା ଅସ୍ଥିର ହୋଇଗଲା । ଏତେଦିନର ସମ୍ପର୍କ କାହିଁକି ବିଚ୍ଛିନ୍ନ ହେବ । ତାକୁ ସମ୍ପର୍କର ବନ୍ଧନ ଛିନ୍ନ କରିବାକୁ ପଡ଼ୁଛି । ତାକୁ ମାନବିକତା ଓଟାରୁଛି । ସେ ବୁଝି ପାରୁନାହିଁ ସେ ସମୂହ ସହିତ ବ୍ୟକ୍ତିବିଶେଷର ପରିଚୟ ଥାଉ ବା ନ ଥାଉ,

ସମ୍ପ୍ରଦର ସ୍ୱାର୍ଥ ପ୍ରତି ଦୃଷ୍ଟି ଦେବା ହିଁ ମାନବିକତା ଅଥବା କୌଣସି ଏକ ବ୍ୟକ୍ତିର ସ୍ୱାର୍ଥ ପ୍ରତି ଦୃଷ୍ଟି ଦେବାଟା ମାନବିକତା । ବ୍ୟକ୍ତିବିଶେଷଠାରେ ବ୍ୟକ୍ତିଗତ ସମ୍ପନ୍ଧ ଯେଉଁଠି କି ମାତ୍ର ପରିଚୟରେ ଅଛି । ମଦନ ବୁଝି ପାରେନାହିଁ ଯେ ଜଣେ ଜଣକ୍କୁ ଆଦର୍ଶଗତ ବ୍ୟବହାର କରିବାରେ ମଣିଷ ଭାବରେ ଧରୁ ନ କେନାହିଁ ଅଥଚ ସମ୍ପ୍ରଦର ମହାନ୍ ଆଦର୍ଶକୁ ନିଜର ବ୍ୟକ୍ତିଗତ ସଂକୃର୍ଦ୍ଧି ନିମନ୍ତେ ବିନିଯୋଗ କରୁଛି । ···ଭବାନୀଶଙ୍କର ବାବୁ ଜଙ୍ଗଲର ଠିକାଦାର । ତାଙ୍କର ବ୍ୟବସାୟରେ ଜଙ୍ଗଲର ନିଯୁକ୍ତକମାନେ ତାଙ୍କୁ ସହଯୋଗ କରୁଛନ୍ତି । ଏମାନେ ଠିକାଦାରଙ୍କୁ କାହିଁକି, ଅନ୍ୟ କେହି ହୋଇଥିଲେ ବି ସାହାଯ୍ୟ କରିଥାନ୍ତେ । ଯେପରି ବି ହେଉ ମହାନ୍ ଆଦର୍ଶ ଲେଟିଯାନ୍ତା ଲୋଟଣି ପଥରେ । ଅନ୍ୟ କେହି ହୁଏତ ଶ୍ରମିକମାନଙ୍କର ଅନ୍ତରକୁ ସନ୍ତୋଷ ରଖି ନ ଥାନ୍ତା । ଶ୍ରମ କ୍ଷେତ୍ରର ଖୁବ୍ କମ୍ ବ୍ୟବହାରକାରୀ ଶ୍ରମିକମାନଙ୍କୁ ସନ୍ତୋଷ ରଖନ୍ତି । ଠିକାଦାରବାବୁଙ୍କ ସହିତ ସେ ସମ୍ପର୍କ ତୁଟାଇବ ନାହିଁ । ମୌନତା ଭଙ୍ଗ କରି ମଦନ କହିଲି : ସେ କାମ-ଶାଳକୁ ଯିବ । ସୁମାନୀ ମହୁଲ ଗୋଟାଇବାକୁ ଯାଇଛି । ବର୍ତ୍ତମାନ ଫେରୁଥିବ । ଦ୍ୱିପରବେଳାରୁ ସେ କାମକୁ ବାହାରିବ । କର୍ମଗୃହୀ ଜଣକ କହିଲେ ଯଦି ସୁମାନୀ ଫେରୁଥିବ ସେ ନିଜେ କିଛି ସମୟ ଅପେକ୍ଷା କରିବେ । ଘରେ ରନ୍ଧାବଢ଼ା କରି ସୁମାନୀ ଏବଂ ତୁଆ ଦୁଇଟା ଖାଇବେ ଆଉ ସେ ତ କାମଶାଳରେ ଯେପରି ଚଳେ ସେପରି ଚଳିବ । ଦହଲୁର ନିଦ ଭାଙ୍ଗି ଯାଇଛି । ସମରୁ ବାପାଙ୍କୁ ଜଣାଇ ଦେଲ, ଦହଲୁ ଉଠିଗଲାଣି, କାନ୍ଦୁଛି । କର୍ମଗୃହୀଙ୍କୁ ଆସୁଛି ବୋଲି କହି ମଦନ ଚଞ୍ଚଳ ଗ୍ଲଲେ ଦହଲୁ ଶୋଇଥିବା କୋଲକୁ । କର୍ମଗୃହୀ ଜଣକ ସମ୍ମତି ଦେଲେ ନା ନାହିଁ, ସେ ଅପେକ୍ଷା କରିନାହିଁ । ଦହଲୁକୁ କାଖେଇ ସେ ଅଗଣାକୁ ଆସିଲ ।

ସୁମାନୀ ଜଙ୍ଗଲକୁ ବିଳମ୍ବରେ ପହଞ୍ଚିଛି । ତାକୁ ଦୂରକୁ ଆସିବାକୁ ପଡ଼ିଛି । ପାଖାପାଖିର ଗଛରୁ ମହୁଲ ସଂଗୃହିତ ପ୍ରାୟ ହୋଇଗଲାଣି । ତେଣୁ ଆଜି ସେ ଅନ୍ୟ ଦିନ ଅପେକ୍ଷା ବିଳମ୍ବରେ ଘରକୁ ଫେରୁଛି ।

ଆସନ୍ନ ନିଦରୁ ଦହଲୁ ଉଠିଛି । ତା'ର ଆଖି ଖୋଲି ହେଉନାହିଁ । ଉନ୍ମିଳିତ ଆଖିରେ ସେ ଏକ ନୂଆ ଲୋକ ଦେଖେ । ମଦନର ଗୋଡ଼କୁ ଧରି ସମରୁ ଠିଆ ହୋଇଛି । ଆଉ ଆଗନ୍ତୁକଙ୍କ ଉପରେ ଏକ ଆକାଙ୍‌କ୍ଷା ଚାହିଁ ଦେଇଛି ।

ସୁମାନୀ ଘରକୁ ଫେରିଛି । ଦେଖିଛି ମଦନର କାଖରେ ଦହଲୁକୁ । ମୁହଁଟି ଶୁଖି ଯାଇଛି । ସେ ଭେକିଲ ମା'କୁ ଖୋଜୁଥିବ । ବାପର ସ୍ପର୍ଶ ତାକୁ

ଅଂଶୀଦାମାନ ମାନ ଦେଇଥିବ କିନ୍ତୁ ଆଶ୍ରମମାନରେ ଅବଶ୍ୟକତା ପୂର୍ତ୍ତି ହୁଏନାହିଁ । ଆବଶ୍ୟକତା ଏଠି ଶାନ୍ତିର କୋଳରେ ବନ୍ଧା ରହିଥାଏ । ସୁମାମୀର ଆଖିରେ ଅଗନ୍ତୁକଙ୍କ ଛାୟା ପଡ଼ୁଛି । ହଠାତ୍ ପାଦ ତା'ର ବନ୍ଦ ହୋଇ ଯାଇଛି କିନ୍ତୁ ମଦନର ଉପସ୍ଥିତି ତା' ପାଦରେ ଗତି ଭରିଦେଲା । ଅବଶ୍ୟ ବେଗ ତା'ର କମିଗଲା । ମହୁଲ ଡାଳଟି ଘର ପିଣ୍ଡାରେ ସେ ମଡ଼େଇ ଦେଲା । ହାତଗୋଡ ସେ ଧୋଇନେଲା ଗୁହାଳଧନା ଶାଳରେ । ଦହୁଲ୍ ହାତ ଲମ୍ବେଇବାରେ ଲଗିଛି । ମୁହଁରେ ହସିବାର ଆଭାସ । ସୁମାମୀ ନିଜର ବକ୍ଷକୁ ଦହୁଲ୍‌କୁ ନେଇଛି ଏବଂ ଶୋଇବା କୋଠରୀର ଅନ୍ଧାରୁଆ କକ୍ଷକୁ ବାହାର ଆଲୋକରୁ ସେ ଚାଲି ଯାଇଛି ।

କର୍ମଚାରୀ ଜଣକ ମଦନକୁ ଯିବାକୁ କହିଲେ । ଆଉ ଅଯଥାରେ ସେମାନେ କାହିଁକି ବିଳମ୍ବ କରିବେ । ଘରେ ତ ଆଉ ଅସୁବିଧା ନାହିଁ । ଘରଣୀ ଘରକୁ ପହଞ୍ଚି ଗଲେଣି ।

ମଦନ ସୁମାମୀକୁ କହିଲା : ସେ କାମଶାଳକୁ ଯାଉଛି । ଆଉ ଦିନଦିନ ହେଲେ କାମ ଚାଲିଯିବ । ଆଉ ଦିନଦିନ ପାଇଁ ସେ କାହିଁକି ଅବମାନନା ଗଢ଼ିହାଜିର କରିବ । ନିଜେ ଠିକାଦାରଙ୍କ ଜଣେ କର୍ମଚାରୀ ଡାକିବାକୁ ଆସିଛନ୍ତି । ଠିକାଦାର ନିଜ ପାଖରେ କାମ କରୁଥିବା କୌଣସି ଲୋକଙ୍କୁ ମଝିରୁ ତ୍ୟାଗ କରିବାକୁ ଚାହାନ୍ତି ନାହିଁ ଯେତେବେଳେ ସେମାନେ ଗ୍ରହଣ କରିବେ କାହିଁକି । ସେ ଯେତେବେଳେ ଶ୍ରମିକର ସୁବିଧା ଦେଖିଛନ୍ତି ତାଙ୍କୁ କାହିଁକି ବା ଦୁଃଖ ହଇଆସିବ । ସେ ଅନ୍ୟ କାହାରି ଦୁଃଖର କାରଣ ହୋଇ ପାରନ୍ତି ଏବଂ ସେ ଦୁଃଖରେ ଶ୍ରମିକର ସମବେଦନା ତଥା ବେଦନା ଜଡ଼ିତ ଥାଇପାରେ କିନ୍ତୁ ମାନ ଜଣକର ଚିନ୍ତାଧାରା ଯାହାକି ନିଜ ଭିତରେ ଉତ୍ପନ୍ନ ଅନ୍ୟ କାହାରି ଉତ୍ଥାନ ଅନୁଭବ କରି ପାରେନାହିଁ । ସେ ତ ଉତ୍ଥାନ କି ପତନର ନିଷ୍କ୍ରିୟତା ଭିତରେ ଲୁଚିଯାଏ—ମଦନ ନିଜକୁ ନିଜେ କହେ । ପୁନରୁତ୍ଥାନ ନିମନ୍ତେ କ୍ଷେତ୍ର ଲୋଡ଼ିବା ଶ୍ରେୟସ୍କର ଏବଂ ଏଥି ନିମନ୍ତେ ପ୍ରତ୍ୟକ୍ଷ ଅନୁଭୂତି ସଂଗ୍ରହ କରିବାରେ ପ୍ରୟାସୀ ହେବା ବାଞ୍ଛନୀୟ ।

କର୍ମଚାରୀ ଜଣକ ମଦନକୁ ତେବେ ଯିବାକୁ ଅନୁରୋଧ ସ୍ୱରରେ କହିଲେ । ମଦନ ସମ୍ମତିସୂଚକ ହଁ ଭରି କହୁଛି । ନୀରବରେ ଘରୁ ବାହାରି ଯିବାଠାରୁ ଘରେ କିଛି କହିଦେବା ଭଲ ।

ସମସ୍ତଙ୍କୁ ମଦନ ମା' ପାଖକୁ ଯିବାକୁ କହୁଛି । ସେ ଆଗନ୍ତୁକଙ୍କ ସହିତ କାମଶାଳକୁ ଯିବ । ସମସ୍ତେ ମା' ଆଡ଼କୁ ପାଦେ ଦୁଇପାଦ ବଢ଼ି ଠିଆହେଲା । ମଦନ କର୍ମଚାରୀଙ୍କ ସହିତ ସେଇ ସ୍ଥାନକୁ ଚାଲିଲା, ଯେଉଁଠି କି ସେ ଖଟିଛି ।

ଝଟଣିର ମୂଲ ପାଇଛି, ଝଟି ଥିବାର ପୁରସ୍କାର ପାଇଛି ଅଥଚ ପାଇନାହିଁ ଝଟଣିର ସାର୍ଥକତା । ଆଜି ତା' ମୁଣ୍ଡରେ ଆଉ ପ୍ରତିକ୍ରିୟା ନାହିଁ । ଆଜି ବି ତା'ର ମସ୍ତିଷ୍କରେ ସକ୍ରିୟତା ଅଛି କିନ୍ତୁ ଜାଗରଣ ନାହିଁ । କ୍ଷମତା ଅବା ସଙ୍ଗଠନ ବିହୀନ ବ୍ୟକ୍ତିବିଶେଷର ସକ୍ରିୟତା ଏକ ମାନସିକ ବେଦନା । ଅବଶ୍ୟ ପରବର୍ତ୍ତୀ ଚେତନା ଆଣିପାରେ ।

ମଦନ କାଲି ପରି କାମ କରି ଚାଲିଛି । ସେ ଆଜି ଆଉ ପୃଥକ ନୁହେଁ । ନିଜର ସାଥି ଶ୍ରମିକମାନଙ୍କ ଭିତରେ ସେ ବି ଜଣେ ବରଂ ସେ ଏପରି ଏକ ନିକୃଷ୍ଟ ଧରଣର ଲୋକ ଯେ ଜୀବନକୁ ଉପଭୋଗ କରି ପାରୁନାହିଁ । ସେ ସଦର୍ଥ ବିକାରଗ୍ରସ୍ତ ନୁହେଁ ତଥାପି ନିର୍ବିକାର ଜୀବନ ଯାପନ କରି ଉପସ୍ଥିତ ଆନନ୍ଦକୁ ସେ ଗ୍ରହଣ କରି ପାରୁନାହିଁ । ସେଇଁଠି କି ଆନନ୍ଦ ବିଳାସ ନୁହେଁ ଏବଂ ଆନନ୍ଦ ଯଥାର୍ଥତାର ଆପାତତଃ ନିକଟତର । ସାଥି ତା'ର ଶ୍ରମିକମାନେ ଜୀବନକୁ ପୂରା ଦମ୍‌ରେ ଉପଭୋଗ କରୁଛନ୍ତି ।

ଏକ ଚାଲିଥିବା ପରିବେଶ ମଧ୍ୟରେ ଦିନଦିନ ବିତିଗଲା । ଶେଷ ଦିନ ଟ୍ରକ୍ ଛାଡ଼ିବା ପୂର୍ବରୁ ଠିକାଦାରବାବୁ ସେମାନଙ୍କର ସ୍ୱାଭାବିକ ପାରିଶ୍ରମିକ ଚୁଟାଇ ଦେଲାପରେ ଆରମ୍ଭରୁ କାମ କରି ଆସୁଥିବା ଶ୍ରମିକମାନଙ୍କୁ ପାଞ୍ଚଟଙ୍କା ଲେଖାଏଁ ପୁରସ୍କାର ଦେଲେ । ସେମାନଙ୍କ କର୍ତ୍ତବ୍ୟପରାୟଣତା ନିମନ୍ତେ ଏହା ଶ୍ରମିକ-ମାନଙ୍କ ନିମନ୍ତେ ବଦାନ୍ୟ ବ୍ୟବସ୍ଥା ଏବଂ ଶ୍ରମ ନିୟୋଜନରେ ଲଭାଂଶ ବଣ୍ଟନରେ ବିକାଶ ପଥରେ ସମନ୍ୱୟତା ଆଣିବାର ସୁଗମ ପନ୍ଥା । ଅନ୍ୟମାନଙ୍କୁ ସେ ଦଶଟି ଟଙ୍କା ବଢ଼ାଇ ଦେଲେ । ନିଜ ନିଜ ଘରକୁ ସମସ୍ତେ ଫେରି ଆସିଲେ । ପରିସ୍ଥିତି ଶ୍ରମର ବନ୍ଧନରୁ ମଦନ ବି ଆଜି ମୁକ୍ତ ହୋଇଛି ।

ବେଳ ଥାଉ ଥାଉଁ ମଦନ ଆଜି ଘରେ ପହଞ୍ଚିଛି । ମଦନର ଶାରୀରିକ ଅସୁବିଧା ଥିବ ବୋଲି ସୁମାନୀର ମନରେ ସନ୍ଦେହ ଜନ୍ମିଛି । ଅତୀତରେ ମଦନ କ୍ଲାନ୍ତ ଅନୁଭବ କରିଥିଲା । ଜଣେ ବାରମ୍ବାର କ୍ଲାନ୍ତ ହେବା ହିତକର ନୁହେଁ । କେମିତି ସେ ଏତେ ଜଲ୍‌ଦି ଫେରିଛି, ମଦନକୁ ସୁମାନୀ ପଚାରିଲା । ଏଠି ବି ଘରେ କାମଶାଳାରୁ ଛୁଟି ପାଇବାର ସମୟ ପହଞ୍ଚି ନାହିଁ । ମଦନ ଏକ ମୁକ୍ତ ଏବଂ ଆଶ୍ୱାସିତ କଣ୍ଠରେ ଉତ୍ତର ଦେଇଛି ଯେ କାମ ସରିଗଲା । ଏବେ କୌଣସି ଏକ ଧନ୍ଦା କରିବାକୁ ହେବ । ଏଇ ବିତି ଯାଇଥିବା ଦିନାକେତେର ଉପାର୍ଜନ ସୁମାନୀକୁ ଗଣି ବଢ଼ାଇ ଦେଲା ସେ । ବିଦାକ ପାଞ୍ଚଟଙ୍କା ବି ସେ ବଢ଼ାଇ ଦେଲା ଯାହାକି ଅନ୍ୟମାନଙ୍କ ପରି ସେ ପୁରସ୍କାର ପାଇଛି । ସୁମାନୀ ଖୁସି ଯେ ମଦନ ସୁସ୍ଥ ଅଛି ଏବଂ ଯଥେଷ୍ଟ ଉପାର୍ଜନ କରିଛି । ସମରୁ ଏବଂ ଦହଲୁର ଅନୁପସ୍ଥିତି

ସମ୍ପର୍କରେ ମଦନ ପଗୃଶଲା । ସେ ଦୁହେଁ ଭୁବନ ଘର ସାମନାରେ ଖେଳୁଚନ୍ତି । ସୁମାନୀ କହୁଚ୍ଛି । ପାଖରେ ଭୁବନର ମା' ବସିଚ୍ଛନ୍ତି । ଏଇ କେତୋଟି ମୁହୂର୍ତ୍ତ ବିତେଇବାକୁ ମଦନ ସେମାନଙ୍କ ନିକଟକୁ ଯାଇଛି । ମଦନ ସେମାନଙ୍କ ନିକଟକୁ ହୋଇଛି ଯେତେବେଳେ ହସହସ ଦହଲୁ ଆସିବାକୁ ଚାହିଁ ଦଦନର ପ୍ରାରମ୍ଭିକ ସୋପାନରେ ପହଞ୍ଚି ଯାଇଛି । ମଦନ କାଖେଇ ନେଇଛି ଦହଲୁକୁ ଏବଂ ସମରୁ ବି ମଦନ ପାଖକୁ ଦୌଡ଼ି ଆସିଛି । ମଦନ ତାକୁ ଖେଳିବାକୁ କହୁଛି । ସମରୁ ବି ତା' ବାପର ନିର୍ଦ୍ଦେଶ ମାନି ନେଇଛି । ସେମାନଙ୍କ ପାଖରେ ମଦନ ବସିଗଲା ଏବଂ ସେମାନଙ୍କ ମେଳରେ ଦହଲୁକୁ ବସାଇ ଦେଲା । ସମରୁକୁ କହିଲା : ଦହଲୁକୁ ବି ସାଥିରେ ଖେଳାଅ । ମଦନ ଅଣ୍ଟିରୁ ଖଙ୍ଗ ତିବାଟା ବାହାର କଲା ଏବଂ ଭୁବନର ମା'କୁ ଖଙ୍ଗ ଯାଚଲା । ଭୁବନର ମା' ଖୁସିରେ ଖଙ୍ଗ ନେଲେ ।

କିଛି ସମୟ ଖେଳିଲା ପରେ ଦହଲୁ ନିଜେ ଖେଳିବାକୁ ଅନ୍ୟମାନଙ୍କର ଖେଳ ସାମଗ୍ରୀଗୁଡ଼ିକୁ ସଂଗ୍ରହ କରିବାକୁ ବସେ । ସେଥିରେ ସମରୁ ଏବଂ ଅନ୍ୟମାନେ କ୍ଷୁବ୍ଧ ହୋଇ ତା'ଠାରୁ ଛଡ଼ାଇ ନେଇଛନ୍ତି ଯେତେବେଳେ ସେ କାନ୍ଦି ଉଠିଛି । ମଦନ କାଖେଇ ନେଇଛି । ଦହଲୁର କାନ୍ଦଣା ଶୁଣି ସୁମାନୀ ବି ରନ୍ଧା ଗୁଡ଼ି ବାହାରକୁ ବାହାରି ପଡ଼ିଛି । ଦହଲୁକୁ ମଦନ କାଖେଇ ନେଇଛି । ସୁମାନୀ ପୁଣି ନିଜ କାମ ଉଦ୍ଦେଶ୍ୟରେ ଏକ ହୃଦୟବ୍ୟାପୀ ଖୁସିରେ ସେ ଘରକୁ ପଶି ଆସିଛି ।

ଦହଲୁକୁ କାଖେଇ ମଦନ ଘରକୁ ଆସିଛି । କୋଳରେ ଦହଲୁକୁ ବସାଇ ଘର ପିଣ୍ଡାରେ ସେ ବସିଛି । ସାମାନ୍ୟ ଆଲୁଅ ନିମନ୍ତେ ଡିବିରିଟା ଜାଳିବାକୁ ସୁମାନୀ ତେଲ ଉଦ୍ଦେଶ୍ୟରେ ଅନ୍ୟ କୋଠରୀକୁ ଆସିଛି । ସୁମାନୀକୁ ଦେଖି ଦହଲୁ ଯିବାକୁ ଚାହେଁ । ମା'କୁ ଲୋଡ଼ିବାର ସମୟ ତା'ର ହୋଇଯାଇଛି । ବାକିତକ କାମ ସାରିଦେଇ ଦହଲୁକୁ ମଦନର କୋଳରୁ ଆଣିଛି । ସମରୁ ବି ମାଛି ଅନ୍ଧାରରେ ଘରକୁ ଫେରିଛି । ନିଜର ଖେଳଣାଯାକ ପିଣ୍ଡାରେ ଥୋଇଦେଇ ସେ ବାପା ନିକଟକୁ ଆସିଛି । ସମରୁ ପାଇଁ ମଦନ ନିଜ କୋଳକୁ ସଜାଇ ଦେଇଛି ।

ରନ୍ଧାକାମ ସରିଛି । ଦହଲୁକୁ ସୁମାନୀ ଖୁଆଇ ଦେଲା । ସମରୁକୁ ମୁଠାଏ ସେ ଖାଇବାକୁ ଦେଲା । ସମରୁ ମଦନ ପାଖରେ ବସିଛି । ସୁମାନୀ ସମରୁ ଏବଂ ଦହଲୁର ଶୋଇବାର ବ୍ୟବସ୍ଥା କଲା । ମଦନ ଦହଲୁକୁ କୋଳରେ ଥାପୁଡ଼ାଇ

ଦେଉଥାଏ । ସମରୁର ଏବେ ଝିଅା ସରିଛି ଏବଂ ମଦନ ପାଖରେ ବସି ହାଇ ମାରିଲଣି । ଦହଲୁ ବାପର କୋଳରେ ଶୋଇଗଲଣି । ମଦନ ଦହଲୁକୁ ସୁମାମୀର ଖଟରେ ଶୁଆଇ ଦେଲି । ମଦନର ଖଟରେ ଶୋଇଯିବାକୁ ସୁମାମୀ ଡାକିଲି ସମରୁକୁ । ସମରୁ ମଦନର ଖଟରେ ଶୋଇ ଯାଉଛି ।

ମଦନ ନିମନ୍ତେ ସୁମାମୀ ପଖାଳ ବାଢ଼ିଲି । ମଦନ ମନରେ ଅପାର ତୃପ୍ତି । ସେ ଅନେକ ଦିନରୁ ପଖାଳ ଖାଇନାହିଁ ଯେପରି । ତା'ପରେ ଘର ପଖାଳ ରୁଚିକର । ସୁମାମୀ ପଖାଳ ଦୋହାରିଛି । ନିଜର ତୃପ୍ତି ପର୍ଯ୍ୟନ୍ତ ମଦନ ବି ବେଶ୍ ପଖାଳ ନେଇଛି । ମଦନ ସାମ୍ନାରେ ପାଣି ଲୋଟାଏ ଥୋଇ ଦେଇ ନିଜ ପାଇଁ ବାଢ଼ିଲି । ମଦନ ମୁହଁ ହାତ ଆଧି ନିଜ ଆଙ୍ଗୁଛିରେ ହାତ ମୁହଁ ପୋଛିନେଲି ।

ସମରୁକୁ କଡ଼େଇ ଦେଇ ମଦନ ଶୋଇଯିବାର ଉପକ୍ରମ କଲି କିନ୍ତୁ ଦହଲୁ ଉଦ୍ଦେଶ୍ୟରେ ଜାଗ୍ରତ ରହିଲି । ସୁମାମୀ ଖିଆପିଆ ସାରି ବାସନ ସବୁକୁ ଧୋଇବାକୁ ନେଇଗଲି । ଶୋଇବା କୋଠରୀ ଭିତରେ ବାସନ ବର୍ତ୍ତନ ସବୁ ଥୋଇଦେଲି । ରନ୍ଧା ହାଣ୍ଡିକୁ ପରିଷ୍କାର ଭାବରେ ମାଜିଦେଲି । ଶୋଇ ଯିବାକୁ ତତ୍ପରତା ଧରି ଅସିଛି । ରନ୍ଧା କୋଠରୀରେ କବାଟ କିଳି ଗ୍ରେଟିଆ ଯଁକା ତାଲାଟା ଚପିଦେଲି । ନିଜ ଖଟରେ ବସିଲି ପରେ ଡିବିରିଟା ସୁମାମୀ ଲିଭେଇ ଦେଲି । ଖଟରେ ଶବ୍ଦ ଶୁଣି ମଦନ ଆଖି ଖୋଲିଛି । ସେ ବୋଧହୁଏ ଜାଗ୍ରତ ରହିବାପାଇଁ ଗୃହିଁଥିଲେ ସୁଦ୍ଧା ଶୋଇ ନାଉଥିଲି । ସୁମାମୀ ଖଟରେ ଶୋଇଛି ଯେପରି, ଦହଲୁ ନିଦ୍ରାବସ୍ଥାରେ କ'ଣ ଖୋଜିବାକୁ ବସିଲି । ସୁମାମୀ ବୁଝିଛି ଦହଲୁର ଇପ୍‌ସିତ ବସ୍ତୁଟି କ'ଣ । ସେ ନିଜର ବକ୍ଷ ଖୋଲି ଦେଇଛି ଏବଂ ଦହଲୁର ନିଦ୍ରା ପୁନର୍ବାର ଘନେଇ ଆସୁଛି ।

କୁକୁଡ଼ା ଡକା ସ୍ୱରର ତାଳକୁ ମଦନ ଚେତିଛି ଆଉ ସୁମାମୀକ ଉଠା-ଉଛି । ମଦନ ସୁମାମୀକୁ କହୁଛି ସେ ବି ଆଜି ଯିବ ମହୁଲ ଜଙ୍ଗଲକୁ । ସମରୁ ଏବଂ ଦହଲୁକୁ ସେମାନେ ସାଙ୍ଗରେ ନେଇଯିବେ । ଲୋକେ ଯେ ମହୁଲରୁ ବେଶ୍ ଦୁଇ ପଇସା ପା'ନ୍ତି—ସେମାନେ ପଛେଇବେ କାହିଁକି ? ଲୋକେ ଯେଉଁ କାମ କରି ଉପାର୍ଜନ କରୁଛନ୍ତି ଆବଶ୍ୟକତା ଯଦି ଅଛି ନିଜେ ମଧ୍ୟ ଉପଯୋଗ କରିବା କଥା ।

ଦହଲୁ ଜନ୍ମ ହୋଇ ନ ଥାଏ । ସମରୁ ଏକମାତ୍ର ସନ୍ତାନ । ମଦନ ଏବଂ ସୁମାମୀ ପୁଅଟିକୁ ନେଇ କେତେଦିନ ମହୁଲ ଜଙ୍ଗଲକୁ ଯାଇଛନ୍ତି ।

ମଦନ ଭାର କାଠରୁ ଉପାର୍ଜନ କରୁଥିବାରୁ ମହୁଲ ଗୋଟାଇ ନ ଥାଏ । ଅବଶ୍ୟ ସେମାନେ ଏହାକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ଗୁରୁତ୍ୱର ସହିତ ସେତେବେଳେ ଦେଖି ନ ଥିଲେ । ମଦନ ଏବେ ଭାର କାଠ ବିକେନାହିଁ କି ଏଥିରେ ତା'ର ସ୍ପୃହା ନାହିଁ । ସୁମାନୀ ବି ଆଉ ଭାର କାଠ କଥା ମଦନକୁ କହେନାହିଁ । ମଦନ ସୁମାନୀର କଥାରେ ହଁ ଭରୁଛି । ସେମାନେ ଯଦି ଯଥେଷ୍ଟ ପରିମାଣରେ ମହୁଲ ସଂଗ୍ରହ କରିପାରନ୍ତି ଆଜିର ଖର୍ଚ୍ଚ ଖାଲି ବାହାରିବ ନାହିଁ ତ କାଲି ନିମନ୍ତେ ବି କିଛି ସଞ୍ଚିତ ହୋଇପାରିବ ।

ସୁମାନୀ ନିଜର ଡାଲିଟା ସଜାଡ଼ି ନେଲା । ପ୍ଲେଟ ଟୁପ୍ଲି ଦୁଇଟାକୁ ବାହାର କଲା । ମଦନ ବି ନିଜର ଗେଣ୍ଡୁଆ ଭାରଟା ଅତି ଖୁସିରେ ବାହାର କଲା । ଗେଣ୍ଡୁଆର ଜୁଡ଼ିଗୁଡ଼ିକୁ ପରଖି ନେଲା । ବାହୁଙ୍ଗାଟା ପୋଛିବାରେ ଲାଗିଲା । ସୁମାନୀ ଗୋଟିଏ ଆଲୁମିନିୟମ୍ ଡବ୍‌ଚରେ ଥିର୍‌ଭଳ ଢାଳିଲା । ସେମାନେ ଜଙ୍ଗଲରେ ବ୍ୟବହାର କରିବେ । ଗୋଟିଏ ପତର ପୁଡ଼ିଆରେ ଲୁଣ ମରିଚ ଧରିଲା । ଦୁଇଟି ପିଆଜ ମଧ୍ୟ ଧରିଥିଲା । ଦହଲୁର ନିଦ ଭାଙ୍ଗି ଗଲାଣି । ସୁମାନୀ ସେ କାମର ସମୟ ବଢ଼ାଇ ଦେବାକୁ ମଦନ ଦହଲୁକୁ କାଖେଇ ନେଇଛି । କିଛି ସମୟ ପରେ ସମରୁ ବି ନିଦରୁ ଉଠିଛି । ଭୁବନ ଘରକୁ ଯାଇ ସୁମାନୀ ଭୁବନର ମା'କୁ ଡାକିଲା । ଭୁବନର ମା' ଉତ୍ତର ଦେଲାପରେ ସୁମାନୀ ବାହାରେ ଥାଇ ନିଜର ଘରଆଡ଼େ ନଜର ଦେବାକୁ କହିଦେଲା । ସେମାନେ ମହୁଲ ଜଙ୍ଗଲକୁ ଯାଉଛନ୍ତି । ଭୁବନର ସ୍ତ୍ରୀ ମହୁଲ ଜଙ୍ଗଲକୁ ଯାଇସାରି ଥିଲେଣି ଏବଂ ଭୁବନ କାଠ ପାଇଁ ଜଙ୍ଗଲକୁ ଯିବାକୁ ପ୍ରସ୍ତୁତ ହୋଇଥିଲା । ସେ ଏବେ ବି ଅବସର ଦିନଗୁଡ଼ିକରେ ଭାର କାଠ ବିକେ ଏବଂ ଉପାର୍ଜନ କରେ ।

ସୁମାନୀ ଘରର କବାଟ କିଳିଦେଲା ଏବଂ ଦହଲୁକୁ କାଖେଇଲା । ମଦନ ଡାହାଣ କାନ୍ଧରେ ବସାଇ ଦେଇଛି ସମରୁକୁ ଆଉ ବାଆଁ କାନ୍ଧରେ ଗେଣ୍ଡୁଆ ଭାର ବୋହି ଚାଲିଛି ମହୁଲ ଗୋଟେଇବାକୁ । ଜୀବିକାରେ ଜୀବନ ଛନ୍ଦି ହୁଏ ।

ଜଙ୍ଗଲରେ ବଞ୍ଚି ରହିଥିବା ପଶୁମାନେ ନିଜ ନିଜ ବସାରେ ନିରାପଦ ଆଶ୍ରୟ ନେଲେଣି । ଚଢ଼େଇ ମାନେ ଆହାର ଲୋଡ଼ିବାକୁ ନିଜ ନିଜ ବସା ଛାଡ଼ି ପୁଞ୍ଜ ପୁଞ୍ଜ ହୋଇ ଆକାଶରେ ଉଡ଼ିବାରେ ଲାଗିଗଲେଣି । ଚନ୍ଦ୍ରମା ଆକାଶର ପଶ୍ଚିମ ଭାଗକୁ ଯାଇନାହିଁ । ଅନେକ ବିଳମ୍ବରେ ସେ ପୂର୍ବାକାଶକୁ ଆସିଛି । ତା'ର ଆଲୋକରେ ଏତେ ପ୍ରଭାବ ନାହିଁ । ତାରକାର ଘନତା ବି ଆକାଶରେ କମିଗଲାଣି । ସମସ୍ତେ ନିଜ ନିଜ ପଥରେ ଚାଲିଛନ୍ତି । କିଏ ସେ ଦୃଷ୍ଟ, କିଏ ସେ ଅଦୃଷ୍ଟ । ମଦନ ଆଉ ସୁମାନୀ, ସମରୁ ଆଉ ଦହଲୁ ଚାରିହେଁ ଆଗକୁ ଆଗକୁ

ବଡ଼ ନ୍ଦ୍ର ସେମାନଙ୍କର ନଜର ପାଇଁ । ହୁଏତ କାହାର ଗନ୍ଧ ଅନ୍ୟ ନଜର ଏବଂ କାହାକୁ ଅନ୍ୟର ଗନ୍ଧ ଅଦ୍ଭୁତ ନଜକୁ ହଜାଇ ଦେବାକୁ ପଡ଼ୁଛି । ଜଣେ ସେ ଜ୍ଞାତସାରରେ ଆଉ କଏ ଅଜ୍ଞାତସାରରେ ଚାଲିଛି । କେହି କାହୁ ଫେରି ଆସିବାକୁ କହୁନାହିଁ କିମ୍ବା ଇଙ୍ଗିତ ବି ନାହିଁ କାହାରି ଫେରିବାକୁ । ଏଠି ସମସ୍ତେ ପ୍ରାଣର ପ୍ରାଣୀ ଅଥଚ ଗୋଟିଏ ପ୍ରାଣ ।

ପର୍ବତର ଉଚ୍ଚ ଅଂଶରେ ସେମାନେ ପାଞ୍ଚ ଛଅଟି ମହୁଲ ଗଛ ପାଖା-ପାଖି ପାଉଛନ୍ତି । ପ୍ରତ୍ୟେକ ଗଛରୁ ମହୁଲ ପଡ଼ି ମାଟି ପୃଷ୍ଠାଟା ଧୋବଲି ଦେଖାଯାଉଛି । ସୁମାନୀ କହିଲା : ସେମାନେ ଏଠି ମହୁଲ ସଂଗ୍ରହ କରନ୍ତୁ । ମହୁଲିଆ ଜାଡ଼ ଅପସରି ନାହିଁ ହେଲେ ସେମାନେ ଚାଲୁଥିବା ଯାଏଁ ଅନୁଭବ କରୁ ନ ଥିଲେ । ଯେତେବେଳେ ସେମାନେ ଚାଲିବା ବନ୍ଦ କରିଛନ୍ତି ପ୍ରତ୍ୟେକର ଶରୀରରେ ଜାଡ଼ ବୋଲି ହୋଇଛି । ମଦନ ସମରୁଙ୍କୁ ଓହ୍ଲାଇ ଦେଲା ଏବଂ କାନ୍ଧରୁ ବାହୁଙ୍ଗାକୁ ଅଲଗା କରିଦେଲା । ବାହୁଙ୍ଗା ସାଥିରେ ଅଲଗା ହୋଇଗଲା ଗେଣ୍ଡୁଆ ଦୁଇଟା ଆଉ ତା' ଉପରେ ଥୁଆ ହୋଇଥିବା ଡାଲି ଏବଂ ଟୁପୁଲି । ମଦନ ନଜର ଅଙ୍ଗୁଛଟା ତଳେ ବିଛେଇ ଦେଲା । ତା' ଉପରେ ବସିହିବାକୁ ସମରୁଙ୍କୁ କହିଲା । ପାଖରେ ଭୂଇଁକୁ ଲଗି ଗୋଡ଼ ଦୁଇଟା ଲମ୍ବାଇ ଦେଇଛି ସୁମାନୀ ଏବଂ କୋଳରେ ଦହଲୁକୁ ବସାଇ ଦେଇଛି । ମା' ଦୁଧ ପିଇ ଦହଲୁ କ୍ଷୁଧା ନିବାରଣ କରୁଛି । ମଝିରେ ମଝିରେ ଭୂଇଁଗର ପୃଷ୍ଠରେ ଦହଲୁ ଗୋଡ଼ ଦୁଇଟା ଗୁଡ଼ି ଦେଇଛି । ଭୂମ୍ପୃଷ୍ଠ ଅଙ୍ଗୁଛରେ ସମରୁ ଚକାମାରି ବସିଛି ଆଉ ଚାହିଁରହିଛି ଉପରକୁ । ମହୁଲ ଗଛକୁ । ମହୁଲ ଗଛରୁ ମହୁଲ ଖସି ପଡ଼ୁଛି । ମଦନ ସଙ୍ଗଳି ନେଲା ଶୁଖିଲା ମହୁଲ ପତର । ଦିଆସିଲି କାଠିଟା ଜଳାଇ ମହୁଲ ପତର ଗଦାରେ ସେ ନିଆଁ ଜଳାଇ ଦେଲା । ଚିକ୍କଣ ଧୋତର ଗୋଟିଏ କାନରେ ନିଆଁ ଲଗାଇ ସାରି, ମଦନ ଦିଆସିଲିଟା ବାନ୍ଧିନେଲା । ସକାଳର ଥଣ୍ଡା ପବନ କେତେବେଳେ କେମିତି ବହୁଥାଏ । ଏ ପବନ ଏମାନଙ୍କୁ ଆଉ ଶୀତେଇ ପାରିଲା ନାହିଁ ବରଂ ମହୁଲ ପତରରେ ଜଳି ଉଠିଥିବା ନିଆଁକୁ ତେଜାଇ ଦେବାରେ ଲାଗିଲା । କିଛି ସମୟ ସମସ୍ତେ ନିଆଁ ତାପିଲେ । ସୁମାନୀ ତା'ର ହାତ ପାପୁଲି ଦୁଇଟା ନିଆଁରେ ଦେଖାଇ ଗରମ କରିନେଲା । ତା'ପରେ ସେକ ଦେଲା ଦହଲୁର କାନ ଦୁଇଟା । ଦୁଇ ଚାରିଥର ସେକ ଦେଇଛି ସୁମାନୀ ଯେପରି କି କାନ ବାଟେ ଆଉ ଥଣ୍ଡା ପଶି ପାରିବ ନାହିଁ । ସମରୁ ବି ହାତ ଦୁଇଟା ବଢ଼ାଇ ତାତି ସଂଗ୍ରହ କଲା । ମଧ୍ୟାନ ପତର ସବୁକୁ ଏକାଠି ଜମାଇ ନ ଥିଲା । କାଳେ ଖୁବ୍ ଉପରକୁ ନିଆଁ ଉଠିବ ଆଉ ଗଛର କଅଁଳ ପତରକୁ ପୋଡ଼ିଦେବ । ନିଆଁର ଝାସ ପାଇ ଗଛଟା ବି ଟିକିଏ ଫୁର୍ତ୍ତି ଅନୁଭବ କଲା । ଭୂଇଁ ବି ଖୁସି

ଜଣା ପଡ଼ୁଥାଏ ତା'ର ପୃଷ୍ଠରେ ଭର ରଖିଥିବା ଆବର୍ଜନା ପରିଷ୍କାର ହୋଇ-ଯିବାକୁ । ଅଗ୍ନିର ଶିଖା କମି ଆସିଲା ! ସୂର୍ଯ୍ୟକିରଣ ଅପର ପାର୍ଶ୍ୱର ପର୍ବତରେ ପଡ଼ିଲାଣି । ଧରଣୀର ବାୟୁମଣ୍ଡଳଟା ଉଦ୍ଭ୍ରମ ଜଣା ପଡ଼ିଲାଣି । ଅନ୍ୟମାନେ ଯଥେଷ୍ଟ ଆଗରୁ ମହୁଲ ଗୋଟେଇ ଥିବେଣି । ମଦନ ସୁମାମାଙ୍କୁ କହିଲା : ଭୁଛାରେ ଆଉ କାହିଁକି ବେଳ ଗଡ଼ିବ । ଯେତେ ଜଲଦି ସେମାନେ ମହୁଲ ଗୋଟେଇବେ ସେତେ ଆଗରୁ ଘରକୁ ଫେରିବେ ।

ମଦନ ଟୁପ୍ଲଟା ନେଇ ମହୁଲ ଗୋଟେଇବାରେ ଲାଗିଲା । ବିସ୍ତୃ ହୋଇଥିବା ଅଙ୍ଗୁଛ ଉପରେ ସମରୁକୁ ବସାଇ ଦେଲା ଏବଂ ଦହିଲୁକୁ ଦେଖିବାକୁ ସମରୁକୁ ସେ କହିଲା । ସନ୍ନିକଟ ବୃକ୍ଷର ଶାଖାରେ କୁଟାକଟା ନିର୍ମିତ ଉର୍ଦ୍ଧ୍ୱମୁଖୀ ମାଡ଼ରେ ଦୁଇଟି ପକ୍ଷୀ ଶାବକ ବି ମାରବରେ ଆଶ୍ରୟ ନେଇଛନ୍ତି । ପକ୍ଷୀ ଦମ୍ପତି ଭୋରରୁ ଗ୍ଲି ଯାଇଛନ୍ତି ଖାଦ୍ୟ ଅନ୍ୱେଷଣରେ ।

ଦୁହେଁ ଗୋଟିଏ ଗଛରୁ ମହୁଲ ଗୋଟେଇ ଅନ୍ୟ ଗଛକୁ ଯାଇଛନ୍ତି । ଟୁପୁଲଟାରେ ମହୁଲ ଭର୍ତ୍ତି ହୋଇଥାଏ, ଯେତେବେଳେ ସେମାନେ ବଡ଼ ଡାଲରେ ଅଜାଡ଼ି ଦଅନ୍ତି । ମହୁଲ ଭର୍ଦ୍ଦର ବା ଯଥେଷ୍ଟ ପଡ଼ି ନ ଥିବାରୁ ଗୋଟିଏ ଗଛରୁ ଗ୍ଋରି ପାଞ୍ଚ ଟୁପୁଲ୍ ମହୁଲ ହୁଏ । ମଦନ ବସିଯାଇ ମହୁଲ ଗୋଟେଇ ଯାଏ ଏବଂ ସୁମାମା ଲଣ୍ଠି ଲଣ୍ଠି ଗୋଟାଏ । ବେଳେବେଳେ ସୁମାମା ଅଣ୍ଟା ସଳଖ କରିବାକୁ ଠିଆହୁଏ ଏବଂ ମଦନ ଅଣ୍ଟୁରୁ ଦରଜ କମାଇବାକୁ ଠିଆ ହୋଇ ଗୋଡ଼ ଝଟକାଏ । ଗଛ ଦୁଇଟିରୁ ମହୁଲ ଗୋଟାଇ ସାରି ଟିକିଏ ଦୂର ଛୁଡ଼ିଥିବା ଅନ୍ୟ ଗଛମାନଙ୍କରେ ସେମାନେ ମହୁଲ ସଂଗ୍ରହ କରିବାକୁ ଗେଣ୍ଡୁଆ ଭରଟା ନେଇ ଯିବାକୁ ମଦନ ଆସିଲା । ସୁମାମା ସମରୁ ଓ ଦହିଲୁ ନିକଟକୁ ଆସିଲା । ସେ ଦହିଲୁକୁ କାଖେଇଲା ଏବଂ ସମରୁକୁ ଅନ୍ୟ ସ୍ଥାନରେ ବସିବା ନିମନ୍ତେ ଉଠିବାକୁ କହିଲା । ଅଙ୍ଗୁଛଟା ଡାହାଣ ହାତରେ ଧରି ଅନ୍ୟ ଗଛ ନିକଟକୁ ବଢ଼ିଲା । ମା'ର ନିର୍ଦ୍ଦେଶ ପର୍ଯ୍ୟନ୍ତ ସମରୁ ମା'ର ପଛେ ପଛେ ଗଲା ଏବଂ ଦହିଲୁ ଏଇ ଭିତରେ ଦେଖା ଦେଇଥିବା ଖେକରୁ ନିଜକୁ ବଞ୍ଚାଇ-ବାରେ ଲଗିଲା ।

ପର୍ବତର ମଝିରେ ମଝିରେ ପଳାଶ ଗଛରେ ଫୁଲ ଫୁଟି ସାରା ଦେହଟା ଲାଲ୍ ହୋଇ ଯାଇଛି । ସମରୁ ଦେଖେ । ନିକଟରେ ପଳାଶ ଗଛର ତଳଟା ବି ଲାଲ୍ ହୋଇ ଯାଇଛି ଅନେକଟା ଲାଲ୍ ଫୁଲ ଝଡ଼ି । ସେ ଖେଳନା କରିବାକୁ

ଥୋକାଏ ଗୋଟାଇ ଆଣିଛୁ । ଦହଲୁକୁ ଦୁଇଟି ଫୁଲ ଦେଇଛୁ ସମରୁ । ଦହଲୁ ଲାଲ୍ ଫୁଲର ବୃଢ଼ିଟାକୁ ଧରି ଝେଲିଛୁ । ବୃଢ଼ିଟା କଟୁ କଲା । ଭେକ ଦେଖା ଦେଇଥିବାରୁ ସମରୁ ମା'କୁ ଡାକିଛୁ । ଆଲୁମିନିୟମ୍ ଗିନାଟାରେ ସମରୁକୁ ଥିର୍ ଟିକିଏ ସୁମାନି ଦେଲା । ଲୁଣ କିଛି ଗୋଳେଇ ଘାଣ୍ଟିଦେଲା ଏବଂ ପିଆଜଟାଏ ବାହାର କରି ସମରୁକୁ ଫାଲେ ଦେଲା । ସମରୁ ଆନନ୍ଦରେ ଭେକ ନିବାରଣ କଲା । ସୁମାନି କିଛି ଦହଲୁକୁ ବି ଖୁଆଇ ଦେଲା ସମରୁର ଗିନାରୁ ପଖାଳ କାଢ଼ି ।

ମଦନ ପଞ୍ଚମ ଗଛରୁ ମହୁଲ ଗୋଟାଇ ନେଲଣି । ମଦନକୁ ଥିର୍ ଟିକିଏ ପିଇ ଦେବାକୁ ସୁମାନି ଅନୁରୋଧ କଲା । ମଦନ ବି ହ ଭରିଛୁ । ମଦନ ଭାବିଲା ସୁମାନି ଛୁଆ ପିଲାର ମା' ସେ ଥିର୍ ପିଇ ସାରିଲେ ସୁମାନି ବି ଥିର୍ ପିଇବ ଆଉ ସୁମାନିର ଦେହରେ ଶକ୍ତି ଥିଲେ ଛୁଆପିଲାର ବି ଶକ୍ତି ରହିବ । ସେ ଜାଣେ ଯେ ସୁମାନିର ଇଚ୍ଛା ଏହା ନୁହେଁ, କିନ୍ତୁ ଜଣେ ଯେତେବେଳେ ଜଣକର ଶୁଭ ମନାସିଛୁ ଅନ୍ୟ ଜଣେ ତା'ର ଶୁଭ ନ ମନାସିବ କାହିଁକି ? କିଛି ପାଣି ଢାଳି ମଦନକୁ ଦେଇଛୁ ହାତ ଧୋଇବାକୁ । ମଦନ ହାତ ମୁହଁ ଧୋଇ ଥିର୍ ପିଇବାକୁ ବସିଗଲା । ସୁମାନି କିଛି ଲୁଣ, କଞ୍ଚା ମରିଚଟାଏ ଏବଂ ଗୋଟାଏ ପିଆଜ ସର୍ଗି ପତ୍ରର ଗୋଟିକରେ ଦେଲା । ମଦନ ଥିର୍‌ରେ କିଛି ଲୁଣ ଗୋଳେଇ ଦେଲା ଏବଂ ପିଆଜ ସାଙ୍ଗେ ଗୃଖି ଗୃଖି ଖାଇବାକୁ ପତ୍ରରରେ କିଛି ଲୁଣ ରଖିଲା । ଥିର୍‌ରେ କଞ୍ଚା ମରିଚଟା ଚକଟିଦେବ ବୋଲି ପତ୍ରରୁ ଉଠାଇ ଆଣିଲା । କିନ୍ତୁ ମନରେ ସମରୁର ଚିନ୍ତା ହଠାତ୍ ଫୁଟି ଉଠିଲା । କେତେକ ସମୟରେ ସମରୁ ମଦନ ସହିତ ଖାଇବାକୁ ବସେ । ମଦ୍ୟ ଖିଅପିଆ ସେ କରିଥିଲେ ସୁଦ୍ଧା ମୁଠାଏ ଖାଇବାକୁ ବାପ ସହିତ ବସିଥାଏ । ପିତାର ଆହାରରୁ ଅଂଶ ନେଇ ସନ୍ତାନ ସ୍ନେହ ଅଜାଡ଼େ । ଦରିଦ୍ର ପିତା ମମତାର ସମାବେଶରେ ଆୟୁର ସାର୍ଥକତା ଲାଭକରେ ।

ବସ୍ତ୍ର ହୋଇଥିବା ଅଙ୍ଗଛରେ ଦହଲୁ ଶୋଇ ଯାଇଛୁ । ଗୋଡ଼ ପାଖରେ ସମରୁ ବସିଛୁ ଏବଂ ମଦନର କ୍ଷୁଧାର ଅଂଶ ଗ୍ରହଣ କରିବାକୁ ସାମନାରେ ଭୂଇଁରେ ବସିଛୁ ସୁମାନି । ନିକଟରେ ଫୁଟି ଯାଇଥିବା ଲାଲ୍ ଫୁଲ ସମ୍ପର୍କରେ ସୁମାନିକୁ ସମରୁ ପଚାରିଛୁ । ସୁମାନି କହିଛୁ ସେଇଟା ପଳାଶ ଫୁଲ । ଫୁଲ କିଛି ତୋଳି ଦେବାକୁ ସୁମାନିକୁ ସେ ଅଳିଟ କଲା । ସୁମାନି କହିଲା : ସେ ଗଛ ଚଢ଼ି ପାରେନାହିଁ । ଗଛରେ ଚଢ଼ିବାର ସୁବିଧା ନ ଥିବାରୁ ସେ ଏ ଗଛ ଚଢ଼ି ପାରିବ ନାହିଁ । ବାପା ଥିର୍ ପିଇ ସାରିଲେ ଫୁଲ ଆଣିବାକୁ ସେ କହିବ । ମଦନ

ସମ୍ପର୍କରେ ସମରୁ ଶୁଣିଲା ଯେତେବେଳେ ନିଜର ଧ୍ୟାନ ସେ ଆଡ଼କୁ ଯାଉଛି । ନିଜର ଅଭିଳାଷ ପୂରଣର ଆଶାରେ ସେ ମଦନକୁ ଚାହିଁଛି । ତା'ର ଦୃଷ୍ଟିରେ ପଡ଼ୁଛି ଯେ ମଦନ ଥର୍ ପିଉଛି । ସେ ଉଠି ପଡ଼ୁଛି ଓ ମଦନ ଆଡ଼କୁ ବଢ଼ିବାରେ ଲାଗି ଯାଇଛି । ସୁମାନୀ ଅନୁଭବ କଲା ମଦନ ସହିତ ଥର୍ ପିଇବାକୁ ସେ ବସିବ । ସୁମାନୀ ଚାହେଁନାହିଁ ଯେ ଛୁଆମାନେ ଅଯଥାରେ ବାରମ୍ବାର ଖାଇବେ କମ୍ ଅଥଚ ତୃପ୍ତିରେ ବାଧିକ ଏକ ଅନ୍ତରାୟ ସୃଷ୍ଟି କରିବେ । ସେ ବସିଲା ସ୍ଥାନରୁ ଉଠି ପଡ଼ୁଛି ଆଉ ସମରୁକୁ କହୁଛି ଗ୍ରେଟ ଗ୍ରେଟ ଗୋଲ ପଥର ଗୋଟାଇବାକୁ ଯିବାକୁ। ସମରୁ ପ୍ରଥମେ ହ ଭରୁଛି କିନ୍ତୁ ପରକ୍ଷଣରେ ମଦନକୁ ପୁଣି ଚାହିଁଛି । ସେ ସମରୁର ମନୋଭାବ ବୁଝି ନେଇଛି କିନ୍ତୁ ସୁମାନୀ ନିଜର ବାଆଁ ହାତରେ ସମରୁର ଡାହାଣ ହାତଟା ଧରୁଛି କାଳେ ମଦନ ସହିତ ସେ ବସିବ ! ସମରୁର ଆଖି ମଦନର ଆଖି ସହିତ ମିଶି ଯାଇଛି ଯେତେବେଳେ ସୁମାନୀକୁ ମଦନ କହୁଛି ସମରୁ ତା' ସହିତ ଥର୍ ଟିକିଏ ପିଇଦେଉ । ସମରୁ ମା' ଠାରୁ ବାପା ଆଡ଼କୁ ଟାଣିହେଲା । ସୁମାନୀ ଆଉ ବାଧା ଦେବାକୁ ଚେଷ୍ଟା କରିନାହିଁ । ମଦନର ଠିକ୍ ସାମନାରେ ତା' ଆଡ଼କୁ ମୁହଁ କରି ସମରୁ ବସିଗଲା ।

ଗୋଲ୍ ପଥର କେତୋଟି ସଂଗ୍ରହ କରିବାକୁ ସୁମାନୀ ତଥାପି ଚାଲି ଯାଇଛି । ଗ୍ରେଟ ଗ୍ରେଟ ପାଞ୍ଚଟା ଲାଆନ୍ତା ପଥର ସେ ଗୋଟାଇ ନେଲା । ସେ ବିଲମ୍ବ ନ କରି ଫେରୁଛି । ମଦନ ଏବଂ ସମରୁ ଥର୍ ପିଇ ସାରିଲେଣି । ସମରୁ ଦହଲୁ ନିକଟରେ ବସିଛି । କିଛି ଦୂରରେ ବସି ମଦନ ଥରେ ଦେଖୁଛି ସମରୁର ମୁହଁକୁ ଏବଂ ଥରେ ଦେଖୁଛି ଦହଲୁକୁ । ଭାଙ୍ଗ ଡବାଟାରୁ ଫାଙ୍କେ ଭାଙ୍ଗ ମଦନ ଖାଇଛି ଏବଂ ମନରେ ବୋଧ ଆସୁଛି । ସୁମାନୀ ଏଇ ମୁହୂର୍ତ୍ତରେ ଆସିଛି । ସମରୁ ନିକଟରେ ସୁମାନୀ ପାଞ୍ଚ ମିନିଟ ଯାକ ପଥରକୁ ଗଡ଼ାଇ ଦେଲା । ହସିଉଠି ସମରୁ ପଥର ସବୁକୁ ଗୋଟେଇଛି ଏବଂ ଖେଳିବାରେ ଲାଗିଛି । ସୁମାନୀକୁ ଥର୍ ପିଇ ଦେବାକୁ ମଦନ କହୁଛି । ବଳିଥିବା ସବୁ ଥରକୁ ସୁମାନୀ ନିଜ ପାଇଁ ବାଢ଼ିଲା । ଫାଳେ ପିଆଜ, ଆବଶ୍ୟକ ପରିମାଣ ଲୁଣ ଏବଂ ମରିଚଟାଏ ସେ ବାହାର କଲା ଅବଶିଷ୍ଟ ସାମାନ୍ୟ ପରିମାଣ ଲୁଣକୁ ଫେରାଇ ନେବାକୁ ଯତ୍ନରେ ସେ ରଖିଦେଲା ।

ପଖାଳ ଗଣ୍ଡାକ ସୁମାନୀ ଖାଇ ସାରୁଛି । ଥର୍ ପିଇବାକୁ ସେ ଯେତେ-ବେଳେ ଯାଉଛି ପଥରଗୁଡ଼ିକ ଯତ୍ନରେ ଧରି ସମରୁ ସୁମାନୀ ପାଖକୁ ବଢ଼ିଛି । ଦୁଇ ଚାରି ଢୋକ ଥର୍ ସମରୁକୁ ପିଆଇ ଦେଇଛି ସୁମାନୀ ଏବଂ ନିଜେ ପିଇଛି । ଦହଲୁର ନିଦ ଭାଙ୍ଗିଛି । ଅଯଥା କାନ୍ଦଣାର ଅବସାନ ନିମନ୍ତେ ଦହଲୁକୁ

କାଖେଇ ନେଇଛନ୍ତି ମଦନ । ବାସନ ଧୋଇ ସୁମାନୀ ସଜାଡ଼ି ଦେଲା ଆଉ ପୂର୍ବରୁ ବ୍ୟବହୃତ ହୋଇଥିବା ଚିରା ଲୁଗାରେ ଗଣ୍ଠିଲିଟାଏ କଲା । ଅନ୍ୟ ଗଛ ନିକଟକୁ ତା'ପରେ ସେମାନେ ସମସ୍ତେ ଯାଇଛନ୍ତି । ଦହଲୁକୁ କାଖେଇବାକୁ ସୁମାନୀକୁ ବଢ଼େଇ ଦେଇଛନ୍ତି ମଦନ । ସମରୁ ଏବଂ ଦହଲୁର ବସିବା ନିମନ୍ତେ ବିଛା ଯାଇ-ଥିବା ଅଙ୍ଗୁଛିଟା ମଦନ ଉଠାଇ ଆଣିଲା ଏବଂ କାନ୍ଧରେ ପକାଇ ନେଲା । ଗୋଟିଏ ହାତରେ ସମରୁକୁ ଏବଂ ଅନ୍ୟ ହାତରେ ଖାଇବା ବାସନର ଗଣ୍ଠିଲିଟା ଧରି ଅନ୍ୟ ଗଛ ନିକଟକୁ ମଦନ ବଢ଼ିଲା । ଦହଲୁକୁ ଦୁଧ ପିଆଇ ପିଆଇ ସୁମାନୀ ଚାଲିଲା ।

ଅନ୍ୟ ପାଖର ମହୁଲ ଗୋଟାଇ ସାରି ସେମାନେ ଘରକୁ ଫେରିଲେ । ବାଟ ମଝିରେ କେଉଁଠି କେମିତି ଗିରେଲ୍ ଫୁଲ ଫୁଟିଛି । ଶାଗ ନିମନ୍ତେ ସଂଗ୍ରହ କରିବାକୁ ସୁମାନୀକୁ ମଦନ କହୁଛି । ସୁମାନୀ ହଁ ଭରୁଛି ଯେତେବେଳେ ମଦନ ମହୁଲ ଭାରଟା କାନ୍ଧରୁ ଓହ୍ଲାଇ ଦେଇଛି । ଦହଲୁକୁ କୋଳରେ ବସାଇ ଧରି-ବାକୁ ସୁମାନୀ ବଗା ଖୋଲିବାକୁ ସମରୁକୁ କାଖରୁ ଓହ୍ଲାଇ ଦେଲା । ମଦନ ମହୁଲ ଭାରଟା ଥୋଇଦେଲା ଏବଂ କିଛି ଗିରେଲ୍ ଫୁଲ ସଂଗ୍ରହ କଲା ।

ଦହଲୁକୁ ସୁମାନୀ ବଗା ମାରିଛି ଏବଂ କାଖେଇଛି ସମରୁକୁ । ଅନ୍ୟମାନଙ୍କ ଠାରୁ ଆଗରୁ ସେମାନେ ଘରମୁହାଁ ହୋଇ ଫୁର୍ତ୍ତିରେ ଚାଲିଛନ୍ତି । ଆଜି ମଦନ ନିଜ ଭିତରେ ଅପୂର୍ବ ଆନନ୍ଦ ପାଇଛି । ତା'ର ସମଗ୍ର ପରିବାର ଏକ ଜୀବିକା ପଥର ଯାତ୍ରୀ ହୋଇଛି । ଉପରୁ ଖରାର ତାତ ଆଉ ଭିତରୁ ଭୋକର ତାତ ତଥାପି ତାକୁ ଦୁର୍ବଳ କରି ପାରୁନାହିଁ । କାନ୍ଧର ମହୁଲ ଭାର ତାକୁ ତଳକୁ ଚାପି ଦେଉଥିଲେ ସୁଦ୍ଧା ପାଦ ଦୁଇଟା ହାଲୁକା ବୋଧ ହେଉଛି । ଆଜି ସେ ସ୍ୱାଭାବିକ ସାଂସାରିକ ନିର୍ଦ୍ଦେଶରେ ଚାଲିଛି । ଚାଲିନାହିଁ ଅନ୍ୟ ଜଣକର ଇଚ୍ଛାକୃତ ନିର୍ଦ୍ଦେଶରେ । ଆଜି ମଦନର ମନ ଆଉ କାମ ଭିତରେ ପାର୍ଥକ୍ୟ ନାହିଁ । ମନ ଆବେଗ ଆଉ କାମ ଭିନ୍ନେ ନୁହେଁ । ଭବାନୀଶଙ୍କର ବାବୁଙ୍କର ଗଡଦନର ଗୁମ୍ପା ତଳର ଉନ୍ନତ ଖାଦ୍ୟ ହଜମ ହୋଇ ସାରିଛି ଏବଂ ଶରୀରରେ ସଞ୍ଚିତ ହୋଇ-ଥିବା ସାର ଝାଳରେ ବହି ଯାଇଛି ।

ନିତ ବ୍ୟବହାର କରୁଥିବା ନାଳ ପାଖରେ ସେମାନେ ପହଞ୍ଚି ଯାଇ-ଛନ୍ତି । ନାଳ କୂଳର କାମୁଗଛ ତଳେ ମହୁଲ ଭାରକୁ ମଦନ ଓହ୍ଲାଇଛି । ସମରୁକୁ ଓହ୍ଲାଇ ଦେଲା ସୁମାନୀ ଆଉ ବଗା ଖୋଲିଦେଲା । ଗାଧୋଇ ନେବାକୁ କିଛି ସମୟ ସେମାନେ ବିଶ୍ରାମ ନେଇଛନ୍ତି । ମଦନ ସମରୁର ଏବଂ ସୁମାନୀ ଦହଲୁର ଗାଧୁଆର ବ୍ୟବସ୍ଥା କଲେ । ମଦନ ନିଜେ ଗାଧୋଇ ନେଲା । ସମରୁର

ଗାଧୁଆ ପରେ ଏବଂ ଦହିଲୁଲୁ କାଖେଇ ବିଶ୍ରାମ ସ୍ଥଳକୁ ଚାଲି ଆସିଲା । ସୁମାନୀ ମହୁଲ ଫୁଲ ଯୋଡ଼ାନ ଧୋଇନେଲା ପରିଷ୍କାର ଭାବରେ ଆଉ ବାସନ ଗୁଡ଼ୁଲିଟା ଖୋଲି ଗିରେଲ୍ ଫୁଲଟିକ ବାହାର କଲା । ଗିରେଲ ଫୁଲକୁ ପାଣିରେ ଧୋଇଦେଲା । ବାସନଗୁଡ଼ିକ ବାଲିରେ ମାଜିଦେଲା ।

ଘରେ ଦୁଇଟିଯାକ ଚୁଲିରେ ସୁମାନୀ ନିଆଁ ଜାଳିଲା । ଗୋଟିକରେ ମଣ୍ଡିଆ ଅଉ ଗୋଟିକରେ ଶାଗ ରାନ୍ଧିବ । ମଦନ ଛୁଆମାନଙ୍କ ସହିତ ସମସ୍ତ ବତାଉଥିଲା ଏବଂ ସମସ୍ତଙ୍କର ସମସ୍ତ ସୁମାନୀକୁ ଦେଉଥିଲା ।

ପ୍ରାୟ ପ୍ରତିଦିନର ସମୟରେ ମଧ୍ୟାହ୍ନର ଭୋଜନ ସରିଛି । ନିଜ ଖଟରେ ଦହିଲୁଲୁ ସୁମାନୀ ଶୁଆଇଛି ଏବଂ ମଦନର ଖଟରେ ସମସ୍ତେ ଶୋଇ ଯାଇଛି । ଜଙ୍ଗଲକୁ ଯିବ ବୋଲି ସୁମାନୀକୁ ମଦନ କହିଛି । ଘର ଅଗଣାରେ ମଣ୍ଡୁଆ ବା ଗ୍ରାଇ ମଣ୍ଡୁଆଟାଏ କରିବାକୁ ପଡ଼ିବ । ମଣ୍ଡୁଆ ପାଇଁ ଚାରିଟା ଖମ୍ବ, ଆଠ ଦଶଟି ଅଡ଼ସରୁ ଏବଂ ଦୁଇ ତିନି ଭାର ଝାଟି ଆଣିବାକୁ ପଡ଼ିବ । ଭାରେ ଖଜୁରୀ ପାଲୋ ବି ଅଣିବ ମଣ୍ଡୁଅରେ ବଗ୍ଛାଇବାକୁ ।

ଏବେ ମଦନ ବ୍ୟବସାୟ ଉଦ୍ଦେଶ୍ୟରେ ମହୁଲ ସଂଗ୍ରହ କରୁଛି । ସେମାନଙ୍କ ଜୀବନ ମହୁଲ ଭିତରେ ବନ୍ଧା ହୋଇଛି । ମହୁଲର ପରିମାଣ ଯେତେ ବଢ଼ିବ ସେମାନଙ୍କର ଆୟୁ ସେତେ ବଢ଼ିବ । ମହୁଲ ଶୁଖି ଶୁଖି ଗଜା ହେବ ଏବଂ ଏମାନଙ୍କର ଅୟୁ ଭିଜା ଭିଜା ଫୁଲି ଉଠିବ । କେତେଦିନରୁ ମଦନ ଭାର କାଠ ପାଇଁ ଜଙ୍ଗଲକୁ ଯାଇନାହିଁ କିନ୍ତୁ ଜଙ୍ଗଲକୁ ଛାଡ଼ି ପାରୁନାହିଁ । ମଦନ ଜଙ୍ଗଲର ମଣିଷ । ତା'ର ପ୍ରତ୍ୟେକ ଅଂଶରେ ଜଙ୍ଗଲ ପ୍ରତ୍ୟକ୍ଷ ଭାବରେ ପ୍ରବେଶ କରିଛି । କୁଢ଼ିଆଟାଏ ଧରି ସେ ଆଜି ଜଙ୍ଗଲକୁ ଯିବ । ଏହି କୁଢ଼ିଆ ଭିତରେ ଲୁଚିରହିଛି ନିଜର ତା'ର ସୁଖ ଆଉ ଦୁଃଖର ଇତିକଥା । ଏଇ କୁଢ଼ିଆ ଭିତରେ ତା'ର ପୁରୁଷ ପୁରୁଷର ଇତିହାସ ଲୁଚି ରହିଛି । ଜୀବନର ପରି-ବର୍ତ୍ତନରେ ବି ସେ ସ୍ମରଣ କରେ ଅଙ୍ଗୁଳି ତା'ର ଆଖି ଦୁଇଟିର ଭାଷା, ଭାର କାଠ ଯେବେ ଧରା ପଡ଼ିଛି । ସ୍ୱପ୍ନର ଏକ ଆମୋଦକର ମୁହୂର୍ତ୍ତ ପରି ସେ ସ୍ମରଣ କରେ । ଜଙ୍ଗଲର ଖୋଲମାନଙ୍କରେ ସବୁଜ ଘାସରସ୍ ତେଜ ସବୁଜ ଘାସର ଶଯ୍ୟା । ଆଖିରେ ଝଲସି ଉଠେ କିନ୍ତୁ ପର୍ବତର କାନ୍ଧ ବିକନ୍ଧଟା ଖାଲି ଶୁଖିଲା ମାଟିର କର୍କଶ ବକ୍ଷ । ଦୀର୍ଘ ବିଶ୍ରାମ ନେଇଥିବା ପିତୃପିତାର ଦା' ଖଣ୍ଡିକ ଆଖିରେ ଝଲସି ଉଠେ । ଝାପ୍‌ସା ଆଖିରେ ତା'ର ବିଶେ ପ୍ରକାର ଜମିରେ ପାଚି ପଡ଼ି ଲଇଁ ଯାଇଥିବା ଧାନକେଣ୍ଡା । ମଦନକୁ ଏଥିରେ ଆନନ୍ଦ ମିଳେନାହିଁ । ଯେଉଁ ଅତୀତ ଜୀବନର ଆଗାମୀ ମୁହୂର୍ତ୍ତିଗୁଡ଼ିକୁ ସରସ କରିପାରେ ନାହିଁ, ସେଇ

ଅତୀତ ବ୍ୟଥିତର ବ୍ୟଥା ଛଡ଼ା ଆଉ କ'ଣ ହୋଇପାରେ ? ଯେଉଁ ଆନନ୍ଦ ନିରାନନ୍ଦରେ ଆଶ୍ୱାସନା ଆଣେନାହିଁ, ସେ ଆନନ୍ଦ ଏକ ଉପହାସ ନୁହେଁ ତ ଆଉ କ'ଣ ? ମଦନ ସ୍ମରଣ କରେ ଜଙ୍ଗଲରେ ତା'ର ଶ୍ରମିକ ଜୀବନ । ନିଜା-ସ୍ୱତ୍ୱ ଶ୍ରମରେ ଦୀର୍ଘଦିନ ଜୀବନ ଅତିବାହିତ କରି ବି ଯେଉଁ ଶ୍ରମ ସେ କରିଥିଲା ଆଉ ସେଠି ଅନୁଭବ କରୁଛି ନୀତିର ବିଭେଦମୂଳକ ପ୍ରୟୋଗ । ବିଳାସର ଆସୁରିକ କ୍ଷୁଧା ମେଣ୍ଟାଇବାକୁ ଜଣେ ନୀତି ଲଙ୍ଘନ କରି ଚାଲିଛି ଆଉ ଜଣେ । ମଦନର ବୁଢ଼ାଆଟା ତେଜିଉଠେ । ବୁଢ଼ାଆ ହାତରେ ଥାଇ ମଦନକୁ ଇଙ୍ଗିତ ଦିଏ ସେ ଯେ ମଣ୍ଡୁଆ ପାଇଁ ଆବଶ୍ୟକ ଝାଂଟିଖୁଣ୍ଟି ଅଳ୍ପ ସମୟରେ କାଟିଦେବ । ନିଷ୍କଳଙ୍କ ମଣିଷର ପ୍ରତ୍ୟେକ ଅଙ୍ଗ ଏବଂ ପ୍ରବୃତ୍ତି ନେଇ ମଦନ ଆଗେଇ ଆସୁ । ଯେଉଁଠି ଆବଶ୍ୟକତାର ବାହାରେ ନୀତିକୁ ଆଡ଼େଇ ଦିଆଯାଇପାରେ, ସେଇଠି ଆବଶ୍ୟକତା ପୂରଣ କରିବାରେ ନୀତିକୁ ଆଡ଼େଇ ଦିଆଯାଇ ପାରିବ ନାହିଁ କାହିଁକି ? ଯେଉଁଠି ମଣିଷ ଗୋଟିଏ ଜାତି ସେଇଠି ମଣିଷର ତ ଗୋଟିଏ ନୀତି । ଯେଉଁଠି କେହି ଜଣେ ମଣିଷ ଭିତରେ ମଣିଷ ନୁହେଁ ସେଇଠି ମଣିଷ ତା'ହେଲେ ମଣିଷ ପାଇଁ କାହିଁକି ଅନେକ କଥା କହେ । ସେଠ ଜଣକୁ ତା' ନିଜ ଭିତରେ ଛାଡ଼ିଦେବା କଥା । ସେଠି ସେ ନିଜକୁ ନିଜର ଶକ୍ତିରେ ସୁରକ୍ଷା କରୁ । ସୁରକ୍ଷା ତ ବ୍ୟକ୍ତିଗତ ସାମର୍ଥ୍ୟରେ ନୁହେଁ ଏକ ଜାତିଗତ ଶୃଙ୍ଖଳାରେ ନିହିତ ଥାଉ । ଯେଉଁଠି ପାର୍ଥକ୍ୟ ଭିତରେ ମଣିଷକୁ ବାନ୍ଧିବାକୁ ହୁଏ ସେଇଠି ମଣିଷ ତିଆରି କେତେ ଯେ ସଂସ୍ଥା ସ୍ୱାର୍ଥ ସିଦ୍ଧିର ଏକ ଏକ କୌଶଳ ମାତ୍ର । ଏଠି ଜଣେ ମାନିବାକୁ ବାଧ୍ୟ ଆଉ ଜଣେ ମନାଇବାକୁ ବାଧ୍ୟ । ଏ ସବୁକୁ ଶୃଙ୍ଖଳା କୁହା-ଗଲେ ଅନୁଶାସନର ରୂପ ଯାହା ହେଉ ବା ନ ହେଉ ଶାସନ ଏକ ଯନ୍ତ୍ରଣା ଏବଂ ଏସବୁ ସୁରକ୍ଷା ନିମନ୍ତେ ଉଦ୍ଦିଷ୍ଟ ଯଦି କୁହାଯାଏ ତା'ହେଲେ ଭବିଷ୍ୟତ କହିବ, ବିଡ଼ମ୍ବନାର ସଫଳ ପ୍ରୟୋଗ ଭବିଷ୍ୟତ କିନ୍ତୁ କାହା ହାତରେ ଏବଂ କିପରି କହି ହୁଏନାହିଁ ।

ମଦନ ଜଙ୍ଗଲକୁ ଚାଲି ଯାଇଛି । ସେତେ ମୂଲ୍ୟବାନ ରୂପେ ପରିଗଣିତ ହୋଇ ଅସୁ ନ ଥିବା ଗଛକୁ ଚାରୋଟି ଖମ୍ବ ସେ କାଟିଛି । ଆଠ ଖଣ୍ଡ ଆଡ଼ସରି କାଟିଲା । ଦୁଇ ଦୁଇଟି କରି ଚାରୋଟିଯାକ ଖମ୍ବକୁ ମଦନ ରସିରେ ବାନ୍ଧିଦେଲା ଏ ମୁଣ୍ଡରେ ଅଉ ସେ ମୁଣ୍ଡରେ । ଗୋଟିଏ ଚକ୍କଣ ଗଛରୁ ବାହୁଙ୍ଗାଟାଏ କାଟିଲା ଖମ୍ବଗୁଡ଼ିକୁ ବୋହିନେବାକୁ । ଆଡ଼ସରି ସବୁକୁ ସେ ଏକାଠି କରିଦେଲା ।

ଝୁଲିକି କୁଦା ମାରି ମଦନ ଖମ୍ବଗୁଡ଼ିକୁ ବୋହି ଆଣୁଛି । ଆଜି ଦିନ-ସାରା ଖଟିବାକୁ ସେ ନିଜକୁ ତିଆରି କରି ନେଇଛି । କ୍ଲାନ୍ତ କ'ଣ ସତେ

ଯେପରି ସେ ଜାଣେନାହିଁ । ଅଜଣା ଜନପ ମନକୁ ଛୁଇଁନାହିଁ ଯେପରି ।

ମଦନ ଘରକୁ ଚଞ୍ଚଳ ପହଞ୍ଚି ଯାଇଛି । ଅଗଣାରେ ଖମ୍ବ ଗୁଡ଼ିକୁ ଥୋଇଦେଲା ଆଉ ରସି ଖୋଲି ପୁଣି ଜଙ୍ଗଲକୁ ଗଲା । ଲମ୍ବ ଲମ୍ବ ଅଡ଼ସରାକୁ ଗୋଟିଏ ଗୋଟିଏ ପାଖରେ ବାନ୍ଧଦେଲା । ଏବେ ମଦନ ପୁଣି ଘରମୁହାଁ ହୋଇଛି ।

ସୁମାମା ବହଲକୁ କୋଳେଇଛି ଏବଂ ଘରର ପିଣ୍ଡାରେ ନିକଟରେ ସମରୁ ବସିଛି । ଝାଳ ସରସର ହୋଇ ମଦନ ପହଞ୍ଚିଛି । ସମରୁ ଚକିତ ହୋଇ ମଦନକୁ ଚାହିଁଛି । ମଦନ କାନ୍ଧରୁ ବୋଝଟା ଓହ୍ଲାଇଛି । ଆଡ଼ସରାରୁ ସେ ରସି ଖୋଲିନାହିଁ ଅଥବା ବାହୁଙ୍ଗାଟା ଅଲଗେଇ ନାହିଁ । ସୁମାମାର ବିପରୀତ ପାଖରେ ମଦନ ବସିଲା ଆଉ ଗୁଡ଼ ଭିତରେ ଭରି ଯାଇଥିବା ଗରମ ପବନକୁ ବାହାର କରି ଦେବାକୁ ଫୁଙ୍କିଲା । ଅଙ୍ଗଚ୍ଛଟା ଅଣ୍ଟାରୁ ଖୋଲି ଆଣିଛି ମଦନ ଏବଂ ଆଖପାଖର ବାୟୁମଣ୍ଡଳରେ ବୁଲାଇଛି କିଛି ଅଧିକ ବାୟୁ ନିଜର ଶରୀର ଦେଇ ଗତି କରାଇବାକୁ । ମଦନ ନିକଟରେ ସମରୁ ଆସି ବସିଗଲା । ମଦନ ଅଙ୍ଗଚ୍ଛଟା ବୁଲାଇଛି ଯେପରି ବି କିଛି ବାୟୁ ସମରୁର ଆଖପାଖରେ ଗତି କରିବ । ସେ ଚାହିଁଛି ସମରୁକୁ । ଆନନ୍ଦ ସେ କିପରି ଅନୁଭବ କରୁଛି । ସମରୁ ଏବେ ବି ଚାହିଁଛି ସେଇ ଆଡ଼ସରା ଗୁଡ଼ିକୁ । ମଦନ ଯେତେବେଳେ ସମରୁର ଆଖି ଦୁଇଟିକୁ ଦେଖିଛି ସମରୁ ସେତେବେଳେ ମଦନକୁ ଚାହିଁଛି ଆଉ ପଚାରିଛି : ଏ ସବୁ କ'ଣ । ମଦନ କହୁଛି : ଏଇ ଗଛ ସବୁରେ ମଣ୍ଡୁଆ ତିଆରି ହେବ । ସେମାନେ ଗୋଟାଉଥିବା ମହୁଲ ସବୁ ମଣ୍ଡୁଆ ଉପରେ ଶୁଖାଯିବ । ସମରୁ ମଣ୍ଡୁଆ ଶବ୍ଦଟା ଶୁଣି ଥରେ ଦୁଇଥର ଉଚ୍ଚାରଣ କରିଛି ଶୁଭିଲା ଭଳି ଆଉ ନୀରବ ହୋଇଯାଇଛି । ସେ କିଛି ଖୋଜୁଥିବାର ଜଣା ପଡ଼ୁଥାଏ । ମଦନ ରନ୍ଧା କୋଠରୀରୁ କିଛି ପାଣି ଆଣିବା ନିମନ୍ତେ ଯାଇଛି । ହାତ ଆଉ ମୁହଁଟା ଧୋଇ ଦୁଇ ଚାରି ଢୋକ ପିଇଛି ଏବଂ ଅଗଣାରେ ଥୁଆ ହୋଇଥିବା ଆଡ଼ସରାଗୁଡ଼ିକରୁ ରସି ଖୋଲି ସଜାଡ଼ି ରଖିଦେଲା ଖମ୍ବ ଗୁଡ଼ିକ ଥୁଆ ହୋଇଥିବା ସ୍ଥାନରେ । ମଦନ କାନ୍ଧରେ ବାହୁଙ୍ଗାଟା ବୋହି ଚାଲିବ ଜଙ୍ଗଲକୁ ଅବଶିଷ୍ଟ ଆଡ଼ସରାଗୁଡ଼ିକୁ ନେଇ ଆସିବ ।

ସନ୍ଧ୍ୟା ହେବାକୁ ବେଶି ସମୟ ନାହିଁ । ମଦନ ଜଙ୍ଗଲରେ ଠିକଣା ସ୍ଥାନକୁ ପହଞ୍ଚିଛି । ସେ ସେଠାରେ କିଛି ସମୟ ବସିଛି । ଅବଶ୍ୟ ସେ କ୍ଳାନ୍ତ ଅନୁଭବ କରୁଛି ତଥାପି ଏଥି ନିମନ୍ତେ ସେ ବିଶ୍ରାମ ନେଉନାହିଁ ଯେପରି ତାକୁ

ମନେ ହେଉଛ : ଆଜିର ଶେଷ କାମ ସରି ଯାଉଥିବାରୁ ସେ ଯେମିତି ଆଶ୍ୱାସନା ଲାଭ କରୁଛି । କିଛି ସମୟ ପରେ ମଦନ ଏକ ଦୀର୍ଘ ନିଶ୍ୱାସ ଟାଣି ଠିଆ ହୋଇଛି ଆଉ ଆଉଁସରା ଗୁଡ଼ିକୁ ଛୋଟବଡ଼ କମେ ଦୁଇଟି ବୋଝ କରିଛି । ଘରକୁ ଫେରି ଆସିଛି ସେ ବୋଝ ବୋହି ସନ୍ଧ୍ୟାର ଅନ୍ଧାର ଭିତରେ ।

ମଦନ ଯେତେବେଳେ ଘରେ ପହଞ୍ଚିଛି ସୁମାନୀ ଘରେ ନ ଥାଏ । ଭୁବନର ମା' ସହିତ କଥାବାର୍ତ୍ତା କରୁଥାଏ । ଆଜିର ଅନୁଭୂତି ସେ କହି ଚାଲିଥାଏ । ଭୁବନର ମା' ନିଜର କାମ, କାମର ସମସ୍ତ କଷ୍ଟ ରୋଜଗାରର ନିଜସ୍ୱ ଏସବୁ ସମ୍ପର୍କରେ କିଛି କହୁ ନ ଥାନ୍ତି । ଏହିସବୁ ଏମାନଙ୍କର ଦେହରେ ନ ଘୁଞ୍ଚାଇଲେ ଏମାନେ ବଞ୍ଚିବେ କିପରି ? କାମ ପାଇଁ କଷ୍ଟ ଯଦି ସ୍ୱୀକାର କରି ନ ଯାଏ ତା'ହେଲେ କର୍ତ୍ତବ୍ୟ ସମ୍ପାଦିତ ହେବ କିପରି ? ଯାହାର କର୍ତ୍ତବ୍ୟ ନାହିଁ ତାହାର ଜୀବନ ବି ନାହିଁ ।

ସୁମାନୀ ଯେତେବେଳେ କହିଛି ମହୁଲ ଗୋଟାଇ ଫେରିବା ସମୟରେ ଦହିଲୁକୁ ସେ ବଗା ମାରିଥିଲା ଆଉ ସମରୁକୁ କାଖେଇଥିଲା, ସେତେବେଳେ ଭୁବନର ମା' ଛୁଆମାନଙ୍କର କଷ୍ଟ ଆଉ ସୁମାନୀର କଷ୍ଟରେ ବ୍ୟଥିତ ହେଲେ । ତା'ପରେ ସୁମାନୀ ଫେରିଛି କେବଳ ଛୁଆମାନଙ୍କୁ ନେଇ । ଆଜି ସିନା ଚାଲିଗଲା କିନ୍ତୁ ମହୁଲ ଭରଦର୍ ହେଲେ ସୁମାନୀ ଡାଲାରେ ଡାଲାଏ ମହୁଲ ଆଣି ପାରନ୍ତା, ଏ ମଦନ ଏକାକୀ ବା କେତେ ବୋହିବ ?

ସୁମାନୀ ପଚାରିଛି ଭୁବନର ମା'କୁ : ତା'ହେଲେ କ'ଣ କରାଯିବ ? ଦହିଲୁକୁ ତ ସାଙ୍ଗରେ ନେବାକୁ ପଡ଼ିବ । ସେ ତ ମା'ର ଦୁଧ ପିଏ । ସମରୁକୁ ନ ନେଲେ ଚଳିବ କିନ୍ତୁ ସେ ରହିବ କିପରି ? ଘରେ ସମ୍ଭାଳିବାକୁ ଆଉ କେହି ଥିଲେ ଅନ୍ୟ କଥା ହୁଅନ୍ତା । ଭୁବନର ମା' କହିଲେ : ସେ ଏବେ ପ୍ରାୟ ଘରେ ରହନ୍ତୁ । ଛୁଆପିଲାଙ୍କୁ ଖେଳାନ୍ତୁ । ଛୁଆମାନଙ୍କ ସାଙ୍ଗରେ ସମରୁ ଖେଳୁଥିବ । ସୁମାନୀ ତାଙ୍କ କଥାକୁ ପସନ୍ଦ କଲା ।

ଆଉଁସରାଗୁଡ଼ିକ ଥୋଇ ସାରି ସୁମାନୀ କେଉଁଠି ଅଛି ଜାଣିବାକୁ ମଦନ ଘରୁ ବାହାରିଛି । ସୁମାନୀ ଗୋଟିଏ ପର୍ଯ୍ୟାୟର କଥା ସାରିଛି । ନୂଆ ଏକ ପର୍ଯ୍ୟାୟର କଥା ଆରମ୍ଭ ହୋଇଥାନ୍ତା କିନ୍ତୁ ସେ ମଦନକୁ ଦେଖି ନେଇଛି । ଅବଶ୍ୟ ସେ ରନ୍ଧା ସାରି ଦେଇଅଛି ଆଉ ମଦନର ଅନୁପସ୍ଥିତିରେ କାମ ନ ଥିବାରୁ ବୁଲିବାକୁ ସେ ବାହାରିଛି । ଘରେ ମଦନ ଥିଲେ ନିଜ ସଂସାରର ଦୁଃଖ ସୁଖ ହୋଇଥାନ୍ତା ଅଥବା ମଦନର ଜାଣତରେ ନିର୍ଦ୍ଦିଷ୍ଟ ସମୟ ପାଇଁ ବାହାରକୁ

ବୁଲିବାକୁ ଯାଉଥାନ୍ତି । ମଦନ ଡାକ ପକାଇ ନାହିଁ ସୁମାଙ୍କୁ । ସେ ଜାଣି ନେଲଣି ଯେ ସୁମାମା ତାକୁ ଦେଖି ନେଲଣି । ସେମାନଙ୍କ ଭିତରେ ସେଇ ବୁଝାମଣା ଅଛି ଯେ କିଏ କ'ଣ ବୁଝୁଛି । ଏହି ଗୁହାରୀ ପୂରଣ କରାଯାଇ ପାରିବା ଶକ୍ତି ପରସ୍ପରର ଅଛି । ସୁମାମା, ସମରୁ ଏବଂ ଦାଦାଲୁ ଘରକୁ ଆସିଥିଲେ । ପ୍ରଥମେ ସୁମାମା ପଶିଛି ବାଡ଼ିର ଖୋଲା ରହିଥିବା ବାଟରେ ଆଉ ପଛରେ ପଶିଛି ମଦନ ନିଜ କାନ୍ଧରେ ସମରୁକୁ ବସାଇ । ମଦନ ସିଧା ଚାଲିଗଲା ଗୁହାଧନା ଶାଳାକୁ ଗୋଡ଼ହାତ ଧୋଇ ନେବାକୁ ।

ସୁମାମା ବାଢ଼ିଦେଲା ମଦନ ଆଉ ସମରୁ ପାଇଁ ଏବଂ ନିଜେ ବି ନିକଟରେ ବସିଗଲା । କଥାଟା କହିବାକୁ ତା' ମୁହଁଟା ଉଚୁକ୍ ଚୁବୁକ୍ ହେଉଛି । ଭୁବନର ମା' କହିଥିବା କଥାଟା ତାକୁ ଏକବାରେ ପସନ୍ଦ ଲାଗିଛି । ଏକଥା ସେ ଯେତେ ଜଲ୍ଦି କହିବ ସେତେ ଜଲ୍ଦି ତାକୁ ନିଶ୍ୱାସ ବୋଧ ଲାଗିବ; କିନ୍ତୁ ମଦନ ସେ ଖିଆପିଆର କଥା ବ୍ୟତୀତ ବେଶିକିଛି କହେନାହିଁ । ଏ କଥା ଯେ ସେମାନଙ୍କର ଭବିଷ୍ୟତ ଖାଦ୍ୟ ସହିତ ଜଡ଼ିତ । ଏବେ ପେଟ ପୂରିଗଲେ ପେଟଟା ଖାଲି ହୋଇଯିବ ନାହିଁ କି ? ସବୁବେଳ ପାଇଁ ତ ପୂରୁନାହିଁ । ଏଣୁ ମୋଟାମୋଟି କଥାଟା କହିବାକୁ ସୁମାମାର ମୁହଁଟା ଫିଟିଗଲା । ଭୁବନର ମା' କହୁଥିଲେ ସେ ସମରୁକୁ ଘରେ ଛାଡ଼ି ଯିବାକୁ । ସେ ତ ଏବେ ଘର ଜଗନ୍ତି ଆଉ ନାତିପିଲା ମାନଙ୍କୁ ଖେଳାନ୍ତି । ସମରୁ ବି ସେମାନଙ୍କ ସହିତ ଖେଳିବ । ସାଙ୍ଗରେ ସମରୁ ନ ଥିଲେ ସୁମାମା ବି ଡାଲରେ ଡାଲଏ ମହୁଲ ଫେରିବା ସମୟରେ ଆଣି ପାରିବ । ଛୁଆମାନେ କଷ୍ଟରୁ ବଞ୍ଚିବେ ତଥା ନିଜର ଉପାର୍ଜନ ବି ବଢ଼ିବ ।

କଥାଟା ମଦନକୁ ବି ପସନ୍ଦ ଲାଗିଲା । ନିଜର ଖିଆପିଆ ଭିତରେ ମଦନ ସୁମାମାକୁ ନିର୍ଦ୍ଦେଶ ଦେଲା ଯେ ସମରୁ ପାଇଁ ଥରେ ବାଢ଼ି ଭୁବନ ଘରେ ରଖି ଦେବାକୁ । ଭୁବନର ପିଲମାନେ ଯେତେବେଳେ ଥରେ ପିଇବେ ସମରୁ ବି ଥରେ ଟିକିଏ ପିଇଦେବ । ଭୁବନର ଅବସ୍ଥା ସର୍ବଦା ମଦନ ଅପେକ୍ଷା ଭଲ ନୁହେଁ ତଥାପି ଏବେ ଥରେ ଟିକକର ଅବ୍ୟବସ୍ଥା ପ୍ରାୟ ହୁଏନାହିଁ । ସମରୁ ପାଇଁ କିଛି ମୁଢ଼ି ମଦନ କିଣିଦିଅନ୍ତା କିନ୍ତୁ ନିଜ ଛୁଆମାନଙ୍କ ପାଇଁ ଏ ବ୍ୟବସ୍ଥା କରିବା ଅବସ୍ଥାରେ ଭୁବନ ନାହିଁ । ମଦନର ସଞ୍ଚିତ କିଛି ଟଙ୍କା ଅଛି । ଭୁବନର ଘରେ ଜଣେ ବସି ଖାଆନ୍ତି । ଘରେ ବସି ମଧ ସେ ଯେଉଁ କାମ କରନ୍ତି ତାଙ୍କୁ କେତେକାଂଶରେ ସାହାଯ୍ୟ କରେ; କିନ୍ତୁ ଶ୍ରମଲବ୍ଧ ଧନରେ ଯେଉଁ ପରିବାର ଚଳେ, ସେ ପରିବାରରେ ବିନାଶ୍ରମର ଜଣେ ଅନ୍ୟମାନଙ୍କର ଶ୍ରମର ପ୍ରତ୍ୟେକ ମାତ୍ରାକୁ କମାଇ ଦିଏ । ଅବଶ୍ୟ ଘରେଇ କାମରେ ସେ ଜଣକ ନ୍ୟସ୍ତ ଥିବାରୁ ଅନ୍ୟ

ମାନଙ୍କର ସମସ୍ତ ବଣ୍ଟେ, ଘରର ଜିନିଷପତ୍ର ରହେ ଆଉ ଅର୍ଜିତ ବସ୍ତୁର ଅଯଥା ବିନଷ୍ଟ ହୋଇ ନ ପାରେ । ଉପାର୍ଜନଟା ବର୍ତ୍ତମାନର ଆବଶ୍ୟକତା ପୂରଣ କରେ; କିନ୍ତୁ ସେ ଅନ୍ୟମାନଙ୍କର ଶ୍ରମ ପରିପୂରଣରେ ସହାୟକ ହୋଇପାରେ ନାହିଁ ବୋଲି ସେମାନଙ୍କ ଭିତରୁ କେହି କୌଣସି କାରଣରୁ କ୍ଲାନ୍ତ ହେଲେ ଏବଂ ବିଶ୍ରାମ ଆବଶ୍ୟକ କଲେ, ସେମାନଙ୍କ ନିକଟରେ ବଞ୍ଚି ରହିଥିବା ଶ୍ରମର ଫଳ କାହାରିକୁ ଅଣ୍ଟେନାହିଁ । ମଦନ ବହୁତ କଥା ଭୁବନର ଜାଣେ ତେଣୁ ମୂର୍ତ୍ତି କଥା ସେ କହୁନାହିଁ ଯଦିଓ ସମରୁ ଏଥିରେ ତୃପ୍ତ ହୋଇଥାନ୍ତା ।

ସୁମାମି ଖୁସି ହେଲା ଯେ ମଦନ ରାଜି ହୋଇଛି । ନିଜପାଇଁ ରନ୍ଧା ହାଣ୍ଡିରୁ ସେ ଯେତେବେଳେ ଥିର୍ ଟାଳିଛି ଆଜି ତାକୁ ତୋରାଣିଟା ବେଶ୍ ବଢ଼ିଆ ବୋଧ ହୋଇଛି ।

ଆଜି ମଦନ, ସୁମାମି ଏବଂ ଦହଲୁ ମହୁଲ ଗୋଟାଇବାକୁ ଜଙ୍ଗଲ ଆସିଛନ୍ତି । ଦହଲୁକୁ ଗଛ ପାଖରେ ଗ୍ରୁଇରେ ଶୁଆଇ ଦିଆଯାଇଛି । ଯେପରିକି ତା' ଦେହରେ ମହୁଲ ନ ପଡ଼େ ସେଥିପାଇଁ ସେମାନେ ଏ ଗଛର ଶାଖାପ୍ରଶାଖା ବ୍ୟାପିରହିଥିବା ଅଞ୍ଚଳରେ ତାକୁ ଶୁଆଇ ନାହାନ୍ତି । ତାଙ୍କ ଆଖିରେ ସେମାନେ ଦେଖି ପାରୁଥିବା ଭଲ ସ୍ଥାନରେ ନିକଟରେ ରଖି ନିଜ ନିଜ କାମ କରି ଚାଲିଛନ୍ତି । ସମରୁ ସାଥିରେ ନାହିଁ ତେଣୁ ପ୍ରତ୍ୟେକ ଗଛ ପାଖରେ ଥରକୁ ଥର ଦହଲୁର ବସିବାର ବ୍ୟବସ୍ଥା ଆଖି ସାମନାରେ କରାଯାଉଛି । ସମରୁ ଥିଲେ ଅବଶ୍ୟ ଏତକ କରିବାକୁ ପଡ଼ନ୍ତା ନାହିଁ । ବିଶେଷ ଭାବରେ କିନ୍ତୁ ସେମାନଙ୍କର ଏଥିରେ ଯେଉଁ ସମୟ ନିୟୋଗ କରାଯାଏ ତାହା ଏକ ଗଛରୁ ଅନ୍ୟ ଗଛକୁ ସ୍ଥାନାନ୍ତର ହେବା ସମୟରେ କରାଯାଏ ।

ସେମାନେ ଯେଉଁ କେତୋଟି ଗଛର ମହୁଲ ଗୋଟାଇବାକୁ ଠିକ୍ କରିଥିଲେ ସେଇଥିରୁ ଆଉ ଦୁଇଟି ବାକି ଅଛି । ସମୟ ଏତେ ହୋଇନାହିଁ । ମଦନ ସୁମାମିକୁ ଏକାକିନୀ ଗୋଟାଇବାକୁ କହି ସେ କିଛି ଖଜୁର ପାଲ୍ଲେ କାଟିବାକୁ ସ୍ଥିର କଲା । ସେ ଦା'ଟା ଭାର ପାଖରୁ ଆଣିଲା । ଏଠି ଜଙ୍ଗଲରେ ଖଜୁରୀ ବୁଦାର ଅଭାବ ନାହିଁ । ମଦନ ବେଶ୍ ଭାରେ ଖଜୁର ପାଲ୍ଲେ କାଟିଲା ଆଉ ସବୁକୁ ଏକାଠି କଲା । ଦୁଇ ଚାରିଟା ଡାଳ କାଟି ପକାଇଲା ଆଖପାଖ ବୁଦାରୁ । ନିକଟରେ ପଡ଼ିଥିବା ଦୁଇଚାରିଟା ଓଜନିଆ ପଥର ଲଦିଦେଲା ଖଜୁର ପାଲ୍ଲେ ଗଦା ଉପରେ ଯେପରିକି ପବନରେ ଇତଃସ୍ତତଃ ନ ହେବ ।

ଯେତେବେଳେ ମଦନ ସ୍ଥିର କରିଥିବା ଆନୁସଙ୍ଗିକ କାମ କରି ଚାଲିଲା ଆସିଛି ସୁମାମି ବାକି ମହୁଲତକ ଗୋଟାଇ ସାରିଛି । ଆଜି ପୂରା ଭାରେ ମହୁଲ

ଆଉ ଡାଲାରେ ବି ଅଧେରୁ ବେଶି ମହୁଲ ସଂଗୃହିତ ହୋଇଛି । ସୁମାନି ମହୁଲ ଗଛ ନିକଟରେ ବସି ଦହିଲୁର କ୍ଷୁଧା ନିବାରଣ କରୁଛି । ଦାନ୍ତୁଙ୍କାକୁ ଲାଗି ଓହଳି ପଡିଥିବା ଗେଣ୍ଡୁଆର ଯୋଡରେ ମଦନ ଦା'ଟା ଝୁଲାଇ ଦେଲା ।

ସୁମାନି ଦହିଲୁକୁ ବଗା ମାରିଲା ଏବଂ ମୁଣ୍ଡରେ ବୋହିଲା ମହୁଲ ଖରଟା । ମଦନ ଗେଣ୍ଡୁଆ ଖରଟା କାନ୍ଧେଇ ଚାଲିଲା । ଆଗମନ ପଥର ପ୍ରତ୍ୟାବର୍ତ୍ତିତ ଢଗରେ ସେମାନେ ଫେରିଲେ ।

ସୁମାନି ଘରେ ପହଞ୍ଚି ସମରୁକୁ ପ୍ରଥମେ ଡାକଟାଏ ଦେଲା । ମହୁଲ ଡାଲାଟା ତଳେ ଥୋଇ ସେ ବଗା ଫିଟାଇଛି । ମଦନ ଠିଆ ହୋଇଛି ଅଗଣା ଗୁଡ଼ିରେ । ସମରୁ ଦୌଡ଼ି ଦୌଡ଼ି ଆସି ଯାଇଛି ଘରକୁ । ମଦନ ଏବଂ ସୁମାନି ମୁହଁରେ ସମବେଦନା ମିଶା ମମତାର ଏକ ପ୍ରଚ୍ଛାୟା ଦେଖାଯାଇଛି ଯେତେ-ବେଳେ ସମରୁ ମୁହଁରେ ଆନନ୍ଦର ଆଲୋକ ଖେଳୁଛି ।

ମଦନ ଥିର୍ ପିଇ ଖଟିଆରେ ଲମ୍ବ ହୋଇ ବିଶ୍ରାମ ନେଇଛି । କିନ୍ତୁ ସମସ୍ତ ଘରେ ଉଠିପଡ଼ି ତା'ର ଟ୍ରେଙ୍ଗ ଭୂଇଁଆଟା ବାହାର କରିଛି । ଧାର ପରଖି ଦେଖିଲା । ଧାର କରିବାକୁ ପଡ଼ିବ । ଅନେକ ଦିନରୁ ଏହି ଭୂଇଁଆଟା କିଛି କାମରେ ଲାଗି ନ ଥିଲା । ମଣ୍ଡୁଆ ପାଇଁ ସେ ବେଶ୍ ଦୁଇ ଖର ଝାଟି କାଟିବ । ଶିକା ଖରଟା ବି ଧରିଲା ଆଉ ଚାଲିଲା ଜଙ୍ଗଲକୁ ।

ଆନୁମାନିକ ଦୁଇଖର ଝାଟି ବାଛି ବାଛି ସେ କାଟିଲା ଏବଂ ଏକ ସୁବିଧା ଜନକ ସ୍ଥାନରେ ଗଦା କଲା । ଖଜୁର ପାଲେକୁ ବୋହିବାର ସୁବିଧା ନିମନ୍ତେ ବିଡ଼ା ବାନ୍ଧିଦେଲା । ଖଜୁର ପାଲେକୁ ପହଞ୍ଚାଇ ଦେଇ ଝାଟି ଦୁଇଖର ନେବାକୁ ସେ ଜଙ୍ଗଲ ଫେରି ଆସିଲା । ଆଜି ତାକୁ କିଛି ଅଧିକ ଅନ୍ଧାର ହୋଇଛି ।

ପରଦିନ ବହେଁ ମହୁଲ ଗୋଟାଇ ସାମାନ୍ୟ ବିଳମ୍ବରେ ଫେରିଛନ୍ତି । ଆଜି ମଦନର ଖରଟା ବି ଭର୍ତ୍ତି ଆଉ ସୁମାନିର ଡାଲାଟି ବି ଭର୍ତ୍ତି । ସେମାନେ ଆଟୋବାରଥିବା ଗଛଗୁଡ଼ିକ ନିକଟରେ, ସାମାନ୍ୟ ଆଡ଼ୁଆଳରେ ଆହୁରି ଏକ ଗଛ ପାଇଛନ୍ତି । ଏ ଗଛଟିର ମହୁଲ ଅବଶ୍ୟ ଜଙ୍ଗଲକୁ ଚରିବାକୁ ଚାଲି ଆସୁଥିବା ଗାଈ ଗୋରୁଙ୍କ ବିଶେଷ କାମରେ ଆସି ଯାଉଥିଲା । ଏଇ ଗଛ ନିକଟକୁ ଯେଉଁ କେତୋଟି ଗାଈଗୋରୁ ଚାଲି ଆସୁଥିଲେ ସେମାନଙ୍କୁ ଏ ଗଛରୁ ସେ ଗଛ ବୁଲିବାକୁ ପଡ଼ୁ ନ ଥିଲା । ଏ ଗଛଟିର ସନ୍ଧାନ ସୁମାନି ପାଇବା ସମୟରେ ଗାଈଗୋରୁ ମାନଙ୍କ ନିଜର ସାମୟିକ ତୃପ୍ତି ପରେ ଗଛଟିକୁ ଛାଡ଼ି ଅନ୍ୟତ୍ର ଚାଲି ଯାଇଥିଲେଣି । ତଥାପି ଏମାନେ ସେଇ ଗଛରୁ ଆଶାନୁରୂପ ମହୁଲ ପାଇଲେ

ଗଛଟି ଗରିଏନ୍ ହୋଇଥିବାରୁ । ଦିନର ଉତ୍ତାପ ବଢ଼ିଲେ ଏ ଗଛର ମହୁଲ ଝଡ଼େ ।

ମଦନ ଅଳ୍ପ ଥର ପିଇ ଆଉ ବିଶ୍ରାମ ନେଇନାହିଁ । ଲଙ୍ଗଳ ଲୁହାଟା ଦାଦାଙ୍କ କଲା । ମଣ୍ଡୁଆଟା ତିଆରି କରିବାକୁ ଲାଗିଗଲା । ଚାରୋଟି ଖମ୍ବ ପାଇଁ ହାତେ ହାତେ ଗଭୀରର ଗାଆ ଖୋଳିଲା । ଗାଆରେ ଖମ୍ବଗୁଡ଼ିକୁ ପୋତି ଦେଲା ପରେ ସେଗୁଡ଼ିକୁ ଶକ୍ତ କରିବାକୁ ଲୁହାରେ ପିଟିପିଟି ଦେଲା । ମଣ୍ଡୁଅର ଲମ୍ବ ପାର୍ଶ୍ୱରେ ଲମ୍ବ ଆଡ଼ସରା ଦୁଇଟିକୁ ଖଞ୍ଜି ଦେଲା ଆଉ ମୋଟା ମୋଟା ଆଡ଼ସରା ଦୁଇଟାକୁ ମଣ୍ଡୁଅର ଅଡ଼କ ପାଖରେ ଖଞ୍ଜି ଦେଲା । ଅବଶିଷ୍ଟ ଗ୍ରେଟିଯାକ ଆଡ଼ସରାକୁ ମଝିରେ ମଝିରେ ଖଞ୍ଜି ଦେଲା । ଆଡ଼ସରାଗୁଡ଼ିକ ଏପାଖ ସେପାଖ ହେବାକୁ ନ ଦେବା ପାଇଁ ଥପା ଲତାରେ ସେ ଦଉଡ଼ିକୁ ସୁବିଧା ସ୍ଥାନମାନଙ୍କରେ ବାନ୍ଧିଦେଲା ଶକ୍ତ କରି । ମଣ୍ଡୁଆ ଉପରେ ଝାଟି-ଗୁଡ଼ିକୁ ବିଛାଇ ଦେବାକୁ ମଣ୍ଡୁଆର ନୈଋତ କୋଣରେ ଖମ୍ବରେ ସେ ଚଢ଼ିଲା । ସୁମାଣୀକୁ ସେ ଅନୁରୋଧ କଲା ଗୋଟିକୁ ଗୋଟି ଝାଟି ବଢ଼ାଇ ଦେବାକୁ । ଆଗ୍ରହରେ ସମରୁ ଆରମ୍ଭରୁ ମଣ୍ଡୁଆର କାମ ଦେଖୁଥିଲା ଏବଂ ମଝିରେ ମଝିରେ ଅନେକ କଥା ସେ ବାପା ମା'ଙ୍କୁ ପଚାରି ଚାଲିଥାଏ । ସୁମାଣୀ ଝାଟି ବଢ଼ାଇ ଦେଉଛି ଏବଂ ମଦନ ବିଛାଇ ଚାଲିଛି । ସମରୁ ବି ପାରିଲା ଭଳି ଝାଟିଟାଏ ଆଣୁଛି ଆଉ ଆଗ୍ରହରେ ମଦନକୁ ବଢ଼ାଇ ଦେଉଛି । ମଦନ ମଣ୍ଡୁଆରେ ଝାଟି ବିଛାଇ ଦେଇ ଖଜୁରି ପାଲି ବିଛାଇ ଦେଲା ସମାନ ଭାବରେ । ମଣ୍ଡୁଆ ଉପରେ ଚାରିଆଡ଼େ ମଦନ ବୁଲି ବୁଲି ଦେଖିଲା କାଳେ କୌଣସି ସ୍ଥାନରେ ମଣ୍ଡୁଆ ସମାନ୍ତର କରି ନ ଥିଲେ ମହୁଲ ଗଳିଯାଇ ପାରେ । ସବୁ ଠିକ୍ ଅଛି । ସେ ବାଛି ବାଛି ଆଠଟା ଲମ୍ବା ଝାଟି ରଖିଛି ଆଡ଼ସରାଗୁଡ଼ିକର ଠିକ୍ ଉପରେ ସମାନ୍ତର କରି ବାନ୍ଧିଦେବ । ଯେପରିକି ପବନରେ ଖଜୁରି ପାଲି ଉଡ଼ି ନ ଯିବ ।

ମଦନ କାମ ସାରି ମଣ୍ଡୁଆରେ ଅଡ୍ଡା ମାରୁଛି । ସୁମାଣୀ ରନ୍ଧାବଢ଼ାର ଯୋଗାଡ଼ରେ ଲାଗି ଯାଇଛି । ଆଜିକୁ ମିଶି ଦିନଦିନ ହେବ ସେମାନେ ଭୂଇଁରେ ମହୁଲ ଶୁଖାଇ ଦେଉଛନ୍ତି । ମଦନ କେବଳ ଭୂଇଁଟା ଚାଞ୍ଛି ଦେଇଛି ଆଉ ସୁମାଣୀ ଗୋବର ପାଣିରେ ଲିପି ଦେଇଛି । ଏଯାଏଁ ମଣ୍ଡୁଆ ତିଆରି ହୋଇ ନ ଥିଲା । ସଂଗ୍ରହ ନିମନ୍ତେ ଭୂଇଁରେ ଶୁଖାଇବା ସୁବିଧାଜନକ ନୁହେଁ କିମ୍ବା ନିରାପଦ ନୁହେଁ । ଯଦି କୌଣସି ଗାଈ କିମ୍ବା ବଳଦ ଏ ବାଟେ ଦେଇ ମୁସୁଡ଼ିଯାଏ ହୁଏତ ବାଡ଼ଟା ଭାଙ୍ଗି ଦେଇ କିଛି ଖାଇବାକୁ ଚେଷ୍ଟା କରିବ । ମଣିଷର ଦୃଷ୍ଟିରେ ଯଦି ପଡ଼େ ସେଇ ମଣିଷର ବିଚାର ଉପରେ ନିର୍ଭର କରେ । ଏକେତ ଗାଈ ବଳଦ ଗୁଡ଼ିକୁ ଦେଖି ହେବନାହିଁ ।

ମଣ୍ଡୁଆରେ ମହୁଲ ଶୁଖାଇ ଦେଲେ ନିରାପତ୍ତା ବଢ଼ିଯିବ । ଗାଈଗୋରୁ ମହୁଲଟିରେ ନଷ୍ଟ କରି ପାରିବେ ନାହିଁ । ମଣିଷ ବି ଏତେଟା ସାହସ କରି ପାରିବ ନାହିଁ ନିଜ ପାଇଁ କିଛି ନେଇ ଯିବାକୁ । ତିନି ଚାରି ଦିନରେ ଅଥବା ନିଜର ସୁବିଧା ଦେଖି ମଣ୍ଡୁଆର ଖଜୁରି ପାଳୋଗୁଡ଼ିକୁ 'ଝାଡ଼ଦେଲେ ମଣ୍ଡୁଆ ତଳେ ଶୁଖିଲା ମହୁଲ ଗଦା ହୋଇଯିବ । ଘରେ ନେଇ ସୁବିଧା ସ୍ଥାନରେ ରଖି ଦିଆଯିବ । ସେମାନଙ୍କର ଅନୁପସ୍ଥିତିରେ ଅକାରଣି ପାଣି ଯଦି କେବେ ବରଷେ ତା'ହେଲେ ହୁଏତ କିଛି ଅସୁବିଧା ହେବ, ଆଉଥରେ ଶୁଖିବା ପର୍ଯ୍ୟନ୍ତ । ଏ ପ୍ରକାର ପରିସ୍ଥିତି ଅବଶ୍ୟ ଏକ ସ୍ୱତନ୍ତ୍ର କଥା । ଏଥି ନିମନ୍ତେ ବି କିଛି ଉପାୟ ସ୍ଥିର କରାଯାଇ ପାରନ୍ତା, ହେଲେ ସମସ୍ତ ସୁରକ୍ଷା ସତ୍ତ୍ୱେ କୌଣସି ବସ୍ତୁ ଆପଦ ଶୂନ୍ୟ ନୁହେଁ । ଆପଦ ସେଇଥିପାଇଁ ବିଜୟୀ ଯେ ସେ ସମସ୍ତ ସାବଧାନତା ଭିତରେ ବି ଆସିଯାଏ । ଆପଦକୁ ଆମେ ଅନୁଗମନ କରୁ କିନ୍ତୁ ସେ ଆମକୁ ନୁହେଁ । ଆମର ପ୍ରତ୍ୟେକ ବେଗଠାରୁ ସେ ବେଗବାନ୍ ତେଣୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଯାଏ ସେ ଆଗରୁ । ଅବଶ୍ୟ ଆମେ ଅନୁଗାମୀ ହୋଇଥିବା ପଥର ଯାତ୍ରୀ ରୂପେ ଯଦି ଅନୁସରଣଯୋଗ୍ୟ ଏକ ପଥ ସୃଷ୍ଟି କରି ପାରିଥାଉଁ । ତା'ହେଲେ ଆପଦର ଅନ୍ୟତମ ଆବିର୍ଭାବରେ ଆମେ ଯଦିଓ ପରାଜିତ ସଂଗ୍ରାମ କରିବାକୁ ଯଦିଓ ଆମର ଗଭୀର ଇଚ୍ଛା ବଞ୍ଚି ଚହିଥାଇ ନ ପାରେ ତଥାପି ଆମେ କେହି କେହି ସଫଳତା ଲଭନ୍ତୁଁ । ଆମର ଯାତ୍ରା ଅନ୍ୟର ଯାତ୍ରାରେ ସହଯୋଗୀ ହୁଏ ତେଣୁ ଆମର ଶରୀର ପତନମୁଖୀ ହୋଇଥିଲେ ବି ଆମେ ବଞ୍ଚିରହୁଁ । ମଦନ ଅଶୁସ୍ତ ଯେ କାଲିଠାରୁ ନିଜର ଲବ୍ଧ ଧନକୁ ଉପଯୋଗ କରି ପାରିବାର ଅଧିକତର ସୃଷ୍ଟି କରି ପାରିଛି ।

ଏବେ ମହୁଲ ଭର୍ଦର୍ ପଡ଼ିଲାଣି । ମଦନର ବେଶ୍ ଘରେ ଏବଂ ସୁମାମାର ଡାଳରେ ଡାଳଏ ମହୁଲ ହୋଇଯାଇଛି । ମଦନ ଏ ଯାଏଁ ଆଖି-ବୁଣିଆ ଶୁଖିଲା ମହୁଲ ସଂଗ୍ରହ କଲାଣି । ମଝିରେ ମଝିରେ ହାଟକୁ ନେବାକୁ ପଡ଼ିବ । ଦୁଇ ପାଳି ହେଲାଣି ମହୁଲ ହାଟକୁ ଗଲାଣି । ଏବର୍ଷ ଟିଣେ ଶୁଖିଲା ମହୁଲକୁ ପାଞ୍ଚଟଙ୍କା ହୋଇଛି । ଯେଉଁ ଘରେ ଯେତେ ବେଶି ସିଆଣିଆ ଲୋକ ସେ ଘରେ ସେତେ ଉପାର୍ଜନ ବଢ଼ିଲାଣି । କିଏ ଘର ପାଇଁ ବରଷକ ନିମନ୍ତେ ଲୁଣ ବଦଳ କରି ନେଉଛି ତ କିଏ ଯେ ଘରକରଣା ସାମଗ୍ରୀ କିଣି ନେଉଛି । କିଏ ଯେ ନିଜର ଲୁଗାପଟା କିଣି ନେଉଛି । ଯଦି କାହାର କିଛି ଟଙ୍କା କମି ଯାଉଛି, ଆର ପାଳି ହାଟରେ ପରିଶୋଧ କରି ଦେବାକୁ କହି, ସ୍ଥାନୀୟ ଦୋକାନୀଠାରୁ ଧାରରେ ଲୁଗାପଟା ବାସନକୁସନ ନେଉଛି । ଦୋକାନୀ ବି ଆଉ ମନା କରୁନାହିଁ । ସେ ଦେଖିଛି ଯେ ଲୋକଟା ଦୁଇ ପଇସା ଉପାର୍ଜନ କରି

ପାରୁଛି । ଅନେକେ ନିଜର ପୁରୁଣା ଧାର ପରିଶୋଧ କରି ନୂଆ ଜିନିଷର ଅଧେ ମୂଲ୍ୟ ଦେଇ ସାମଗ୍ରୀ ନେଉଛନ୍ତି । ଏବେ ଗାଁ ଗହଳିର ହାଟରେ ଭିଡ଼ ବଢ଼ି ଯାଉଛି । କିଣାବିକା ବଢ଼ିଛି, ଉପାର୍ଜନ ବଢ଼ିଛି । ଆବଶ୍ୟକତା ପୂରଣ କରି-ଯିବାର ସୁଯୋଗ ଦିଆଯାଉଛି ।

ମଦନ ଦୁଇଟି ଡାଲରେ ଶୁଖିଲା ମହୁଲ ଭର୍ତ୍ତି କରିଦେଲା । ମଧ୍ୟାହ୍ନ ହୋଇନାହିଁ । ସେମାନେ ଅଳ୍ପ ଟିକିଏ ଚଞ୍ଚଳ ଅସିଛନ୍ତି ଜଙ୍ଗଲରୁ । ମଦନ ହାଟକୁ ଯିବ । ଏଇ ନିକଟରେ ଗଡ଼ିଆ ଯୋରରେ ରବିବାର ହାଟ ବସେ । ମଦନ ଖରଟା ହାତରେ ଟିକିଏ ଉଠାଇ ଦେଖିଲା । ବୋଝଟା ପରଖି ନେଲା । କାନ୍ଧରେ ଗାମୁଛାଟା ପକାଇ ଦେଲା । ତା'ପରେ ଚାଲିଛି ଗଡ଼ିଆ ଯୋର୍ ରବିବାର ହାଟ ।

ଲୋକେ ଦଳ ଦଳ ହୋଇ ଫେରୁଛନ୍ତି । ପ୍ରାୟ ଅଧିକାଂଶ ହାଟୋଇ ସ୍ତ୍ରୀ ଲୋକ । ଅନେକେ ଟୁପି ଧରିଛନ୍ତି କାଖରେ ଖାଲି ଡାଲା । କିଏ କେମିତି ପୁରୁଷ ଲୋକ ଗେଣ୍ଡୁଆ ଭାର ଅଥବା ଡାଲା ଭାର ଖାଲିଟା ବୋହି ଫେରୁଛନ୍ତି ଏକାକୀ ଅଥବା ନିଜ ପରିବାରର ଆଉ ଜଣେ ବା କେତେଜଣଙ୍କ ସାଙ୍ଗରେ । କେତେକ ଏବେ ବି ହାଟକୁ ମହୁଲ ଆଣୁଛନ୍ତି ଆଉ କେତେକ ମହୁଲ ବ୍ୟବସାୟୀଙ୍କ ପାଖରେ ମହୁଲ ଓଜନ କରାଉଛନ୍ତି । କେତେକ ମହୁଲ ଓଜନ କରାଇବା ଅପେକ୍ଷାରେ ତ କେତେକ ନିଜର ପ୍ରାପ୍ୟ ପାଇବା ନିମନ୍ତେ ସେଠି ଅଟକି ଯାଇଛନ୍ତି ।

ମଦନ ଠଉରାଇ ନେଲା ଯେ କେଉଁ ପାଖରେ ମହୁଲ ମପା ଯାଉଛି । ସେଇ ଦିଗକୁ ସେ ଆଗେଇଲା ଲୁହ ଲୁଦା ବନ୍ଦ କରି ଧୀର ପଦକ୍ଷେପରେ । ଜଣେ ମହୁଲ ବ୍ୟବସାୟୀଙ୍କ ଅଂଶୀଦାର ମଦନକୁ ଦେଖିପାରି ପାଖକୁ ଦୌଡ଼ି ଯାଇଛି । ମଦନର ଡାଲାରୁ ମୁଠାଏ ମହୁଲ ଆଣି ପରଖି ନେଇଛି ଯେ ମହୁଲଟା କେତେକର ଠିକ୍ । ମହୁଲଟା ଖାଣ୍ଟି ଶୁଖିଲା । ବିକା ହେବାକୁ ପାଣି ମିଶା-ଯାଇନାହିଁ ଅଥବା ଦରଶୁଖା ମହୁଲ ବି ନୁହେଁ । ବାଲି ଗୋଡ଼ି ବି ମିଶା ଯାଇନାହିଁ । ଏଇ ଝରିଆ ପାଖରେ ଅସାଧୁତା ନାହିଁ । ମନରେ ତାଙ୍କର ଅସାଧୁତା ପାଇଁ ପ୍ରଶ୍ନଉଠେ । ତେବେ ବ୍ୟବସାୟରେ କିଏ ଭରିଦେଲା ଏଇ ଅସାଧୁତା ଆଉ ଜାଣି ହେଉନାହିଁ । କଞ୍ଚା ସାମଗ୍ରୀ ଯୋଗାଣକାରୀ କିମ୍ବା ଉତ୍ପାଦନକାରୀ । ମଧ୍ୟସ୍ଥ ବ୍ୟାପାରୀ ଅଥବା ବଣ୍ଟନକାରୀ । ସାମଗ୍ରୀ ଯୋଗାଣକାରୀ ଯେତେ ମୂଲ୍ୟବାନ ବସ୍ତୁ ଯୋଗାଇ ଥିଲେ ବି ତ ଉତ୍ପାଦନକାରୀ ଅପେକ୍ଷା ଦରିଦ୍ର । ଦରିଦ୍ର ବ୍ୟକ୍ତିଗତ ଭାବରେ ଦୁର୍ବଳ । ଦୁର୍ବଳ ଅସାଧୁତା ଅବଲମ୍ବନ କରି ନ

ପ୍ରାରେ ଯେଉଁଠିକି ଶକ୍ତିଶାଳୀ ପ୍ରତିରୋଧକ ଶକ୍ତି ସମ୍ମୁଖରେ ଅଛି । ଅବଶ୍ୟ ସେମାନେ ସଂଗଠିତ ଭାବରେ ଶକ୍ତିଶାଳୀ ହୋଇ ପାରିବେ ।

ଉତ୍ପାଦନକାରୀ ଅସାଧୁତା ଅବଲମ୍ବନ କରିବେ ବା କାହିଁକି । ସେ ତ ତାଙ୍କର ସମସ୍ତ ବିନିଯୋଗର ଉଚିତ ମୂଲ୍ୟ ପାଇ ପାରିବେ । ତାଙ୍କର ଉତ୍ପାଦିତ ସମଗ୍ର ସାମଗ୍ରୀ ତ ସାଧାରଣର ବ୍ୟବହାର୍ଯ୍ୟ ସାମଗ୍ରୀ । ସାଧାରଣ ନିମନ୍ତେ ଉଦ୍ଦିଷ୍ଟ ସାମଗ୍ରୀକୁ ସାଧାରଣ ବର୍ଜନ ନ କରିଦେଇ ପାରେ । ବଣ୍ଟନକାରୀ ବି ଅସାଧୁ ହେବାର ସମ୍ଭାବନା ଏତେ ବେଶି ରହି ନ ପାରେ । ପ୍ରତ୍ୟେକ କୌଣସି ନା କୌଣସି ଅସାଧୁତା ଉପରେ କ୍ଷୁଣ୍ଣ । ପ୍ରତ୍ୟେକେ ନିଜକୁ ହତକର ମନେ ହେଉଥିବା ଅସାଧୁତାର ସପକ୍ଷରେ ଗଲେ ଅସାଧୁତା ଭିତରେ ସମସ୍ତେ ଜଡ଼ିତ ହୋଇଯିବା ସ୍ୱାଭାବିକ । ଆଉ ପ୍ରତ୍ୟେକେ ପ୍ରତ୍ୟେକର ଅସାଧୁତାକୁ ବିରୋଧ କଲେ ଏହାର ମୂଳ ରହି ନ ପାରେ; କିନ୍ତୁ ମଣିଷର ଚରିତ୍ରଗତ ସାମାଜିକ ଜୀବନକୁ ସଫଳ କରିଥିବା ସାମୟିକ ସଂସ୍ଥାମାନ, ମଣିଷର ଯେଉଁ ଶକ୍ତି କି ଆଜି ତାକୁ ଅନ୍ୟମାନଙ୍କଠାରୁ ଶ୍ରେଷ୍ଠତର କରି ଦେଇଛି, ସର୍ବୋପରି ଶାସନ ସଂସ୍ଥା—କେବଳ ଶାସକ ନୁହେଁ, ଶାସକର ଅନୁଗାମୀ ଏବଂ ପ୍ରୟୋଗକାରୀ ଉଭୟେ ବି ପୂର୍ଣ୍ଣ ମାତ୍ରାରେ ସଂଯମ ହେବା ସର୍ବାଦୌ ବାଞ୍ଛନୀୟ । ଆହୁରି ମଣିଷ ନିଜକୁ ପୃଥକ କରିଛି ପଶୁଠାରୁ ଶାସନର ଏକ ଶୃଙ୍ଖଳା ଭିତରେ ନିଜକୁ ରଖି । ହୁଏତ ସମୟର ଗତିରେ ଶାସନର ଅଭିରୁଚି ବି ଗତି କରି ଗଲାଣି, ଏଣୁ ଏବେ ବି ମଣିଷ ନିଜକୁ ପଶୁ କରି ଦେଇପାରେ ଶାସନର ଏକ ବିଶୃଙ୍ଖଳା ଭିତରେ ।

ଅଂଶୀଦାର ବ୍ୟବସାୟୀ ଜଣକ ମଦନକୁ କହିଲେ : ମହୁଲଗଛ ମୂଲ୍ୟଣି ଦେଇଦେବାକୁ । ମଦନ ରେକଟୋକ ମନାକଲା । ଯେତିକି ବି ହେଉ ସେ ଉଚିତ ମାପରେ ଦେବ । ହୁଏତ ସେ କ୍ଷତି ବି ସହିପାରେ ଅଥବା ଲାଭବାନ ବି ହୋଇପାରେ । ସେଇଥିରେ କ୍ଷତିର ଅନୁଶୋଚନା ନାହିଁ ଅଥବା ଲାଭର ତୃପ୍ତି ବି ନାହିଁ । ପ୍ରଚଳିତ ସାର୍ବଜନୀନ ମୂଲ୍ୟ ସଂଶ୍ଳିଷ୍ଟ ବସ୍ତୁ ଉପରେ ଜଣେ ପାଇବାର ସମ୍ପୂର୍ଣ୍ଣ ଅଧିକାରୀ, ପ୍ରାପ୍ତିରେ ନିଜର ବ୍ୟତିକ୍ରମ ଆଣୁ ଆଣୁ ମାନବିକତାରେ ବି ବ୍ୟତିକ୍ରମ ଆଣିବାର ପଥ ଜଣେ ସୃଷ୍ଟି କରିଦେବ ।

ଅଂଶୀଦାର ବ୍ୟବସାୟୀ ଜଣକ ମାପି ଜିନିଷ ନେବାକୁ ସମ୍ମତ ହେଲେ ଏବଂ ପ୍ରଚଳିତ ଉଚିତ ମୂଲ୍ୟ ଦେଇ ଦେବାକୁ ରାଜି ପଡିଲେ । ମଦନ ତଥାପି ରାଜି ହେଲାନାହିଁ । ସେ ଶୁଣିଛି ହାଟରେ ଭିନ୍ନ ଭିନ୍ନ ମାପ ଚଳେ, କିଏ ମପା ଯାଉଥିବା ଟିଣର ସ୍ୱାଭାବିକ ରୂପ ରଖିଥାଏ ଆଉ କିଏ ଯେ ମୂଲ୍ୟ ପୃଥକ୍ ରଖି

ଏହାର ରୂପ ବି ପୃଥକ୍ ହୋଇଥାଏ । ଏଣୁ ସେ ମାପଗୁଡ଼ିକୁ ଅନୁମାନରେ ପରଖି ନେଇ ନିଜର ସାମଗ୍ରୀ ଦେବ । ବ୍ୟବସାୟୀ ଜଣକ କହିଲେ ତାଙ୍କର ଓଜନ କରିଯିବାର ବ୍ୟବସ୍ଥା ଅଛି ଏବଂ ସେମାନେ ତିଣର ସ୍ୱାଭାବିକ ଅବସ୍ଥାରେ ତିଣକୁ ପାଞ୍ଚଟଙ୍କା ଦିଅନ୍ତି । ମଦନ ହଁ ଭରୁଛି ଏବଂ ଅପେକ୍ଷା କରିବାକୁ ଅନୁରୋଧ କରୁଛି । ସେ ଦର ବୁଝିନେବ । ମଦନ ଜାଣିଛି ତିଣକୁ ପାଞ୍ଚଟଙ୍କା ଅଳ୍ପ ଦର ଅଛି । ତେଣୁ ସେ ରାଜି ପଡ଼ୁଛି । ମଦନର ମହୁଲ ସାଢ଼େ ଚାରି ତିଣରୁ କିଛି ଅଧିକ ଥିଲା । ତେଣୁ ସେ ତେଇଶ ଟଙ୍କା ପାଇଛି । ଏ ହେଉଛି ତା'ର ପରିବାରର ଉପାର୍ଜନ । ମଦନ ମୂଲଣିର ଶେଷ ମୂଲ୍ୟଠାରୁ ଅଧିକ ଦୁଇଟଙ୍କା ପାଇଛି । ଆଉ ପ୍ରଥମ ଥରର ମୂଲଣି ମୂଲ୍ୟଠାରୁ ପାଞ୍ଚଟଙ୍କା ଅଧିକ ପାଇଛି ।

ଘରର ଆବଶ୍ୟକୀୟ ଜିନିଷପତ୍ର ମଦନ କିଣି ନେଇଛି ଏବଂ ଗୁଡ଼ାଳ କିଣିବାକୁ ସମୟ ପାଇବା ନିମନ୍ତେ ଅବିଳମ୍ବେ ହାଟ ଛାଡ଼ୁଛି ।

ମଦନ ନିଜର ଓ ସୁମାଙ୍କର ସାରାଦିନର ମୂଲ ଯୋଡ଼ି ଦେଖିଛି ଯେ ସେମାନେ ନିଜକୁ ଅବଲମ୍ବନ କରି ଯଥେଷ୍ଟ ଉପାର୍ଜନ କରନ୍ତି । ମଦନ ଅନୁଭବ କରେ ଝାଟିର ତା'ର ଜଙ୍ଗଲରେ କେତେ ଯେ ଅସରନ୍ତି ସମ୍ପଦ ଭରି ରହିଛି । ନିଜର ସ୍ୱାଭାବିକ କିମ୍ବା ସମ୍ପାଦନ କରିବାକୁ ଜଙ୍ଗଲ ଯେଉଁସବୁ ବସ୍ତୁକୁ ପରିତ୍ୟାଗ କରି ଦେଉଛି ସେ ସବୁକୁ ସମ୍ପଦ ରୂପେ ଜଣେ ଗ୍ରହଣ କରିବାକୁ କ୍ଷମ ନୁହେଁ ଯେଉଁଠି, ସେଇଠି ଜଣେ ଏ ସବୁକୁ ଚିହ୍ନି ନ ପାରି ନିଜକୁ ବଳଶାଳୀର ଯଥେଚ୍ଛାଚାରର ଭିତରେ ମିଶାଇ ଦେଉଛି । ମହୁଲ ସଂଗ୍ରହ ମଦନ ଯତ୍ନ କରି ନ ଥାନ୍ତା ଅବଶ୍ୟ ଅନ୍ୟମାନେ ସଂଗ୍ରହ କରିଥାନ୍ତେ; କିନ୍ତୁ ସେ ଯେପରି ସେ ସବୁର ପୂର୍ଣ୍ଣ ବିନିଯୋଗ ନିମନ୍ତେ ଧ୍ୟାନ ଦେଇଛି ତାହା ଅନ୍ୟ ଜଣେ ହୁଏତ ଦେଇ ନ ଥାନ୍ତା । ମଦନ ଏଇ କେତୋଟି ଗଛକୁ ନିଜର ଉପାର୍ଜନର କ୍ଷେତ୍ର କରିଛି ଆଉ ଅନ୍ୟ କେହି କହୁନାହିଁ ଯେ ସେମାନଙ୍କୁ ଗଛର ଅଭାବ ଅଛି । ତା'ର ଦୃଢ଼ ବିଶ୍ୱାସ ଯେ ଏବେ ବି ଅନେକ ଗଛ ନିଜର ହୋଇ କାହାରି ରହି ନ ଥିବ, ଅଥଚ ସମସ୍ତେ ପ୍ରଥମର ପ୍ରାଧାନ୍ୟ ଉପଭୋଗ କରୁଥିବେ । ଯେଉଁଠି ଆବଶ୍ୟକତା ଏବଂ ସାମର୍ଥ୍ୟର ବାହାରେ ସାମଗ୍ରୀ ବିଞ୍ଚି ହୋଇ ଯାଉଛି ସେଠି ସାମଗ୍ରୀର ଉପଯୋଗିତାରେ ଗୁରୁତ୍ୱ ଯେତେ ଦିଆଯାଏ ନାହିଁ ନିଜର ଉପଯୋଗରେ ସେତେ ଗୁରୁତ୍ୱ ଦିଆଯାଏ । ମଣିଷ ସୀମିତ ପରିସରରେ ନିଜକୁ ଆବଦ୍ଧ ରଖି ଯେଉଁଠି ସମସ୍ତ ମୌଳିକ ଆବଶ୍ୟକତା ମେଣ୍ଟାଇ ପାରନ୍ତା ସେଇଠି ମଣିଷ ଏକ ଦୀର୍ଘ ପରିସର ମଧ୍ୟରେ ନିଜକୁ ଯାଯାବର କରିଦିଏ । ମଣିଷ ଭିତରେ ମଣିଷ ହେବାକୁ ମଦନ ଚାହେଁ । ସେ ନିଜର ଆବଶ୍ୟକତା ତେଣୁ ନିଜର ଶ୍ରମରେ ପୂରଣ କରିବାର ସର୍ବନିମ୍ନ କ୍ଷେତ୍ରରେ ସନ୍ତୋଷ ଲାଭ କରୁଛି । ମଦନ ମଣିଷର ମଣିଷ

ହେବାକୁ ଆଶାପୋଷଣ କରନାହିଁ । ଯେଉଁଠି ସେ ନଜେ ମଣିଷ ହୋଇ ପାରୁନାହିଁ, ସେଠି ସେ ମଣିଷକୁ ଅପବାଦ ବା ଦେବ କ'ଣ କନ୍ତୁ ସେ ମଣିଷରେ ମଣିଷ ଏକ ହୋଇ ନଜ ଭିତରେ ମଣିଷତ୍ୱ ଫୁଟାଇବାକୁ ଚେଷ୍ଟାକରେ । ହୁଏତ ସେଇଥିରେ ସେ ମଣିଷର ମଣିଷ ବ କ୍ଷେତ୍ର ବଶେଷରେ ବୋଲ ହୋଇପାରେ ଅଥବା ମଣିଷରେ ମଣିଷ ଗୋଟିଏ ହୋଇ ହଜି ବ ଯାଇପାରେ । ସେ କନ୍ତୁ ମଣିଷରୁ ମଣିଷ ହେବାକୁ ଗୃହ୍ରୋନାହିଁ କମ୍ବା ଏବେ ବ ତା' ପାଖରେ ସଞ୍ଚିତ ଯେଉଁ ପୁଞ୍ଜି ଅଛି ସେଇଥିରେ ସେ ନଜେ ନଜ ଘରେ ଅନ୍ୟମାନଙ୍କଠାରୁ ସୁବଧା ମୂଲ୍ୟରେ ଯଥେଷ୍ଟ ମହୁଲ ସଂଗ୍ରହ କର ପାରନ୍ତା ଏବଂ ନଜର ପୁଞ୍ଜି ବୃଦ୍ଧି କର ଚଳମ୍ପିବାକୁ ଏକ ନୂତନ ସୋପାନର ଆରମ୍ଭ କରନ୍ତା । ଅବଶ୍ୟ ପୂର୍ବପର ସେମାନେ ନଜେ ବ ମହୁଲ ସଂଗ୍ରହ କରୁଥାନ୍ତେ କନ୍ତୁ ମଦନ ଯେଉଁଠି ମଣିଷତ୍ୱ ଖୋଜୁଛି ସେଇଠି ସେ ମଣିଷତ୍ୱର ସଂହାର କରବ କାହିଁକ ? ହୁଏତ ସେ ଏ ପ୍ରକାର ସଂସ୍ଥାର ଏକ ସଦସ୍ୟ ହୋଇଥାନ୍ତା ଯଦ ତା'ହେଲେ ଭିନ୍ନ କଥା; କନ୍ତୁ ସେ ଏକ ସଂସ୍ଥା ହୋଇ ମଣିଷତ୍ୱର ବ୍ୟାପାର କରବ ନାହିଁ । ଏସବୁ ମଦନ ଜାଣେନାହିଁ କମ୍ବା ଜାଣିବାର ପ୍ରୟୋଜନୀୟତା ସମ୍ପର୍କରେ ଚନ୍ତା କରବାର ପର-ବେଶର ବହୁତ ଦୂରରେ ସେ ରହିଯାଇଛି । କୌଣସି ଏକ ବସ୍ତୁକୁ ଯଦଓ ତା' ନମନ୍ତେ ଉଦ୍ଦିଷ୍ଟ, ବଭିନ୍ନ ସ୍ଥାନକୁ ସିଧାସଳଖ ପହଞ୍ଚା ଯାଇ ନ ପାରେ ବା ପ୍ରତ୍ୟେକ କ୍ଷେତ୍ରରେ ଏବଂ ଏଥି ନମନ୍ତେ ମାଧ୍ୟମ ଅବଶ୍ୟକ; କନ୍ତୁ ମାଧ୍ୟମରୁ ମାଧ୍ୟମର ପାର୍ଥକ୍ୟ ଯେତେ କମ ହୋଇପାରେ ସେତେ ଗ୍ରହଣଯୋଗ୍ୟ ।

ମଦନ ଏବଂ ସୁମାମା ଏବେ ତତ୍ପର ହୋଇ ଯାଇଛନ୍ତି । ସେମାନେ ରାତ୍ରୀର ଏକ ଅଂଶକୁ ଏବେ ଦବାଭାଗର ଆଲୋକିତ ଅଂଶ ମନେ କରନ୍ତି । ଜହ୍ନ ରାତିରେ ସେମାନେ ଅଧିକ ସୁଯୋଗ ଲଭ କରନ୍ତି ତଥାପି ଅନ୍ଧକାର ରାତ୍ରୀକୁ ସେମାନେ ପ୍ରତ୍ୟାଖ୍ୟାନ କର ନାହାନ୍ତି । ପରବର୍ତ୍ତନ ବ୍ୟତୀତରେକେ କୌଣସି ବସ୍ତୁର ମୌଳକତାକୁ ପୃଥକ କରାହିବ ବା କପର । ମଦନ ଅନ୍ଧକାର ରାତ୍ରୀର ଅନ୍ଧାରକୁ ଅତକ୍ରମ କରେ ହାତରେ ଏକ ନଆଁ ଖୁଣ୍ଟା ଧର ଆଉ ଗଛ ତଳକୁ ଆଲୋକିତ କରାଏ ଶୁଖିଲା ପତର ଝାଟିଦୂଟି ଜାକ ।

ମଦନ ଏବଂ ସୁମାମା ବେଲଉଦାକୁ ଏବେ ଘରେ ମହୁଲ ସଂଗ୍ରହ କର ନଅନ୍ତି । ଦହଲୁ ଶୋଇଯାଏ ସୁମାମାର ପିଠିରେ, ବଗା ଭିତରେ । ଝଟରୁ ଉଠି ସୁମାମା ଦହଲୁକୁ ପରସ୍ତା କରାଇ ଦେଇଥାଏ ପ୍ରଥମରୁ । ଯେପରକ ପରେ ତା'ର ପିଠି ଆଉ ଲୁଗା ଓଦା ନ ହୁଏ ଏବଂ ଏ ପ୍ରକାର ଓଦାଳିଆ ପରବେଶରେ ଦହଲୁ ଚେଇଁ ନ ଉଠେ । ଦହଲୁର ଅସାମୟିକ ଜାଗରଣରେ ସମ୍ମୁଖରେ ସମ୍ପାଦତ

ହେବାକୁ ଥିବା ନିଜର କର୍ତ୍ତବ୍ୟ ଯେପରି ଅସାବଧାନତା ଭିତରେ ବିଶୃଙ୍ଖଳିତ ନ ହେଉ । ଅସାବଧାନତା ଅବହେଳାକୁ ଟାଣି ନ ଆଣୁ ଆଉ ନିଜକୁ ଅବହେଳିତ ନ କରୁ ।

ବେଳ ଉଦାକୁ ମଦନ ଖରେ ମହୁଲ ନେଇ ଘରକୁ ଆସେ । ଯତନରେ ତାକୁ ଶୁଖାଇ ଦିଏ ମଣ୍ଡୁଆ ଉପରେ ଆଉ ମହୁଲ ଜଙ୍ଗଲକୁ ଫେରେ । ସୁମାନି ବି ଦହିଲୁକୁ ଦୁଧ ପିଆଇ ଦେଇ ମହୁଲ ଗୋଟାଇବାରେ ଲାଗିପଡ଼େ । ମଦନର ଫେରିବା ଭିତରେ ନିଜର ଡାଲରେ ଯେ ଯଥେଷ୍ଟ ମହୁଲ ପୂରାଇ ଦେଇଥାଏ । ମଦନ ବି ଆସି ଏଠି ସାମାନ୍ୟ ବିଶ୍ରାମ ପରେ ଥର୍ ଟିକିଏ ପିଏ, ଆଉ ମହୁଲ ଗୋଟାଇବାରେ ଲାଗିପଡ଼େ ।

ଏବେ ଯଥେଷ୍ଟ ମହୁଲ ସେମାନଙ୍କ ନିକଟରେ ଗଦା ହେବାରେ ଲାଗିଲାଣି । ଏଇ ନିକଟରେ ଜଙ୍ଗଲ ଥିବାରୁ ମଦନ ଦିନକୁ ଦୁଇଥର ଆଉ ସୁମାନି ବେଶ୍ ଡାଲାଏ ମହୁଲ ମୁଣ୍ଡରେ ବୋହିଁଇ ଘରକୁ ଫେରନ୍ତି । ହାଟ କିନ୍ତୁ ଏତେ ପାଖରେ ନୁହେଁ ଯେ ଦୁଇ ଖର ମହୁଲ ନେଇ ହେବ । ସୁମାନି ସାଙ୍ଗରେ ଗଲେ ଅବଶ୍ୟ ଡାଲାଏ ମହୁଲ ନିଅନ୍ତା । ମଦନ ହିସାବ କରି ଦେଖେ ଯେ ତଥାପି ସପ୍ତାହ ଶେଷରେ ମହୁଲ ରହିଯିବ । ଗୁରୁବାର ଦିନ ପ୍ରାୟ ତିନିକୋଶ ଦୂରେ ପଡ଼ୁଥିବା ହାଟପାଲି ଜରଙ୍ଗ ଲେଇକୁ ମହୁଲ ନେବାକୁ ସ୍ଥିର କରେ । ମଦନ ତେଇଶି ଟଙ୍କା ପାଇଛି ଆଉ ମାଛ ଗୁଣ୍ଡୁଗୁଣ୍ଡ ଅନ୍ଧାରକୁ ଫେରିଛି । ମଦନ, ସୁମାନି ଏବଂ ଦହିଲୁକୁ ମଧ୍ୟାହ୍ନର ଖିଆପିଆ ପରେ ଗଡ଼ିଆ ଯୋର ହାଟ ଲମ୍ଭି ଯାଆନ୍ତି । ସେ ସାଢ଼େ ଗୃହିଟିଣରୁ କିଛି ଅଧିକ ଏବଂ ସୁମାନି ଅଢ଼େଇ ଟିଣରୁ ସାମାନ୍ୟ କମ ମହୁଲ ନେଇଛି । ବ୍ୟବସାୟୀ ଜଣେ ସୁମାନିର ମୁଣ୍ଡରେ ବୋହିଁଇ ହୋଇଥିବା ଡାଲିଟି ପରଖି ନେଲି ଆଉ ନିଜ ପଟ୍ଟି ଆଡ଼କୁ ନେବାକୁ ଚାହିଁଲା । ହାଟକୁ ମହୁଲ ନେଇ ସୁମାନି କେବେ ଆସିନାହିଁ । ସେ ହାଟକୁ ଆସିଛି, ହାଟ ଦେଖିଛି ଏବଂ ମହୁଲ ବିକାକଣା ବି ଦେଖିଛି । ସେ ଦେଖିଛି ଅନେକଥର ପସରା ଦଖଲ କରିବାରେ ବ୍ୟବସାୟୀମାନେ କିପରି ବ୍ୟଗ୍ର ହେଲେ ଏଇ ଥର୍ ଟିକିକ ପଛରେ ଦୌଡ଼ିଥିବା ସ୍ତ୍ରୀମାନଙ୍କର ଭିତର କଥା ସୁମାନି ଜାଣି ନ ଥିଲା । କେହି ବି ତାକୁ କହିନାହିଁ । ସେ ଏତିକି ଶୁଣିଛି ଯେ ଜଣେ ବ୍ୟବସାୟୀ ଉଚିତ ମୂଲ୍ୟ ଦିଏନାହିଁ କି ଉଚିତ ମାପରେ ନିଏନାହିଁ ଅଥଚ ଜଣକର ପସରାଟାକୁ ଦଖଲ କରୁଥାଏ । କିନ୍ତୁ ସେ ଏପରି ଏକ ବ୍ୟବସାୟୀ ଜଣକୁ ଦେଲି ଯେଉଁଠି ସେ କିଛି ଅଧିକ ପାଇଲା । ବ୍ୟବସାୟୀ ଜଣକ ତାକୁ ଯେଉଁ ଅଭିପ୍ରାୟ ମୂଳକ ହସ ଅଥବା ହେୟଜ୍ଞାନ ମନେ କରୁଥିବାର ବ୍ୟବହାର ଦେଇଛି ସେ କଥା କିନ୍ତୁ ସେ ଶୁଣିନାହିଁ । ସୁମାନି ଦେଖିଛି ବ୍ୟବସାୟୀ ମୁହଁର ହସ ଆଉ ବିଦେଶୀର ହସ । ସୁମାନି କିନ୍ତୁ ପରଖି

ନାହିଁ ଯେ ଏ ହସ ବନ୍ଦେଶୀର ଶ୍ରମ ସାର୍ଥକତାର ହସ—ଫଳବତୀ ଆଶାର ହସ—ଲକ୍ଷ୍ୟର ସୀମା ଅତିକ୍ରମ କରିଥିବା କୃତତ୍ୱର ହସ ଅଥବା ଜାଗି ଉଠିଥିବା ସୁପ୍ତ ପ୍ରବୃତ୍ତିର ହସ । କିନ୍ତୁ ଆଜି ସେ ନିଜେ ଅନୁଭବ କରନ୍ତି ଏ ହସ କେତେ କଷ୍ଟଦାୟକ । ଏଠି ସୌଜନ୍ୟତା ନାହିଁ ଅଥଚ ସୂଜନ ଅଭିନନ୍ଦିତ ହେଉଛି । ସୌଜନ୍ୟ ନାହିଁ ଅଥଚ ଅଛି ଅଭିନନ୍ଦନ, ଅଭିପ୍ରାୟ ଏଠି କେତେ ମାରାତ୍ମକ । ସୁମାଳୀ ନିଜକୁ କହେ, ଯେଉଁମାନେ ଉଚ୍ଚ ଆସନରେ ଆସୀନ ତା'ହେଲେ ଅଭିନନ୍ଦନ କରନ୍ତି ତଳକୁ—ଉଦ୍ଦେଶ୍ୟପ୍ରସୂତ ସମ୍ପର୍କର ଭିତ୍ତାଭିତ ସୌଜନ୍ୟର ଆଡ଼ୁଆଳରେ । ସୂକ୍ଷ୍ମ ସୂତାରେ ଉର୍ଣ୍ଣନାଭ ପରସ୍ପରମୁଖୀ ଦୁଇଟି ବସ୍ତୁକୁ ଯୋଡ଼ିଦିଏ ଆଉ ଏକ ପ୍ରୟୋଜନୀୟ ଜାଲ ବୁଣିଦିଏ । ଏକ ସୁବିଧାଜନକ ସ୍ଥାନରେ ଲୁଚିରହେ ସେ । ଉଦ୍ଦେଶ୍ୟମୂଳକ ପ୍ରତାରଣାଠାରୁ ମାରାତ୍ମକ ମାରଣାସ୍ତ୍ର ବାସ୍ତବିକ ଆଉ ଥାଇ ନ ପାରେ । ଏହାର ସଫଳ ପ୍ରୟୋଗକାରୀଠାରୁ ଶକ୍ତିଶାଳୀ ଆଉ କେହି ନୁହେଁ ।

ବ୍ୟବସାୟୀଙ୍କର ଦଖଲରେ ସୁମାଳୀ ଆସିଯାଇଛି ଏଇଥିପାଇଁ ସେ ଶଙ୍କିତ ନୁହେଁ । ସେ ବି ନିଜର ସାମଗ୍ରୀ ଦଖଲ ଦେବାକୁ ଚାହିଁଛି । ଏଠି ତ ଏହା ଚାଲିଛି ସମସ୍ତଙ୍କ ପ୍ରତି କେବଳ—ତା' ପ୍ରତି ନୁହେଁ । କିନ୍ତୁ ସେ ମନ ଭିତରେ ମଦନକୁ ଦେଖେ । ମଦନ ସୁଗଠିତ ବଳବାନ ଯୁବକ ଅଥଚ କେତେ ନିରୀହ ।

ମଦନ ଦେଖିପାରିଛି ଯେ ଜଣେ ବ୍ୟବସାୟୀ ସୁମାଳୀର ମହୁଲକୁ ଦଖଲ କରି ନେଇଛି । ସେ ସାଙ୍ଗେ ସାଙ୍ଗେ ସ୍ୱର ଉତ୍ତୋଳନ କଲା । ମଦନ ବ୍ୟବସାୟୀଙ୍କ ବ୍ୟବହାରରେ ତ୍ରୁଟି ଦେଖିନାହିଁ । ଅଥବା ଅନୁଭବ କରିନାହିଁ । ସୁମାଳୀର ମନୋଭାବରୁ ବି ସେ ବୁଝି ନେଇଛି ଯେ ସେ ପ୍ରତିରୋଧ କରୁଛି । ସେ ବ୍ୟବସାୟୀଙ୍କୁ ସେମାନେ ମହୁଲ ଦେବେନାହିଁ ମଦନ ସ୍ପଷ୍ଟ କହୁଛି । ପୂର୍ବରୁ ଯାହାଙ୍କୁ ସେ ମହୁଲ ଦେଇଛି ତାଙ୍କୁ ହିଁ ଦେବେ ଅଥବା ଅନ୍ୟକୁ ଦରମୂଲ ବୁଝାବୁଝି କଲାପରେ ଦେବେ । ସେମାନେ ତ ବିକିବାକୁ ଆସିଛନ୍ତି । ନିଜ ଜିନିଷର ଉତ୍କୃଷ୍ଟତା ଅଥବା ପରିମାଣ ଦେଖାଇବାକୁ ସେମାନେ ଆଣି ନାହାନ୍ତି । ସେମାନେ ବିକିବେ ।

ସୁମାଳୀ ଶୁଣିଛି ଯେତେବେଳେ ମଦନର କଥା ଅଟକି ଯାଉଛି ଆଗକୁ ବଢ଼ି ଯିବାରୁ ଅଥଚ ପୂର୍ବ ଗତିରେ ତାଲରେ ହାତ ଦେଇ ବ୍ୟବସାୟୀଜଣକ ହାତଟା ଅଲଗେଇ ଦେଇଛନ୍ତି । ସୁମାଳୀର ପିଠି ପାଖରେ ବଗାର ଶକ୍ତ ଦେହ ଭିତରେ ଦହଲୁ ଏ ଝିଙ୍କ ଭିତରେ ଚେଇଁ ଉଠିଛି । ଦହଲର ଜାଗରଣ ସୁମାଳୀ ଅନୁଭବ କରିଛି । ଅଙ୍ଗରେ ଫୁଟି ଉଠିଛି ସନ୍ତାନର ସ୍ପର୍ଶ ଜନିତ ଶିହରଣ । ସେଇ

ମୁହୂର୍ତ୍ତରେ ତା'ର ସମସ୍ତ ଧ୍ୟାନ କେବଳ ଯାଇଛି ଦହଲୁର ପୁଲକଭରା ଆଖି ଦୁଇଟିରେ । ସେ ଏଇ ମୁହୂର୍ତ୍ତଟି ବ୍ୟବସାୟୀଙ୍କର ଦଖଲରେ ଆଉ ନାହିଁ ।

ମଦନ ଓ ସୁମାନି ମହୁଲ ବିକାଳି ଗହଣରେ ନିଜ ନିଜର ପସରା ଓହ୍ଲାଇ ଦେଲେ । ପସରାଗୁଡ଼ିକୁ ଦେଖୁଥିବାକୁ ସୁମାନିକୁ ମଦନ କହୁଛି । ମଦନ ହାଟରେ ତଦନ୍ତ କଲା ମାପ ଆଉ ଦର କିପରି ଅଛି । ପୂର୍ବ ପରିଚିତ ବ୍ୟବସାୟୀଙ୍କଠାରେ ଆଶାନୁରୂପ ଫଳ ସେ ପାଇଛି । ସୁମାନିକୁ ସେ ଅନୁରୋଧ କଲା ମହୁଲ ଡାଲି ଉଠାଇବାକୁ ।

ଆଜି ମଦନ ଓ ସୁମାନି ପାଇଛନ୍ତି ପଁଚତିରିଶି ଟଙ୍କା । ସୁମାନି ମନେ ମନେ ହିସାବ କଲା ଏ ସପ୍ତାହରେ ସେମାନେ ପାଇଛନ୍ତି ଦୁଇ କୋଡ଼ି ଅଠର ଟଙ୍କା ବା ଅଠାବନ ଟଙ୍କା । ମଦନ ଘରକରଣା ହାଟ କଲା । ସୁମାନି କେବେ ହାଟ କରେନାହିଁ ତଥାପି ମଦନ ତାକୁ ପଚାରିଲା କ'ଣ ସବୁ କିଣାଯିବ । କ'ଣ ସବୁ କିଣାହୁଏ ମଦନ କହି, ସୁମାନି କହୁଛି ଆଉ କିଛି ମୁଣ୍ଡରେ ଲଗାଇବା ତେଲ କିଣିବାକୁ ଅନୁରୋଧ କଲା । ଦହଲୁ ନିମନ୍ତେ ଏକ ଖେଳଣା କିଣିବାକୁ ସେ ଅନୁରୋଧ କଲା । ସେ ଖେଳଣା କିଣିବାକୁ ହଁ ଭରିଲା ତେବେ ତେଲ କିଣାଯିବ ଯେ ଏଥି ନିମନ୍ତେ ଶିଶି କିମ୍ବା ବୋତଲ ଅଣା ଯାଇନାହିଁ । କେବଳ କିରୋସିନ ବୋତଲଟା ଆଣିଛି । ଆଉ ବଜାର ପାଖରେ ତେଲ ନେବାକୁ ମଦନ କହିଛି ଏବଂ ସେ ପର୍ଯ୍ୟନ୍ତ ଚଳିବ କି ନାହିଁ ବୋଲି ପଚାରୁଛି । ସୁମାନି କହିଲା, ଚଳିଯିବ ହେଲେ ସେ ଯେଉଁ ହାଟକୁ ଆସୁଛି ଟିକିଏ ଚକ୍‌କଣ ହେବା ତା'ର ଇଚ୍ଛା ।

ସୁମାନିକୁ ମଦନ ପଚାରିଲା ତେବେ ଖାଲି ଶିଶିଟାଏ କିଣାଯାଉ । ଅନେକ ଥର ଯେ ଏହା କାମରେ ଲାଗେ । ସୁମାନି କିନ୍ତୁ ପସନ୍ଦ କରିନାହିଁ ଏ କଥାକୁ । ଘରେ ଶିଶି ତ ଅନେକ ଅଛି ତେବେ ନୂଆ ଶିଶିଟାଏ କିଣିବାରେ ଲାଭ କ'ଣ । ମଦନ ବୁଝିଛି ବର୍ତ୍ତମାନର ବ୍ୟୟ ନିମନ୍ତେ ସୁମାନି ଖୁବ ନୁହେଁ ଅଥବା ପରିବାରର ପରିସରକୁ ସଙ୍କୁଚିତ ନ କରିବା ନିମନ୍ତେ ଆଗ୍ରହୀ ନୁହେଁ. ତଥାପି ସୁମାନି କିଣିବାକୁ ମନା କରୁଛି । ଚଳି ଯିବାକୁ ଅଛି ଯେଉଁଠି, ଅଧିକ ସେମାନେ କିଣିବେ କାହିଁକି ? ଦରକାରୀ ଜିନିଷଟାଏ ପାଖରେ ଥିଲେ କିଛି ମନ୍ଦ ବାଟରେ ଯିବନାହିଁ । ସେମାନଙ୍କର ଆବଶ୍ୟକତାର ବାହାରେ ଏ ଶିଶିଟା ରହିବ ନାହିଁ । ଘରୁ ଯଦି ଅନ୍ୟତ୍ର ତେଲ ଟିକିଏ ଜଣକୁ ନେବାକୁ ପଡ଼େ ତା'ହେଲେ ଯେ ଘରେ ଅଛି ଶିଶିଟା ଉଠାଇ ନେବାକୁ ପଡ଼ିବ । ହୁଏତ ସେତେବେଳେ ଘରୁ ଉଠାଇ ନେବାରେ ଘରେ ଅସୁବିଧା ରହିପାରେ । ତେଣୁ ବର୍ତ୍ତମାନର ଅସୁବିଧା

ଦୃଷ୍ଟିରୁ ବି ନ ହେଲେ ଭବିଷ୍ୟତରେ ଏଇ ଶିଶିଟା ସାହାଯ୍ୟକାରୀ ହେବ । ସୁମାନୀ ଆଉ ଅଧିକ କିଛି କହୁନାହିଁ ବରଂ କିଣିବା ସପକ୍ଷରେ କହୁଛି ଯେ ଏପରି ଏକ ଶିଶି କିଣାଯାଉ ଯେପରି କି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା ଆଣିବାରେ ତାହା ସୁବିଧାଜନକ ହେବ ।

ମଦନ ଖାଲି ଶିଶିଟାଏ କିଣିଲା ଯେପରି କି ଦୁଇ ଶହ ମିଲିଲିଟର ତେଲ ଧରିବ । ଦହଲୁର ଖେଳିବାପାଇଁ ମାଙ୍କଡ଼ କଣ୍ଢେଇଟାଏ କିଣିଲା । ଘର ଖରଚ ପାଇଁ ହାଟରୁ ମରିଚ, ପିଆଜ, ମସଲା ଆଉ ଏକ କିଲୋଗ୍ରାମ ପାଚିଲାଘଣ୍ଟା, ଅଧ କିଲୋଗ୍ରାମ ବାଇଗଣ କିଣିଲା । ସମରୁ ଏବଂ ଦହଲୁ ନିମନ୍ତେ ଦୁଇ କଠା ମୁଢ଼ି କିଣିଲା । କିଛି ପକୁଡ଼ି ବି କିଣିଛି । ବାଟରେ ଖାଇବା ନିମନ୍ତେ ଏକ କଠା ମୁଢ଼ି ଭନେ କିଣିଲା । ରାଶି ତେଲ ଦୁଇ ଶହ ମିଲିଲିଟର ତେଲ ବୁଢ଼ାଠୁଁ କିଣିଛି । ପରେ ଘରକୁ ବାହୁଡ଼ିବାକୁ ସୁମାନୀ ପାଖକୁ ଆସିଲା ।

ଖାଲି ଡାଲଟାମାନ ନେଇ ମଦନ, ସୁମାନୀ ଏବଂ ଦହଲୁ ଘରକୁ ଫେରୁଛନ୍ତି । ମଦନର ହାତରେ ଏବେ ତିରିଶି ଟଙ୍କା ଅଛି । ସାଢ଼େ ବାର ଟଙ୍କାରେ ଦଶ କିଲୋ ଚାଉଳ ସେ ସରକାରୀ ଖୁଚୁରା ଦୋକାନରୁ କିଣିବ ଆଉ ବାକିତକ ଭଲମନ୍ଦ ପାଇଁ ସଞ୍ଚୟ କରିବ । ନିଜ ହାତର ମୁଢ଼ିତକ ଖାଇ ଖାଇ ମଦନ ବାଟ ଚାଲିଛି । ପାଚିଲାଘଣ୍ଟା କିଣିଲାବେଳେ ସେ ଦୁଇ ଚାରିଟା କଞ୍ଚାଲଙ୍କା ମାଲୁଣି ବୁଢ଼ୀକୁ ମାଗିଥିଲା । ମୁଢ଼ି ସହିତ ମରିଚ କେଞ୍ଚି ଖାଇବାକୁ ବାଟ ଆପେ ଖତମ ହୋଇ ଯାଉଛି । ସୁମାନୀ ମଝିରେ ମଝିରେ ଦହଲୁକୁ ଖୁଆଇ ଦେଉଛି ଆଉ ବାଟ ଚାଲିଛି ମଦନ ପଛରେ ସହଯାତ୍ରୀ ଭାବେ । ନିଜେ ମୁଠାଏ ପାଟିରେ ପକାଇ ଦେଉଥାଏ । ଏ ଥିଲା କ୍ଳାନ୍ତ ଶରୀର ପାଇଁ ଶାନ୍ତ ତଥା ବନ୍ଧନଯୁକ୍ତ ପରିବାର ମଧ୍ୟରେ ପୃଥକ ଦାମ୍ପିକତା । ଦହଲୁ ମା'ର କାଖରେ ଖୁସିରେ ଅଛି । ଦହଲୁ ଦୋହଲି ଉଠୁଛି ମନ ଖୁସିରେ ଏବଂ ମଦନ ଦେଖେ ଖାଲି ଡାଲି ବୋଝେଇ ହୋଇଥିବା ବାହୁଙ୍ଗାର ଅଗ୍ର ଭାଗରେ ରସିରେ ବନ୍ଧା ହୋଇ ଓହଳି ପଡ଼ିଥିବା ତେଲ ଶିଶିଟା ଦୋହଲି ଉଠୁଛି । ମଦନ ଅନୁଭବ କରେ ସୁମାନୀର ନିର୍ମଳ ପ୍ରତ୍ୟେକ ଅଙ୍ଗର ଊର୍ଦ୍ଧ୍ୱରେ ମୁଣ୍ଡର ବାଳରେ ତେଲ ଲାଗି ଘନ କଳା ରଙ୍ଗର ଏକ ଆସ୍ତରଣ ଚମକି ବୁଲୁଛି । ମୁଣ୍ଡର ଏହି କଳା ମିଚମିଚ ବାଳ ଉପରେ ଶୁଖିଲା ମହୁଲଭରା ଡାଲାଟା ହୃଦୟର ନିର୍ମଳତାକୁ ଆହୁରି ଆହୁରି ଖୋରାକ ଯୋଗାଇ ଦେଉଛି । ଶରୀରରୁ ତା'ର ଫୁର୍ତ୍ତିର ତେଜ ଫୁଟି ଉଠୁଛି ଏକ ବୋଝର ଚାପରେ ଚାପି ନ ହୋଇ । ଆଖିରେ ତା'ର ଖେଳି ଉଠୁଛି ବିଦ୍ୟୁତ ଆଉ ଆଲୋକ ବର୍ଷା ହୋଇଯାଇଛି । ବୋଝଟା ହାତରେ ମୁଣ୍ଡରୁ ଓହ୍ଲାଇ

ଦେଇଛୁ ଯେତେବେଳେ ସୁମାନୀ ଅଣ୍ଟାରେ ଭିଡ଼ା ହୋଇଥିବା ଶାଢ଼ୀର କାନିଟା ଫିଟାଇ ଦେଇଛୁ ଆଉ ଦଦ୍ରଲ୍କୁ କାନ୍ଦରେ ନେଇ ଅ.ସିଛୁ ବଗାରେ ଆଉ ଆବଦ୍ଧ ନ ରଖି । ତତ୍‌କଣ ଦଦ୍ରଲ୍ ବ ହସି ଉଠିଛୁ । ସୁମାନୀ ଗ୍ୱହିଁଛୁ ଥରେ ମଦନକୁ ଆଉ ମଦନ ଦେଖିଛୁ ସୁମାନୀର ଭିତରେ ଏବଂ ବାହାରେ ଅତୁଳନୀୟ ରୂପର ଜୁଆର । ଯେଉଁଠି ପରସ୍ପର କମନୀୟ ସେଠି କମନୀୟତାର ତୁଳନା ନାହିଁ ।

ସମରୁ ଖେଳୁଥାଏ ଭୁବନର ମା' ପାଖରେ । ଦୂରରୁ ଦେଖିଛୁ ଯେତେବେଳେ ଦଦ୍ରଲୁ ଫେରୁଛୁ ଖୁସିରେ ଦୌଡ଼ି ଯାଇଛୁ ସେମାନଙ୍କ ନିକଟକୁ । ସୁମାନୀର ହାତଟା ଧରି ସେ ପାଖ୍ରେଟି ଆଣିଛୁ ।

ଟୁପ୍‌ଲିଟାରେ ଘରେ ସୁମାନୀ ମୂର୍ତ୍ତି ପକୁଡ଼ି ଗଣ୍ଡାକ ବାହାର କରିଦେଲା । ଆନନ୍ଦର ବସ୍ତ୍ରୀର୍ଣ୍ଣ ଇଲାକା ଭିତରେ ସମରୁ ଖାଇ ଗ୍ୱଲିଲା ।

ମହୁଲ ଏବେ ଆଉ ବେଶି ପଡ଼ୁନାହିଁ । ବନକୁ ଅଙ୍ଗେ ବ ମହୁଲ ହୁଏନାହିଁ । ମହୁଲ ଗୋଟାଇବା ଏବେ ଜଣକୁ ଅଣ୍ଟେନାହିଁ । ମହୁଲ କାଁକୋ କରିବାକୁ ଆଉ ଅଭାବରେ ଭଜା ଅବା ସିଝାଇ ଖାଇବାକୁ କିଛୁ ମହୁଲ ସୁମାନୀ ସାଇତ ରଖିଛୁ ଅଲଗା ଜାଗାରେ । ଏବେ ମଦନ ଏକାକୀ ଜଙ୍ଗଲକୁ ଯାଏ ଏବଂ ସୁମାନୀ ଘରେ ରହିଯାଏ । ଦୁହେଁ ଗଲେ ଅବଶ୍ୟ ଶୀଘ୍ର ଫେରି ଆସନ୍ତେ କିନ୍ତୁ ଫେରି ଆସିଲେ ବ ଧନ୍ଦା ନାହିଁ । ଫେରିଆସି ଅଯଥାରେ ମଦନକୁ ଅନେକ ସମୟ ଧରି ବସି ରହିବାକୁ ପଡ଼ିବ ଅଥଚ ଗ୍ରେଟ ଛୁଆଟିକୁ ଧରି ସୁମାନୀ ଯାହା କଷ୍ଟ ଉଠାଇବ, ଯେଉଁଠି ଜଣକୁ ସକ୍ରିୟ ରହିବାକୁ କ୍ଷେତ୍ରର ଅଭାବ ସେଇଠି ଅନେକର ପ୍ରବେଶରେ ଜଣେ କ୍ରିୟାଶୀଳକୁ ନିଷ୍କ୍ରିୟ କରାଯାଇ ଦକ୍ଷତାର ହ୍ରାସ କରାଯିବା ଉଚିତ ହେବନାହିଁ ।

ଏବେ ମଦନର ପରିବାରରେ ପାଞ୍ଚଶହ ପାଖାପାଖି ଟଙ୍କା ସଞ୍ଚିତ ହୋଇଗଲାଣି । ସେମାନେ ଯେଉଁ ଧରଣରେ ଚଳନ୍ତି ଘରର ସବୁକିଛୁର ହିସାବ କରି ସେମାନେ ପ୍ରାୟ ସାତମାସ ଚଳିଯିବେ । ଯେଉଁଠି ଅନ୍ୟମାନଙ୍କର ଅବସ୍ଥା ଅତୀବ ଦୟନୀୟ ସେଠି ଅବଶ୍ୟ ଦୁଃଖର ସୀମା ଅତିକ୍ରମ କରିଯାଇଛୁ । ହେଲେ ଏମାନଙ୍କ ଜୀବନ ପୂରାପୂରି ପରାଧୀନ । ଯାହାର ଖାଇବା ଗଣ୍ଡାକ ଅନ୍ୟ ଦ୍ୱାରା ନିୟନ୍ତ୍ରିତ ହୁଏ ତା'ର ସ୍ୱାଧୀନତା କେଉଁଠି ? ବୋଧହୁଏ ମୃତ୍ୟୁରେ ?? ତଥାପି ତା'ର ଜୀବନ ବନ୍ଧନ ଅଙ୍ଗପ୍ରତ୍ୟଙ୍ଗ ଯେ ସ୍ୱାଧୀନ କହି ହୁଏନାହିଁ । ହୁଏତ ତା'ର ଜୀବନୀ ଶକ୍ତି, ଆତ୍ମା ଯାହାକି ଆଉ ସେ ଅଙ୍ଗ ପ୍ରତ୍ୟଙ୍ଗରେ ଆଉ ନ ଥାଏ, ତାହା ଲୋକରେ ସ୍ୱାଧୀନତାରୁ କିନ୍ତୁ ଏକ ଆତ୍ମାର ଅସ୍ତିତ୍ୱ ବ ବୋଧହୁଏ ନ ଥିଲା ।

ମହୁଲ କମି ଯାଉଛି ସେତିକି ମଦନ ନିଜକୁ ନିଶ୍ଚିନ୍ତ ମନେ କରୁଛି ସେତିକି । ତା' ପାଖରେ କିଛି ପୁଞ୍ଜି ଅଛି ନିଶ୍ଚୟ ହେଲେ ଉପାର୍ଜନ ନାହିଁ । ଗତ ଦିନର ସଞ୍ଚୟ କର୍ମଶୂନ୍ୟତା ଭିତରେ ହୁଏତ ଜୀବନ ଧାରଣରେ ସହାୟକ ହୋଇପାରେ; କିନ୍ତୁ ଆନନ୍ଦ ଦେଇ ପାରିବ ନାହିଁ । କର୍ମଦକ୍ଷତା ନ ଥିଲେ ହୁଏତ ମଦନ ଆଶ୍ରୀଷିତ ହୁଅନ୍ତା ସଞ୍ଚିତ ଅର୍ଥର ବିନିଯୋଗ କରି ପାରିବାର କୃତିତ୍ୱରେ । ମଦନ କିନ୍ତୁ ନିଜକୁ ସବଳ ମନେକରେ ଯେତେବେଳେ ଆଖି ଆଗରେ ତା'ର ଚିର ପରିଚିତ ବିସ୍ତୃତ ଜଙ୍ଗଲ ନାଚିଉଠେ ।

ଏଠି ପଡ଼ାପଡ଼ିଶାର ଲୋକେ ଉପାର୍ଜନ କରନ୍ତି ଚିନ୍ଜି, ଟୋଳ, କେନ୍ଦୁପତ୍ର ଆଉ ଲହା ବିକି । ଜଙ୍ଗଲର ଗୃର ଗଛରେ ଫଳ ପୁଞ୍ଜେ ପୁଞ୍ଜେ ହୋଇ ଫଳେ । ଲୋକେ କେତେ ଯେ ଗୃର ଫଳ ସଂଗ୍ରହ କରନ୍ତି । ଯିଏ ଯେତେ ବେଶି ସଂଗ୍ରହ କରେ ସେତେ ଶସ ସଂଗ୍ରହ କରେ ଗୃର ଫଳର ମଞ୍ଜିରୁ । ଏଇ ଶସ ଚିନ୍ଜି ନାମରେ ବିକାହୁଏ । ମହୁଲ ଫଳରୁ ଟୋଳ ମଞ୍ଜିକୁ କଢ଼ାଯାଇ ଦୁଇଫାଳ କରି ଶୁଖାହୁଏ ଆଉ ତୁଳି ନାମରେ ତେଲ ପାଇଁ ବିକା ହୁଏ । ଏଇ ତେଲ କେତେ ଯେ କାମରେ ଆସେ ।

ଏବେ କିଛିଦିନ ହେଲା ମଦନ ଜଙ୍ଗଲକୁ ଯାଉନାହିଁ । ସୁମାନୀ ଏକାକିନୀ ଯିବାକୁ । ଦୁଇ ତିନିଦିନ କ୍ରମାଗତ ଭାବରେ ପ୍ରାୟ ମଧ୍ୟାହ୍ନରେ ମଦନ ଫେରି- ଥିଲା ଅଥଚ ସମଗ୍ର ସପ୍ତାହର ମହୁଲ ଟିଣେ ଦେଢ଼ ଟିଣରୁ ବେଶି ହେଲାନାହିଁ । ମଦନ ଦିନକୁ ପ୍ରାୟ ଗୋଟିଏ ଟଙ୍କା ଉପାର୍ଜନ କଲା । ମଦନ ଏବଂ ସୁମାନୀ ଉଭୟେ ଯାଇଥିଲେ ସୁଦ୍ଧା ଦେଢ଼ଟଙ୍କା ଖଣ୍ଡେ ଉପାର୍ଜନ କରିଥାନ୍ତେ । ଉପାର୍ଜନ ତୁଳନାରେ ପରିଶ୍ରମ ତେର୍ ବେଶି । ଶକ୍ତି କ୍ଷୟ ତୁଳନାରେ ଉପାର୍ଜନ ନିହାତି କମ୍ । ଯେତେବେଳେ ଜଣକୁ ଉପାର୍ଜନର କ୍ଷେତ୍ର ଦୁର୍ବଳ କରୁଛି ଅଥଚ ଶକ୍ତି କରୁନାହିଁ ସେତେବେଳେ ଘରେ ବସିଲେ ବି ସଞ୍ଚିତ ପୁଞ୍ଜି ଉପରେ ଭରସା ରଖି ଚଳିବାକୁ ହେଉଛି । ସେତେବେଳେ କିଛି ଉପାର୍ଜନ ଯଥେଷ୍ଟ ନୁହେଁ କି ? ସୁମାନୀ କିନ୍ତୁ କହିଲା : ଅନବରତ ଶ୍ରମରେ ଦେହଟାକୁ ନ ଭାଙ୍ଗି କିଛି ବିଶ୍ରାମ ନେଇ ଶକ୍ତି ସଞ୍ଚୟ କଲେ ଉପଯୁକ୍ତ କ୍ଷେତ୍ରରେ କ'ଣ ଆବଶ୍ୟକ ଶକ୍ତି ପ୍ରୟୋଗ କରି ନ ଯାନ୍ତା । କିଛିଦିନ ଗଲେ ଗୃର ମଞ୍ଜି ଯଥେଷ୍ଟ ମିଳିବ । ସେତେବେଳେ ନୂତନ ଉତ୍ସାହ ନେଇ ଗୃର ମଞ୍ଜି ସଂଗ୍ରହ କରିଗଲେ ସେମାନେ ଲାଭବାନ ହେବେ ଆଉ ବର୍ତ୍ତମାନର କଷ୍ଟରେ ଆନନ୍ଦର ମାତ୍ରା ନିହାତି କମ୍ । ମଦନ ବି ସ୍ୱୀକାର କରିଛି ଅହେତୁକ କଷ୍ଟ ସ୍ୱୀକାର ନ କରିବାକୁ । ସେ ବି ଚିନ୍ତା କରୁଥିଲା ଗୃର ମଞ୍ଜି କଥା । ବିଶ୍ରାମ ବି ଶ୍ରମର ମୌଳିକ ଆବଶ୍ୟକତା । ସେ ତ ପୁଞ୍ଜି

ପରେ ନିଜକୁ ନିଷ୍କ୍ରିୟ କରୁନାହିଁ ଅଥବା ଉପଯୁକ୍ତ କ୍ଷେତ୍ର ଥାଇ ଉପାର୍ଜନକୁ ପ୍ରତ୍ୟାଖ୍ୟାନ କରୁନାହିଁ । ସେ ଯେ ପ୍ରଦୀପର ଏକ ଜଳନ୍ତା ମାତ୍ର । ଜଳିବ ସେ ଆଲୋକ ଦେବାକୁ । ଯେଉଁ ପ୍ରଦୀପରେ ତେଲ ନାହିଁ ସେଇଠି ସେ କେତେବେଳ ଯାଏ ଜଳିବ ? ନିଜେ ନାତିଦୀର୍ଘ ଅତୀତ ପରେ ସଦ୍ୟ ବର୍ତ୍ତମାନର ପ୍ରାରମ୍ଭରେ ନିଶ୍ଚିହ୍ନ ହେବାପାଇଁ ଏବଂ ଭବିଷ୍ୟତକୁ ବର୍ତ୍ତମାନ ଭିତରେ ବିଲୁପ୍ତ କରି-ଦେବାର ବାତୁଳତାରେ । ଯଦିଓ ମଦନ ଏକ ତେଲ କୁଡ଼ୁବୁଡ଼ୁ ଅଗଡ଼ ବଗଡ ଅସଜଡ଼ା ଜଳନ୍ତା ତଥାପି ତେଲ ଅଭାବରେ ସେ ଅତିଶୀଘ୍ର ଶେଷ ହୋଇଯିବ । ଜଙ୍ଗଲ ଆଉ ନ ଯିବାକୁ ସୁମାମୀ ସହିତ ସେ ଏକମତ ହୋଇଛି ।

ମଦନ ଭଳି ଆଦିବାସୀମାନେ ଯେତେବେଳେ ସଂଗଠିତ ହୁଅନ୍ତି, ସେମାନଙ୍କର ଅନଗ୍ରସରତାର ପ୍ରକୃତ କାରଣଗୁଡ଼ିକୁ ଖୋଜି ବାହାର କରି ଉନ୍ନୟନ ପ୍ରକ୍ରିୟାର ପ୍ରତିବନ୍ଧକଗୁଡ଼ିକ ଦୂର କରିବାରେ ସରକାର ସଫଳ ହୁଅନ୍ତି । କେବଳ ଅର୍ଥର ବ୍ୟବସ୍ଥା କରିଦେଲେ ସେ ସବୁର ସମାଧାନ ହୋଇଯିବ ତାହା ନୁହେଁ, ଅର୍ଥ ସବୁ ପ୍ରକୃତ ବାଟରେ ବିନିଯୋଗ ହେଉଛି କି ନାହିଁ ତାହାକୁ ଦେଖିବା ଦରକାର । ଆଦିବାସୀ ଜନସଂଖ୍ୟା ଛିନ୍ନ ଓ ବିକ୍ଷିପ୍ତ ହେବାର ମୁଖ୍ୟ କାରଣ ସେମାନଙ୍କୁ ନିଜ ଭୂମିରୁ ବଞ୍ଚିତ କରାଯିବା ଏବଂ ଜଙ୍ଗଲ ସମ୍ପଦ ଉପରେ ସେମାନଙ୍କର ଅଧିକାରକୁ ଛଡ଼ାଇ ନେବା । ଅଜ୍ଞାନରେ ଥିବା ଦୁର୍ବଳତା କିମ୍ବା ସରଳତାର ସୁଯୋଗ ନେଇ ସେମାନଙ୍କର ଅଧିକାରକୁ ଅପହରଣ କରି ନେଇଥାନ୍ତି । ସମ୍ବଳ ଉପରେ ଅଧିକାର ସେମାନଙ୍କର ବଞ୍ଚିବାର ଅଧିକାର ସହିତ ସିଧାସଳଖ ସମ୍ପୃକ୍ତ । ଏହି ଅଧିକାରରୁ ସେମାନଙ୍କୁ ବଞ୍ଚିତ କରିବାର ଅର୍ଥ ଏକ ମାନବିକ ଅଧିକାରକୁ ଉଲଂଘନ କରିବା । ସେମାନଙ୍କ ଅବସ୍ଥା, ଆବଶ୍ୟକତାର କାରଣ ସେମାନଙ୍କର ଶସ୍ୟ ଉତ୍ପାଦନର ସ୍ୱରୂପ ବଦଳା ଯାଉ, ଜଳସେଚନର ସୁବିଧା, ପାର୍ବତ୍ୟ ଜମିକୁ ଚାଷୋପଯୋଗୀ କରାଯିବାର ଉଦ୍ୟମ ହେଉ । ଯୁବକମାନଙ୍କ ପାଇଁ ଅର୍ଥପୂର୍ଣ୍ଣ ନିଯୁକ୍ତିର ବ୍ୟବସ୍ଥା ମଧ୍ୟ କରାଯିବା ଦରକାର । ମନେହୁଏ ସେମାନଙ୍କ ପାଇଁ ଯେତେସବୁ ଦୀର୍ଘସ୍ଥାୟୀ ଉନ୍ନୟନ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି ତା'ର ବଡ଼ ଦୁର୍ବଳତା ହେଉଛି ମାନବୀୟତାର ଅଭାବ । ସେମାନଙ୍କ ଉପରେ କେବଳ ଉନ୍ନୟନ ଯୋଜନା ସବୁ ଜୋର ଜବରଦସ୍ତି ଲଦି ଦେବା ଠିକ୍ ନୁହେଁ । କଲ୍ୟାଣମୂଳକ ଯୋଜନା ଏବଂ ଉନ୍ନୟନର ପ୍ରତିରୂପ ସବୁ ସେମାନଙ୍କ ଆଶା ଓ ଆକାଙ୍କ୍ଷାକୁ ପୂରଣ କରିବାପାଇଁ ତିଆରି ହେବା ଦରକାର । ମଦନ ଚକ୍ରାଧାରରେ କେବଳ ନିର୍ଲିପ୍ତ ରହିଯାଏ ।

ମଦନର ଏଇ ଦିନମାନଙ୍କରେ ନିଜର ଚଳିଯିବା କିମନ୍ତେ ଉପାର୍ଜନ କରୁନାହିଁ ହେଲେ ଅଯଥାରେ ସମୟ କାଟିବାକୁ ସେ ପସନ୍ଦ କରିନାହିଁ । ଏଇ

ଦିନ ମାନଙ୍କରେ ଘରପାଇଁ କିଛି କାମ କରି ନେବାକୁ ସ୍ଥିର କଲା । ଶ୍ରମୋପାର୍ଜିତ ଦୁଇ ପଇସାରେ ସେ ଚଳୁଥିଲେ ବି ଘର ଖଣ୍ଡିଏ ତ ଅପରିହାର୍ଯ୍ୟ । ବାସଗୃହଟି ତା'ର ରୁଚିସମ୍ପନ୍ନ ନ ହେଉ, ପ୍ରଶସ୍ତ ବି ନ ହେଉ ଅଥବା ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟକର ବି ନ ହେଉ ତଥାପି ଏକ ସୁବିଧା ଜନକ ଆଶ୍ରୟ ନିଶ୍ଚୟ ଯେ ଥିବ । ପଶୁ ଗୁମ୍ଫାଟିଏ ଲୋଡ଼େ, ସରୀସୃପ ଗାତଟିଏ ପୁଣି ପକ୍ଷୀ ନୀଡ଼ଟିଏ ଲୋଡ଼େ । ସେ ସବୁକୁ ସେ ସଜାଡ଼େ । ମଦନ ଯେ ଏ ସବୁର ବ୍ୟତିକ୍ରମ ହେବେ କି'ଣ ନିଜ ବସାଟି ସଜାଡ଼ିବ ନାହିଁ ।

ମଦନ ଆଉ ଦିନ ଗଣିନାହିଁ । ଖପର ପାଇଁ ସେ ମାଟି ଗଦା କଲା । ମାଟିକୁ ଗୁଣ୍ଡ କରି ଶୁଖାଇ ନେଲା । ଗାଁର ଲୋକେ ବ୍ୟବହାର କରୁଥିବା ଖପରଯୋଗ୍ୟ ଚିକଟା ମାଟି ସେ ବାଛି ଆଣିଛି । ଭିତର ପାଖ ଅଗଣାରେ ଅଧମିଟର ଲମ୍ବ, ଅଧମିଟର ଓସାର ଏବଂ ଅଧମିଟରର ଏକ ଗର୍ତ୍ତ ଖୋଳିଲା । ଶୁଖିଲା କଣ୍ଟା ଖପର ମାଟିକୁ ଖାତରେ ଭର୍ତ୍ତି କରିଛି ଆଉ ପାଣିରେ ସିଝିବା ପାଇଁ ବତୁରାଇ ଦେଲା । ସଞ୍ଜବେଳା ଖପର ଗଢ଼ିବା ପାଇଁ ପଟା, ପିଟ୍‌ନା, ତାର ଏବଂ ଦୁଇଟି ସମାନ ଖପର ଗୁଣ୍ଡି ବାପ ଅଜା କାଳରୁ କାନ୍ଥରେ ଅଳନ୍ଧୁ ଲାଗି ପଡ଼ିଥିବା ସ୍ଥାନରୁ ତଳକୁ ଓହ୍ଲାଇ ସଫା କଲା ସକାଳକୁ ବ୍ୟବହାର କରିବା ପାଇଁ ।

ପରଦିନ ସକାଳୁ ଚଳିତ ବର୍ଷା ଦିନ ହୋଇଥିବା ବଡ଼ଧରଣର ଘାଇର ଶୁରପାଖେ ଜମା ହୋଇଥିବା ବରୁବାଲି ଆଣି ମାଟିଗର୍ତ୍ତ ପାଖରେ ରଖିଛି । ଏଇ ଘାଇରୁ ଆଗେ ଦିନେ ସେ ମାଛ ଧରିଥିଲା । ଘାଇରେ ପାଣିଟୋପା ଆଉ ନାହିଁ । ଗାଈ ଗୋରୁ ପିଇ, ମାଛଧରି ଶୁଖିଲା ହୋଇ ଯାଇଛି । ବତୁରି ଯାଇଥିବା ଚିକଟା ମାଟିକୁ ଗୋଡ଼ରେ ଦଳି ଚକଟି କଅଁଳ କଲା । ଖିଆପିଆ ସାରି ମଧ୍ୟାହ୍ନ ପରେ ସେମାନେ ଦୁହେଁ ଖପର ଗଢ଼ିବାକୁ ଲାଗିଲେ । ସୁମାନୀ ପିଣ୍ଡ ତିଆରି କରେ । ମେଞ୍ଚାଏ ମାଟିରେ ଗୋଟିଏ ମୁଲୁଟ ପିଣ୍ଡ ଏବଂ ମଦନ ଖପର ମାଟିର ପିଣ୍ଡକୁ ପଟାରେ ଥୋଇ ପିଟ୍‌ନାରେ ପିଟେ । ମାଟି ପିଣ୍ଡଟି ପତଳା ହୋଇଗଲା ପରେ ଖପର ଗୁଣ୍ଡି ଉପରେ ଥୋଇ ଗୁଣ୍ଡିରୁ ବାହାରି ପଡ଼ିଥିବା ଅଂଶଗୁଡ଼ିକୁ କାଟିଦିଏ ଲୁହା ତାରରେ । ସୁମାନୀ ଗଢ଼ା ଖପରକୁ ଶୁଖିବା ପାଇଁ ମଣ୍ଡୁଆ ତଳେ ଧାଡ଼ି ଧାଡ଼ି କରି ପଛକୁ ପଛ ଗୁଣ୍ଡିରୁ କାଢ଼ିଦିଏ । ପିଣ୍ଡ ପାଇଁ ମାଟି ସରିଗଲେ ଚତୁଷ୍କୋଣାକାର ଚିକଟା ମାଟି ବୁଜୁଳାରୁ ତାରରେ ମାଟି କାଟେ ଓ ମାଟି ବୁଜୁଳାକୁ ବଡ଼ ଅଖାଟାରେ ଢାଙ୍କିଦିଏ । ଆର୍ଦ୍ରତା ତା'ର ନଷ୍ଟ ନ ହେବ ବୋଲି ।

ଏଇ ସାତ ଆଠ ଦିନ ଭିତରେ ସେମାନେ ଚାରି ହଜାର ଖପର ଗଢ଼ି ଦେଲେଣି । ନିଜର ଆବଶ୍ୟକତାଠାରୁ ସେମାନେ ଅଧିକ ଖପର ଗଢ଼ିଲେଣି ।

କାଲେ କେତେକ ଭଲ ପୋଡ଼ିବ ନାହିଁ ଆଉ ଉଆଁଳୁ ରହିଯିବ ଏବଂ କେତେକ ଭାଙ୍ଗି ବି ଯିବ । ମଦନ ଆଉ ବେଶି ଖପର ଗଢ଼ିନାହିଁ । ଏହା ଏଠି ଏତେ ବେଶି ବିକ୍ରୀ ବି ହୁଏନାହିଁ । ସମସ୍ତେ ନିଜ ନିଜର ଘରର ଖପର ନିଜେ ଗଢ଼ି ନିଅନ୍ତି । ଏଠି ନିକଟରେ ସୁବିଧାରେ କଞ୍ଚା ଖପର ମାଟି ଏବଂ ଖପର ପୋଡ଼ିବାକୁ ଝାଟି ମିଳିଯାଏ । ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼େନାହିଁ । ଖପର ଗଢ଼ିବା ସାମଗ୍ରୀ ସବୁ ପୁଣି ଯଥା ସ୍ଥାନରେ ମଦନ ରଖି ଦେଇଛି ।

ଖପର ପୋଡ଼ିବା ପାଇଁ ମଦନ କିଛି ଝାଟି ସଂଗ୍ରହ ଏବଂ କିଛି ଫାଳକାଠ ବି ଆଣିବ ଖପର ସବୁକୁ ସୁନ୍ଦର ଭାବେ ପୋଡ଼ିବ । ଜଙ୍ଗଲରେ ସେ କିଛି ପାଚିଲା ଗୁର ପାଇ ଯାଇଛି । କେତେକ ଗଛର ଗୁର କଷି ଅଛି ତ କେତେକ ଗଛର ଗୁର ବଡର ହୋଇଗଲାଣି । କିଛିଦିନ ପରେ ପାଚିବ । ସେ ଏହି ଗୁରର ଅପେକ୍ଷାରେ ଆଜି ଆସିଛି ଝାଟି ନେବାକୁ । ଯାହାହେଉ ସେ ଝାଟି ନେବ, ଗୁର ନେବାକୁ ସେ ଯେ ପ୍ରସ୍ତୁତ ନୁହେଁ । ସେ ଝାଟି ନେବାର ଉପକରଣ ନେଇ ଆସିଛି । ଏଥିରେ ଗୁର ସେପରି କିଛି ପାଇ ପାରିବ ନାହିଁ । ମନ ତା'ର ଗୁର ସଂଗ୍ରହ ପାଇଁ ଇଚ୍ଛୁକ ଥିଲା । ପାଚିଲା ଫଳ କେତୋଟି ସେ ଖାଇଛି । ଯେତେ-ବେଳେ ମଞ୍ଜିର କଠିଣ ଆବରଣ ଫଟାଇ ଚନ୍ଦ୍ରର ସ୍ୱାଦୁ ଅନୁଭବ କରିଛି । ଶୋଷ ଆଉ ତାକୁ ବାଧୁନାହିଁ ।

ଘରକୁ ଫେରି ସୁମାମାକୁ କହିଛି : ଗୁର ପାଚିବାକୁ ଆରମ୍ଭ କଲାଣି । ତାଲା ଦ୍ୱାର ନେଇ ଜଙ୍ଗଲକୁ ଗଲେ ଚନ୍ଦ୍ରଯୋଗ୍ୟ ଗୁର ମିଳିଯିବ । ସୁମାମା ସମସ୍ତ ଜିନିଷ ଯୋଗାଡ଼ କରିଦେଲା ଏଥିନିମନ୍ତେ ମଦନ ବାହାରି ଯାଇଛି ଗୁର ଆଣିବାକୁ । ସେ ଗଛରୁ ପେଣ୍ଡା ପେଣ୍ଡା ଗୁର ଭାଙ୍ଗେ ଏବଂ ଡାଳଗୁଡ଼ିକ ଯେପରି ନଷ୍ଟ ନ ହେବ, ସଜାଗ ରହେ । ଗଛ ବଞ୍ଚିଥିଲେ ଫଳ ବଞ୍ଚିଥିବ । ନୂତନ କେତେ ଗଛ ହେଲେ ବି ଗଛ ବଢ଼ିବାକୁ ସମୟ ନେବ । ଜଙ୍ଗଲରେ ସାମୟିକ ଅଭାବ ହେବ ଯଦି ପୁରୁଣା ଗଛ ସବୁ ନଷ୍ଟ ହୋଇଯାଏ ।

ସୁମାମା ଶୁଖିଲା ଗୁର ଫଳରୁ ଚନ୍ଦ୍ର ବାହାର କରେ ଆଉ ମଦନ ଦୈନିକ ଯାଏ ଜଙ୍ଗଲକୁ ଗୁରଫଳ ସଂଗ୍ରହ କରିବାକୁ । ଜଙ୍ଗଲର ଗୁରଆଡ଼େ ଲୋକ ବହୁ ହୋଇ ଯାଉଛନ୍ତି ଗୁର ସଂଗ୍ରହ କରିବାକୁ । ଗୁର ପାକଳ ଅବସ୍ଥାକୁ ଆଉ ପହଞ୍ଚି ପାରୁନାହିଁ । ଗାଁ ଗାଁ ଗଛରେ କଞ୍ଚାଗୁର କେତୋଟି ବଞ୍ଚି ଯାଉଛି ।

ଏଇ କେତେଦିନ ଭିତରେ ମଦନ ଯେତକ ଗୁର ସଂଗ୍ରହ କରିଛି ସେଇଥିରୁ ପ୍ରାୟ କୋଡ଼ିଏ କିଲୋଗ୍ରାମ ଚନ୍ଦ୍ର ବାହାରିବ । ଦୁଇ ସପ୍ତାହର

ପରିଶ୍ରମର ଫଳ ମାନ୍ଦାଙ୍କ ବର୍ଷକ ପରେ ଅଣିଥିଲା, ସେମାନେ ଏଥିରୁ ଦେଢ଼ଶହ ଟଙ୍କା ପାଇବେ । ସାଧାରଣ ଝଟକିର ପାରିଶ୍ରମିକଠାରୁ ଏହା କମ୍ ନୁହେଁ । ସେମାନେ ବରଷକ ପାଇଁ ଲୁଣ ବି ପାଇଯିବେ । ଏକ କାଲେ ଚାଉଳ ବଦଳ କଲେ ତିରିଶ କାଲେ ଲୁଣ ପାଇବେ । ଲୁଣ ସେମାନଙ୍କର ଅନ୍ୟ କେତେକ ଘର୍ଷେ ଗୋଟିଏ ଅସଲ ଶାଗ । ସେ ସେଇଥିପାଇଁ ହାଟରୁ ଚାଉଳ ବଦଳ କରି ଷାଠିଏ କାଲେ ଲୁଣ ଆଣିଲା ।

ମଦନର ଆଜକାଲର ପରିବାରରେ ଖରଚ କମ୍ । ତା'ର ସଞ୍ଚୟ ବଢ଼ିଥିଲେ ବି ଭବିଷ୍ୟତରେ ସମରୁ ଏବଂ ଦାହାଲୁ ବଢ଼ିବାରେ ଲାଗିବେ । ଏଇ ପରିବେଶ ଭିତରେ ସେମାନେ କ'ଣ ସେ ବୃଦ୍ଧଙ୍କର ବୋଝ ବୋହିବେ । ନିଜର ପେଟରୁ ଦାନା କାଟି ଅବଶ୍ୟ ବୃଦ୍ଧ ପିତାମାତାର ସେବା କରିବେ—ସୁମାନୀ ଏପରି ଭାବେ । ମଦନ କହେ ଆଜି ତ ପୁଷ୍ଟି ଭୂତ ଅର୍ଥରେ ସେମାନେ ସମସ୍ତେ ସୁସ୍ଥ ଅଛନ୍ତି । କୌଣସି କାରଣରୁ ଅସୁସ୍ଥ ହେଲେ ବଞ୍ଚି ରହିବାକୁ ସେମାନେ ସଞ୍ଚୟରୁ ବିନିଯୋଗ କରିବେ ନିଶ୍ଚୟ ଅଥଚ ଉପାର୍ଜନରୁ ସେମାନେ ବଞ୍ଚିତ ରହିଯିବେ । ଏଠି ଅତୀତ ବର୍ତ୍ତମାନକୁ ଭବିଷ୍ୟତ ନିମନ୍ତେ ଜୀବିତ କରିଦେଇ ପାରିବ ଯଦି ହେଲେ ବର୍ତ୍ତମାନ ଅତୀତ ଭିତରେ ଲୁଚିଯିବ । ସେମାନେ ପ୍ରତ୍ୟକ୍ଷ ଶ୍ରମର ସଦ୍ୟ ଫଳ ପାଇବା ନିମନ୍ତେ ଅଧିକାର ପାଇଛନ୍ତି କେବଳ । ପୁଣି ସେହି ଅଧିକାରର ନିର୍ଦ୍ଦିଷ୍ଟ ଏକ ବିଧି ନାହିଁ । ବର୍ତ୍ତମାନର ଏଇ ଜଞ୍ଜାଳମୁକ୍ତ ଜୀବନ ପ୍ରବାହରେ ଯେତେବେଳେ ସେମାନେ ସମରୁ ଏବଂ ଦାହାଲୁକୁ ମଣିଷ କରିପାରିବେ ଅବା ନାହିଁ ନିଶ୍ଚିତ ନୁହେଁ ସେ ସ୍ଥଳରେ ଅନ୍ୟଠାରେ ଆତ୍ମପକ୍ଷର ଭବିଷ୍ୟତ ଆଶା ସମ୍ବନ୍ଧରେ କଳ୍ପନା କରାଯାଇ ନ ପାରେ । ସେ ବୃଦ୍ଧହେଁ ଗଢ଼ି ଉଠନ୍ତୁ ତ । ଦାମ୍ପତ୍ୟ ଜୀବନର ସଂଯମ ଭିତରେ ଯେଉଁ ଦମ୍ପତି ନିଜର ସନ୍ତାନକୁ ଗଢ଼ିଛି ସେଠି ଦମ୍ପତି ନିଜେ ନିଜ ଭବିଷ୍ୟତର କଳ୍ପନା କରିବାର ଆବଶ୍ୟକତା ନାହିଁ । ସେଠି ନିଜର ସତ୍ତା ସନ୍ତାନ ଭିତରେ ଦ୍ରବୀଭୂତ ହୋଇଯାଇଛୁ । ବାହ୍ୟ ପରିବେଶ ଏଇ ସନ୍ତାନମାନଙ୍କୁ ଦମ୍ପତିଠାରୁ ପୃଥକ୍ ବି କରିଦେଇ ପାରେ । ଏଇ ପରିବେଶରୁ ମୁକ୍ତ କରାଯିବାକୁ ଅନେକ କଷ୍ଟ କରାଯାଇ ପାରେ; କିନ୍ତୁ ସାମର୍ଥ୍ୟ ଆବଶ୍ୟକ । ଏବେ ନିଜ ଭିତରେ ତଥା ସୁମାନୀ ଭିତରେ ବି ମଦନ ସାମର୍ଥ୍ୟ ଦେଖିପାରେ କିନ୍ତୁ ଭବିଷ୍ୟତକୁ ସତର୍କତାର ସହ ଅପେକ୍ଷା କରିବାକୁ ହିଁ ପଡ଼େ । ବର୍ତ୍ତମାନରୁ ତେଣୁ ପରିବର୍ତ୍ତିତ ଭବିଷ୍ୟତର ରୂପରେଖ ସ୍ଥିର କରାଯାଇ ନ ପାରେ । କିଛିଟା ସ୍ୱାଭାବିକତା ଭିତରେ ଅନୁମାନ କରି ନେବାକୁ ହୁଏ ଏବଂ ଏଇଥିପାଇଁ ଅନ୍ୟ କୌଣସି ସଂଶୟ ପ୍ରକାଶ କରି ଅନିଶ୍ଚିତ ଅବସ୍ଥା ସୃଷ୍ଟି କରିବା ବ୍ୟତୀତ ଅନ୍ୟ

କିଛି ଲାଭ ହୁଏନାହିଁ । ବର୍ତ୍ତମାନ ଭବିଷ୍ୟତର ସଠିକ ମାପକାଠି ନୁହେଁ ବରଂ ଏକ ପ୍ରସ୍ତାବନା ।

ଏବେ ଆଉ ଉପାର୍ଜନର ଅସୁବିଧା ନାହିଁ । ଅନେକ ବନ ହେଲା କେନ୍ଦୁପତ୍ର ତୋଳା ଆରମ୍ଭ ହେଲାଣି । ଘର ସୁଦ୍ଧା ପାଚିବାକୁ ଦେଇଥିଲେ କେନ୍ଦୁପତ୍ର ତୋଳି ସାରି ମଧ୍ୟ ଘର ସଂଗ୍ରହ କରାଯାଇ ପାରିଥାନ୍ତା । ସେମାନେ ବନକୁ ଜଣ ପ୍ରତି ପ୍ରାପ୍ତ ପାଞ୍ଚ ହଜାର କେନ୍ଦୁପତ୍ର ତୋଳି ପାରିବେ । ଦୈନିକ ବନଟଙ୍କା ସେମାନେ ଉପାର୍ଜନ କରିପାରିବେ । ସୁମାମି ବି ସାଙ୍ଗରେ ଯିବ । ପାଖ ପାହାରେ କେନ୍ଦୁପତ୍ର ମିଳେ । ଏହା ଭୁବନର ମା'ଙ୍କ ଇଲାକା । ସେ ଛୁଆମାନଙ୍କୁ ଖେଳାଇବେ ଏବଂ ଦୁଇ ପଇସା ରୋଜଗାର କରିବେ । ସେମାନେ ସମସ୍ତେ ଜଙ୍ଗଲକୁ ଯିବେ । ଭୁବନ ଏବେ ଘରେ ନାହିଁ ଅନେକ ବନ ହେଲା ହେମଗିର ଅଞ୍ଚଳକୁ ଯାଇଛି ହାଜର ମଜୁରି କରିବାକୁ ।

ମଦନ ଏବଂ ସୁମାମି ସକାଳୁ ଜଙ୍ଗଲକୁ ଗ୍ଲି ଯାଆନ୍ତି । ପାହା ଜଙ୍ଗଲରେ କେନ୍ଦୁପତ୍ରର ବିସ୍ତୃତ ଭଣ୍ଡାର ଅଛି । ଯେ ଯେତେ ତୋଳେ ସେ ସେତେ ପାଏ । ଶୁଣାଯାଏ ପଇସାକୁ ବଶରି ପତ୍ର; ମାତ୍ର ପତ୍ର କିନ୍ତୁ ବଡ଼ ଯୋଗ୍ୟ ହେବା କଥା । ସୁମାମି ଅନେକ ଥର କେନ୍ଦୁପତ୍ର ତୋଳିଛି । ମଦନ ତୋଳିନାହିଁ କେବେ ଦେଖିଛି । ଯୋଗ୍ୟ ପତ୍ର କେଉଁଟା ସେ ଜାଣେ ।

ସୁମାମି ଡାଲିଟା ଧରେ ଆଉ ମଦନ ଧରେ ଗେଣ୍ଡୁଆ ଭାରଟା କାନ୍ଧରେ । ପ୍ରତ୍ୟେକ କେନ୍ଦୁ ବୁଦାରେ ପତ୍ର କଅଁଳି ଯାଇଛି । ପାହାରେ ଲୋକେ ବନ୍ଧି ହୋଇ ଯାଇଛନ୍ତି । କେନ୍ଦୁ ପତ୍ରର ଉଜ୍ଜ୍ୱଳ ରଙ୍ଗରେ ପାହାଟା ଏବେ ଚର୍ଚ୍ଚିତ ହୋଇଯାଇଛି । ବୁଦାର ଅଗ୍ରଭାଗ ଲୋହିତ ପତ୍ରରେ ଶୋଭା ପାଉଛି ଆଉ ନିମ୍ନ ଭାଗ ସବୁଜ ପତ୍ରରେ । ପତ୍ର ତୋଳାଳିର ହୃଦୟ ମଧ୍ୟ ଭାଗର ପତ୍ର ତୋଳି ଶାନ୍ତି ଲାଭ କରୁଛି । ଚିରା ଲୁଗାର କାନିଟା ଅଣ୍ଟାରେ ଭିଡ଼ିଦେଇ ଫୁଟି ପଡ଼ିଥିବା ତରୁଣୀ ଆହାର ପତ୍ରରେ ଗୋଡ଼େଇ ଏଠି କ୍ଷୁଧିତ ଜୀବନର କ୍ଷୁଧା ମେଣ୍ଟାଉଛି । ଏ ପତ୍ର ସିଧାସଳଖ ଖାଦ୍ୟ ହୋଇଥିଲେ ଏମାନଙ୍କର ଖାଦ୍ୟାଭାବ ଦୂରୀଭୂତ ହୁଅନ୍ତା କି ନାହିଁ ଏମାନେ ପରୀକ୍ଷା କରିବାର ସୁଯୋଗ ପାଇଛନ୍ତି । ସୁଯୋଗ ପାଇ ଏମାନେ ନିଜର ଇପ୍ସା ପୂରଣ କରିବାର ବାଟ ଯଦି ପାଇ ପାରିଥାନ୍ତେ ଏ ବୁଦାଗୁଡ଼ିକ ଏତେ ବେଶି ଏଠି ଆଉ ନ ଥାନ୍ତା । ଏମାନେ ବି ମଣିଷର ସେଇ ପ୍ରବୃତ୍ତି ଭିତରେ ଏହାକୁ ଶେଷ କରିଦେବାକୁ ବସିଥାନ୍ତେ । କେବଳ କେନ୍ଦୁ ବୁଦା ନୁହେଁ ଅନେକ ଜୀବନ୍ତ ନିଜେ ନିଜର ଯତ୍ନରେ ବଢ଼େ ଅଥଚ ମଣିଷର ବ୍ୟବହାରରେ ଆସି ବି ମଣିଷର କୃପା ଲାଭ କରେନାହିଁ ।

ପ୍ରକୃତିର ଦାନକୁ ନିଜ ନିଜ ଭିତରେ ପ୍ରତିଯୋଗିତା କରି ମଣିଷ ଗ୍ରହଣ କରେ ଅଥଚ ଏହାର ସ୍ଥାୟିତ୍ୱ ନିମନ୍ତେ ପ୍ରତିଯୋଗିତା କରେନାହିଁ । ଯେତେବେଳେ ସେ ଜାଣେ ଯେ କୌଣସି ଏକ ବସ୍ତୁ ଅପରିହାର୍ଯ୍ୟ ସେତେବେଳେ ନିଜର ସ୍ୱାର୍ଥ ସାଧନ ନିମନ୍ତେ ସେଇ ବସ୍ତୁର ସ୍ଥାୟିତ୍ୱ ନିମନ୍ତେ ମଣିଷ ଅବଶ୍ୟ ପ୍ରତିଯୋଗିତା କରେ । ତଥାପି ତା'ର ଦୂରଦୃଷ୍ଟି ଅଭାବରେ କେତେ ଯେ ବ୍ୟବହାର୍ଯ୍ୟ ସାମଗ୍ରୀ ଲୁଚିଯାଏ । ଏବେ ବି ଜାଳେଣି ରୂପେ ବ୍ୟବହାର କରି କେନ୍ଦୁ ଗୁଡ଼ାଗୁଡ଼ିକୁ ନଷ୍ଟ କରି ଦିଆଯାଉଛି ।

ମଧ୍ୟାହ୍ନ ପୂର୍ବୁ ମଦନ ଏବଂ ସୁମାନୀ ଯଥେଷ୍ଟ ପତ୍ର ସଂଗ୍ରହ କରିଛନ୍ତି । ଥିର୍ ଟିକିଏ ଓହ୍ଲାଇବାକୁ ସେମାନେ ଘରକୁ ଫେରିଛନ୍ତି । ଥିର୍ ପିଇ ଜଙ୍ଗଲକୁ ପତ୍ର ତୋଳିବାକୁ ଯାଇଥିଲେ ଆହୁରି କିଛି ପତ୍ର ସଂଗ୍ରହ କରି ନିଅନ୍ତେ କିନ୍ତୁ ଖରେ ବେଳ ଥାଉଣୁ ବିକା ଯିବାକୁ କେନ୍ଦୁପତ୍ର ପହଞ୍ଚାଯିବ । ଏ ମଝିରେ ପତ୍ରଗୁଡ଼ିକୁ ପନ୍ଦର ପତର ଲେଖାଏଁ ସଜାଡ଼ି କେରି ବାନ୍ଧିବାକୁ ହେବ । ଯଦିଓ ପଇସାକୁ ତିରିଶି ପତର ବିକ୍ରୀ ହେବା କଥା ତଥାପି କେରି କରାଯାଇ ବିକା ହୁଏ । କେରି ନ ବାନ୍ଧିଲେ ପତର ଯିଏ କିଣେ ସିଏ ବେଶି ଅସୁବିଧା ଭୋଗନ୍ତି ଆଉ ଶୁଖିବାର ସୁବିଧା ନିମନ୍ତେ କେତେଗୁଡ଼ିଏ ପତରକୁ ବିଡ଼ା ବାନ୍ଧନ୍ତି । ବିଡ଼ା ବନ୍ଧା ହୋଇଥିଲେ ସାମାନ୍ୟ ପବନରେ ପତରି ଉଡ଼ିଯାଏ ନାହିଁ, ନେବା ଅଣିବାରେ ବି ସୁବିଧା ହୁଏ । ଫଡ଼ିଘରେ ପତର ସୁବିଧାରେ ରଖିହୁଏ । କେତାର ଏତେଟା ସୁବିଧା ବିକେତା କରିଦିଏ ହେଲେ ଏଥିନିମନ୍ତେ ସେ ପୁରସ୍କୃତ ହେବାର ତ ଦୂରର କଥା ତା'ର ଉଚିତ ମୂଲ୍ୟ ବି ପାଇପାରେ ନାହିଁ । ମଣିଷର ଛୋଟିଏ ଗୋଷ୍ଠୀ, ଜାତିର ଅବହେଳିତ ଶ୍ରେଣୀ, ଚିରାଚରିତ ପ୍ରଥା ଅବଲମ୍ବନ କରି ଚାଲିଛି ଏବଂ ଅନ୍ୟ ଏକ ଗୋଷ୍ଠୀ ନିଜର ସ୍ଥାନାଧିକାର ବଳରେ ଅନେକ ସୁଯୋଗ ଲଭିକରେ ଅଥଚ ସେ ଜାଣେ ପ୍ରଥମ ଗୋଷ୍ଠୀ ପ୍ରକୃତରେ କ'ଣ ସବୁ ପାଇବା କଥା । ଯେଉଁମାନେ ଏଇ ଅବହେଳିତ ଗୋଷ୍ଠୀର ପ୍ରତିନିଧିତ୍ୱ କଥାରେ କରନ୍ତି, ସେମାନେ ବହୁତ କିଛି କହନ୍ତି । ଯେଉଁଠାରୁ ସେମାନେ କହନ୍ତି ସେ ସ୍ଥାନରୁ ବହୁତ ଦୂରକୁ ସେକଥା ଗମ୍ଭୀର ଭାବରେ ଶୁଭେ । କିନ୍ତୁ ସେମାନେ ପ୍ରତ୍ୟକ୍ଷ ସମସ୍ୟାର ସମାଧାନ କରନ୍ତି ନାହିଁ । ପ୍ରଥମୋକ୍ତ ଗୋଷ୍ଠୀ କଥା ଶୁଣେ ଆଉ ଦ୍ୱିତୀୟ ଗୋଷ୍ଠୀ ଉପରେ ଦୋଷ ଲଦେ ଅଥଚ ତା'ର ପ୍ରତିନିଧି, ବକ୍ତା ଦ୍ୱିତୀୟ ଗୋଷ୍ଠୀ ଭିତରେ ସର୍ବପ୍ରଥମ ଧାଡ଼ିରେ ଥାଏ । ସର୍ବାଗ୍ରେଥିବା ବ୍ୟକ୍ତିକୁ ଜଣେ ପଛ ପାଖରୁ ଦେଖିପାରେ ନାହିଁ । ଯିଏ ଆଗ ପାଖରୁ ଦେଖିବାର ସୁଯୋଗ ପାଇଛି, ଟିକିନିଖି ଭାବରେ ପଛକୁ ପଛ ଦେଖୁ ଦେଖୁ ସବା ପଛକୁ

ପହଞ୍ଚି ପାରୁନାହିଁ । ସବଳକୁ ଭେଦକରି ଯିଏ ଆଜି ଦୁର୍ବଳ ପାଇଁ ଯେତେ କହୁଛି ଚମତ୍କାର ଭାବରେ ଏବଂ ଦୁର୍ବଳ ନିକଟକୁ ଯେତେ ସ୍ପଷ୍ଟ ଭାବରେ ପହଞ୍ଚି ପାରିଛି ସେ ସେତେ ଅଗ୍ରଣୀ । ଯିଏ ପ୍ରକୃତରେ ସେମାନଙ୍କ ନିମନ୍ତେ କିଛି କରୁଛି ସେ ସବଳକୁ ଭେଦକରି ନିଜର ବକ୍ତବ୍ୟ କଥାକାର ନିକଟକୁ ପହଞ୍ଚାଇ ଦେଇପାରେ ନାହିଁ ଅଥବା ପ୍ରଦତ୍ତ ବାର ଜଟିଳ ବ୍ୟୁହ ଅତିକ୍ରମ ମେ କରିପାରେ ନାହିଁ । ଯିଏ ଶେଷ ପର୍ଯ୍ୟନ୍ତ ଶୁଭି ପାରୁଥିବା ଆଲୋକିତ କଥା କହେ ସେ ଯେ ଚନ୍ଦ୍ରମା । ନିଜ ନିକଟରେ ଥିବା ସମଭାବାପନ୍ନ ମଣିଷ ସମୂହ ଏକ ଶକ୍ତିଶାଳୀ ପ୍ରିଜମ୍ । ଅପର ପାର୍ଶ୍ୱର ଦୁର୍ବଳ ମଣିଷ ଦେଖେ ବର୍ଣ୍ଣାଳିର ଚମତ୍କାର କମନୀୟତା । କିନ୍ତୁ ଯିଏ ଏ ମଣିଷ ପାଇଁ କିଛି କରେ ସିଏ ଯେ ପ୍ରଦୀପ ଅବା ସ୍ଥାନ କ୍ରମେ ଶକ୍ତିଶାଳୀ ଆଲୋକ ପ୍ରଦାୟକ । ଏ ଆଲୋକ କିନ୍ତୁ ସୂର୍ଯ୍ୟାଲୋକର ଅନୁପସ୍ଥିତିରେ ବି ଅନ୍ଧକାର ବିରୁଦ୍ଧରେ ସହାୟକ ହୁଏ । ଏ ଆଲୋକ ବି ପ୍ରିଜମ୍ ଭେଦକରେ କିନ୍ତୁ ବର୍ଣ୍ଣାଳିର ଚମତ୍କାରିତା ସୃଷ୍ଟି କରେ ନାହିଁ । ତେଣୁ ମନୋମୁଗ୍ଧକର ନୁହେଁ ।

ସୁମାମି ଗନ୍ଧବହେ ଏବଂ ମଦନ କେରି ବାନ୍ଧିବହେ । ମଦନର ପାଖରେ ସମରୁ ଏବଂ ଦହଲୁ ବସି ଯାଇଛନ୍ତି । ସମରୁ ଉଚ୍ଚ ପାଟିରେ ପତରଗୁଡ଼ିକୁ ଗଣେ ଆଉ ଦହଲ୍ ଖେଳିବହେ । ସେମାନେ ମେମାନଙ୍କର କାମ କରନ୍ତି ଆଉ ମଦନ ନିଜ କାମରେ ବାଧା ଦେଖି ସ୍ୱେଚ୍ଛାଶକ୍ତି ବିରକ୍ତ ହୁଏ । ତଥାପି ସମସ୍ତେ ଆଗେଇ ଯାଉଛନ୍ତି ।

ଦୁଇବର୍ଷ ତଳେ ଅଣାକୁ ପୁଳାଏ ପତରର କେରି ବନ୍ଧା ଯାଉଥିଲା; କିନ୍ତୁ ପରେ ପଇସାକୁ ପନ୍ଦର ପତର ଲେଖାଏଁର ତିନି କେରି, ଟଙ୍କାକୁ ତିନିଶହ କେରି ଦେବାକୁ ବସନ୍ତ ବାବୁ ଜଣାଇ ଦେଲେ । ବସନ୍ତ ବାବୁଙ୍କୁ ସମସ୍ତେ ଧନ୍ୟବାଦ ଦେଲେ । ସେମାନେ କିଛି ଅଧିକ ରୋଜଗାର କଲେ । ପ୍ରତ୍ୟେକ କେରିର ଉପରେ ଆଉ ତଳେ ଦୁଇଟି ଅଧିକ ପତର ବି ଦେବାକୁ ବସନ୍ତ ବାବୁ ମନା କରିଥିଲେ । ସେମାନେ ବୁଝିଥିଲେ । ସେମାନେ ଟଙ୍କା ଗୋଟିକରେ ଅଧିକ ତେର ପଇସା ଲେଖାଏଁ ପାଇଲେ । ସେମାନେ ବସନ୍ତ ବାବୁଙ୍କ ଉପରେ କୃତଜ୍ଞ ହୁଅନ୍ତି ଆଉ ପତର କର୍ମଚାରୀଙ୍କୁ ନିନ୍ଦା କରନ୍ତି । ଏବେ ଶୁଣାଯାଉଛି ଟଙ୍କାକୁ ପନ୍ଦର ପତରର ଦୁଇଶହ କେରି ଲେଖାଏଁ ଦିଆଯିବ; କିନ୍ତୁ କେରି ବାନ୍ଧିବାର ମଜୁରି କଥା ଶୁଣା ଯାଇନାହିଁ । ହୁଏତ ସେ ସବୁକିଛିର ଗୋଟାଏ ସମାଧାନ ହେବ । ଏଣୁ ମଦନ ଦୁଇଶହ କେରି ପର୍ଯ୍ୟନ୍ତ କୋଡ଼ିଏ କୋଡିଏ କେରିର ଗଦା କରି ଗଣେ ।

ସୁମାମି ଗନ୍ଧ ହାରିଛି । ସମସ୍ତେ ଖିଆପିଆ କରିଛନ୍ତି ଏବଂ ଏହା ହିଁ ସେମାନଙ୍କର କାର୍ଯ୍ୟ ବିରତିର ସମୟ ହୋଇଛି ଆଜି । ଦହଲୁ ଶୋଇଗଲା । କିନ୍ତୁ

ସମସ୍ତ ବାପା ଆଉ ମା'ର ମଝିରେ ପତର ନିକଟରେ ବସି ଯାଇଛୁ । ମଦନ ଆଉ ସୁମାମୀ କେଶ ବାନ୍ଧିବାରେ ଲାଗି ପଡ଼ିଛନ୍ତି ।

ଦିନ ଚାରିଟା ପୂର୍ବରୁ କବାଟ ଅଡ଼ା ଡାଳକୁ ସେମାନେ କେନ୍ଦୁ ପତରର କେଶ ବାନ୍ଧି ଶେଷ କଲେ । ଛଅଶହ ସତାବନ କେଶ ହୋଇଛି । ମଦନ ଗେଣ୍ଡୁଆ ଘରରେ ସଜାଇ ଦେଲା ଚାରିଶହ ପଚିଶ କେଶ ଆଉ ବାକିତକ ନିଜ ଡାଲାରେ ସୁମାମୀ ସଜାଇ ଦେଲା । ନିକଟସ୍ଥ କେନ୍ଦୁପତର କିଣା ହେଉଥିବା ସ୍ଥାନ, ଫଡିକୁ ସେମାନେ ଚାଲିଲେ । କୁମୁଟି ମୁଣ୍ଡା ନିକଟରେ ଏକ ପ୍ରଶସ୍ତ ପଡ଼ିଆରେ ପତର କିଣାହୁଏ ।

ଶାଗୁଆ ପତର ବୋଝ ମଦନ ଏବଂ ସୁମାମୀ ଯେତେବେଳେ ଯାଆନ୍ତି ମିଠ ଦିଗଯାକ ସେମାନଙ୍କୁ ଶାଗୁଆ ଦିଶେ ଯଦିଓ ଧାନ ଗଛର ଶୁଖିଲା ନଡ଼ା ଠାଏ ଠାଏ ପଡ଼ିଛି ଏବଂ ସମସ୍ତ ସବୁଜିମା ଉଡ଼ି ଯାଇଛି ।

ମୁଣ୍ଡରେ ପସରା, କାନ୍ଧରେ ଭାର ଧରି ଅନେକ ପତର ବନ୍ଧେଇ ଧାଡ଼ି ବାନ୍ଧି ନିଜ ଚଲା ପଥରେ ଆଗେଇ ଆସିଛନ୍ତି । ଯାତ୍ରୀ ଭିଡ଼ ସଜାଡ଼ିବା ପାଇଁ ବଡ଼ଦାଣ୍ଡ ମୁଖରିତ ଥିବାପରି ଏଠି ଚଟାଫଟା ପଡ଼ିଆରେ ସମସ୍ତେ ନିଜ ନିଜ ପତର କେଶ ସବୁ ଚଟାବାନ୍ଧି ସଜାଇ ଦେଇଛନ୍ତି । ଗଣିବା ସୁବିଧା ଓ ଶୁଖିବା ସୁବିଧା ନିମନ୍ତେ । କର୍ମଚାରୀ ଜଣକ ଚଟା ପରେ ଚଟା ଗଣି ପଇସା ଦେଲେ । ପଡ଼ିଆକୁ ପତର ଭାର ଯାତ୍ରା ଓ ଫେରିବା ପର୍ବ ଏକ ସମୟରେ ହେଉଥାଏ । ଯେଝା କାମ ସାରି ଘର ବାହୁଡ଼ି ଆସୁଥାନ୍ତି । ସୁମାମୀ କାନରେ ଟଙ୍କା ବାନ୍ଧିଛି ।

ଗାଁ ବାହାରେ ପତର ଫଡ଼ି ଘର । ବନ୍ଧୁ ପୁରୁଷ ଧରି ବରଗଛଟି ଫଡି ଘରକୁ ଛାଇ ଦେଇ ରଖିଛି । ଅନତି ଦୂରେ ଚଟା ପାହାଡ଼ ପଡ଼ିଆରେ କେନ୍ଦୁ-ପତ୍ର ସବୁ ଗଣତି ଓ ବଡ଼ାବନ୍ଧା ପାଇଁ ସଜା ହୋଇଛି । ସୁମାମୀ ସେଠି ଭେଟେ ଚେକର ବାବୁଙ୍କୁ, ଫଡି ମୁନ୍‌ସୀ ବାବୁଙ୍କୁ । ତା'ପରି ଅନେକ ପତ୍ର ତୋଳାଳିଙ୍କ ସମବେତ ଅପରାହ୍ଣର ପାର୍ବଣକୁ ମୁଖର କରେ ।

ପତ୍ରତୋଳାଳୀ ମାନଙ୍କ ତଥାପି ଅସୁବିଧା ରହି ଯାଇଛି । ଅନୁଭବ କରେ ଏପରି ଅଭାବ ଜୀବନରେ ମୁନ୍‌ସୀ ବାବୁଙ୍କୁ ପତ୍ର ଯୋଗାଇବେ । ଶାଗ ଲୁଣ ଚଳିଯିବ । କିନ୍ତୁ ବ୍ୟବସାୟିକ ଉନ୍ନତ, ଜୀବିକା ନିର୍ବାହ ସାମଗ୍ରୀକ ଭାବେ ଏଥିରେ ନିଜର ଅଭାବ ପୂରଣ କରି ପାରିବ ନାହିଁ । ଏକ ବୃହତ୍ତ ଶ୍ରମଜୀବୀ ଗୋଷ୍ଠୀ ଜୀବନ ନୀରବରେ ଆବୋରି ନେବାର ସୁଫଳ ଚିନ୍ତା କରୁଥିଲା ମଦନ । ଆଶା କରିଛି ଦିନେ ଏମାନେ ଏକତ୍ରିତ ହେବେ । କେନ୍ଦୁପତ୍ରର ଦର ବଢ଼ିବ ।

ଏ ଅନୁଷ୍ଠାନ ଜାତୀୟକରଣ ହେବ । ଜାତୀୟ ବସ୍ତୁ ଉତ୍ପାଦନ ସ୍ରୋତରେ ଜୀବିକା ନିର୍ବାହ କରିବେ । ସେଦିନର ଅପେକ୍ଷାରେ ରହିଥିଲେ ସୁମାନୀ, ମଦନ ଓ ତା'ର ସାଥୀଗଣ ।

ଭୁବନ କିନ୍ତୁ ହାଜତ ମଳୁଆ ଲୋକ । ଘରେ ମା' ବୁଢ଼ୀ ଓ ଗେହ୍ଲୀ । ସିଏ ଦହଲୁଠାରୁ ବର୍ଷେ ଖଣ୍ଡେ ସାନ ହେବ । ବର୍ଷକୁ କିଛିଦିନ ଘର ଗ୍ରୁଣ୍ଡଯାଏ, ଦୂର ଦୂରାନ୍ତକୁ । ନିଜର ବାହୁବଳ ପ୍ରତି ସେ ଯେତିକି ବିଶ୍ୱାସ କରେନାହିଁ କରେ ଭବାନୀ ଶଙ୍କର ପରି ଧନୀକମାନଙ୍କୁ ସାହାଯ୍ୟ କରିବାରେ । ପ୍ରାପ୍ତିରେ ପୁଷ୍ଟିଅଳ ନୁହେଁ କିନ୍ତୁ ।

ଗାଁ ପାଖରେ ଅଙ୍ଗନୱାଡ଼ି କେନ୍ଦ୍ର । ସେଠି ଆଗ ସମରୁ ପଢ଼ୁଥିଲା । ଅଙ୍ଗନୱାଡି କର୍ମୀଙ୍କ ତତ୍ତ୍ୱର ଯୋଗୁଁ ସେ ଅକ୍ଷର ଶିକ୍ଷା ଆରମ୍ଭ କରିଛି । ଗପ ଓ ଗୀତ ଗାଇବା ଜାଣିଛି । ଏବେ ସେ ପାଠ ପଢ଼େ ପ୍ରାଥମିକ ବିଦ୍ୟାଳୟରେ ।

ଦହଲୁ ଓ ଗେହ୍ଲୀ ଯାଆନ୍ତି ଆଙ୍ଗନୱାଡି କେନ୍ଦ୍ରକୁ । ମଧ୍ୟାହ୍ନ ଭୋଜନ ପାଆନ୍ତି । ନିଜକୁ ସଫା ସୁତୁରା ରଖିବା ବେଶ୍ ଅଭ୍ୟାସ କଲେଣି ।

ଭୁବନ କିନ୍ତୁ ମା' ବୁଢ଼ୀକୁ ଓ ଗେହ୍ଲୀକୁ ନେଇନାହିଁ । ସେ ଏବେ ହେମଗିରି ଜମିଦାରି ଅଞ୍ଚଳରେ । ରହେ ବଲଙ୍ଗା ଗ୍ରାମରେ । ଜମିଜମାର ତତ୍ତ୍ୱାବଧାରକ ଭାବେ । ଖାଏ, ରହେ ବାବୁଙ୍କ ଘରେ । ବର୍ତ୍ତିକିଆ କର୍ମଜୀବୀ ଭାବେ । ମାଘ ମାସରେ ଆଖୁକଟା ହେବ । ସେତେବେଳେ ପାଖରେ ମା' ବୁଢ଼ୀ ଓ ଗେହ୍ଲୀକୁ ନେଇ ଆସିବ । ଆଖୁ ହେମଗିରି, ଲେଫ୍ରିପଡ଼ା, ଟାଙ୍ଗରପାଲି ବ୍ଲକ ଅଞ୍ଚଳର ବିଶେଷ ଅର୍ଥକାରୀ ଫସଲ । ସମଗ୍ର ଟାଙ୍ଗରପାଲି ବ୍ଲକ ଅଞ୍ଚଳରେ କୋବି, ପୋଟଳ, ଆଖୁ ଆଦିର ବହୁଳ ଓ ବ୍ୟାପକ ଉତ୍ପାଦନ ହୁଏ । ବାବୁଙ୍କ ପାଇଁ ଭୁବନ ଘର ଘର ବୁଲି ସେସବୁ ମୋଟା ଆକାରରେ ସଂଗ୍ରହ କରିଛନ୍ତି ଓ ରାଉରକେଲା, ବ୍ରଜରାଜନଗର ଆଦି ଶିଳ୍ପାଞ୍ଚଳକୁ ରପ୍ତାନି କରିଛନ୍ତି ।

ଭବାନୀ ବାବୁ ନିଜେ ଜଣେ ବଡ଼ ଗୃହୀ । ଧାନ ପୁଞ୍ଜୁଗର ଗୋଟିଏ ଡାଗ ଫିଟିଲେ ଗାଁ ଲୋକେ ଦିନେ ଚଳିଯିବେ । ତେଣୁ ତାଙ୍କ ପ୍ରତି ସମସ୍ତଙ୍କର ଭରସା । ଆଖୁ ବାଡିର ସେ ଯଥେଷ୍ଟ ପ୍ରତିରୋଧ ବ୍ୟବସ୍ଥା କରନ୍ତି । ଭାଲୁ ଆସେ କେବେ କେବେ ଅତିଥି ହୋଇ । ଚଢ଼ା ଖାଏ କେବେ ଗୁଳି ବି ଖାଏ । କ୍ରମା ଛଳେ ଟିଣଟାରେ ସ୍ରେଟ ସ୍ରେଟ ପଥର ଖଣ୍ଡ ସବୁ ଦେଇଛି । ରାତି ଅଧରେ ଘଡ଼ର ଘଡ଼ର ଶବ୍ଦ କରେ । ଟିଣ ଦେହରେ ରସି ବାନ୍ଧି ଟାଣେ ଭୁବନ ଏମାନଙ୍କୁ ଭୁରୁଡ଼େଇବା ପାଇଁ । ଶୀତ ଥିବ ମାଘ ଫଗୁଣକୁ ଆଖୁ ପେଡ଼ାଯିବ । ଗାଁର ପ୍ରତି ଘରକୁ ଗୋଟିଏ ଲିଟର ପଣା ଯାଏ । ଆଖୁ ଶାଳକୁ କେହି ଆସିଲେ

ପଣା ପିଇଯାଏ । ଅଦା, ଲେମ୍ବୁ, ଧନିଆପତ୍ର ବଟା ଆଖୁ ପଣା ସହିତ ଖାଇବା ବେଶ୍ ଉସ୍ୱାଦ୍ୱପ୍ରଦ ।

ଭୁବନ ପେଟେ ପିଇନିଏ ଆଖୁପଣା । ଘଣାରେ ଆଖୁ ଲଗାଏ । ଘିଡ ଅଧିକୁ ଚଉଷଠୀ ଅର୍ଣାଟିଣ ପଣା ବାହାରି ଯାଏ ।

ଭୁବନ ମୁଣ୍ଡରେ ପାଗ ଥାଏ । ପାଗ ସେ ଚିହ୍ନାଏ ନାହିଁ । ଘଣାରୁ ରସ ତା' ପଟକୁ ଛଟିକା ମାରେ । ତାକୁ ସେ 'ପୋଚ୍ଛ ଦେଉଥାଏ ପାଗ ପଣତ କାନରେ । ଦୋରୁଅର ପାଗ ସେ ଭଲକରି ଜାଣେ । ଗୁଡ଼ ସବୁ ଭେଲି କରି ରଖନ୍ତି । ମାଲିକାଣୀ ନିଜେ ଉପସ୍ଥିତ ରହି ଗୁଡ଼ ପାଗନ୍ତି । ଶେଷ ଦିନକୁ ଶାଳ ଉଖୁଡ଼ା ବିଶେଷ କରାଯାଏ । ଶାଳ ଉଖୁଡ଼ାରେ ନଡ଼ିଆ, ଘିଅ, କପୂର, ପାନ-ମହୁରି ପଡ଼ିଥାଏ । ଖୁରୁପୀ, ଚଲାଣୀ ଆଦି ବର୍ଷକ ପାଇଁ ରଖିଦିଏ ଆଖୁପେଡ଼ା ସରିଗଲେ ।

ଭୁବନର ଏପରି ଗୁରୁଦାୟିତ୍ୱ ତୁଲେଇବା ଯୋଗୁଁ ସେ ମାଲିକାଣୀଙ୍କ ବିଶ୍ବସ୍ତ ଲୋକ । ଭବାନୀଶଙ୍କର ବାବୁ ତାଙ୍କର ଠିକା କାମରେ ଯୁଆଡ଼େ ଗଲେ ବି ଘରକଥା ଭୁବନ ଥିଲେ ଅଟକେ ନାହିଁ । ତା'ର ସେ ଗୁଣବନ୍ତି ସବୁ ମାଲିକାଣୀ ଭୁଲି ନାହାନ୍ତି ।

ଏତେ ଜମିବାଡ଼ିର ଦେଖାରୁଖା ଭୁବନ କରେ । ଖରଚ ଓ ଯୋଗାଡ଼ ପାଇଁ ଆଗରୁ ବାବୁଙ୍କର ନିର୍ଦ୍ଦେଶ ରହିଛି । ସକାଳରୁ ଜମି ଚଷ ପାଇଁ ଯେତେ ହଳ ଦରକାର, ମୂଲିଆ ସବୁଙ୍କ ଯୋଗାଡ଼ ଭୁବନ କରେ । ଧାନ ରୁଆ କରିବାରେ ଅସୁବିଧା ହୁଏନାହିଁ । ମାଲିକାଣୀ ଖଟୁଲି ଧରି କ୍ଷେତ ଯାଆନ୍ତି । ହାତରେ ଛତା ଧରି ପାନ ଘୁଣ୍ଟେ ଚୋବାଇ କାମସବୁ ଦେଖୁଥାନ୍ତି । ଘାଇ ବାନ୍ଧିବା, ଧାନ କ୍ଷେତରେ ସାର ପ୍ରୟୋଗ, ଝିରି ଛୁଣ୍ଡାଇବା, ଧାନ କାଟିବା, ଅମାର ପକେଇବା ସବୁ ପରି ଉଦ୍ୟୋଗରେ ସମାପନ ହୁଏ । ମାଲିକାଣୀ ଯାହା ଜାଣନ୍ତି କେବେ ତାଙ୍କ ଧାନ ଗୁମି ନଷ୍ଟ ହୋଇନାହିଁ । କ୍ଷେତରୁ ମୁଠାଏ କରପା ଧାନ ଉଣା ହାଏନାହିଁ । ଭୁବନ ପ୍ରତି ଏ ପରିବାର ଏତେ ଉଦାର ଯେ, ନିଜେ ଭୁବନ, ମାଲିକାଣୀ, ଭବାନୀଶଙ୍କର ବାବୁ ବୁଝନ୍ତି ନାହିଁ । ଗୋଟିଏ ଆତ୍ମୀୟତାର ବନ୍ଧନ ଭିତରେ ସମ୍ଭ୍ରାନ୍ତସ୍ୱ ତାଡ଼ନା ବା ଯନ୍ତ୍ରଣା ନାହିଁ । ଭୁବନ ବି କେବେ ଅନୁଭବ କରିନାହିଁ ଏ ପରିବାର ପ୍ରତି ତା'ର ଅବଦାନ କ'ଣ ??

ବରଂ ଅନୁଗୃହୀ ଭୁବନ । ତା' ବୋଲରେ ଏତେ ବିରାଟ ପ୍ରତିଷ୍ଠାନ ଚାଲି ଯାଉଛି । ଦିନେ ଦିନେ ସେ ଅନୁଭବ କରେ ମାଲିକାଣୀଙ୍କ ଉପସ୍ଥିତି । ଯଦି

ଉଦାହରଣ ଦିଏ ତେବେ ଧାନ ରୁଆର ଶେଷଦିନ କଥା । ଧୂମ୍ କାଦୁଅ ଖେଳା-ହୁଏ କ୍ଷେତରେ । ସ୍ତ୍ରୀ ଲୋକମାନେ ପରସ୍ପର ପ୍ରତି ଦହି କାଦୁଅ ମଖାମଖି ହେବେ । ମାଲିକ ମାଲିକାଣୀଙ୍କୁ ମଖାଇ ଜୁହାର ହେବେ । ପଲାସ ଡାଳରେ କାଦୁଅ ଧରିବେ । ତା' ଉପରେ ଧାନ ରୁଆର ଶେଷ ପରବ ହେବ । ଘରକୁ ଆସି ତୁଳସୀ ଚଉଁରା ମୂଳେ ମାଲିକାଣୀଙ୍କ ହାତରେ ସମର୍ପି ଦିଆଯିବ । ରୁଆ ଆଗରୁ ଓ ଏ ଯାଏ ପରେ ବହୁତ ଖିଆପିଆ ବିଦାକ ମିଳେ । ଶ୍ରମଜୀବୀର ପ୍ରାଣରେ କି ଯେ ପୁଲକ ଖେଳି ନ ରହେ ?? ଶ୍ରମଜୀବୀ ମାଲିକାଣୀଙ୍କ ଅନୁଗୃହୀ ହୁଅନ୍ତି ଓ ମାଲିକାଣୀ ମଧ୍ୟ ଶ୍ରମଜୀବୀଙ୍କ ପେଟ ପାଟଣା ଚଳିଥାନ୍ତି । ଅଭାବ ଅସୁବିଧା ବେଳେ ପରସ୍ପର ପ୍ରତି ଠିଆ ହୁଅନ୍ତି ।

ନହନା, ଜୁଡା, ଲଙ୍ଗଳ ସବୁ କିଛୁଦିନ ଭୁବନ ରଖିଦିଏ । ଧାରା ଶ୍ରାବଣକୁ ସେ ଆଲିଙ୍ଗନ କରେ । ବଣ ପାହାଡ଼ ତଳୁ କେତେ ଛତୁ, ରୁଖୁଡ଼ି, ପିତାଳୁ କନ୍ଦା ଆଣେ ।

ବଲଙ୍ଗା ହେମଗିର ଜମିଦାରୀ ଇଲାକାର ଗ୍ରାମ । ସମଗ୍ର ହେମଗିର କଳାପୂନା କୋଇଲାରେ ପୂର୍ଣ୍ଣ । ବାଉଁଶ ବଣ ତାକୁ ପରିକ୍ରମା କରି ରହିଛି । ଆଖିର ଆଢୁଆଳରେ ମଧ୍ୟ ବାଉଁଶ ବଣ । ଅନ୍ଧାରରୁ ଯେ ଡାଳ ଧରି ବାହାରି ପଡ଼ିଥାଏ ବାଉଁଶ ଗଜା ଭାଙ୍ଗିବାକୁ । ଲୋକେ କେତେ ଯେ ବାଉଁଶ ଗଜା ଭାଙ୍ଗି ଦିଅନ୍ତି ବନ ବିଭାଗ ହିସାବ ରଖି ପାରନ୍ତି ନାହିଁ । ଏହି ଗଜାରୁ କରଡ଼ି ହୁଏ, ହାଣ୍ଡୁଆ ହୁଏ । ବର୍ଷ ତମାମ ପାଇଁ କରଡ଼ିର ସଂଗ୍ରହ ଆଷାଢ଼ ଶ୍ରାବଣରେ ପ୍ରଜାଏ, ସୁଖବାସୀଗଣ ସମସ୍ତେ କରିଯାନ୍ତି ।

ଏ ଅଞ୍ଚଳରୁ ଶାଣ୍ଡୁଆ, ଡାଲା, ଭୃଣାମୂଷା, ଡାଙ୍କି, ତଲଙ୍ଗୀ, ଲୋଦର ପର୍ଯ୍ୟାପ୍ତ ପରିମାଣରେ ବିକ୍ରୀ ପାଇଁ ତିଆରି ହୁଏ । ବାଉଁଶ କେବଳ ତମମାନଙ୍କ କଞ୍ଚାମାଲ । ତେଣୁ ଉତ୍ପାଦନର ବିଶେଷ ଅସୁବିଧା ହୁଏନାହିଁ । ଭୁବନ ଗୁଣ୍ଡିଆ-ଡିହି, ବଲେଇ ମୁଣ୍ଡା, ଟପରିଆ ଅଞ୍ଚଳରୁ ଏସବୁ ଠିକାରେ ସଂଗ୍ରହ କରିଥାଏ । ଦୂର ଦୂରାନ୍ତକୁ ଟ୍ରେନରେ ପଠାଯାଏ । ସର୍ଗିପାଲି, ବଲେଇ ମୁଣ୍ଡା ବଜାରକୁ ଧାଡି ଲମ୍ବିଥାଏ ତମମାନଙ୍କର । ବାଉଁଶ ବଣ ଯେ ସର୍ବସାଧାରଣଙ୍କ କହିବା ଠିକ୍ ହେବନାହିଁ । ସରକାରୀ କଟକଣା ରହିଛି । ତଥାପି ଝିରା ଛିଦ୍ର ପରି ଗରିବଙ୍କ ଏସବୁ ସଂଗ୍ରହ । ନ କଲେ ଚଳିବେ କିମିତି ? ବଞ୍ଚିବେ କିମିତି ??

କେବେ କିମିତି ଭୁବନ ବାଉଁଶ ଅଗ, ଶାଖାସବୁ ଗୋଟେଇ ଆଣିଥାଏ । ରାତିରେ ମାଲିକାଣୀ ପୁରାଣ ପଢୁଥିବାବେଳେ ତା' ବାଉଁଶ ବୋଝା ବାହାର

କରେ । ବଙ୍ଗଳା କଟ୍ଟୁଶଟାଏ ଧରି ଗ୍ଲେଟ ଗ୍ଲେଟ କାଠି କରିଥାଏ । ଯାହା ଧୂପକାଠି ତିଆରି ହେବ । ଏହି ଧୂପକାଠିର ଖଡ଼ିକା ସଂଗ୍ରହ ହେମଗିରି ଅଞ୍ଚଳକୁ ଏକ ଅବସରକାଳୀନ ଉତ୍ପାଦନ ସଂଗ୍ରହ ଅଞ୍ଚଳ ହୋଇଯାଇଛି । ଖଡିକା ସବୁ ଗଣା ଯାଏନାହିଁ । ବଡ଼ା ବାନ୍ଧ ବନ୍ଧାଯାଏ । ସେହି ବଡ଼ା ସବୁ କୁଆଡ଼େ ଯାଏ ସୁଦୂର ହାଇଦ୍ରାବାଦ, ବାଙ୍ଗାଲୋରସ୍ଥିତ ଅଗରବତୀ କମ୍ପାନୀ ସବୁକୁ । ଧୂପକାଠି କମ୍ପାନୀ ସବୁ ଏତେ ଦୂରରେ ସଂଯୋଗ ରଖିଛନ୍ତି କଥାଟା ଭୁବନକୁ ଆଶ୍ଚର୍ଯ୍ୟ ଲଗେ ଓ ଏହା କିପରି ସମ୍ଭବ ମାଲିକାଣୀଙ୍କଠୁଁ ବୁଝେ ।

ମାଲିକାଣୀ ଯେତେଦୂର ସମ୍ଭବ ଭୁବନର ସନ୍ଦେହ ଦୂର କରନ୍ତି । ସେଦିନ ମଦନକୁ ମାଲିକାଣୀ କହିଲେ : ବାବୁ ଭୁବନ, ତୁମକୁ କହିବି କହିବି ବୋଲି କଥାଟିଏ କହି ପାରୁନାହିଁ ।

ଭୁବନ ତତ୍ପର ହୋଇ ଉଠିଲା । ମାଲିକାଣୀଙ୍କ ଜିଜ୍ଞାସା ଜାଣିବାପାଇଁ । ମାଲିକାଣୀ କହିଲେ : ବାବୁ ତୁମର ଖୋଲା ଲୋକ । ତୁଳସୀ କଥା ମୋତେ ଖବର ନାହାନ୍ତି । ତାକୁ ଆଉ କେତେଦିନ ଘରେ ରଖିବା । ବର ଘର ଠିକ୍ କରିବା ନାହିଁ କି ?? ତୁମେ ପାରିବ ବୋଲି କହୁଛି । କଥାଟା ବସନ୍ତ ବାବୁଙ୍କ ପୁଅ ସହିତ ପକାଇବ । ସେ ତ ଏବେ ପଦସ୍ଥ ଅଫିସର ଅଛି ମାରଲିପୁର ଖଣି ଅଫିସରେ । ଶୁଣିଛି ସେ ଯେ ଖଣି ଭୂତତ୍ତ୍ୱବିତ୍ ଅଛି । କଥାଟା କମିତ ହୁଅନ୍ତା । ବାବୁଙ୍କର ନାମ ପ୍ରଜ୍ଞା ପଟେଲ ।

ଭୁବନ ଆଗରୁ ପ୍ରଜ୍ଞା ବାବୁଙ୍କୁ ଜାଣେ । ବହୁଥର କାଖେଇ ବଡ଼ କରିଛି । ବସନ୍ତ ବାବୁ ସାଧାରଣରେ ଭଦ୍ର ଲୋକ । ତୁଳସୀର ନାକରୁ ଘିଅ ପୋଛି ବଡ଼ କରିଛି ଭୁବନ । କଥା ପକାଇବାର ଯୋଗ୍ୟତା ତା'ର ଅଛି କଥାଟା ଯେତେ ବାସ୍ତବ ଥିଲା, ବେଶି ଥିଲା ଭୁବନ ପାଇଁ ମାଲିକାଣୀ 'ତୁମେ' ସମ୍ବୋଧନ କରିବାରେ । ଭୁବନ ଉପରକୁ ହାତ ଯୋଡ଼ି ଦେଇଛି । ପ୍ରଜ୍ଞା ଓ ତୁଳସୀ ପ୍ରତି ତା'ର କର୍ତ୍ତବ୍ୟ ରହିଛି ଏକଥା ଏବେ ସେ ଜାଣୁଛି ଯେପରି । ଆଗରୁ ଏସବୁ ବିଷୟ ପ୍ରତି ସେ କେବେ ମୁଣ୍ଡ ପୁରେଇ ନ ଥିଲା । ଯଦି ନୂଆଖାଇ, ଦଶହରା ଛୁଟିରେ କଲେଜ ହଷ୍ଟେଲ ଯାଇ ଆଣିଛି ବା ଘରୁ ପିଠାପଣା ନେଇ ଦେଇଛି ।

ବିନମ୍ର ସହକାରେ ବାବୁଆଣୀଙ୍କୁ ଭୁବନ ସୂଚେଇ ଦେଲେ : ସେ ତୁଳସୀ ପାଇଁ କଥା କରିବେ । ବସନ୍ତ ବାବୁଙ୍କୁ କହିବେ । ଏମିତିକି ତୁଳସୀର ଫଟୋ ପ୍ରଜ୍ଞା ବାବୁଙ୍କୁ ନେଇ ଦେଖାଇବେ । କିନ୍ତୁ ସେ ସବୁ ପାଇଁ ଭୁବନର ଯୋଗ୍ୟତା ଅଛି ତ ?? ସେ ଯେ ପରିବାରର ଜଣେକ ଚାକର, କୃଷି କର୍ମଜୀବୀ ସାଧାରଣରେ

ପେଟ ପାଟଣା ପାଇଁ ଚଳି ରହୁଛୁ । କଥା ବଗିଡ଼ି ଗଲେ ଗୋଟେ ବଡ଼ ଧରଣର ବିସ୍ଫୋରଣ ହେବ । ଯାହା ବସନ୍ତ ବାବୁ ଓ ଭବାନୀ ବାବୁଙ୍କ ସାରା ଜୀବନ ଅମେଳ ଆଣିଦେବ ।

ଏବେ ଦହେଁ ହେମଗିର ବଣ ପାହାଡ଼ ମାଟି ଉପରୁ କୋଇଲା କାଢ଼ୁଛନ୍ତି । ସରକାରଙ୍କ ଦୃଷ୍ଟି ଆସିନାହିଁ । ଟ୍ରକ୍ ବାଟରେ କୋଇଲା ମଧ୍ୟପ୍ରଦେଶ, ରାଉରକେଲା ଅଞ୍ଚଳକୁ ପଠାଉଛନ୍ତି । ସାଧାରଣରେ କୋଟିପତି । ଜିଲ୍ଲାର ବିଭିନ୍ନ ସହରକୁ ଯାଏ । ବେଶି କୋଇଲା ଯାଏ ଇଟାଭାଟି ସବୁକୁ, ଚିମିନି ଭାଟି ସବୁକୁ । କୋଇଲାରେ ଇଟା ଭଲ ପୋଡ଼େ । କାଠ ସଂଗ୍ରହ ସେତେ ସୁବିଧାଜନକ ହେଉନାହିଁ । ଗେଟ୍ ସବୁରେ ବ୍ୟବସ୍ଥା ଆଗରୁ ହୋଇ ସାରିଛି । ତେଣୁ କୋଇଲା ଚାଲାଣର ଅସୁବିଧା ନାହିଁ ।

ସରକାରୀ ସଂସ୍ଥା ତରଫରୁ ସର୍ଭେ କାର୍ଯ୍ୟ ଆଗେଇଛି । ବାଲିଚୁଆଁଠାରେ କେମ୍ପ ଅଫିସର ରହନ୍ତି । ଉଡୁକାଗେଟ୍ ଓ ସେ ପଟେ ଟପରିଆ ଗେଟ ବାବୁ ହାତ ମୁଠାରେ । ନିକଟ ଭବିଷ୍ୟତରେ କୋଲ ଇଣ୍ଡିଆ ଲିମିଟେଡ଼ ଖାଦାନ ଦାୟିତ୍ୱ ନେବେ । ଏବେ ଖୋଦ୍ ଭବାନୀବାବୁଙ୍କ ଗାଁ ବଙ୍ଗଳାଠାରେ ଅଫିସ ବସୁଛି । ଏଟି ପୁଣି ସହରୀ ଜୀବନ ଆରମ୍ଭ ହୋଇଯିବ । ବିରାଟ ପରିବର୍ତ୍ତନ ଦେଖୁଥିଲା ଭୁବନ ।

ତୁଳସୀର ବିବାହ ପ୍ରସ୍ତାବ ଖୋଦ୍ ଭୁବନ ଠିକ୍ କରିପାରି ଥିବାରୁ ମାଲିକାଣୀ ବହୁବାର ଭବାନୀବାବୁଙ୍କୁ କହନ୍ତି । ବିଧିବଦ୍ଧ ଲଗ୍ନରେ ଆଉ ଡେରି ହୋଇନାହିଁ । ବର ପକ୍ଷଙ୍କ ଇଚ୍ଛା ପୂରଣ କରାଯାଇଛି ।

ଭୁବନ ନିଜେ ଯାହା ଅନୁଭବ କରିଛି କହେ । ବରଯାତ୍ରୀଙ୍କ ପଟୁଆର ମଝିରେ ସେ ଗେସ୍‌ଲାଇଟ ଧରିଥିଲା । ଫୁଲଝରି ଫୁଟୁଥିଲା । ମୟୂର ସିଂହାସନରେ ବାବୁ ପୁଙ୍କା । ଆଡ଼ମ୍ବରପୂର୍ଣ୍ଣ ରୁଚିକର ଖାଦ୍ୟର ପରିବେଷଣ । ସମସ୍ତେ କହୁଥିଲେ ବଫାଇ ମାଧ୍ୟମରେ ସବୁକିଛି ପରିବେଷଣ ହେବ । ଏବଂ ଶେଷକୁ ସେ ବି ଏ ଧାଡ଼ିରେ ଯୋଗ ଦେଇଥିଲା । ଖାଇଲାବେଳେ ସେ ଟିକଏ କମିଛି କମିଛି ଅନୁଭବ କରିଛି । ତଥାପି ଆଧୁନିକ ରୁଚିକୁ ସେ କେବେ ବିରୋଧ ବା ପ୍ରଶଂସା କରିନାହିଁ । ଏସବୁ ତା' ପାଇଁ ଏକରକମ ଚିଙ୍ଗ ଥିଲା ।

ସୁଆସୁଣୀ ମେଳରେ ତୁଳସୀ ଯେତେବେଳେ ରଙ୍ଗ ହଳଦୀ ମାଖେ, ସେ ଦେଖେ ଆଗ୍ରିଆମାନଙ୍କ ଚଳଣି । ଛଅ ଖମ୍ବ ମଣ୍ଡୁଆ ତଳେ ଥିଲା ବୈଢ଼ବ

ସବୁ । ମନ୍ଦିରେ ମହୁଲ ଡାଳ ଘଣ୍ଟା ଓ ତା' ସହିତ କଳାହାଣ୍ଡି ସାତ ଖଣ୍ଡାର ଖୁଣ୍ଟ ଥିଲା । ପ୍ରଥମେ ସେ ଆଶୀର୍ବାଦ ତେଲ ଚଢ଼ାଇ ଦେଇଥିଲା । ଥିଲେ ସାଙ୍ଗରେ ସୁଆସୁଣୀମାନେ । ମାଲ୍‌କାଣୀ ନିଜେ ପରଲ ଡାଳ ଧରିଥିଲେ । ପ୍ରଥମେ କପର ମଣ୍ଡୁଆ ଉପରୁ ପାଣି ଢଳାଗଲା ଯେତେବେଳେ ଆଶୀର୍ବାଦ ତେଲ ଦେଉଥିଲା ସେ । ମଦନ ଦେହରେ ପାଣି ପଡ଼ି ଜୁଡ଼ୁବୁଡ଼ୁ ହେଲା । ସେ ସେ ପରିବାରର ସେବାକାରୀ ଥିଲା । ଏପରି ଭଳିଆ ଦୃଶ୍ୟ ମାଲ୍‌କାଣୀ ଦେଖି ତାକୁ ସାଙ୍ଗେ ସାଙ୍ଗେ ନୂଆ ଧୋତି, ଗାମୁଛା ଉପହାର ମିଳିଲା । ମନେଅଛି ମାଲ୍‌କାଣୀଙ୍କ ଅନୁଗ୍ରହ ସବୁ ।

ଗାଁର ବୟୋବୃଦ୍ଧ ଓ ସଖୀ ସୁଆସୁଣୀଗଣ ତେଲ ଦେବାପରେ କେହି ତୁଳସୀକୁ ନଚେଇବାକୁ ଆଗେଇ ଆସିଲେ ନାହିଁ । ହୁଏତ ସେ ଉଚ୍ଚ ଶିକ୍ଷିତା, ଲାଜ କରିବ ନଚେଇବାରେ ବା ବଡ଼ ଘରର ଝିଅ ହେତୁ । କିନ୍ତୁ ଭୁବନ ଯେତେବେଳେ କାଖେଇବାପାଇଁ ଆଗେଇ ଆସିଛି, ତୁଳସୀ କାଖେଇ ହେବ-ନାହିଁର ପ୍ରଶ୍ନ ଉଠିଲା ନାହିଁ । ଛେମୁଣ୍ଡା ତଳେ ବାହା ବାଜାର ତାଣ୍ଡବ ସହିତ ସମସ୍ତଙ୍କ ଆଶୀର୍ବାଦ ହୁଳହୁଳି ପୁରି କମ୍ପାଇ ଦେଇଛି । ଭୁବନ ପ୍ରତି ମାଲ୍‌କାଣୀଙ୍କ ମନ ଭୁଲି ଯାଇଥିଲା ।

ବିଦାୟ ଲଗ୍ନ ସମସ୍ତଙ୍କ ପାଇଁ ବିଷାଦ ଥିଲେ ବି ପିତୃପ୍ରେମ ଭୁବନ ପ୍ରତି ଆହ୍ଲାଦଦାୟକ ଥିଲା । କନ୍ୟା ବିଦାୟ ସେ ଏତେ ନିକଟରୁ କେବେ ଦେଖି ନ ଥିଲା । ତୁଳସୀ ଜିଦ୍ ଧରେ ତା' ଭୁବନ କାକା ତାକୁ ଶାଶୁ ଘରକୁ ନେଇ ଛାଡ଼ିବ । ନ ହେଲେ ସେ ଘରୁ ଗୋଡ଼ କାଢ଼ିବ ନାହିଁ ।

ବିବାହର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଭୁବନ ସବୁଥିରେ ସାକ୍ଷ୍ୟ ରହିବ ଓ ତା' ପରି ଜଣେ ଚାକର ପ୍ରତି ପରିବାରର ବିଶ୍ୱାସକୁ ସେ ଏଡ଼ାଇ ଦେଇନାହିଁ । ପ୍ରଜ୍ଞା ବାବୁ ମେଦନ ଜାଣିଲେ ଭୁବନ ବି ଜଣେ ମଣିଷ ଓ ସେ ଏ ବିବାହର ସଂଯୋଗକାରୀ । ଆଉ ଅଧିକ ଭୁବନ ସମ୍ପର୍କରେ ସେ ଜାଣିନାହିଁ । ସୁବିଧାରେ ଭୁବନର ସାନ୍ନିଧ ଚାହିଁ ରହିଲେ ପ୍ରଜ୍ଞା ବାବୁ ।

ଭୁବନ ଅନୁଦାର ନ ଥିଲା ଏପରି ପ୍ରଜ୍ଞା ବାବୁଙ୍କ ପ୍ରସ୍ତାବ ପ୍ରତି । କେତେ ଥର କୋଇଲା ଟ୍ରକ୍ ଗାଡ଼ିରକେଲା ଯାଏ । ବେଦବ୍ୟାସ ଯାଏ । ବେଦବ୍ୟାସ ନିକଟସ୍ଥ ଶଙ୍ଖନଦୀ ବ୍ରିଜ ପାର ହୋଇ ଯମୁନାଢ଼ିପା ଚମିନି ଭାଟିକୁ କୋଇଲା ପହଞ୍ଚାଇଛି । ବିରାଟ ଇଟା ତିଆରି ଉଦ୍ୟୋଗର ପ୍ରକଳ୍ପ ସବୁ ଏଠି ଅଛି । ଏଠୁଁ ଇଟା ଟ୍ରକ୍‌ରେ ବୋଝେଇ ଯାଏ ରାଉରକେଲା । ଜମୁନାଢ଼ିପା ଶଙ୍ଖ, କୋଇଲ, ସରସ୍ୱତୀ ବ୍ରାହ୍ମଣୀର ମିଳନ ଭୂଖଣ୍ଡ 'ସ୍ଥଳରେ ବା ସଙ୍ଗମର ଉତ୍ତର

ଭୂଖଣ୍ଡ । ଯଉଠି ଶଙ୍ଖ, କୋଇଲ, ସରସ୍ୱତୀ ନଦୀ ମିଳନ ଅପେକ୍ଷାରତ ବ୍ରାହ୍ମଣୀ ସହିତ । ଆର ଖଣ୍ଡି ବେଦବ୍ୟାସ ତୀର୍ଥଭୂମି । ପ୍ରାଚୀ କୁହୁଡ଼ି ବେଦବ୍ୟାସ ଓ ଜମୁନା ଡ଼ିପା ଉପକଣ୍ଠକୁ ଢାଙ୍କି ରଖେ ବହୁ ସମୟ । ଧୀବର କନ୍ୟା ମତ୍ସ୍ୟଗନ୍ଧା ନଉକା ବାହୁଥିଲା ବ୍ରାହ୍ମଣୀ ଜଳରେ । ତ୍ରିବେଣୀ ସଙ୍ଗମରେ ପରାସର ମୁନିଙ୍କ ଆଶ୍ରମ । ଆରପାରି ଯାତ୍ରା ସମୟରେ ମତ୍ସ୍ୟକନ୍ୟାଙ୍କ ସହିତ କାମନାର ବଶବର୍ତ୍ତୀ ହୋଇ ମୁନି ପଶ୍ଚିମ ପାର୍ଶ୍ୱକୁ ଆସନ୍ତି । ଦ୍ୱୀପଭାଗରେ ମତ୍ସ୍ୟକନ୍ୟାଙ୍କ ସହିତ ସହବାସ ସ୍ୱୀକାର ପୂର୍ବକ ସମଗ୍ର ଅଞ୍ଚଳକୁ କୁହୁଡ଼ିଯୁକ୍ତ କରାଯାଇଛି । ସେହିଦିନୁ ଏ କୁହୁଡ଼ିର ସୃଷ୍ଟି ବୋଲି କିମ୍ବଦନ୍ତୀ କହେ । ମତ୍ସ୍ୟକନ୍ୟାଙ୍କ ଗର୍ଭଜାତ କୃଷ୍ଣ ଦ୍ୱୈପାୟନ ବା ବ୍ୟାସଦେବଙ୍କ ଜନ୍ମ । ଏହି ଜନ୍ମପୀଠର ନାମ ସେହିଦିନୁ ବେଦବ୍ୟାସ ପୀଠ ହୋଇ ରହିଛି । ବ୍ୟାସଦେବଙ୍କ ଆଶ୍ରମ ଏହି ପବିତ୍ର ସଙ୍ଗମ ସ୍ଥଳକୁ ପବିତ୍ର କରୁଛି । ଆଷାଢ଼ ପୂର୍ଣ୍ଣିମୀକୁ ବ୍ୟାସ ପୂର୍ଣ୍ଣିମୀ ଓ ଗୁରୁ ପୂର୍ଣ୍ଣିମୀ ଭାବେ ପାଳନ କରାଯାଏ । ଏ ଯାଏଁ କୁହୁଡ଼ି ଘେରି ରହେ ଓ ମତ୍ସ୍ୟଗନ୍ଧା ନଉକା ବାହି ନେଇ ତଥା ବ୍ୟାସଦେବଙ୍କ ସହିତ ପ୍ରତ୍ୟହ ମିଳନ ଅପେକ୍ଷାରେ ରହିବା କିମ୍ବଦନ୍ତୀସ୍ୱ ସୂଚନା ପ୍ରତ୍ୟେକଙ୍କୁ ସ୍ମରଣ କରାଇ ରଖେ ।

କୋଇଲ ଟ୍ରକ୍ ଶଙ୍ଖ ଧାରରେ ଓହ୍ଲାଇଯାଏ ଟମିନ ଭାଟିକୁ । ଯଉଠି ସହସ୍ର ଇଟା କଙ୍କାଳି କାର୍ଯ୍ୟରତ । ବେଶ୍ ପରିଶ୍ରମ କରନ୍ତି ସେମାନେ ରାତ୍ରି ଅଧ ପ୍ରହରରୁ । ଦେହର ଝାଳ ଶୀତଳ ଜଳବାୟୁ କର୍ମମୁଖର କରେ । କ୍ଳାନ୍ତି ବିଶେଷ ଅନୁଭୂତ୍ୟ ହୁଏନାହିଁ ।

ତୁଳସୀର ବିବାହ ପର୍ବ ପରେ ଭୁବନ ଆସିଥିଲା ଘରକୁ ମା' ବୁଢ଼ୀ ଓ ଗେହ୍ଲୀ ସହିତ କିଛିଦିନ ରହିବ । ଭୁବନ ସ୍ୱୀହିର ଥିଲା । ଟେହ୍ଲୀ ଜନ୍ମ ହେବାର କେତେ ମାସ ପରେ ଭୀଷଣ ଅଣ୍ଟା ଦରଜ ହେଲା । ଭୁବନ ଥିଲା ଜଙ୍ଗଲ ଠିକା କାମରେ । ଖବର ପାଇପାରି ନାହିଁ । ତେଣୁ ତାକୁ ହରାଇ ବସିଲା । ତତ୍ପରେ ସେ ବରାବର ବୁଢ଼ୀମା' ଓ ଗେହ୍ଲୀ ପ୍ରତି ନିଜର କର୍ତ୍ତବ୍ୟ ଜାରିକରି ରଖିଛି । ଜୀବନର ମରୁଦ୍ୟାନରେ ବିପତ୍ନୀକ ଜୀବନ ଧରି ଚାଲିଛି । ନିଜ ପାଇଁ ଫିକର୍ କିଛି ନାହିଁ । ନିଜ ପରିବାରର ପରିବର୍ତ୍ତନ ପ୍ରତି ସେ ମୋଟେ ଚେଷ୍ଟିତ ନ ଥିଲା । ଗତାନୁଗତିକ ଜୀବନରେ ସେ ଥିଲା ବଡ଼ ପ୍ରତ୍ୟାରକ ଓ ବାହକ । ତା' ଆଖି ଆଗରେ ମଦନ ଏବେ ଦୁଇ ଏକର ଜମିର ମାଲିକ ହୋଇ ଯାଇଛି । କିନ୍ତୁ ଭୁବନ ସବୁ ରୋଜଗାର ମଦ, କୁକୁଡ଼ା ଲଢ଼େଇ ଆଦିରେ ଶେଷ କରେ । ତା' ଭିତରେ ପରିବର୍ତ୍ତନ ନ ଥିବାରୁ ସେ ଅଗେଇବା କେବେ ସମ୍ଭବ ନୁହେଁ ଜାଣେ । ଘର ପ୍ରତି ଏକବାରେକ ଅବହେଳା କରି ବସୁଛି । ସ୍ତ୍ରୀ ଗଲା ଦିନଠୁଁ ସେ ବେଶି ଭାଙ୍ଗି ଯାଇଛି ।

ଭୁବନ ଯେବେଳେ ଗାଁକୁ ଆସିଛି ଗେହ୍ଲୀକୁ ପରଘରେ ଖଞ୍ଜିଦେବ । ତା' ପାଇଁ ଗୃହୀମାନଙ୍କୁ କହି ଗାଈ ଗୋରୁ ଜଗିବାକୁ ବ୍ୟବସ୍ଥା କରିଦେବ । କାହାର ଘରେ ବର୍ତ୍ତିନିଆ କରିଦେବ । ବର୍ଷକଯାକ ଚନ୍ତାଶୂନ୍ୟ ରହିବ । ଆଉ ମା' ବୁଢ଼ୀ ଜଙ୍ଗଲରୁ କାଠିପତ୍ର ଆଣି ବିକି ଚଳିଯିବ । ପଖାଳ ଗଣ୍ଡେ ନିଜପାଇଁ ଉଦ୍ଧାର ନେବ । ଭୁବନର ବାରବୁଲା ଜୀବନର ଠାବ ନ ଥିଲା ।

ଗେହ୍ଲୀ ସକାଳୁ ଉଠେ । ଦାମୁଡ଼ି ସବୁଙ୍କୁ ପଘାରୁ ଫିଟାଏ । କ୍ଷୀର ଦୁହିଁଲା ସମୟରେ ସେମାନଙ୍କୁ ଧରେ । ଗ୍ଲେଟିଆ ଝିଅଟେ ଗେହ୍ଲୀ । ଆଖିର ଲୁହରୁ ପୋଛି ଜାଣିନାହିଁ । କପଟା ଖଣ୍ଡେ ଅଣ୍ଟାରେ ଗୁଡ଼ାଇ ହୋଇଛି । ଶ୍ରମଜୀବୀର ଭୂମିକାରେ ଉପନୀତ ।

ବାଛୁରୀ ଛଡ଼ାଙ୍କୁ ନେଇ ଗୋରୁ ଦାଣ୍ଡକୁ ଯାଏ । କାନରେ ମୁଢ଼ି ମୁଠାଏ । ହାତରେ ପାଞ୍ଚଣ ବାଡ଼ି । ଗୋଟେ ଦଉଡ଼ା ଦାମୁଡ଼ି ବେକରେ ଦଉଁରି ଲଗିଛି । ବାଡ଼ିଟିଏ ଲମ୍ବା ବନ୍ଧା ଯାଇଛି । ଦାମୁଡ଼ି ସବୁ ଏଥିପାଇଁ ଦଉଡ଼ି ପାରିବେ ନାହିଁ । ଗୋଠହରା ହେବେନାହିଁ ।

ତା' ଦାମୁଡ଼ି ସବୁଙ୍କୁ ଏକାଠି ଗୋଠ କରିଦିଏ । ଘଡ଼ିଏ ଖରା ଖାଇ ନେବେ ଦାମୁଡ଼ି ସବୁ । ଗେହ୍ଲୀ କିଛି ସମୟ ସାଥୀ ମେଳରେ ଘିଲି ଦଣ୍ଡାବାଡ଼ି ଖେଳେ । ପିରଫିଟ ଉଡ଼ାଇଥାଏ । ଦଳ ଭିତରେ ତା' ଦାମୁଡ଼ି ସବୁଙ୍କୁ ନିଏ । କେବେ ବଡ଼ ପାହାଡ଼ ତଳକୁ ତ କେବେ ଜଙ୍ଗଲ ଖୋଲ ଭିତରକୁ ।

ଗୋଠ ଛୁଟିବା ବେଳକୁ ଗେହ୍ଲୀ ଗୋବର ଲଣ୍ଡା ସବୁ ଏକାଠି ଗଦା କରିଦିଏ । ସେସବୁ ଗ୍ଲେଟ ଗଦାଟିଏ ହୋଇ ଗଲାଣି । ଗାଁ ଲୋକେ ଖତ ଆକାରରେ କିଣି ନେଇଯାନ୍ତି । ଗେହ୍ଲୀ ଦଶ ପଇସା ପେଟ ପାଟଣା ଉପୁରି ପାଇଯାଏ । କେବେ କମିଛି ଛତୁ, ରୁଗୁଡ଼ି, କାଠି, ପତ୍ର ଆଣି ବିକେ । ମୁଢ଼ି ଗଣ୍ଡେ ପାଇଯାଏ । ସନ୍ଧ୍ୟା ଭୋଜନ ଯଥେଷ୍ଟ ମିଳିଯାଏ ତାକୁ, ଗେହ୍ଲୀକୁ ।

ଧାନ କ୍ଷେତର କରପା ସବୁ ଉଠିଗଲେ ସେଠି ଦାମୁଡ଼ିଙ୍କୁ ନିଏ । ଧାନ ଶିଣା କୁଲୁକେ, ଖୋକେ । ବେଣ୍ଟିକରି ଧାନ ସଂଗ୍ରହ କରିଯାଏ । ଗେହ୍ଲୀର ଏସବୁ ସଂଗ୍ରହ । ପୁଷ ପୂନି ଦିନ ମଧ୍ୟ ସେ ଛେରଛେରା ମାଗେ । କରମା ନାଚେ । ପୁଷ ପୁନିରେ ମାମୁ ପୂଜା କରେ । ମାଟିରେ ମାଟିପିଣ୍ଡୁଲା କରି କରମା ଦାଣ୍ଡ ଉଛୁଳିଯାଏ । ରାତି ପହର ଇନ୍ଦ ନାଚେ । ଶକୁନି, କଂସ ମାମୁଙ୍କ ପିତୁଲାଙ୍କୁ ଭସାଇ ଦିଏ ।

ଫଗୁଣ ଖରାରେ ଦାମୁଡ଼ି ସବୁକୁ ଜଗିବାକୁ ପଡ଼େନାହିଁ । ଛାଡ଼ିଦିଏ ଧାନ କ୍ଷେତ ପଡ଼ିଆ ପ୍ରାନ୍ତରରେ । ଗଛ ତଳେ ସାଥୀମେଳେ ଧୂଳିଘର ଖେଳେ ।

ଚ୍ରେଞ୍ଚିଆ ଧୂଳି ଗାତକୁ ଫୁଙ୍କେ । ପୋକଙ୍କୁ ଫୁଙ୍କେ ଓ ଫୁଙ୍କି ଫୁଙ୍କି ପୋକ ବାହାର କରେ । ଧୂଳି ଗଦାରେ କାଠି ଲୁଚାଇ ଖେଳେ । ଦାମୁଡ଼ଯାକ ଠୁଳ କରେ ତ'ପାହାର ତଳକୁ । ଘରକୁ ମୁହାଁଏ ।

ବାଟରେ ଢୁରୁବଘା, ଶିଆଳ ସବୁ ତାକୁ ଦେଖି ଦୂର ଗୋଡ଼ରେ ଛିଡ଼ା ହୋଇ ଡରନ୍ତି । ଗେହ୍ଲୀ ବି ପାଞ୍ଚଣ ଦେଖାଇ ଦିଏ । ହେଟା ବାଘର ଭୟ ନାହିଁ ଏବେ । ସେଦିନ ଅତଡ଼ା ଦାମୁଡ଼ିଟି ଗୋଠ ଖଣ୍ଡିଆ ହେଲା । ଗେହ୍ଲୀ ତାକୁ ବହୁତ ଖୋଜୁଛି । ଚୁହୁଚା ଝର ପାଖକୁ ଯାଇଛି । କାଳେ ଚୁହୁଚା ପୋକରେ ଗୋଡ଼ ରହି ଯାଇଥିବ । କିନ୍ତୁ ଦାମୁଡ ଯୋକ ଭିତରେ ନ ଥିଲା । ଖରାଦିନେ ଏଇ ଚୁହୁଚା ଗୋରୁ ଗାଈଙ୍କ ତୃଷ୍ଣା ମେଣ୍ଟାଏ । ସାଧାରଣତଃ ଚିକଟା ମାଟି, ଗେଙ୍ଗୁଟି ପଥର ଯୁକ୍ତ ଅଞ୍ଚଳରେ ଏ ସବୁର ମରୁଦ୍ୟାନ ପରି ଦୃଶ୍ୟ ହୁଏ । ନାଳ, ମରୁଦ୍ୟାନର ଚୁହୁଚା ଅତିକ୍ରମ କରି ଗେହ୍ଲୀ ଚାଲିଛି । ଦାମୁଡ଼ର ପତ୍ତା ମିଳନାହିଁ । ଫେରିବାକୁ ଅନ୍ଧାର ହୋଇ ଆସୁଛି । ପୋଖରୀ ହୁଡ଼ା ତଳେ କଅଁଳିଆ ଘାସ କଟରୁଛି । ସେ ଦେଖି ନେଇଛି । ଦାମୁଡ ଗେହ୍ଲୀକୁ ଦେଖି ଦଉଡ଼ୁଛି । ପାଞ୍ଚଣ ବାଡ଼ିଟାକୁ ତା' ଲକ୍ଷ୍ୟରେ ଗେହ୍ଲୀ ଫିଙ୍ଗିଛି । ବାଜିନାହିଁ । ଦାମୁଡ ବେକରେ ଥିବା ଅରଗଡ ବାଉ ବେଶି ଯୋରରେ ତାକୁ ଦଉଡ଼ିବାକୁ ଦେଇନାହିଁ ।

ମୁହାଁ ସଞ୍ଜର ଉପର । ଗେହ୍ଲୀ ରାସ୍ତାରେ ଏକୁଟିଆ । ଦାମୁଡ ଦଉଡ଼ୁଛି । ପଛରେ ସେ । ଦୂରରୁ ସେ କିଛି ଆଲୁଅ ଜଳୁଥିବା ଦେଖିଛି । ଗେହ୍ଲୀର ଭୟ କମିଗଲା । ପଡିଆ ମଝିରେ ଭକ୍ ଭକ୍ ନିଆଁ ଜଳୁଛି । ସେ ନିରୀକ୍ଷଣ କଲା । ଭୂତ ପ୍ରେତଙ୍କ ଭୟ ସେ ଅଞ୍ଚଳରେ ବିଶେଷ ପ୍ରଚଳିତ । ତଥାପି ପ୍ରଚଳିତ କିମ୍ବଦନ୍ତୀ ଗେହ୍ଲୀର ମନେପଡ଼ୁଛି । ସେଇ ନିଆଁ ହେଲା, ହାଣ୍ଡା ହାଣ୍ଡା ରତ୍ନ ଅଟେ । ନିଆଁ ଜଳୁଥିବା ଅଞ୍ଚଳରେ ପିତଳ ହାଣ୍ଡା ମାଟିତଳେ ପୋତା ହୋଇଥାଏ । ତା'ରି ଉଜ୍ଜଳ କିରଣରେ ଏପରି ନିଆଁ ଜକ୍‌ଜକ୍ କରିବାର ବିଶ୍ୱାସ ପନ୍ଥା ରହିଛି । ତେଣୁ ଗେହ୍ଲୀର କୌତୂହଳ ହେବା ସ୍ୱାଭାବିକ । ସେ ହାଣ୍ଡା ରତ୍ନକୁ ଦୃଷ୍ଟି ଦେଲା । ଦାମୁଡ଼କୁ ବେଶ୍ ଯୋରରେ ଧମକାଇ ଦେଲା । ଯେପରି ସେ ଘରକୁ ଫେରିଥିବ ।

ଗେହ୍ଲୀ ଦଉଡ଼ିଲା ମଶାଲଚକା ପଛରେ, ହାଣ୍ଡା ରତ୍ନ ପାଖରେ । ନିଆଁ ହେଲା ଦୂରରୁ ଦୂରକୁ ଘୁଞ୍ଚି ଘୁଞ୍ଚି ଯାଉଛି । ଗେହ୍ଲୀ ଦଉଡ଼ୁଛି । ହୁଡ଼ ଦିହରେ ପଡ଼ି ହାପଟି ଯାଇଛି ଥରେ ଅଧେ । ତଥାପି ଜିଜ୍ଞାସା, ପାଇବାର ଇଚ୍ଛା ନିଜକୁ ନିବର୍ତ୍ତାଇ ନାହିଁ । ଆଜି ସେ ହାଣ୍ଡା ରତ୍ନର ଅଧିକାରୀ ହେବ । କିଛିସମୟ ପରେ ହାଣ୍ଡା ରତ୍ନ ମ୍ଳାନ ହୋଇଯାଇଛି । ଗେହ୍ଲୀ ଗାଁରୁ ବହୁ ଦୂରକୁ ଚାଲି ଯାଇଛି । ଦେଖିଲା,

ସେଠି ହଣ୍ଡା ରତ୍ନ ନାହିଁ । ପଡ଼ିଛି କିଛି ପଶୁ ମାଂସ ପିଣ୍ଡୁଳା । ଦୁର୍ଗନ୍ଧଭରା ସ୍ଥାନଟି । ତେବେ ହଣ୍ଡା ରତ୍ନ··· ?? ଗେନ୍ଲୀ ଅବାକ୍ । ଫେରିବାକୁ ତାକୁ କଷ୍ଟ ହୋଇ ପଡ଼ୁଛି ଏତେ ବାଟରୁ, ଏକୁଟିଆ ଅନ୍ଧାର ରାତିରେ ।

ପଶୁ ଶବ ମାଂସ ପିଣ୍ଡୁଳା ସବୁ ଛିଆଡ଼ି ପଡ଼ିଛି । ବିଲୁଆଟି ବହୁ ଦୂରକୁ ଚାଲି ଯାଇଛି । ହୁକେ ହୁକେ ଡାକୁଛି । ଗେନ୍ଲୀ ଦେଖିଲା ଏସବୁ କ'ଣ ? ଲୋକେ ତେବେ ହଣ୍ଡା ଯାହାକୁ କହନ୍ତି ସେଇଟା କ'ଣ ଏଇ ପଶୁ ମାଂସ । ବିଲୁଆ ଟାଣି ଟାଣି ଦଉଡ଼େ । ତା' ପାଟିରୁ ନିଆଁ ହୁଲା ବାହାରେ । ସଲଫର ଡାଇ ଅକ୍ସାଇଡ଼ର ଅମ୍ଳଜାନ ସହିତ ମୃଦୁ ଦହନକୁ ହଣ୍ଡା ରତ୍ନ କୁହାଯାଏ ? ମାଟି ତଳେ ପୋତିଲା ହଣ୍ଡା ନାହିଁ । ଧନ ରତ୍ନ ନାହିଁ । ବିଲୁଆ ମୁହଁରେ ନିଆଁ ଜଳିବାକୁ ହଣ୍ଡା ରତ୍ନ କୁହାଯାଏ ।

ଗୁହାଳରେ ଦାମୁଡ଼ିକୁ ବାନ୍ଧିଦେଲା । ରାତିରେ ଆଉ ହଣ୍ଡା ରତ୍ନର ଦୃଶ୍ୟ ମନେ ପଡ଼ିନାହିଁ । କ୍ଳାନ୍ତିର ନିଦଟା ଯାଇ ଯାଇଛି ।

ବର୍ଷାଦିନେ ଗେନ୍ଲୀ ଦାମୁଡ଼ି ସବୁଙ୍କୁ କ୍ଷେତ ହିଡ଼ରେ ଚରାଏ । ଧମଣା ସାପଙ୍କୁ ଭେଟେ । ତାକୁ ଦେଖି କ୍ଷେତ ଭିତରକୁ ଚାଲିଯାନ୍ତି । ଧାନକଟାବେଳେ ଘାଘର ଚଢ଼େଇ ଉଡ଼ିଯାଏ । ଗେନ୍ଲୀ ତାଙ୍କୁ ଧରି ପାରେନାହିଁ । ହିଡ଼ ଧାରରେ ଚବା ଫୁଲ ଫୁଟିଥାଏ । ଗେନ୍ଲୀ କାଇଁଚ ଛିଣ୍ଡାଏ । କାଇଁଚର କାମ ସେ କିଛି ଜାଣେନାହିଁ । ତଥାପି କାଇଁଚ ଓ ଚବା କାଣ୍ଡରେ ଖାଲୁଆ ବା ଚୁରୁଆ କରାଏ । ପାଣିଧାର ଦେଖି ଚୁରୁଆ ଖେଳ ମାଛ ଧରେ ପତରେ ଅଧେ । ମାଛ କିଛି ଧରିବ ବୋଲି, ଦାମୁଡ଼ି ଚରାଇବ ବୋଲି ଓ କେନ୍ଦୁ ସବୁ ତୋଳି ପଥର ଚଟାରେ ଠେସେ । ମଞ୍ଜି ସବୁ ମାଜେ । ଖଇପଲ ଶସ ବାହାର କରେ । ପତରେ ଖାଇ ଦିଏ । କେତେ ତୃପ୍ତି ସେ ପାଏ କେନ୍ଦୁ ଶସ ଖାଇବାରେ । ଏଇ ଶସ ମୋଟେ କଷା ଲାଗେନାହିଁ । ଗେନ୍ଲୀ କିନ୍ତୁ ହିଡ଼ ତଳ ଗେଣ୍ଡା ଫେଣ୍ଡା ଜମା ସଂଗ୍ରହ କରେନାହିଁ । ବରଂ ହିଡ଼ରେ କେବେ କମିଥିବା ବହୁଡ଼ା ଛତ ଗୋଟାଏ । ଆଉ ଯଦି ଗୋଟାଏ ତେବେ ଉଇ ହୁଙ୍କାରୁ ଖୁଦ ଛତୁ ସଂଗ୍ରହ କରେ । ଯେଉଁଦିନ କ୍ଷେତପଟେ ଯାଏ ଏସବୁ ନେଇ ମୁଢ଼ି ବଦଳରେ ଗାଁ ଲୋକଙ୍କୁ ଦେଇଦିଏ ।

ମଦନ ନିଜର ଦୁଇମାଣ ଜମିର ରୁଆ କାମ ଆଗ ସାରିଦିଏ । ତା' ନିଜ ନାମରେ ଲେଖାସବୁ ସାର ଋଣରେ ଆଣି ବତର କରି ଚାଷକରେ । ଧାନ କ୍ଷେତ ଦେଖି ବଡ଼ ବଡ଼ ଚାଷୀଗଣ ତା'ର ତାରିଫ କରନ୍ତି । ବର୍ଷସାକର ଧାନ ତା' ସୁନା କ୍ଷେତରୁ ସଂଗ୍ରହ କରେ । ତା' ନିଜ ହଳ ନେଇ ଅନ୍ୟ ଚାଷୀଙ୍କୁ

ବେଳେବେଳେ ସାହାଯ୍ୟ କରେ । କ୍ଷୁଦ୍ର ଋଣୀ ଭାବେ ମଦନ ଅନେକ ସରକାରୀ ସୁବିଧା ପାଏ । ଧାର ଋଣ ଠିକ୍ ସମୟରେ ଦିଏ, ତେଣୁ ସେ ସୁଧ ଛାଡ଼ପାଏ । କିଛିଟା ଅଧିକ ସରକାରୀ ସୁବିଧା ପାଇଁ ଲେମ୍ପସ ମେନେଜର, ଗ୍ରାମସେବକ ବାବୁ, ତା' ପାଖେ ଆସନ୍ତି । କେବେ ସେ ସବୁର ସୁବିଧା ନେବ କହେ । ଋଣୀ ଜୀବନ କିନ୍ତୁ ସେ ଜାଣେନାହିଁ ।

ମଦନ ଏବେ ଶ୍ରାବଣ ଅମାବାସ୍ୟାରୁ ଦ୍ୱିଶସ୍ୟାଳୀ ଅମାବାସ୍ୟା ପର୍ବ କରେ । ଗୋ-ଜାତିର ସମ୍ମାନ ରଖେ । ନଙ୍ଗଳର ପୂଜା କରେ । କାନ୍ଥରେ ଡେଇ ଗେରୁଆ ମାଟିରେ ତା' ସାଥୀ ବଳଦ ଦୁଇଟାଙ୍କ ଛବି ଆଙ୍କେ । ସୁମାଙ୍ଗ ସହିତ ମିଛ ଧାନ ପୁଡ଼ୁଗୁଟିଏ ବାନ୍ଧିଦିଏ । ଏଥିପାଇଁ ପାଲବେଣ୍ଟ ମାରେ । ଗାଁ ଦାଣ୍ଡରେ ତାକୁ ଲମ୍ବାଇ ଦିଏ କିଛିଦିନ । ସମରୁ ଦିହିଲୁ ତା' ଉପରେ ଗୁଳି ଆସନ୍ତି । ମାଣବସା ଲକ୍ଷ୍ମୀପୂଜା ସୁମାଙ୍ଗ କରେ । ପରିବାର ଭିତରେ ପ୍ରଗତି ଆସି-ଯିବା ନେଇ ଦୁହେଁ ଖୁସି ଦେଖାଯାନ୍ତି । ଏକାଠି ବସି ଛେଳ, ଛୁଆ ଦିଇଟାଙ୍କ କଥା ବେଶି ଚର୍ଚ୍ଚା କରନ୍ତି । ସମରୁ ପାଇଁ ବହିପତ୍ର ଯୋଗାଡ଼ କରେ । ସକାଳ ସନ୍ଧ୍ୟା ପାଠପଢ଼ାରେ ହେଳା ହୁଏନାହିଁ । ବିଦ୍ୟାଳୟର ଶିକ୍ଷକଙ୍କୁ ସେ ପୁଅ ଦୁଇଟାଙ୍କ ବିଷୟରେ କେବେ କମିତ ପଚାରେ । ନିଜେ ସ୍ୱନ୍ଧାଭେଦା ବିଦ୍ୟାଳୟକୁ ନେଇ ଦିଏ । ସମରୁ ଓ ଦିହିଲୁ ସହିତ ଅନ୍ୟ ଛୁଆଙ୍କୁ ଦେଖେ । ମଦନ କେତେ ଖୁସି ହୁଏ ସତେ । ସମରୁ ତା' ବହିରୁ କିଛି ପଢ଼ି ଶୁଣାଏ ବାପା ମା'ଙ୍କୁ । ସୁମାଙ୍ଗ ଭାବିନିଏ ଜ୍ଞାନର ପରିସୀମା କେତେ ବ୍ୟାପକ ଓ ଭାବେ ପୁଅ ଦୁଇଟାଙ୍କୁ ସେ ପାଠ ପଢ଼ାଇବ । ବାବୁ କରିନେଇବ । ସାଗର ପରି ସ୍ୱପ୍ନ ଉର୍ମିମାରେ ମଦନ ଭିତରେ ।

ପୂଜା ପରବରେ ଗେହ୍ଲୀକୁ ମଦନ ନେଇଆସେ ନିଜ ଘରକୁ । ବାପଟା ରାଜି ହେଲେ ଗେହ୍ଲୀ ବି ତା' ଘରେ ରହନ୍ତା । ବଳଦ ହଳକୁ ଦେଖନ୍ତା । କିନ୍ତୁ ପଡୋଶୀ ହେଉ ଏପରି ଏକ ଛୁଆକୁ ଗୋରୁ ଚରାଇବାକୁ ଦେବା ସେ ଅବିବେକୀ ଭାବେ । ଭୁବନ ସିନା ଗେହ୍ଲୀକୁ ପର ଘରେ ବନ୍ଧିନିଆ ଦେଇଛି । ସେ ଜମାରୁ ଦିଅନ୍ତା ନାହିଁ । ଶିଶୁ ଶ୍ରମିକ ଯେ ନିଜର ଭରଣ ପୋଷଣ ଜାଣିନାହିଁ ଓ ତା'ର ଉପାର୍ଜନ ପ୍ରତି ଭୁବନ ଏତେ ଆଗ୍ରହୀ କାହିଁକି ?? ବରଷକୁ ଥରେ ଧାନ କେତେ ଖଣ୍ଡି ଆଣି ସେ କେତେ ସଞ୍ଚୟ କରେ ? କେତେ ଗେହ୍ଲୀ ପାଇଁ ଖରଚ କରେ ?? ଧାନତକ ବିକିଦିଏ, ନିଜେ ଉଡାଇ ଦିଏ ମଦ ପାଣି, କୁକୁଡା ଲଢ଼େଇରେ । ଘରର ଛପର ପର୍ଯ୍ୟନ୍ତ ଲେଉଟା ହୋଇନାହିଁ । ବୁଢ଼ୀ ମା'ଟା କି ଅସୁବିଧା ପାଏ କେବେ ଭୁବନ ଦେଖିଛି ? ଗେହ୍ଲୀ ପରଘରେ ଖଟେ ଓ କି

ନଯୋଗିତନା ପାଏ—ସେ କେବେ ଦେଖେ, ବୁଝେ ?? ଭୁବନର ଏ ଦେଖିଥିଲ ପନ୍ଥା ମଦନଙ୍କୁ ବେଶି ବାଧେ । ତା'ର ବୁଢ଼ୀ ମା' ବର୍ଷ ଖେଳଡଦ୍ଧ ହୋଟେଲ-ବାଲା ବାବୁଙ୍କୁ ଦଏ । ଦ' ପଇସା ଆଣେ । ଚଳି ଯାଉଛି ସିନା କିନ୍ତୁ ମଣିଷର ହିସାବ ଭିତରେ ରହୁନାହିଁ । ତାଙ୍କୁ କିଛି କାମଧନ୍ଦା ଦଅ.ଗଲେ ବ ଭଲ ହେଲା । ଧପାବାଜ ମାତ ଯୋଗୁଁ କେବେ ତଷ୍ଟି ପାରୁନାହିଁ । ଅନ୍ୟ ପାଇଁ ଖଟେ, ଅନ୍ୟ ପାଇଁ ତ୍ୟାଗ; କିନ୍ତୁ ଆଣେ ନିଜ ପାଇଁ କେତେ ?? ତା' ପାଇଁ ଏକ ଧରାବନ୍ଧା ଜୀବନ ଦରକାର । ତା' ପରି ଜୀବନ ଜୀଇଁବାରେ ଅବଶ୍ୟ ଆନନ୍ଦ ଅଛି; କିନ୍ତୁ ବଞ୍ଚି ରହିବାର ମାଦକତା ନାହିଁ ।

ଭୁବନ ଆସିଥିଲା ଗାଁକୁ । ଗେହ୍ଲୀର ବଜ୍ରିକିଆ ହିସାବ କରି ମା'କୁ ଓ ଗେହ୍ଲୀକୁ ନେଇ ଯିବାକୁ ଗୁହିଁଥିଲ । ସେମାନେ ଭବାନୀ ବାବୁଙ୍କ ଘରେ ରହିବେ । ଗେହ୍ଲୀ ସେଠି ଗାଈ ଜଗିବ, ଗୁହାଳ ସଫା କରିବ । ମାଲିକାଣୀଙ୍କ ସହିତ କ୍ଷେତବାଡ଼ି ଯିବ । ମା' ପାଇଁ କିଛି ବଣ ଖଜୁରୀ ପତର ଆଣିଦେବ । ଯାହା ସେ ଧାନ ଶୁଖାଇବା ପାଇଁ ଚଟେଇ ସବୁ କରିବ । କେବଳ ବସି ବସି ତ ଦିନ କଟିବ ନାହିଁ । ଭଲରେ ରହିବେ ସେଠି ।

ସତକଥା—ଗେହ୍ଲୀ ସେଠି ଭଲରେ ରହିବ । ମାଲିକାଣୀଙ୍କ ସାଙ୍ଗ ମିଳିଯିବ । ସୁବିଧା ହେବ ତାଙ୍କର । ଭଲ ଘରେ, ବଡ଼ ଲୋକଙ୍କର ସଙ୍ଗରେ ରହିବାର ସୁବିଧା ପାଇବେ । କିନ୍ତୁ କେତେଦିନ ? କେତେ ଦିନର ଏପରି ବ୍ୟବସ୍ଥା ଭୁବନ କରୁଛି ? ସାରା ଜୀବନଯାକ ପାଇଁ ନୁହେଁ—ବିଶ୍ୱାସ ଥିବାଯାଏ । ଆକାଶରେ ମେଘ ଥିବାଯାଏ, ମୟୂର ନାଚେ ଖୁସିହୁଏ । ଆଉ ଭୁବନ କଥା— ?? ଗେହ୍ଲୀ ତ ପୁଣି ବଡ଼ ହେବ । ପରଘରେ ଟୁଲି ଫୁଙ୍କିବ । ବୁଢ଼ୀ ମା' ହୁଏତ ଗାତକୁ ଯିବ । ମଦନ ଚନ୍ଦ୍ରାକର ଭୁବନ ପ୍ରତି ତା'ର କର୍ତ୍ତବ୍ୟ ଜାହିର କରିଦେବ । ଅଉ ଯଦି ଭୁବନ ନ ବୁଝେ ତେବେ ଲୋକଟା ସହିତ ଅପଟ ରହି ଯିବାକୁ ହେବ । ପଡ଼ଶା ବୋଲି ସେ ଏପରି ଭାବେ । ଭୁବନ ଅବଶ୍ୟ କଥାର ବେଖାପ ପରିସ୍ଥିତି ଆଣିବନି । ରାଜି ହେବ । ଅଧିକ ବୋଝ ମଦନ ବୋହିନେବ । ଭୁବନ କିନ୍ତୁ ବଦଳିଯିବା ଲୋକ ନୁହେଁ । ତା' ରାସ୍ତାରେ ହିଡ଼ ନାହିଁ । ବାନ୍ଧବ କ'ଣ । କ'ଣ ପାଇଁ ସେ ଏ ଘରେ ରହିବ ? ମଦନର ଉପଦେଶରେ ତ ପେଟ ପୂରିବ ନାହିଁ । ତା' ପରି ତ ସେ ସାଧୁ ବନିବ ନାହିଁ । ମଦନ ପାଖରେ କିଛି ସଞ୍ଚିତ ଅଛି ତୃଷ୍ଟିରୁ ଏତେ ଉପଦେଶ ଦେଉଛି । ଅଭାବୀର ଅଭାବ ପ୍ରତି ସେ ଅନୁଦାର ନୁହେଁ, ଠିକ୍ । କିନ୍ତୁ ଭୁବନର ଅଭାବ ମେଣ୍ଟାଇବାକୁ ମଦନ ସମର୍ଥ ତ ?? ତେଣୁ ଭୁବନ ମଦନର ପାଖ ମାଡ଼ୁନାହିଁ, କଥା ସବୁ ଶୁଣେ । ସୁନାମୀ ବ ଓଡ଼ଣା ଦେଇ ଭୁବନକୁ ସମ୍ମାନ

ହଏ । ଦେଢ଼ଶୁରର ସମ୍ମାନ ହଏ । ପଢ଼ଶାର କର୍ତ୍ତବ୍ୟ କରିବାରେ ମଦନ ଓ ସୁମାନ ହେଳା କରନ୍ତି ନାହିଁ ।

ପଡ଼ଶାର ଅସୁବିଧା ପଡ଼ଶା ବୁଝିବା ଠିକ୍ । କିନ୍ତୁ ପଡ଼ଶାର ଅସହ୍ୟ ଯନ୍ତ୍ରଣା ପ୍ରତି ସେ କେତେ ସଜାଗ ରହିବ । ପୁଣି ମଦନ ପରି ଶ୍ରେଷ୍ଠ ଗୃହୀଟିଏ ସମ୍ଭାଳ ପାରିବ ତ ?? ନ ହେଲେ ମଦନ ଗୃହିଁଛି, ଭୁବନ ହାଜିରି ମନ୍ଜୁରି କରୁ । ଚଳି ଯିବାରେ ଅସୁବିଧା ହେବନାହିଁ ।

ଭୁବନ ସବୁ ପ୍ରସ୍ତାବରେ ହଁ ମାରେ । କିନ୍ତୁ ଅଧାଦିନରୁ ଛୁଟି କରିଦିଏ ଅନ୍ୟ କଉଠିକୁ । ଦିଇମାସ ଦେଖା ନାହିଁ । ଏବେ ସେ କେତେକ ଇଟା କଟାଳିମାନଙ୍କୁ ଏକଜୁଟ କରୁଛି । ସେମାନଙ୍କୁ ଜମ୍ମୁନାଡିପା ନେଇ ଯିବ । ସେଠି ବସନ୍ତ ବାବୁଙ୍କ ଇଟା କଟା କାମ ଚାଲିଛି । ଅନ୍ତତଃ କୋଡ଼ିଏ ଜଣ ଇଟା କଟାଳି ଆବଶ୍ୟକ । ବାବୁ ଏଥିପାଇଁ ବଇନା ଆଗତୁରା ଦେବେ । ରବିବାର ଦିନକୁ ସମସ୍ତ ଇଟା କଟାଳି ଟ୍ରକ୍‌ରେ ଯିବେ ।

ମଦନ ସେ ଅନେକ ବର୍ଷ ଇଟା କାଟିବାକୁ ଘରୁ ବାହାରି ପଡ଼େ । ମାଘରୁ ଜ୍ୟେଷ୍ଠ ପର୍ଯ୍ୟନ୍ତ ପାଞ୍ଚମାସ । ଖାଇପିଇ ଦେଢ଼ ଦୁଇ ହଜାର ଟଙ୍କା ରୋଜଗାର କରେ । ଯେଉଁ ବର୍ଷ ନ ଗଲେ ଘରେ ଖପର ପିଟେ । ବିକେ । ଛୁଇଁତଳ କାମ ଖପର ଗଢ଼ିବାରେ । କିନ୍ତୁ ଇଟା ଗଢ଼ିବା ବଡ଼ କଷ୍ଟଦାୟକ । ବାହୁ ପଞ୍ଜରା ହାଡ଼ ରହିଯାଏ ।

ଦି' ପହର ତଳକୁ ମାଟି ହାଣିବ । ଶଙ୍ଖ ନଈରୁ ପାଣି ଟିଣ ଖୋଳରେ ବୋହି ଭିଜାଇବ । ସକାଳୁ ଉଠି ମାଟି ମାଡ଼ିବାକୁ ହେବ । ଗଦା କରିଦେବ । ସରୁବାଲି ସଂଗ୍ରହ କରିଥିବ । ପୁଣି ସକାଳ ଦଇଟାରୁ ଉଠି ଇଟା ଗଢ଼ିବାକୁ ପଡ଼ିବ । ଇଟା ଗଢ଼ିବା ପାଇଁ ଛାଞ୍ଚ, ପଟା, କାଟନି ସବୁ ଅଛି । ମଦନ ବି ଏବର୍ଷ ଇଟା କାଟିବାକୁ ଯିବ ଭାବୁଛି ।

ଭୁବନ ମଦନକୁ ଏ ସମ୍ପର୍କରେ ବୁଝାଇବା କଥା, ବୁଝାଇଛି । ଦିନ ବି ଠିକ୍ ହୋଇଛି । ବସନ୍ତ ବାବୁ ସମସ୍ତଙ୍କୁ ବା ପ୍ରତ୍ୟେକ ଇଟା କଟାଳିମାନଙ୍କୁ ବଇନା ଦେଇଗଲେ । ଯେଝା ଘରର ସୁବିଧା ଅସୁବିଧା ଠିକ୍‌ଠାକ କଲେ । ଭଉଣୀ ଘରେ ମଦନ ତା'ର ବଳଦ ହଳକୁ ରଖିଦେଲା । କିଛି ଆସବାବପତ୍ର ନେଇ ଅନ୍ୟଠି ରଖିଦେଲା । ତାଲା କଞ୍ଚି ଠୁଙ୍କିଦେଇ ଜମ୍ମୁନାଡିପା ଅଭିମୁଖେ ଯିବାକୁ ଆଗ ପ୍ରସ୍ତୁତ ହେଲା ମଦନ ।

ଭୁବନ ସେ ଯିବ ଇଟା କାଟିବା ପାଇଁ କଥାରେ ଦ୍ୱିରୁକ୍ତି ନାହିଁ । କିନ୍ତୁ ଇଟା କାଟିବାରେ ମାଟିପିଣ୍ଡ କରିବା ପାଇଁ ଜଣେ, ଇଟା ରଖିବା ପାଇଁ ଜଣେ ।

ଅତକମ୍ ଦୁଇଜଣ ସହାୟକ ଦରକାର । ମଦନ ଓ ସୁମାନି ଅଛନ୍ତି । ଭୁବନ ଏକୁଟିଆ । ରେବତୀ ତାକୁ ସାହାଯ୍ୟ କରିବ । ବୁଢ଼ୀ ମା'ଙ୍କ ଆଉ ବୟସ ନାହିଁ । ନଈଁ ନଈଁ ଇଟା ରଖୁ ରଖୁ ଏପଟେ ପଟା ଦରକାର ପଡ଼ିଯିବ । ମାଟି ପିଣ୍ଡ ଦରକାର ପଡ଼ିଯିବ । ତେଣୁ ଇଟା କାଟିବା ପାଇଁ ଅନ୍ତତଃ ତିନିଜଣିଆ ସଂଘ ଦରକାର । ଜଣେ ମାଟିପିଣ୍ଡ ଦେବ, ଜଣେ ଇଟା କାଟିବ, ଜଣେ ଇଟାକୁ ଖରାରେ ରଖିବ । ତେଣୁ ସଂଘଟା ମଦନ, ସୁମାନି, ଭୁବନ ମଧ୍ୟରେ ଚୁକ୍ତି ହେଲା । ବୁଢ଼ୀମା' ସମସ୍ତଙ୍କ ପାଇଁ ଥିର୍ ମନେ ରାନ୍ଧିବ । ସମରୁ ଓ ଦହଲୁ ନିକଟସ୍ଥ ଜମୁନାଛିପା ସ୍କୁଲରେ ପଢ଼ିବେ । ରେବତୀ କିଛି ସମୟ ମାଟି ପିଣ୍ଡୁଲା କରେ । ଭୁବନ ଗତକାଲିର କାଟିଥିବା ଇଟା ସବୁ ଥାକ ମାରିବ । ଗଣତି କରି ଠିଆ କରିଦେବ । ଇଟା ଠିଆ କରିଦେଲେ ପାଣି ପବନର କ୍ଷତି ସେ ସହିବ ନାହିଁ । ସହିବେ ଠିକାଦାର । ଦୈନିକ ଦୁଇ ହଜାର ଇଟା କାଟି ଦେବାର ଏକ ପ୍ରାରମ୍ଭିକ ଯୋଜନା ସେମାନେ ଠିକ୍ କଲେ । ଯାହା ମଜୁରି ବାବଦକୁ ଅଶୀ ଟଙ୍କାରୁ କମ୍ ଆସିବ ନାହିଁ ।

ଟ୍ରକ୍ ଭଇଟା ଆସି ଠିଆହେଲା ଗାଁରେ । ଯେଉଁ ଜନପଦ ଧରି ଡାଲରେ ଚଢ଼ିଲେ ସହଯାତ୍ରୀ ସମସ୍ତେ ବେଦବ୍ୟାସ ପୀଠ ଜମୁନାଛିପାକୁ । ଇଟା କାଟିବେ । ପରିଶ୍ରମର ଉପାର୍ଜନରେ ଭବିଷ୍ୟତର ଦର୍ପଣ ଦେଖିବେ ।

ଆଗରୁ ଦେଖା ଯାଉଥିଲା ଶିଳ୍ପ ସଂବୃଦ୍ଧ ରାଉରକେଲା ଇସ୍ପାତ ନଗରୀ । ପଛରେ ପଛେଇ ଠିଆ ହୋଇଥିଲା ସିମେଣ୍ଟ ସହର ରାଜଗାଙ୍ଗପୁର ଓ ଅତ୍ୟାଧୁନିକ କଳ କାରଖାନା ତିଆରି କରୁଥିବା କାଂସବାହାଲ ସହର । ଆଗ୍ରା ଦୁର୍ଗରୁ ବୃନ୍ଦାବନସ୍ଥିତ ମାନସିଂ ମନ୍ଦିରର ଚୂଡ଼ାରେ ଥିବା ସନ୍ଧ୍ୟା ଦୀପ ରାଉରକେଲାରୁ ରାଜଗାଙ୍ଗପୁର ଓ କାଂସବାହାଲରେ ପଡ଼ୁଥାଏ ।

ରାଉରକେଲା କୃତ୍ରିମ ଉପଗ୍ରହ ସଦୃଶ କ୍ଷୁଦ୍ର ଭାରତ । ଇସ୍ପାତ କାରଖାନା ଚିମିନିରୁ ଉଦ୍‌ଗାର କରୁଥିବା ଧୂଆଁ ସମରୁ ଓ ଦହଲୁ ମନରେ ଉଲ୍ଲାସ ଆଣୁଥିଲା । ଏପରି ଶିଳ୍ପ ସଂବୃଦ୍ଧିର ଇତିକଥା ବଡ଼ ହେଲେ ଜାଣିବେ । ଆଜି କିନ୍ତୁ ଆକର୍ଷିତ ମାତ୍ର । ଗଢ଼ି ଉଠିଥିବା ବସାଘର ସଂସ୍କୃତି ଏଠି ଓତଃପ୍ରୋତଃ ଭାବେ ଜନ ଜୀବନକୁ ମନ୍ଥନ କରୁଛି । ଗୋଟିଏ ବ୍ୟସ୍ତ ଜୀବନ ମଧ୍ୟରେ ପ୍ରଗତିର ତୂର୍ଯ୍ୟନାଦ ଗାଇ ବିଜୟକେତନ ଉଡ଼ାଇ ଶିଳ୍ପ ସହର କହେ : ଦେଖ ମୋର କାୟା, ପ୍ରଶସ୍ତି ମଧ୍ୟରେ ମୁଁ ଆଗେଇ ଚାଲିଛି । ମୁଁ ଚିନ୍ତା କରୁନାହିଁ ମୋର ପ୍ରଗତିର ସମାପ୍ତି । ଜାତୀୟ ଜୀବନର ପରିବର୍ତ୍ତନ ମଧ୍ୟରେ କେତେ ସ୍ଲୋଗାନ ଦେଇଛି । ପ୍ରଗତି ପାଇଁ ମୁଁ ମନ୍ତ୍ରମୁଗ୍ଧ ।

ଜମୁନାଢିପା ଜନ୍ମରୁ ଧ୍ୱସ୍ତ ବିଧ୍ୱସ୍ତ । ଫେଣ୍ଡିଆ ଝାବର । ତା' ପରି ଗ୍ରାମାଞ୍ଚଳ ଅନ୍ଧାରିବନ୍ଧ, କୋଇଲି ତରଙ୍ଗ, କଣ୍ଠାହାର, ଫେରିଆଘାଟି, ପୁଟୁଣୀ ପାଣି, ଡୁମକେଲା ତରକେରା ଆଦି ବିଲୁପ୍ତ । ସମସ୍ତ ଅଧିବାସୀ ଝିରପାଣି, ବନ୍ଧମୁଣ୍ଡା, ଜଲଦା ରି-ସେଟେଲମେଣ୍ଟ ଅଞ୍ଚଳରେ ଅବସ୍ଥାପିତ । ଜର୍ମାନ ଭୂତତ୍ତ୍ୱ-ବିତ୍ ଯେତେବେଳେ ସର୍ଭେ କରି ଦେଖିଲେ ଏ ଅଞ୍ଚଳ ଜର୍ମାନର ରୁର ଭଳିକ ପରି । ତେଣୁ ସେ ମୁକ୍ତ କଣ୍ଠରେ କହି ଉଠିଥିଲେ, ଇଏ ପୁଣି ଏକ ରୁର ଅଞ୍ଚଳ । ସେହି ରୁରରୁ ରାଉରକେଲା ନାମକରଣ । ରୁରକେଲାର ପରବର୍ତ୍ତୀ ନାମ ରାଉରକେଲା ଓ ଆଜିର ଶିଳ୍ପ ସମୃଦ୍ଧ ସହର ।

ଟ୍ରକ୍ଟି ବେଦବ୍ୟାସ ଛକରୁ ଉତ୍ତରକୁ ଗତି କଲା । ଶଙ୍ଖବ୍ରିଜ ଅତିକ୍ରମ ପରେ ଧୀରେ ଗଡ଼ି ଚାଲିଲା ପୂର୍ବକୁ । ସଙ୍ଗମସ୍ଥଳ ଆଡ଼କୁ । ଜମୁନାଢ଼ିପା ଗନ୍ତବ୍ୟ ସ୍ଥଳ ଓ କାର୍ମସ୍ଥଳକୁ । ମୁହଁ ସଞ୍ଜ ହୋଇଥାଏ । ସମରୁ ଦେଖିଥିଲା ଆକାଶର ତାରକା ସବୁ ବିଚ୍ଛୁରିତ ହୋଇ ନିକଟରେ ଦେଖା ଯାଉଛନ୍ତି । ଯାହା ରାତିର ବିଶେଷ ପ୍ରହର ଯାଏ ସେ ଦେଖିଥିଲା ଇସ୍ପାତ ରାଣୀର ପାଟପଣତ କାନିକୁ । ରାଉରକେଲା ଯେ ଏବେ ତା'ଠୁଁ ଦୂରରେ ନୁହେଁ, ତା' ପରିକଳ୍ପିତ ଆକାଶ ସ୍ୱର୍ଗୀୟ ଆଲୁଅ ଅତି ନିକଟରେ ଓ ପୂଣ୍ୟତୋୟା ବ୍ରାହ୍ମଣୀ ଜଳରେ ପ୍ରତ୍ୟହ ସୂର୍ଯ୍ୟସ୍ନାନ ଶିଶୁ କୋମଳ-ମତି ପ୍ରାଣରେ ଆନନ୍ଦ ଶିହରଣ କରୁଥିଲା ।

ଇଟା କାଟିବାର ସ୍ଥାନ ବାଛି ନେଇଛନ୍ତି । ତା'ରି ନିକଟରେ ପୁରୁଣା ଇଟା ମଝିରେ ତ୍ରେଟିଆ ଅସ୍ଥାୟୀ ଘର । ଉପରେ ପୁଆଳ ନଡ଼ା ଛପର । ଦୁଇଟା କୋଠରୀ । ଗୋଟିକରେ ଭୁବନ ଓ ଅନ୍ୟଟିରେ ମଦନ ପରିବାର ରହିଲେ ।

ଭୁବନ ଓ ମଦନ ମାଟି କାଟିବାରେ ଲାଗିଲେ ଦିନକ ପରେ । ସୁମାମୀ ଆଗେଇ ଗଲା ଜମୁନାଢ଼ିପା ଗାଁକୁ । ସାମାନ୍ୟ ତେଲ ଲୁଣ ଆଣିବା ପାଇଁ । ସାଙ୍ଗରେ ସମରୁ ଓ ଦହଲ୍ ବି । ଚକଲେଟ ଦିଇଟା ରଖିନେଲେ ସେମାନେ । ଆସିବା ବାଟରେ ସ୍କୁଲ ଘର ବି ଦେଖିନେଲେ ଛୁଆ ଦି'ଜଣ ଯାକ । ଯେଉଁଠି ଏବେ ନୂଆ ପରିବେଶରେ ପାଠ ପଢ଼ିବେ । ଯାଯାବର ଜୀବନାଭୂତି ଭିତରେ ପାରିବାରିକ ସମ୍ପର୍କ ସେମାନଙ୍କୁ ମନେ କରୁଥିଲା ନିଜ ଗାଁ ମାଟି, ସାଙ୍ଗ ସାଥୀଙ୍କୁ ।

ଇଟା କାଟିବାର ପ୍ରଥମ ଦିନ ରାତି ଦୁଇଟାରୁ ଉଠିଛନ୍ତି । ଅଣ୍ଟାରେ ଅଖା ବାନ୍ଧିନେଲା ଭୁବନ । ସେ ଇଟା ଛାଞ୍ଚ ଧରିଲା । ମଦନ ମାଟି ପିଣ୍ଡୁଳା ଦେଲା । ମଝିରେ ମଝିରେ ବଉଳା ମାଟିରେ ବାଲି ମିଶାଇ ଚକଟିବାକୁ ପଡ଼ୁଥିଲା

ମଦନକୁ । ସୁମାନୀ ଇଟା ସବୁ ନେଇ ଓସାର ଠିଆ କରି ରଖିଲା । ଧାଡ଼ିକୁ ପରୀକ୍ଷା କରି ଇଟା ରଖୁଛି । ଗେହ୍ଲୀ ଯଥାଶୀଘ୍ର ଗ୍ରୀଷ୍ମ ପାଇଁ ଟାଙ୍କୁଣୀ ପଟା ସବୁ ବାପାଙ୍କ ପାଖକୁ ଆଣୁଥାଏ । ଗଦାଏମାନ ହେପରି ସକାଳ ଆଠଟାକୁ ଶେଷ । ସୁମାନୀ ଗଣିନେଲା ଧାଡ଼ିସବୁ । ଗୃକଣ ଧାଡ଼ି ହୋଇ ଯାଇଛି । ମନେ ମନେ ହସିଲା : ଆଜି ପ୍ରଥମ ଦିନ । ଶୁଭାରମ୍ଭ କଲେ ଦୁଇ ହଜାର ଇଟା । ପ୍ରାପ୍ତି ଅଶୀଟଙ୍କା । ବଇନାରୁ କିଛି କଟିଯିବ ।

ଦହଲୁର ତନ୍ଦ୍ରା ଛାଡ଼ିଛି ଯେତେବେଳେ ସେ ଦେଖେ କାଜସବୁ ସରୁଛନ୍ତି । ବ୍ରାହ୍ମଣୀର କୂଳ ମେଘୁଆ ରହୁଛି । ଅଉ କିଛି ପରିବର୍ତ୍ତନ ଦେଖିନାହିଁ । ଭୁବନର ମା' ଥରେ ବାଢ଼ି ଦେଇଥାଏ । ଅଣ୍ଟାଭିଙ୍ଗି ସମସ୍ତେ କ୍ଷୁଧା ନିବାରଣ କରିଛନ୍ତି । ସାମାନ୍ୟ ବିଶ୍ରାମ ମଦନ ଓ ଭୁବନ ନେଲେ । ସୁମାନୀ ନଈକୂଳକୁ ଯାଇ ପାଣି ଆଣିଛି । ଝାଳ ଗମଗମ ଦେହକୁ ବ୍ରାହ୍ମଣୀ ଜଳରେ ପଖାଳି ନେଲା ଥରେ ।

ଭୁବନ ମାଟି ହାଣିବାରେ ଲାଗିଲା । ମଦନ ଦହଲୁ ଓ ସମରୁକୁ ନେଇ ଜମୁନାଡ଼ିପା ସ୍କୁଲକୁ ଗଲେ । ତାଙ୍କ ନାମ ଲେଖାଇ ଦେବ । ପ୍ରଧାନ ଶିକ୍ଷକ ସେଠିକାର ଇଟାକିଟାଳିମାନଙ୍କ ଅବସ୍ଥା ଓ ଏପରି ଅସମୟରେ ନାମ ଲେଖାକୁ ବିରୋଧ କରି ନାହାନ୍ତି ବରଂ ଶ୍ରେଣୀରେ ପାଠପଢ଼ାର ଅନୁମତି ଦେଇଛନ୍ତି ।

କେତେ ବର୍ଷ ଏପରି କଟିଲା । ଇଟା ଗଡ଼ାଳିର ଜାଗୃତ ମଦନ ଓ ଭୁବନକୁ ଆକୃଷ୍ଟ କରିଛି ଦୀର୍ଘ ବର୍ଷ ଯାଏ । ମଝିରେ ମଦନ ସୁମାନୀ ସହିତ ଗାଁକୁ ଯାଏ । ବର୍ଷା ଦିନେ ଜମିରେ କୃଷି କରେ । ମାଘ ବେଳକୁ ଫେରିଆସେ ଇଟା କାଟିବାପାଇଁ । ଭୁବନ କିନ୍ତୁ ଯାଏନାହିଁ । ସେଠି ସେ ଜଗିରହେ ଚିମିନି ଭାଟିକୁ । ସେଥିପାଇଁ ଅଲଗା ପାରିଶ୍ରମିକ ପାଏ । ଚଳିଯାଏ ତା'ର ସଂସାର । ଭୁବନ ଯେ ଭଲ ଇଟାର ଚିମିନି ଭାଟି କରି ଜାଣେ । ଇଟା ଥାକ ଭିତରେ କୋଇଲା ପରନ୍ତୁ ଦେବା ଜାଣେ । ନିଆଁର ଜଳିବା ପ୍ରକ୍ରିୟା ଠିକ୍ ରଖେ । ଭାଟି ଉପରେ ଚିମିନି ରଖେ । ଧୂଆଁସବୁ ଭାଟିରୁ ଚିମିନି ବାଟେ ନିର୍ଗତ ହୁଏ । ଧୂଆଁ ବାହାରେ ଊର୍ଦ୍ଧ୍ୱରେ ।

ଭବାନୀଶଙ୍କର ବାବୁ ଭୁବନ ଜିମାରେ କୋଇଲା ଛାଡ଼ିଛନ୍ତି । ଭାଟି ମାଲିକ ଭୁବନ ଜିମାରେ ଇଟା ଭାଟି ଛାଡ଼ିଯାନ୍ତି । ଟ୍ରକ୍ ସବୁ ଅହରହ ଲାଗିଥାନ୍ତି । ଇଟା ବୋଝେଇ ଗୋଟିଏ ଟ୍ରକ୍‌କୁ ଅଢ଼େଇ ହଜାରରେ ସ୍ଥିର ହୁଏ ।

କେବେ ଟ୍ରକ୍ ମାଲିକ ବା ଡ୍ରାଇଭର ଭୁବନ ବାବୁଙ୍କୁ ଗିଲାସେ ଅଧେ ମହୁଲି ଦେଇ ଦିଅନ୍ତି । ଭୁବନ ତୁରନ୍ତ ସେହି ଟ୍ରକ୍‌କୁ ସାମନା କରି ଇଟା ଲୋଡ଼

କରିବାକୁ ଛାଡ଼ିଦିଏ । ଟ୍ରକ୍‌ର ଗର୍ଜନ ଧୂଳିର ଧୂଆଁ ଧାର କୁହୁଡ଼ିର ପ୍ରଚ୍ଛାୟା ଭିତରେ ଜମୁନାଡିପାକୁ-ନିଜର କରି ନେଇଛି ।

ଗେହ୍ଲୀ କୁଲି ରେଜାମାନଙ୍କୁ ପାଣି ଦିଏ । ଇଟା ଥାକ କରିବାରେ ଯୋଗ ଦିଏ । ମଜୁରି କିଛି ପାଏ । ବୟସ ତାକୁ ଅନ୍ଦାଜ ଦଶ ଏଗାର ହୋଇ ଗଲାଣି । ଗୁଡ଼ାଏ କୁଲି ରେଜାଙ୍କ ସହିତ କଥାବାର୍ତ୍ତା କରି ବେଶ୍ ଫରୱାର୍ଡ଼ ହୋଇ ଯାଇଛି । ନିଜ ଶ୍ରମ ପ୍ରାପ୍ୟରୁ ଲୁଗାପଟା ପରିଧାନରେ ବି ପରିବର୍ତ୍ତନ ଆଣି ପାରିଛି । ସେ ବି ସହରି ସଭ୍ୟତାର ଅନୁପ୍ରବେଶର ଶିକାର ହୋଇ ଯାଇଛି ଓ ନିଜକୁ କାର୍ଯ୍ୟକ୍ଷମ କରି ପାରୁଛି ନିଜେ ଗେହ୍ଲୀ ।

ଗେହ୍ଲୀ ନିଜକୁ ପଖାଳିନିଏ ବ୍ରାହ୍ମଣୀ ନଦୀ ଜଳରେ । ସୁଅରେ ଖସିଯାଏ ଅନେକ ଦୂର । କୁହୁଡ଼ି ପିଇଯାଏ ଅନେକ ସମୟ । ନିଜର ରୂପ ଲାବଣ୍ୟକୁ ତେଲ ହଳଦୀରେ ଚକଣେଇ ହୁଏ । ଆଗ ଦେହରେ ତଳେଇ ମାଟି ମାଖୁଥିଲା । ଦେହକୁ ମାଜୁଥିଲା । ଏବେ ବାସନାଯୁକ୍ତ ସାବୁନ ମାଖେ । ନିଜେ ଯେପରି ମତ୍ସ୍ୟଗନ୍ଧା ପାଲଟି ଯାଇଛି, ଗେହ୍ଲୀ ।

ମଦନ ଛ ମାସରୁ ଊର୍ଦ୍ଧ୍ୱ ଗାଁକୁ ଯାଏ । ଇସ୍‌ମାଇଲ ଖାଁ ରହେ କାଳୁଙ୍ଗା ବସ୍ତିରେ । କୁଚିଆ ବ୍ୟବସାୟ ଛାଡ଼ିନାହିଁ । ଜମୁନାଡ଼ିପା ବସ୍ତି ନିକଟରେ ଭୁବନ ସହିତ ଅଚାନକ ସାକ୍ଷାତ ହୋଇଛି । ସାଇକେଲର ପଛପଟେ ତା'ର ସାଧାରଣ କୋଡ଼ିଏ ବୟାମ ଦାରୁ ଥିଲା । ଯାହା କୋଡ଼ିଏ ଲିଟରରୁ କମ୍ ହେବନାହିଁ । ଭୁବନ ଜୁହାର କଲାରୁ ଇସ୍‌ମାଇଲ ଖାଁ ହସି ହସି ପ୍ରତି ନମସ୍କାର ଜଣାଇଛି ।

ଇସ୍‌ମାଇଲ ଖାଁ କହିଲା : କି ବେଟା, ତୁଇ ଇଠାନେ କେବେଠୁଁ ଅଛୁ ?

ଭୁବନ କହିଲା : ଆଜକୁ ବର୍ଷସାଲ୍ ହୋଇଗଲାଣି ।

ବାଃ ବଢ଼ିଆ କଥା, ଇଟା କାଟୁଛେ ଏବେ । କୁଚିଆ କାରବାର ଭଲ୍ ଚାଲିବା ସେଠାନେ । ତୁକେ ହାମେ ତୋର ହାତେ ଦାରୁ ଜିମା ଦେବା । ମେହନତ ତୋତେ ଧରିବନ୍ଧା ମିଲିଯିବା । ରେଜା କୁଲି ଆମର ବିଶେଷ ଗ୍ରାହକ । ଭରପୁର ଅଛନ ଚମନ ଇଠାକେ : ଇସ୍‌ମାଇଲ କହୁଥିଲା ।

ଭୁବନ ସମ୍ମତି ଜଣାଇଲା ଇସ୍‌ମାଇଲ ଖାଁଙ୍କ ପ୍ରସ୍ତାବ ପ୍ରତି ଏବଂ ବୁଝାଇ ଦେଲା ମଦନ ଏବେ ନାହିଁ । ଗାଁକୁ ଯାଇଛି । ମାଘ ମାସରେ ଆସିବ । ସେଯାଏଁ କୁଚିଆ କରିବାପାଇଁ ଅସୁବିଧା ହେବନାହିଁ । ଯଦି ଇଚ୍ଛା, ବ୍ୟବସ୍ଥା କରିଗଲେ ଭଲ ।

ସାବାସ୍ ବେଟା, ତୋର ଜରୁରତ ଥିଲା । ଅପନା ଆଦମି ବୋଲିକରି ତୋତେ କୁଟିଆ ଦେବି । ଜମୁନାଛିପି ସହରର ତଳ ଜାଗା । କୁଟିଆମାନେ ଉଜ୍ଡା ପଡ଼ିରହି ଥାନ୍ତି । ଦୁଇଦିନ ପରେ ଟୁ କରିଯିବେ । କମ୍ପାନି ଏମାନଙ୍କ ପାଇଁ ଡୁବି-ଯିବା ଉପରେ । ଲେକିନ ତୁକେ ମୁଇଁ ଜାନିଛେ । ତୋତେ କୁଟିଆ ଦେବି । ହପ୍ତାକୁ ହପ୍ତା ପେମେଣ୍ଟ କରିଯିବୁ । ଫିରକୋ, କୁଆଁରି ସାଇଡ୍‌ରେ ଯାଏ ଭୂଇ ବ୍ୟାପିଯିବୁ । ମୁଇଁ ତା'ର ବ୍ୟବସ୍ଥା କରିଯିବି । ମଗର ଏକ୍ ବାତ୍ ଭୁବନ ବେଟା, ହାତ ଉଧାର ମତ୍ ଦେବୁ । ଜାନ ପହଞ୍ଚିନ ଉଡ଼ିଲ ଛୁଡ଼ିଲ କୁଲି ରେଜା । ଆଲ୍ ଇ ଗାଡ୍ଡି ତ କାଲ୍‌କେ ଧୁଣ୍ଡ୍ରି ଗାଡ୍ଡି, ଦେଖାନାଇଁ । ଡୁବି-ଯିବୁ । ହାତେ ଧରିବୁ ରୁପିଆ, ହାତେ ମାଲ୍ ଦେବୁ । ଦୁଇ ପଇସା କମାଇବୁ । ତୋର ବି ଗୁଜରାନ୍ ମେଣ୍ଟବା । ମୁଇଁ ସମଝାଇ ଦେଲି ସବୁକଥା । ଇସ୍‌ମାଇଲ ବୁଝାଇଗଲା କେତେ କଥା ।

ଭୁବନ ନାରାଜ ନ ଥିଲା । ଚାହୁଁଥା ଲୋକ ଜଣକୁ ପାଇ ଭଲମନ୍ଦ ସବୁ କଥାବାର୍ତ୍ତା ହେଲେ । ସତେ ଯେପରି ଅନେକ ଦିନର କଥା ସବୁ ବାକି ଥିଲା । ଭୁବନ ଇସ୍‌ମାଇଲ ଖାଁକୁ ଯେତେ ସମର୍ଥନ କଲା ସେତେ ସତର୍କ ବି କରିଗଲା । ମଦନ ଚମିନ୍ତି ଭଟ୍ଟି ଆସିଲେ ଏ କାରବାର ବନ୍ଦ ରହିବ । କାରଣ ସେ ମଦକୁ ବିରୋଧ କରେ । ସେ ତା'ର ପଡ଼ୋଶୀ, ସହଯାତ୍ରୀ, ତାକୁ ସମ୍ମାନ ଦେବ । ଆଉ ସେ ଆଗରୁ ଖରାପ ହୋଇଯାଇଛୁ ଆଜି ସୁଧୁରିବ ନାହିଁ । ମଦନ ଆଗେ କନ୍ଟ୍ରୁ ସଫେଇ ଜମା ଦେବନାହିଁ ।

ଭୁବନ ଗେହ୍ଲୀକୁ ଚହ୍ନେଇ ଦେଲା ଇସ୍‌ମାଇଲ ଖାଁ ସହିତ । ପୁରୁଣା ଦୋସ୍ତି କଥା ସୂଚେଇ ଦେଲା । ଟିଲିସବୁ ଦର ବି ଜଣେଇ ଦେଲା । ଟେଣ୍ଟ କୁଲି ରେଜା କାରବାର ସେ କରେ । ଇସ୍‌ମାଇଲ୍ ଖାଁ ବରାବର ଆସେ । ବରଂ କେବେ କେବେ ଗେହ୍ଲୀ ପାଇଁ ବାଟ ହାଜିରା ବା ବରାଦ ଜିନିଷ ଆଣିଦିଏ ।

ଏବେ ଭ୍ରୁଟିଆ ଟିଣ ବାକ୍‌ସରେ ଗେହ୍ଲୀ ତା'ର ଚୁଡ଼ି, କାନଫୁଲ, ଟିକା ଇତ୍ୟାଦି ରଖିଛୁ । ନୂଆ ଭ୍ରୁପ ତା' ଭିତରେ ଲାଗି ବସିଲାଣି ।

ଗାଁ ଯାକର ବାର୍ତ୍ତା ନେଇ ମଦନ ଫେରେ ଚମିନ୍ତି ଭଟ୍ଟିକୁ । ପୁଣି ପାଞ୍ଚମାସ ରହିବ । ଏଥର ଯାହା ରୋଜଗାର ହେବ ସେଥିରେ ଆଉ କିଛି ଜମି କିଣୁ ବା ବନ୍ଧକ ଜମିରେ କୂଅଟିଏ ଖୋଳିବ । ବାଡ଼ି ବଗିଚାର ବ୍ୟବସ୍ଥା କରିବ । କିଛିଟା ଯୋଜନା ଧରି ଆଗେଇ ରହିବ ।

ମଦନ ଏଠିକି ଆସିବା ପୂର୍ବରୁ କୁଚିଆ କାରବାର ବନ୍ଦ ରହେ । ସେ ବରଂ ପଇଠିଏ ପିଇ ଅସେ । ଶୋଇପଡ଼େ କ୍ଳାନ୍ତ ଶରୀରକୁ ଖଟ ଉପରେ ପକାଇ । ଫଳରେ ସୁମାମି ଓ ମଦନ ବେଶ୍ ଦୁ'ପଦ କଥାବାର୍ତ୍ତା ହୁଅନ୍ତି । କିନ୍ତୁ ଭୁବନ ଯେ ପିଉ୍ ଏକଥା ମଦନ ବା ସୁମାମି କେବେ ପସନ୍ଦ କରି ନାହାନ୍ତି । ମାତାଧିକ ପାଇଁ ବାରଣ କରନ୍ତି । ତା' ସତ୍ତ୍ୱେ ଦଦେଁ ହାର ମାନିଛନ୍ତି । କେତେଦିନ ବି ତାକୁ ବାଟରୁ ବୋହି ଆଣିବାକୁ ବାଧ୍ୟ ହୋଇଛନ୍ତି ।

ଦିନେ ଦିନେ ଭୁବନ ଜୁଲୁମ ପିଇଦେବ । ରାସ୍ତାରେ ପଡ଼ିଥିବ । ପଡ଼ିବା ଆଗରୁ ତା'ର ଖୁସି ଦେଖେ କିଏ । ପକେଟରୁ ପଇସା ଫିଙ୍ଗିଦିଏ । ଅନ୍ୟମାନେ ଗୋଟାଇ ନେବେ ସେଥିରେ ସେ ଆନନ୍ଦ ପାଏ । କିନ୍ତୁ ଭାଟି ମାଲିକ ସହିତ କେବେ ସେ ବେଇମାନି କରିନାହିଁ । ଗାଡ଼ିଟା ଚମିନି ଯାଚି ଜଗିବ କି ଜଗିବ । ତେଣୁ ଯେ ମଦନ ବି ଦିନେ ଦିନେ ହାଇରାଣ ହରକତ ହୁଏ । ରାତି ପନ୍ଦରକୁ ଉଠିପାରେ ନାହିଁ । ଇଟା କାଟିବା କମିଯାଏ । କିଛି କହେନି ମଦନ । ତା' ସ୍ଥାନ ଗେହ୍ଲୀ ଯଥେଷ୍ଟ ସମ୍ଭାଳି ନିଏ ।

ଗେହ୍ଲୀ ସେଦିନ ଦୁ'ପହରଟାରେ କିରାସିନ ଆଣିବା ପାଇଁ ବେଦବ୍ୟାସ ଛକକୁ ଯାଇଥିଲା । ଦୁଇ ହାତରେ ଦୁଇ ପଇଠି ବୋତଲ ବା ଦେଢ଼ଲିଟର କିରାସିନ ନେଇ ଫେରୁଛି । ବାଟରେ ଯିବା ଆସିବାବେଳେ ସବୁ ଚହ୍ଲା ଇଟା ଟ୍ରକ୍ ସବୁ ଦେଖେ । ହୁଏତ ଟ୍ରକ୍‌ରେ ଫେରି ପାରନ୍ତା । କିନ୍ତୁ ଗ୍ଳାନି ଗ୍ଳାନି ଆସିଥାଏ । ଟ୍ରକ୍ ଡ୍ରାଇଭରଙ୍କ ପ୍ରତି ରେଜାମାନେ ଗାଉଥିବା ଗୀତ ପଦକ ତା' ମନରୁ ଯାଏ-ନାହିଁ । ସେ ତାକୁ ରାସ୍ତାଯାକ ଗୁଣୁଗୁଣେଇ ଗାଏ । ତା' ଅବସ୍ଥାବର ଗ୍ଲାଇ ଦେଖେ । ନିଜର ରୂପକଳ୍ପ କରେ । ଡ୍ରାଇଭରମାନଙ୍କୁ ଦେଖି ଗେହ୍ଲୀ ଗାଇଦିଏ : ଆହାରେ ଡ୍ରାଇଭର ବାବୁ, ଗାଡ଼ି ଖାଡ଼ାକର ଅତର ନେବୁ, ମହକୁ ଥିବୁ—ଆସିଲେ ମନେପଡ଼ିବୁ ରେ, ଡ୍ରାଇଭର ବାବୁ ।

ଗୀତଟି କୌଣସି ଡ୍ରାଇଭର ପ୍ରତି ଉଦ୍ଦିଷ୍ଟ ନ ଥିଲା । କେବଳ ଗେହ୍ଲୀର ଘୋଷା ପଦଟା । ଶଙ୍ଖ ପୋଲ ଉପରେ ଏଇ ଗୀତ ପଦକ ଗାଉଛି । ଗୀତର ପ୍ରତିଧ୍ୱନି ସେ ନିଜେ ଶୁଣି ପାରୁଛି । ପୋଲ ପାଖରେ ଜିପ୍ ଗାଡ଼ିଟିଏ ଠିଆ ହୋଇଛି । ବାବୁ ଦୁଇଜଣ ଗାଡ଼ି ସଜାଇବାରେ ବ୍ୟସ୍ତ । ଗେହ୍ଲୀ ପ୍ରତି ସେମାନେ ଧ୍ୟାନ ଦେଇ ନାହାନ୍ତି । କିନ୍ତୁ ଗୀତର ଗୁଞ୍ଜରଣ ଶ୍ରୁତି ମଧୁର ଥିଲା । ଗେହ୍ଲୀ ବାବୁମାନଙ୍କୁ ଦେଖି ଗୀତ ବନ୍ଦ କରିଛି । କିଛିଦୂର ଆଗେଇ ଯାଉଥିଲା ଗେହ୍ଲୀ ।

ବାବୁ ଜଣକ ତାକୁ ଡାକିଲେ । ସେ ଠିଆହେଲା । ବାବୁ ଦେଖିଲେ ହିଁଅଟା ଭିତରେ ନମ୍ରତା ଅଛି । ତାଙ୍କୁ ଦେଖି ଭୟଭୀତ ନୁହେଁ ।

ଜଣେ ବାବୁ ପଚାରିଲେ : ତୁ କି ଗୀତ ଗାଉଥିଲୁ । ଆମକୁ ଦେଖି ବନ୍ଦ କଲୁ କାହିଁକି ? ଆମେ କ'ଣ ଡ୍ରାଇଭର ନୋହୁଁ । ଆମକୁ ତୁ ଆଦର ଦେଉନାହୁଁ । ଆମକୁ ମହଜାଇବୁ ନାହିଁ, ମନେ ପକାଇବୁ ନାହିଁ ??

ମତ୍ସ୍ୟଗନ୍ଧା ଗେହ୍ଲୀ ବାବୁମାନଙ୍କ ହାବୁଡ଼ରେ କେତେ ଲାଜେଇ ଗଲା ଓ କହିଲା : ଆପଣମାନେ ବାବୁ ଡ୍ରାଇଭର । ମୁଁ ଗୀତ ଗାଉଥିଲି ଟ୍ରକ୍ ଡ୍ରାଇଭର-ମାନଙ୍କ ପାଇଁ ।

ସବୁ ଟ୍ରକ୍ ଡ୍ରାଇଭରମାନଙ୍କୁ ତୁ ଚହ୍ନୁ ? ତୃମ ଚହ୍ଲାପରିଚୟର ମାଧ୍ୟମ ବାବୁ ଜଣକ ଆଗ୍ରହରେ ଜାଣିବାକୁ ଚାହୁଁଥିଲେ ଗେହ୍ଲୀର ପରିଚୟ ।

ଗେହ୍ଲୀ ନ ଉତ୍ତର ପାଖକୁ ଆସିଛୁ । ଜୀପ୍ ଗାଡ଼ିକୁ ନିରୀକ୍ଷଣ କଲା ଓ ପଚାରିଲା : ଆପଣମାନେ ଏବେ ଗାଡ଼ି ଖରାପ କଲେ ??

ତା' ମାନେ—?

ମୁଁ ସେ ଏଇନେ ବେଦବ୍ୟାସ ଛକକୁ ଯାଇଥିଲି କିରାସିନ ଆଣିବା ପାଇଁ । ଏ ଗାଡ଼ି ଏଠି ନ ଥିଲା । ଡିଜେଲ ଲାଇନଟାକୁ ଟିକେ ଦେଖି ନିଅନ୍ତୁ ବାବୁ, ଏୟାର ନେଇଥିବ ।

ବାଃ, ବଢ଼ିଆ କଥା କହିଲୁ । ଡିଜେଲ ଲାଇନ ଠିକ୍ ନ ଥିଲେ ଗାଡ଼ି ଯେ ଷ୍ଟାର୍ଟ ହେବ କିମିତି ? ବନ୍ଧୁ ଅଫିସର ଜଣଙ୍କୁ ପ୍ରଜ୍ଞା ବାବୁ ବୁଝାଇ ଦେଲେ । ବାସ୍ତବିକ ସେ ଯାନ୍ତ୍ରିକ ତ୍ରୁଟି ଥିଲା । ତଥାପି ସେଲ୍ଫ ଠିକ୍ ନ ଥିବାରୁ କିଛି ବଳ ପ୍ରୟୋଗର ଆବଶ୍ୟକ ରହିଲା ।

ଗେହ୍ଲୀ ପ୍ରତି ବାବୁମାନଙ୍କର ଦୃଷ୍ଟି ରହିଲା । ସେମାନେ ଠେଲିବାକୁ ଚେଷ୍ଟା କଲେ । ଜଣେ ଗାଡ଼ିରେ ଜଣେ ଠେଲିବାରେ । ଠେଲିବା ସମ୍ଭବ ନ ଥିଲା । ବ୍ରିଜ ଉପରକୁ ଉଠିଗଲେ ହୁଏତ ଜଣେ ଠେଲି ପାରନ୍ତା ।

ବାବୁମାନଙ୍କ ଅବସ୍ଥା ଦେଖି ଗେହ୍ଲୀ କିରାସିନ ବୋତଲ ଦୁଇଟା କିଛି ଦୂରରେ ରଖିଦେଲା । ତା'ର ବାହୁ ବଳ କେତେ ଯେ ଉଠାଣିକୁ ଠେଲି ଚଢ଼ାଇବ । ବ୍ରେକ୍ ଗିୟର ଦିଆଯାଇ ପାରିଥାନ୍ତା । କିନ୍ତୁ ବାବୁ ତାହା ମନା-କଲେ । କାରଣ ଯଦି ଜୀପ୍ଟି ଷ୍ଟାର୍ଟ ନ ହେଲା ତେବେ ବେଶି ହଇରାଣ ହେବାକୁ ପଡ଼ିବ ।

ଗେହ୍ଲୀକୁ ଧନ୍ୟବାଦ ଜଣାଇ ବାବୁମାନେ ମନସ୍ତାପରେ ଛଡ଼ାହେଲେ । ବୋତଲ ଦୁଇଟା ହାତରେ ଧରି ଗେହ୍ଲୀ ବରଢ ନେବାକୁ ଥିଲା ।

ପ୍ରଜ୍ଞା ବାବୁ କହିଲେ : ଆଚ୍ଛା—ଏ ପାଖରେ କାହାରିକୁ ଡକାଯାଇ ପାରିବ ?

ଗେହ୍ଲୀ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା : ହଁ ବାବୁ, ବାପା କାକାଙ୍କୁ ଡାକି ଆଣିବି । ସେମାନେ ଆପନ୍‌ମାନ୍‌କେ ସାହାଯ୍ୟ କରିବେ । ଏଇ ପାଖେ ଆମର କୁଡ଼ିଆ । ସେମାନେ ଘରେ ଅଛନ୍ । ଡାକିବି କି ??

ପ୍ରଜ୍ଞା ବାବୁ କହିଲେ : ଟିକିଏ ତୁରନ୍ତ ଡାକି ଆଣିବୁ । ଆମକୁ ରାଉରକେଲା ନିହାତି ଯିବାକୁ ଅଛି । ଅଫିସ କାମ ଅଛି ।

ଗେହ୍ଲୀ ଅଫିସ କାମର ଗୁରୁତ୍ୱ ବୁଝିନାହିଁ । ସେ ଏତିକି ବୁଝିଛି : ବାବୁ ଦୁଇଜଣ ଅସୁବିଧାରେ ଅଛନ୍ତି । ଜିପ୍‌କୁ ଠେଲିବା ପାଇଁ ଆଉ ଜଣେ ଦୁଇଜଣ ଲୋକ ଦରକାର । ତା' ବାପା, ମଦନ କାକା ଆସିଗଲେ ଗାଡ଼ି ଷ୍ଟାର୍ଟ ହେବ । ବାବୁମାନେ ଯିବେ ନିଜ କାମରେ ।

ହୁଏତ ଗେହ୍ଲୀ ବାବୁମାନଙ୍କୁ ତୁରନ୍ତ ସାହାଯ୍ୟ କରିଥାନ୍ତା, ଯଦି କୌଣସି ଇଟା ଟ୍ରକ୍ ଆସିଥାନ୍ତା । ଗାଡ଼ି ଖୋଡ଼ା କରନ୍ତା ହାତ ଦେଖାଇ । ଗାଡ଼ିବାଲା ଅଲବତ୍ ଠିଆ କରିବ ତା' ସିଗ୍‌ନାଲ ଦେଖି । ନ ହେଲେ ଚମିନ ଖଟିରେ ଯଦେ ଦାଇକା ଦେଇ ଦିଅନ୍ତା । କିନ୍ତୁ ସେ ସୁବିଧା ହେଉନାହିଁ ।

ବୋତଲ ଦୁଇଟି ହାତରେ ଧରି ଗେହ୍ଲୀ ଦଉଡ଼ୁଛି ଘରକୁ । ଝୁପୁଡ଼ି ଘରକୁ । କାକାକୁ କଥା ସବୁ କହୁଛି, ବାବୁ ଦୁ'ଜଣ କିପରି ଅସୁବିଧା ପାଉଛନ୍ତି । ଗଲେ ଗାଡ଼ିଟା ଠେଲିବାକୁ ହେବ । ସେମାନେ ଅଫିସ କାମରେ ଯିବେ ରାଉରକେଲା ।

ଭୁବନ ଦରଝୁଙ୍କିଆ ନିଦରେ ଥିଲା । ଗେହ୍ଲୀ ହଲେଇ ଦେଲା ତା' ବାପାକୁ । ଘୁଇନିଦ ଭାଙ୍ଗି ଯାଇଛି । ଅଣ୍ଟାଭିଡ଼ି ମଦନ ଭୁବନ ଚାଲିଲେ । ସାଥୀରେ ଗେହ୍ଲୀ । ସମରୁ ଓ ଦହଲୁ ବି ଯାଇଥାନ୍ତେ; କିନ୍ତୁ ସେମାନେ ସ୍କୁଲରେ ଥିଲେ । ପୂର୍ବ ଦମରେ ଜିପ୍ ଗାଡ଼ିଟି ଯୋଲ ଉପରକୁ ଉଠିଛି ଆସ୍ତେ ଆସ୍ତେ । ସମାନ ସ୍ତରକୁ ଆସିଲା ଯେତେବେଳେ ଗେହ୍ଲୀ କହିଲା ତା' ବାପାକୁ : ଲଗାଦମ । ବାବୁ ଗିଅର ପକାଇ ଦେଲେ । ଜିପ୍ ଗାଡ଼ି ଗରଜି ଉଠି ଷ୍ଟାର୍ଟ ହେଲା ।

ପ୍ରଜ୍ଞା ବାବୁ କୃତଜ୍ଞତା ଜଣାଇ ଦଶ ଟଙ୍କା ଯାଚିଲେ । ମଦନ ନମସ୍କାର ଜଣାଇ କହିଲା : ଏ କ'ଣ ବାବୁ ! ସାହାଯ୍ୟର ମୂଲ୍ୟ ଟଙ୍କାରେ ହିସାବ କରିଗଲେ ? ଆପଣମାନେ ଅସୁବିଧାରେ ଥିଲେ । ଅମେ ପାଖରେ ରହୁଁ । ଏଠି

ଇଟା କାଟ୍ । ଏତିକି ସାହାଯ୍ୟ କରି ପାରିବୁଁ ନାହିଁ । ଧିକ୍ ଆମ ଜୀବନ— ସାହାଯ୍ୟ ପାଇଁ ଟଙ୍କା ପୁରସ୍କାର ନେବୁ । ଆପଣମାନେ ଯାଆନ୍ତୁ । ଅଫିସ କାମ ଥିବ । କେବେ ଇମିତି ଦରକାର ପଡ଼ିଲେ ଡାକିବେ ।

ପ୍ରଜ୍ଞା ବାବୁଙ୍କୁ ମଦନର ବ୍ୟବହାର ମୁଗ୍ଧ କରିଥିଲା । ହାତରେ ସମୟ ନ ଥିଲା । ଧନ୍ୟବାଦ ଜଣାଇ ଗାଡ଼ି ଆଗକୁ ବଢ଼ି ଚାଲିଲା, ରାଉରକେଲାକୁ । ସେଲ୍ ଅଫିସରେ କାମ ଥିଲା । ଫାଇଲପତ୍ର କାମ ।

ପାଞ୍ଚଟାରେ ଫେରିଛନ୍ତି ବାବୁ ଦୁଇଜଣ ସେଇବାଟେ । ଶଙ୍ଖ ବ୍ରିଜ ଆର ପାଖରେ ଜିପ୍ ଗାଡ଼ି ଛିଡ଼ାହେଲା । ଯଉଠି ଗାଡ଼ି ବନ୍ଦ ହୋଇଥିଲା । ବାବୁ ଦୁହେଁ ଓହ୍ଲାଇ ଶଙ୍ଖ ବ୍ରିଜ ଉପରୁ ତ୍ରିବେଣୀର ଦୃଶ୍ୟ ଦେଖିଲେ । ଟମିକ ଉପର ଦୃଶ୍ୟ ବି ଦେଖିଲେ । ଦ୍ୱିପ୍ରହରର ହଜିଲା ସ୍ମୃତିଚାରଣ କରି ଯଦିଓ ଗେହ୍ଲୀର ଘର ସେମାନେ ଦେଖି ନାହାନ୍ତି ତଥାପି ଚାଲି ଯିବାକୁ ଚାହିଁଲେ । ମୁହଁରେ ସିଗାରେଟ୍ ପୋଡ଼ୁଥିଲା ।

ବାବୁ ଦୁଇଜଣଙ୍କୁ ଗେହ୍ଲୀ ଦୂରରୁ ଠଉରେଇ ନେଲା । ସୁମାମୀ ଖଟଟାକୁ ଝାଡ଼ିଝୁଡ଼ି ଦେଇଥିଲା । ଘର ଆଡ଼କୁ ଆସିବାକୁ ହେଲେ ବସିବେ ତ ନିଶ୍ଚୟ ଚୁଲିରେ ନିଆଁ ଟିକିଏ ଫୁଙ୍କି ଦେଲା ।

ଭୁବନ ଓ ମଦନ ମାଟିକାଟି ପାଣି ଢାଳୁଥିଲେ । ରାତିଯାକ ମାଟି ଭିଜିବ । ଗେହ୍ଲୀ ଆଉ ବାବୁ ଦୁ'ଜଣଙ୍କୁ ପାଛୋଟିବାକୁ ଯାଇନାହିଁ । ସାମାନ୍ୟ ଲାଜେଇ ଯାଇଥିଲା । ଇଟା କାଟିବା ସ୍ଥାନରେ ପ୍ରଜ୍ଞା ବାବୁ ପହଞ୍ଚି ସାରିଥିଲେ । ମଦନ ଓ ଭୁବନ ଦେଖି ତଟସ୍ଥ ହେଲେ ଓ ପଚାରିଲେ : ବାବୁ ଆପଣମାନେ ଏଠିକି ??

ଭୁବନ ମନେ ମନେ ଭାବିନେଲା : କାଲେ···?? ମଦନ ସାଙ୍ଗେ ସାଙ୍ଗେ ଭୁବନକୁ ଧମକେଇ ଦେଲା : ସମସ୍ତଙ୍କୁ ତୋ' ଭଳିଆ ଭାବିବା ଠିକ୍ ନୁହେଁ । ସେମାନେ କ'ଣ ତୋ' ପାଖକୁ କୁଟିଆ ମଦ ପାଇଁ ଆସିଛନ୍ତି ??

ପାଣି ଖାରେ ସେଠି ଥିଲା । ଗୋଡ଼ ହାତ ଧୋଇ ବାବୁମାନଙ୍କ ପାଖରେ ଠିଆହେଲା ମଦନ । ଗେହ୍ଲୀ ଆସି ଯାଇଛି ଏତେବେଳେ । ସମରୁ ଓ ଦହଲୁ ବାବୁଙ୍କୁ ନମସ୍କାର ହେଲେ । ବାବୁ ବଢ଼ାଇ ଦେଲେ · ବିସ୍କୁଟ ପାକେଟ ଓ କିଛି ଫଳର ପ୍ଲାଷ୍ଟିକ ଜରି ପାକେଟଟି ।

-ଦହଲୁ ନମ୍ରତାର ସହିତ ଗ୍ରହଣ କରିଛି । ମଦନ ବାବୁଙ୍କୁ ଘର ପଟକୁ ନେବାକୁ ଚାହୁଁଥିଲା । ଅନୁରୋଧ କରନ୍ତା ଘରକୁ ଯିବାକୁ । କିନ୍ତୁ ଏମାନେ ପଦସ୍ଥ ଅଫିସର । କ'ଣ ଦେଇ ତୁଷ୍ଟ କରିବେ ??

ପ୍ରଜ୍ଞା ବାବୁ ସମରୁର ହାତ ଧରି ପଚାରିଲେ : ପାଠ ପଢୁଛ ? କେଉଁ ଶ୍ରେଣୀରେ ?? ନାମ କ'ଣ ?

ସମରୁ ସଠିକ୍ ଉତ୍ତର ଦେଇଥିଲା । ସେହିଭଳି ବ ତା' ଉତ୍ତର ଦେବାରେ ଭୁଲ୍ କରିନାହିଁ । ଗେହ୍ଲୀର ପରିଚୟ ଆବଶ୍ୟକ ନ ଥିଲା ।

ସୁମାଣୀ ପାଣି ଢ'ଗଡ଼ୁ ବାହାର କରି ନମସ୍କାର ଜଣାଇଛୁ । ଖଟ ଉପରେ ବସିବା ପାଇଁ ଅନୁରୋଧ କରିଛୁ । ଯାହା ମଦନ କରିବାକୁ ଚାହୁଁଥିଲା ।

ପ୍ରଜ୍ଞା ବାବୁ ମନେ କରୁଥିଲେ ଆଜି ବହୁ ଦିନରୁ କାହାଘରେ ଆତିଥ୍ୟ ନେଉଛନ୍ତି । ପାଣି ଗଡ଼ୁ ଧରି ତା'ର ସଦ୍‌ବ୍ୟବହାର କଲେ । ସାଥୀ ଜଣକ ପ୍ରଜ୍ଞା ବାବୁଙ୍କ ଦେଖା ଦେଖି ଗୋଡ଼ ନ ଧୋଇ ସାମାନ୍ୟ ପାଣି ଛୁଞ୍ଚିଦେଲେ । ଯେହେତୁ ସିଏ ଯୋତା ପିନ୍ଧିଥିଲେ ।

ପ୍ରଜ୍ଞା ବାବୁ ତାଙ୍କ ସିଗାରେଟ କେସଟି ମଦନ ଉଦ୍ଦେଶ୍ୟରେ ବାହାର କଲେ । ମଦନ ନମସ୍କାର ଜଣାଇ ଦେଇଛୁ । ଭୁବନ ଖଣ୍ଡେ ନେଇଛୁ କିନ୍ତୁ । କଥାର ଆସର ଆଗେଇ ଆସିଲା । ପ୍ରଜ୍ଞା ବାବୁ ପଚାରିଲେ : କେମିତି ଏଠିକି ଆସିଲେ, ଦୈନିକ କେତେ ଇଟା କାଟି ପାରନ୍ତି ? ମାଲିକ ଟଙ୍କା ଠିକ୍ ଦିଏତ ? ପିଲମାନେ ପଢୁଛନ୍ତି ତ ? ରହିବାରେ ଅସୁବିଧା ହେଉନାହିଁ ତ ??

ସବୁ ପ୍ରଶ୍ନର ଉତ୍ତର ମଦନ ଦେଉଥିଲା । ଇତି ମଧ୍ୟରେ ସୁମାଣୀ ନାଲି ଚା' ଆଣି ଦେଇଛୁ ।

ପ୍ରଜ୍ଞା ବାବୁ କହିଲେ : ବହୁ ଦିନରୁ ଇମିତି ଚା' ଖଣ୍ଡେ ଖାଇବାକୁ ସୁଯୋଗ ଖୋଜୁଥିଲି ।

ସୁମାଣୀ କିନ୍ତୁ କହିଛୁ : ବାବୁ, ଆମେ ଯେ ଏଠି ପଡ଼ିଛୁ । କ୍ଷୀର ଆମର ଏଠି ଅସମୟରେ ମିଳେନାହିଁ ।

ପ୍ରଜ୍ଞା ବାବୁ କହିଲେ : ଏଇ ନାଲି ଚା' ପାଇଁ ତ ଏଠିକି ଆସିଲି । ମୁଁ କେବଳ ଏଠିକି ଆସିଛୁ, ତୁମେ ସମସ୍ତେ ଥରେ ଆମ ଘରକୁ ଆସ । ସନ୍ଧ୍ୟା ପରିଚୟରେ ନ ଆସିଲେ ଲେବ କାପର ।

ପ୍ରଜ୍ଞା ବାବୁ ଯେ ସମସ୍ତଙ୍କୁ ନଜର କରି ନେଇ ଯାଇଥିଲେ । ଯାହା ମଦନ ଓ ସୁମାଣୀ ଅନୁଭବ କରୁଥାନ୍ତି । ପାକେଟରୁ ତାଙ୍କ ଠିକଣା ବାହାର କଲେ । ଖଣ୍ଡିଏ ଛପା କାର୍ଡ଼ । ସମରୁକୁ ଦେଇ କହିଲେ : ତୁମେ ତ ପାଠ ପଢୁଛ, ପଢ଼ିଲ ଠିକଣାଟା ??

ସମରୁ ପ୍ରଜ୍ଞା ଶବ୍ଦଟି ଧରି ପାରିଲା ନାହିଁ । ଇଂରାଜୀ ଅକ୍ଷରରେ ଲେଖାଥିଲା । କିନ୍ତୁ ସେ କହିଦେଲା : ବି·ଏସ୍·ଏଲ. କୋ ବାରମିତ୍ରପୁର ।

ପ୍ରଜ୍ଞା ବାବୁ କହିଲେ : ନାଁର ଉଚ୍ଚାରଣ ସାମାନ୍ୟ କଠିନ ବୋଲି କହି ପାରୁନାହିଁ । ସେ କହିଲେ : ପି·ଆର୍.ଏ· ପ୍ର ଓ ଜି.ଏନ୍.ଓ୍ୱାଇ·ଏ ଜ୍ଞା ହେବ । ଅର୍ଥାତ୍ ମୋ ନାମ ପ୍ରଜ୍ଞା ପଟେଲ । ଏବେ ଠିକଣା ଦେଖି ପଢ଼ିପାରିବ ତ ?

ଭୁବନ ସେତେବେଳେ ପାଖରେ ନ ଥିଲା । କିଛି କାମ ଆଳରେ ଦୂରେଇ ଥିଲା ।

ପ୍ରଜ୍ଞା ବାବୁ ଶେଷ ଇଚ୍ଛା ଜଣେଇ, ଅସିବାର କାରଣ ମଦନକୁ କହିଲେ, ତୁମେ ଯଦି ଗୃହିବ, ତେବେ ଆମ କମ୍ପାନୀରେ ତୁମ ଦୁହିଁଙ୍କୁ ଶ୍ରମିକ ଭାବେ ନିଦ୍ୟଣ କରାଯିବ । ସ୍ଥାୟୀ ଚାକିରି । ଘର ମିଳିବ । ପିଲାଙ୍କ ପଢ଼ିବା ପାଇଁ ସେଠି ହାଇସ୍କୁଲ୍ ଅଛି । କମ୍ପାନୀ ତରଫରୁ ଖାଦାନ ଶ୍ରମିକ ସନ୍ତାନମାନଙ୍କୁ ବୃତ୍ତିର ବ୍ୟବସ୍ଥା ରହିଛି । ଭଲରେ ରହିବ ସେଠାରେ ।

ମଦନ ସାଙ୍ଗେ ସାଙ୍ଗେ ମତ ପ୍ରକାଶ ବା ସମ୍ମତି ଜଣାଇ ନାହିଁ । କାଲେ ବାବୁ ଭାବପ୍ରବଣ ହୋଇ ପ୍ରତି ସାହାଯ୍ୟ ଯାଚିଛନ୍ତି । ତେଣୁ ସେ ନୀରବ ରହିଲା ।

ପ୍ରଜ୍ଞା ବାବୁ ତଥାପି କହିଲେ : ଠିକଣା ରହିଲା । ଆସ ତୁମ ଦୁହିଁଙ୍କ ନିଯୁକ୍ତି ବ୍ୟବସ୍ଥା କରାଯିବ ।

ମଦନ ସମ୍ମତି ଜଣାଇବା ପୂର୍ବରୁ ପ୍ରଜ୍ଞା ବାବୁ ଖଟରୁ ଉଠି ସାରିଥିଲେ । ହାତବନ୍ଧା ଘଣ୍ଟା ଦେଖି ବିଦାୟ ସମ୍ଭାଷଣ ଜଣାଇ ଦେଲେ ସୁମାନୀ ଓ ଗେହ୍ଲୀକୁ ।

ମଦନ ଓ ଭୁବନ ବାବୁ ଦୁହିଁଙ୍କୁ ରାସ୍ତାଧାର ପର୍ଯ୍ୟନ୍ତ ଆଣି ଛାଡ଼ିଥିଲେ । କାଲେ ଗାଡ଼ିର କିଛି ହୋଇ ଯାଇପାରେ ଦୃଷ୍ଟିରୁ । ଯଥାସମ୍ଭବ ଗାଡ଼ି ନିଜ ରାସ୍ତାରେ ଆଗେଇ ଥିଲା ବାରମିତ୍ରପୁର ଅଭିମୁଖେ । କୃତଜ୍ଞତା ପୂରି ରହିଥିଲା ବ୍ୟକ୍ତି ଦୁଇଜଣଙ୍କ ପ୍ରତି ।

ମଦନ ସାମାନ୍ୟ ଉପକାରର ମୂଲ୍ୟ ଆଜି ସେ ହିସାବ କରିବାକୁ ସ୍ଥିର କଲା । ଭୁବନ ସେତେଟା ଚିନ୍ତା କରି ନ ଥିଲା । ଗତାନୁଗତିକ ଜୀବନ ତାକୁ ଆଦର କରୁଥିବାବେଳେ, ମଦନ ସବୁବେଳେ ପରିବର୍ତ୍ତନ ଓ ପ୍ରଗତିକୁ ଆଗ୍ରହ କରୁଥିଲା । କମ୍ପାନୀ ଚାକିରି, ପିଲାଏ ପଢ଼ିବେ, ସ୍ଥାୟୀ ଘର ମିଳିବ । ସହରି ଜୀବନ ସହ ତାଳ ମିଳେଇବ ନିଶ୍ଚୟ । ହେଲେ ଯେ ପୁଅମାନଙ୍କୁ ପ୍ରଜ୍ଞା ବାବୁ ପରି ଅଫିସର କରିବ । ତେଣୁ ମନର ସ୍ରୋତସ୍ୱିନୀ ଗତି ବ୍ରାହ୍ମଣୀ କୂଳରୁ ବାରମିତ୍ରପୁର

ଝଣି ଖାଦାନକୁ ଲମ୍ବି ଯାଇଥିବା ରାସ୍ତାରେ ପାହୁଡ଼ ପକେଇ ପକେଇ ଆଗେଇଲା । ଇଂଟା କଂଟାର ଜୀବନର ପରିସମାପ୍ତି ଆସିଯାଇ ଥିବାରୁ ମଦନ ନିଜେ ଟିକିଏ ସନ୍ତୋଷ ଲାଭ କରୁଥିଲା । ସୁମାନୀ, ସମରୁ ଓ ଦାହାଲୁ ହାତରେ ହାତ ଧରି ଆଗେଇଲା । ଭୁବନ ମଧ୍ୟ ତା' ସାମାନ୍ୟ ଜାଲାଲଠି ଧରି ମଦନର ପୁଛରେ ପୁଛରେ ପାଦ ପକାଇଲା । ଦୂରରୁ ମା' ବ୍ରାହ୍ମଣୀଙ୍କୁ ସୁମାନୀ ଜୁହାର କରିଛି ।

ବସନ୍ତ ବାବୁ ଆସି ସମସ୍ତ ପାଉଣା ହିସାବ କରିଦେଲେ । ଅବଶ୍ୟ କେଉଁ ଅଫିସରଙ୍କ ଠିକଣା ନେଇ ସେମାନେ ବାରମିତ୍ରପୁର ଯିବେ ସେ ପଦ୍ଧତି ନାହାନ୍ତି । ନରେନ୍ଦ୍ର ଚନ୍ଦ୍ରା ପରିଚୟ କରାଇ ଦେଇଥାନ୍ତେ । ବସନ୍ତ ବାବୁଙ୍କ ଭକ୍ତି ଗୌଣ ଥିବା ସତ୍ତ୍ୱେ, ମଦନର ବ୍ୟବହାର ତା'ର ଅର୍ଜିତ ସଚ୍ଚୋଟ ପଣିଆର ପୁରସ୍କାର ପାଇଛି ।

ଜମୁନାଡିପା ଗେହ୍ଲୀର ଅତି ପରିଚିତ ଥିଲା । ସନ୍ନିକଟସ୍ଥ କୁଅଁରମୁଣ୍ଡା ଡାଇରୀ ଫାର୍ମ ସେ ବୁଲି ଦେଖିଛି । କୁଅଁରମୁଣ୍ଡା ଦଶେହରା ପର୍ବ ବି ଦେଖି ଆସିଛି । ମଙ୍ଗଳବାର ବଜାରରୁ ଶସ୍ତାରେ ପନିପରିବା ନେଇଛି । ଏମାନେ ଏ ସମସ୍ତ ସ୍ମୃତି ପଛରେ ପକେଇ ରଖିଲେ । ଜିନିଷପତ୍ର ସବୁ ବନ୍ଧାବନ୍ଧି କରି ଶଙ୍କର ବସରେ ଚଢ଼ିଲେ ।

ଅଧଘଣ୍ଟା ଭିତରେ ସେ ବାରମିତ୍ରପୁର ସ୍କୁଇନା ଷ୍ଟାଣ୍ଡନ ଛକରେ ଲାଗିଲା । ବସ୍‌ରୁ ଓହ୍ଲାଇ ମଦନ କିଛି ଫଳ ଦୋକାନରୁ ସଂଗ୍ରହ କରିଛି । ପ୍ରଜ୍ଞା ବାବୁଙ୍କ ଘର ଠିକଣା ଜାଣିବାରେ ଅସୁବିଧା ହୋଇନାହିଁ । ବାବୁ ଯେ ଆଗରୁ କହି ରଖିଥିଲେ ସେ ବନମୁଣ୍ଡା ଦଫାଇରେ ରହନ୍ତି । ସେଠି ଗୋଟିଏ ମାତ୍ର ତିନିତାଲା କୋଠା । ରିକ୍ସା ଆଗେଇଗଲା ଭଞ୍ଜ ଭବନ ଦୈନିକ ସବ୍‌ଜି ବଜାର ଦେଇ । ନିକଟରେ କମ୍ପାନୀ ହସ୍‌ପିଟାଲ ଗେଟ୍ ଭିତର ଦେଇ । ବି·ଆର·ଆଇ ପଣ୍ଡିଆ ମୁଣ୍ଡିକୁ କୋଠାଟି ମୁଣ୍ଡ ଟେକି ମଦନର ବାଟକୁ ଚାହିଁ ରହିଥିଲା ।

ପ୍ରଜ୍ଞା ବାବୁଙ୍କ ଅଫିସ ସେମାନେ ଦେଖି ନ ଥିଲେ । ଆଗେ ଅଫିସକୁ ନ ଯାଇ ଘରେ ପହଞ୍ଚିଲେ । କଲିଙ୍ଗ ବେଲ୍ ସମରୁ ଟିପିଦେଲା । ପ୍ରଜ୍ଞା ବାବୁଙ୍କ ତିନି ବର୍ଷର ପୁଅ ସୁମନ୍ତ ତା' ବାସକେଟ ବଲ ଧରି ଖେଳୁଥିଲା । ମା'ଙ୍କୁ ଡାକ ପାରି କବାଟ ଖୋଲି ଦେଇଛି । କେତେଜଣ ନୂଆ ଲୋକ ଦେଖି ସାମାନ୍ୟ ଶଙ୍କି ଯାଇଛି । ମଦନ ବଢ଼େଇ ଦେଲା ବାଟଦେଖା ଫଳ କେଇଟା । ସୁମନ୍ତ ଥେଙ୍କ୍ୟୁ' କହି ଦେଇଛି । ସମରୁ ଓ ଦାହାଲୁ ଏହା ଦେଖି ଖୁସି ହୋଇଛନ୍ତି । ମଦନ

ସେ ପ୍ରତି ଧନ୍ୟବାଦ ଜଣାଇ ପାରିନାହିଁ । ସେ ଜାଣି ନ ଥିଲା ଏହାର ପ୍ରତି ଉତ୍ତର । ଗେଲ୍ଲୀ କବାଟ ଫାଙ୍କରେ ଦେଖିଥିଲା ସୁମନ୍ତ ବାବୁଙ୍କୁ ।

ତୁଳସୀ ସାମାନ୍ୟ ଅବ୍ୟବସ୍ଥିତ ଥିଲେ । ଅତିଥିମାନଙ୍କ ପରିଚୟ ପଚାରି ନାହିଁ । ବରଂ ଜଳପାନ ସବୁ ରଖି ଦେବାକୁ କହିଲେ । ବହଲୁ ସୁମନ୍ତ ବାବୁଙ୍କ ଢଙ୍ଗ ଦେଖୁଥିଲା । ତା' ତିନିଚକିଆ ସାଇକେଲ ପାଖକୁ ପହଞ୍ଚି ଯାଇଛି । ସୁମନ୍ତ ବାରଣ କରୁଥିଲା ବହଲୁକୁ । ମାତ୍ର ତୁଳସୀ ଯେତେବେଳେ ମନାକଲେ : ତାଙ୍କୁ ଖେଳିବାକୁ ଦିଅନ୍ତୁ । ପିଲାଲୋକ । ସୋଫା ଉପରେ ବସିବାକୁ ଅନୁରୋଧ କରି ତୁଳସୀ କିଛି ସମୟ ଘର ଭିତରକୁ ନିଷ୍କ୍ରାନ୍ତ ହେଲେ ।

ମଦନ ଦେଖୁଥିଲା ବାବୁଙ୍କ ଘରର ସଜ୍ୟ ଗ୍ଲାସ ଚଲଣୀ, ସାଜସଜ୍ଜା, ଯନ୍ତ୍ରପାଟି କେତେ ଆଧୁନିକ ପରିବେଶ ଭିତରେ ସାହେବ ବାବୁମାନେ ରହୁଛନ୍ତି । ସୁମନ୍ତ କୁଲର ଚଲେଇ ଦେଇଛି । ଏଠି କିଏ ଅତିଥି କିଏ ଅଭ୍ୟାଗତ ଜଣା ପଡ଼ୁ ନ ଥିଲା । କିଛି ଫଳ ବହଲୁକୁ ଦେଇ ସୁମନ୍ତ ବସିଗଲା ତା' ସାଇକେଲ ସିଟ୍‌ରେ । ସେ ବି ଆଗ୍ରହରେ ଅଙ୍ଗୁରଟିକ ଖାଇ ଯାଇଛି । ଯାହା ମଦନ ପ୍ରତି ଆନନ୍ଦ ଜାତ କରୁଥିଲା ।

ତୁଳସୀ କିଛିକ୍ଷଣ ପରେ ବ୍ୟବସ୍ଥିତ ଭାବେ ଅତିଥିମାନଙ୍କ ଗହଣକୁ ଆସି ଯାଇଛି । ଦୁଇ ପ୍ଲେଟ ବିସ୍କୁଟ, ମିକ୍ସଚର, ଟ୍ରେରେ ଚା' ନେଇ ସମସ୍ତଙ୍କୁ ଦେଇଛି । କାହିଁକି କେଜାଣି ତୁଳସୀ ହାତରୁ ଏମାନେ ଚା' ନେବାକୁ କୁଣ୍ଠାବୋଧ କରୁଥିଲେ । ବୋଧହୁଏ ଏମାନେ ଅଫିସର ଓ ସେମାନେ ଶ୍ରମଜୀବୀ ନିମ୍ନ ସ୍ତର ଅପେକ୍ଷାରେ ଅଛନ୍ତି । ଯଦିଓ ସଭ୍ୟତାର ଫରକ ଜାଣୁଥିଲା ମଦନ । ତୁଳସୀ କିନ୍ତୁ ସାଚ ଦେଉଥିଲା ତାଙ୍କୁ । କେହି ପର ଆପଣା ନ ଥିଲେ । ଥିଲେ ଅତିଥି, ଆତ୍ମୀୟ ।

ଭୁବନ ତୁଳସୀ ହାତକୁ ପ୍ରଜ୍ଞା ବାବୁଙ୍କ ଠିକଣା ପଟିଏ ବଢ଼େଇ ଦେଇଛି । ତୁଳସୀ ଯେ ସବୁ ଜାଣିଥିବାର ସମ୍ମତି ସୂଚନା ଦେଇଛନ୍ତି ।

ଭୁବନ ହାତରୁ ଠିକଣା କାର୍ଡ଼ ଖଣ୍ଡିକ ଧରି କିଛି ସମୟ ନିଜକୁ ଅପ୍ରକୃତିସ୍ଥ ମନେ କରୁଥିଲା । ଦୀର୍ଘ କେତେ ବର୍ଷର ବ୍ୟବଧାନ, ଏକ ଅଭିରୁଚି ପରିବେଶ, ବଢ଼ିଲା ଆଖି ଅଥଚ ଏକ ଆତ୍ମୀୟତାର ସ୍ପନ୍ଦନ ଭିତରେ ତୁଳସୀ ଓ ଭୁବନ ନିଜକୁ ନିଜେ ବେଖାପ ଅଚିହ୍ନା ଦେଖୁଥିଲେ ।

ତୁଳସୀ ବାବୁଙ୍କୁ ରିଙ୍ଗ କରିଦେଲେ । ଝରକାପଟୁ ଦେଖୁଥିଲା ବହଲୁ । ଟେଲିଫୋନ ଡାଇଲିଂ ପ୍ରତି ସେ ନଜର କରୁଥାଏ । ଜମ୍ବୁନାଡ଼ି ପାରେ ବହଲୁ ସମରୁ ସହିତ ଏପରି ଦିଆସିଲି ଖୋଳରେ ସୂତା ଲମ୍ବାଇ ଫୋନ କରିଛି । ଗୁଡ଼ି

ଉଡ଼ାଇଛୁ । ଝୋଲ ମୁକ୍ତ ପଡ଼ଆ ଏଠି ସେ ଦେଖି ପାରୁନାହିଁ । ସୁମନ୍ତ ବାବୁଙ୍କ ସହିତ ଖେଳାନ୍ତା କେବେ କମିତ ।

ମଦନ ନେ ଦନେକର ସାମାନ୍ୟ ସାହାଯ୍ୟର ପ୍ରତିଫଳ ବୁଝିପାରୁ ନ ଥିଲା । ଏକ ଶକ୍ତହୀନ ସ୍ମରଣ ଭିତରେ ଭୁବନ କ'ଣ ମନେ କରୁଥିଲା ।

ଦନେ ଏଇ ତୁଳସୀ ପାଇଁ ଭୁବନ ବସନ୍ତ ବାବୁଙ୍କ ଅନୁରୋଧ କରି ଆସିଥିଲା । ଶାଶୁଘରେ ଥିଲେ ତୁଳସୀ କଷ୍ଟେ ତାକୁ ଚହ୍ନି ପାରିଥାନ୍ତା । ପାଣିଗଡ଼ୁ ଥୁଆ ହୋଇଥାନ୍ତା ପୁଣି କେତେ ଆଗ୍ରହରେ । ବାହାଘର ପରେ ପ୍ରକୃତରେ ଭୁବନ ତୁଳସୀ ଘରକୁ ଯାଇନାହିଁ । ଶାଶୁଘରେ କମିତ ଚଳୁଛୁ କେବେ ବୁଝିନାହିଁ । ନୂଆ ପରିବେଶରେ ସେ ଶାଶୁଘରେ ରହେ । ଭୁବନ ଗାଁ ଛାଡ଼ି ଏଠି ସେଠି ହାଜର କଲା । ସମୟର ପରିବର୍ତ୍ତନ ଥିଲା । ଅନୁମାନ କରୁଥିଲା ବୋହୁ ଜଣକ ଭବାନୀଶଙ୍କର ବାବୁଙ୍କ ଝିଅ ତୁଳସୀ ନୁହେଁ ତ ?? ମୁହଁର ଚେହେରା ବି କିଛି ବଦଳି ଯାଇଛି । ବେଶ ପରିଧାନ, ଝିଅରୁ ବୋହୂ ପୁଣି ବାବୁଆଣୀ, ଜଣେ ପଦସ୍ଥ ଅଫିସରଙ୍କ ସହଧର୍ମିଣୀ । ଆଉ ଅନ୍ୟ ପରିଚୟ କ'ଣ ଅଛି ତୁଳସୀ ତା'ର ଭଲରେ ଅଛି ଜାଣି ଖୁସିହେଲା । ତଥାପି ସନ୍ଦେହର ଢେର ଭିତରେ ଭୁବନ ନିଜକୁ ପହଁରି ମାରୁଥିଲା ।

କ୍ଷୀରବାଲା ଯାଦବ ପିଲା ଦୁଆର ମୁହଁରେ ଦୁଇ ଲିଟର କ୍ଷୀର ନେଇ ଦେବାକୁ ଆବାଜ୍ ଦେଲା । କାଲେ ସିଂ କେତେଖଣ୍ଡ ପେପର ଫିଙ୍ଗିଦେଲେ ଦୁଆର ଭିତରକୁ । ଏତେ ଅଳ୍ପ ସମୟ ଭିତରେ ବାବୁମାନଙ୍କ ଘରେ ଏତେ କଥା ହୋଇଯାଏ । ସୁମନ୍ତ ବାବୁ ଶିଶୁ ପତ୍ରିକା 'ଅମେ କୁନା କୁନି'କୁ ଧରି ଦହଲ୍ଲୁ ପାଖକୁ ଆସି ଯାଇଛି ।

ଭୁବନ ଅନୁମାନ କଲା ତୁଳସୀ ହାତରେ ପିନ୍ଧିଥିବା ସୁନା ଚୁଡ଼ି ଗ୍ରିପଟକୁ, ତା' ମୁହଁକୁ ବାରଂବାର ନିରୀକ୍ଷଣ କଲା । ଓଠ ତଳେ ସେଇ କାଳି ଦାଗ ଚହଟି ଦିଶୁଥିଲା । ଚହ୍ନିବାକୁ ଆଉ ଅପ୍ରକାଶ୍ୟ ରହିଲା ନାହିଁ । କେଉଁ ସମ୍ବୋଧନରେ ସେ ପଚାରି ନେବ ତୁଳସୀର ଠିକଣା । ସେ ତ ଏବେ ଆଉ ତୁଳସୀ ନୁହେଁ । ଜଣେ ପଦସ୍ଥ ଅଫିସରଙ୍କ ପତ୍ନୀ । ପଚାରିବାରେ ଧୃଷ୍ଟ ହେଲେ ହୁଏତ ଖରାପ ଭାବ ପାରନ୍ତି । ବାବୁ ପିଲଲୋକ । କ'ଣ ଭାବନେଲେ କର୍ମ ସଂସ୍ଥାନ ପ୍ରତି ଆଞ୍ଚ କାଳେ ଆସିଯିବ । ତେଣୁ କିଛି ନ ପଚାରି ବଗିଚ୍ଚପଟେ ଆସି ଯାଇଛି । ଗୁମ୍ଫ ଦେହରୁ ଘାସ ସବୁ ବାଛି ଦେବାକୁ ଲାଗିଲା । ଭୁବନର ଏପରି ସୌଜନ୍ୟ ତୁଳସୀ ଅନୁମାନ କରି ନେଇଥିଲା

ତୁଳସୀ ଫୁଲ ବଗିଚାକୁ ଯାଇଛି । ଭୁବନର ଏତାଦୃଶ ଅଗ୍ରହ ମନାକଣ ନାହିଁ । ତଥାପି ଭୁବନକୁ ସେ ମନା କରିଛି । ମାଳି ଆସିଲେ ସେ ସବୁ ଘାସ ବାଛିଦେବ । ଆପଣମାନେ ବିଶ୍ରାମ ନିଅନ୍ତୁ ।

ତୁଳସୀ ପ୍ରତି କିଛିଟା ସମ୍ବୋଧନ କରୁଥିଲା ଭୁବନ···।

ତୁଳସୀ ଭୁବନର ଜିଜ୍ଞାସା ଜାଣିବାକୁ ଚାହିଁଛି ଏବଂ କହିଛି : ଆପଣ-ମାନଙ୍କ ନିଜ ନାଁ, ଗାଁ, ମୋତେ କହିବେ ନାହିଁ । କେବଳ ବାବୁଙ୍କ ସହିତ ଆପଣମାନଙ୍କ କାମ ଅଛି । ମୋ ସହିତ କିଛି ସମ୍ପର୍କ ରହିବ ନାହିଁ ??

ଭୁବନ ଆଖିରୁ ଆନନ୍ଦାଶ୍ରୁ ବହି ଯାଇଛି । କେଉଁ ସ୍ମୃତି ତା' ପ୍ରାଣରେ ସ୍ପନ୍ଦନ କରିଛି । ସେ ତୁଳସୀଙ୍କୁ ପଚାରିଲା : ତୁମ ଶ୍ରଦ୍ଧା ନାମ କହିଥିଲେ କେତେବେଳେ ଡାକିବାକୁ ପଡ଼ିଲେ ଡାକନ୍ତି ।

ତୁଳସୀ ସ୍ପଷ୍ଟ କହିଥିଲେ : ମୋତେ ମାଡ଼ାମ ବୋଲି ସମସ୍ତେ ଡାକନ୍ତି । କେହି କେହି ମିସେସ୍ ପ୍ରଜ୍ଞା କୁହନ୍ତି । ଇମିତ ସହସ୍ର ନାମର ଘେରରେ ମୁଁ ଡକାଡକ ହୁଏ । କିନ୍ତୁ ବାବୁ ଡାକନ୍ତି : ତୁଳସୀ । ଆପଣ ବି ମୋତେ ତୁଳସୀ ଡାକିଲେ ଖୁସିହେବ ।

ଏକ ଅନାବିଳ ପିତୃପ୍ରାଣ ବିହ୍ୱଳିତ ହେଲା । ଭୁବନ ଆଖିରୁ ଲୁହ ପୋଛି କହିଲା : ମୁଁ ତୁମକୁ ତୁଳସୀ ମା' ବୋଲି ହିଁ ଡାକିବି ।

ତୁଳସୀ ଆଗରୁ ଅନୁମାନ କରିଥିଲା, ସେଇ ଲୋକଟି ଆଉ ଅନ୍ୟ କେହି ନୁହେଁ : ତା'ର କାକା, ଭୁବନ କାକା । ଯିଏ ଏଇ ଶ୍ରେଷ୍ଠ ପରିବାରର ସୃଷ୍ଟିକର୍ତ୍ତା । ପ୍ରଜ୍ଞା ବାବୁଙ୍କ ସହିତ ସଂଯୋଗକର୍ତ୍ତା ଓ ତା'ର ସମ୍ମାନନୀୟ ଭୁବନ କାକା ।

ସାମାନ୍ୟ ଓଢ଼ଣା ଟେକି ଭୁବନ କାକାଙ୍କ ପାଦକୁ ଛୁଇଁ ଗଭୀର ପ୍ରଣିପାତ ଜଣାଇଛି ତୁଳସୀ ।

ଖୋଜୁଥିଲା ମଣିଷ ଆଜି ଦେବଦୂତ ହୋଇ ତୁଳସୀ ସାମ୍ନାରେ ଅତିଥି ଭାବେ ଦଣ୍ଡାୟମାନ ଥିବା ଭୁବନ କାକାଙ୍କୁ । ଅହୋଭାଗ୍ୟ ତୁଳସୀ ପାଇଁ । ମନରେ କେତେ ଦମ୍ଭ ଆସିଗଲା ଏଇନେ ତୁଳସୀର ।

ପ୍ରଜ୍ଞା ବାବୁ ଏସବୁ ଦୃଶ୍ୟ ଦେଖୁଥିଲେ । ସେ ନିଜେ ଭିତରେ ହାତ ଉଠାଇ ଦେଲେ ଭୁବନ, ମଦନ ଓ ସୁମାନ୍ତି ପ୍ରତି ।

ତୁଳସୀଙ୍କ ପରବର୍ତ୍ତୀ ପରିଚୟ ଅଧିକ ପ୍ରଜ୍ଞା ବାବୁ ଜାଣିବାକୁ ଚାହିଁ ନ ଥିଲେ । ସୋଫାରେ ବସି କିଛି ସମୟ ଏକ ଅଣନିଃଶ୍ୱାସୀ ଆବେଗରେ କଥାବାର୍ତ୍ତା

ହୋଇଛନ୍ତି । ପ୍ରଜ୍ଞା ବାବୁ ବଢ଼ାଇ ଦେଲେ ଚାକିରିର ନିଯୁକ୍ତିପତ୍ର ଭୁବନ, ମଦନ ଓ ସୁମାନ୍ତି ଉଦ୍ଦେଶ୍ୟରେ ! ପ୍ରଜ୍ଞା ବାବୁଙ୍କ ଏହା ସେମାନଙ୍କ ପ୍ରତି ଅନୁଗ୍ରହ ନ ଥିଲା । ଥିଲା କର୍ତ୍ତବ୍ୟ ।

ମଦନ ନିଜକୁ ଖାଦାନର ଶ୍ରମିକ ଘୋଷଣା କରିଛି । ଭୁବନ ଡାଇରେକ୍ଟରର ବଙ୍ଗଳାର ମାଳି ଓ ସୁମାନ୍ତି ସାଧାରଣରେ ବେବି କେୟାର କେନ୍ଦ୍ରରେ କେୟାର ଟେକର ନିଯୁକ୍ତି ପାଇଛନ୍ତି । ମଦନ ବନମୁଣ୍ଡା ଶ୍ରମିକ କଲୋନି ଓ ଭୁବନର ବସାଘର ହୁଲିଦଆ ଦଫାଇ, ଶନିବାର ବଜାର ଉପକଣ୍ଠରେ ।

ପ୍ରଜ୍ଞା ବାବୁଙ୍କ ଦ୍ୱାର ଉନ୍ମୁକ୍ତ ଥିଲା ଏମାନଙ୍କ ପାଇଁ, ଶ୍ରମିକମାନଙ୍କ ପାଇଁ । ସହସ୍ରାଧିକ ସତ୍ୟାଗ୍ରହୀ ଶ୍ରମିକମାନଙ୍କ ଭିତରେ ତିନିହେଁ ନିଜକୁ ନିଯୁକ୍ତ କଲେ ।

ପ୍ରଥମ ଦିନର ଅନୁଭୂତିରୁ ଯାହା ଦହଲୁ କହେ : ଏତେ ଜୋର ବ୍ଲାଷ୍ଟିଂ ସେ ଆଗରୁ ଶୁଣି ନ ଥିଲା । ବାବାରେ କହି ଖଟରୁ ଉଠି ବାହାରପଟେ ଦେଖିଛି । ଗୋଟିକ ପରେ ଗୋଟିଏ ବ୍ଲାଷ୍ଟିଂ ଶବ୍ଦ ତା' କାନକୁ ଠୋ ଠୋ କରିଗଲା । ଶ୍ରମିକମାନଙ୍କ କର୍ମମୁଖର କରି ରଖିବା ପାଇଁ ଶ୍ରମର ପ୍ରାକ୍ ପ୍ରସ୍ତୁତି । ଶ୍ରମିକ ଲମ୍ବା ଧାଡ଼ିରେ ପ୍ରାନ୍ତରୁ ଆଗେଇ ଯାଏ ତା' ହାତୁଡ଼ି, ଶାବଳ ଧରି ଗୁରୁ ପାହାଡ଼, ପାଟ ପାହାଡ଼, କପିଲାସ ଖାଦାନ ସବୁକୁ । କ୍ୱାରି ସବୁରେ ଶ୍ରମିକ-ମାନଙ୍କର ଯଥେଷ୍ଟ କର୍ମ ତତ୍ପର ମଦନ ଦେଖେ । ଭୁବନ ନିଜକୁ ବଗିଚାର ମାଳି ଭାବେ ପରିଚିତ କରାଏ । ସେ ଯେ ତୁଳସୀଙ୍କ କାକା ଏକଥା ଅଫିସ ସାରା ପ୍ରଚାର କରନ୍ତି ପ୍ରଜ୍ଞା ବାବୁ—ଜଣେ ମୂର୍ତ୍ତିମନ୍ତ ପଦସ୍ଥ ଅଫିସର । ଏସବୁ କଥା ସନ ୧୯୮୨ର କଥା ।

ହୁଲିଦଆ ଦଫାଇ କଲୋନି ଶ୍ରମିକ ନିବାସ ଭୁବନ ପାଇଁ କିଛିଟା ପରିବର୍ତ୍ତନର ସୂଚନା ଦେଲା । ନିଜର ସାହି ପଡ଼ିଶା ପାଇଁ ଯେଉଁମାନଙ୍କୁ ପାଇଛି ସମସ୍ତେ ଦୂର ସ୍ଥାନରୁ ଆସିଛନ୍ତି । ଗୋଟିଏ ଗ୍ରେଡିଆ ପକ୍କା କୋଠରୀ ଭିତର ପଟେ ବେଷ୍ଟେଇ ଘର, ଗ୍ରେଟ ଅଗଣାଟିଏ । ତା' ପରି ଗ୍ରେଟ ପରିବାର ପାଇଁ ଯଥେଷ୍ଟ ଥିଲା ତା'ର ବସାଘର । ଅଗଣାରେ ଥିବା ସଜନା ଗଛଟି ବେଶ୍ ଶୋଭା-ବର୍ଦ୍ଧନ କରୁଥିଲା । ବିଜୁଳି ଆଲୁଅର ସୁବିଧା ରହିଛି । ଏକରକମ ମଣିଷ ଜୀବନ ଧରି ରହିଯିବା ଅସମ୍ଭବ ନ ଥିଲା । ଆଗରୁ ପାଖରେ ସିଲଭର ଡେକଚି ଆଦି ରହିଛି, ପଖାଳ ଗଣ୍ଡେ ଫୁଟେଇ ନେବାରେ ଅସୁବିଧା ନ ଥିଲା । କାଠ ସେ ଅନ୍ୟମାନଙ୍କ ସହିତ ଯୋଗାଉ ଥିଲା । ଆଜି କିନ୍ତୁ କିଣିବାକୁ ପଡ଼ିଲା ତାକୁ । ଚମିନି ଭଟାରେ

ମାଗଣା କୋଇଲା ପାଇ ଯାଉଥିଲା । ଏଠି ତାକୁ କିଣିବାକୁ ପଡ଼ିବ । ଏକରକମ କିଣିକି ଜୀବନ ବିତାଇବା କଥା । ଦୁଇ ସିଝାଁ ଘୁଣ୍ଡଲ ବଜାରରୁ କିଣିବାକୁ ପଡ଼େ । ହପ୍ତାକୁ ହପ୍ତା ପଗାର ମିଳେ ।

ଦା, କଟୁରୀ ଧରି ଡ଼.ବି. (ଡାଇରେକ୍ଟର ବଙ୍ଗଳା) ଅଭିମୁଖେ ବାଡ଼ି ଭୋରରୁ ବାହାରି ପଡ଼େ ଭୁବନ । ଅଁମୃତୋଟା, ଦେବଦାରୁ ଗଛର ବଣ ଭିତରେ ଇଂରେଜ ଅମଳର ଯେ ବାବୁମାନଙ୍କର ବିଶ୍ରାମ ବାସ । ବଙ୍ଗଳାର ଆଧୁନିକ କରଣ ସହରର ସବୁଠୁଁ ଆକୃଷ୍ଟନୀୟ ବଙ୍ଗଳା । ବାଡ଼ ବନ୍ଧ ସବୁ ଠିକ୍ କରିବାକୁ ପଡ଼ିଲା ଭୁବନକୁ । ଲନ୍ ସବୁର ଘାସ କାଟେ । ଫୁଲଗଛ ଲଗାଏ । ପାଣି ଦିଏ । ନିତ୍ୟ କର୍ତ୍ତବ୍ୟ ତା'ର । ବାବୁ ଅଫିସରଗଣ ବଙ୍ଗଳାରେ ରହନ୍ତି । ସେମାନଙ୍କ ସୁମିଷ୍ଟ ଖାଦ୍ୟ ଯେଉଁଠି ପ୍ରସ୍ତୁତ ହୁଏ । ଭୁବନକୁ ପ୍ରତିଦିନ ସକାଳ ଓ ଦିନରେ ଖାଇବା ଯେଉଁଠି ମାଗଣା ମିଳିଯାଏ । ପ୍ରତିଦିନ କୁକୁଡ଼ା ଗୋଟେ ଦିଇଟା କାଟି ଚମଡ଼ା ଉତାରିବା କାମ ତା'ର ମଦନର । ବଙ୍ଗଳାର ବାହାର ବାଟଣ୍ଡା ସବୁ ଓଦା କପଡ଼ାରେ ପୋଛି ସଫା କରେ । ବେତବୁଣା ସୋଫା ସବୁ ବାରଣ୍ଡାରେ ସଜାଇ ଦିଏ । ଟେବୁଲ ଉପରେ ଫୁଲଦାନୀରେ ଜଙ୍ଗଲିଆ ଫୁଲ ସବୁ ରଖେ । ଟେବୁଲର ଶୋଭାବର୍ଦ୍ଧନ କରେ ।

ମଦନ ହାତମୁଠା ଭିତରେ ତା'ର ପ୍ରିୟ ହାତୁଡ଼ି ଓ ଶାବଳ ଧରି ଖାଦାନକୁ ବାହାରି ଯାଇଛି । ଏବେ ସେ ଡ୍ୟୁଟିରେ ଗୁରୁ ପାହାଡ଼ରେ । ସତର୍କତାମୂଳକ ସମସ୍ତ ଉପଦେଶ ମେଟ ବାବୁଙ୍କଠାରୁ ଗ୍ରହଣ କରିଛି । ରାସ୍ତାରେ ତା' ପରି ଶତାଧିକ ଶ୍ରମିକ କର୍ମମୁଖର ହୋଇ ବାହାରିଛନ୍ତି । ଉପାର ତାରତମ୍ୟ ନ ଥିଲା ତାକୁ । ତା' ଖାଦାନ ଭିତରେ ବହୁଭାଷୀ, ବହୁ ଜାତି, ସମ୍ପ୍ରଦାୟ, ଧର୍ମୀ ଏକତ୍ରିତ ସମନ୍ୱୟ ଦେବେ । ବିଭେଦ, ପ୍ରଭେଦ, ପ୍ରଭେଦ ଭିତରେ ଗୋଟିଏ ରାହା, ସେମାନେ ଉତ୍ପାଦନ କରିବେ । ପଥର ସବୁ ଗ୍ରେଟ ଗ୍ରେଟ ଖଣ୍ଡ କରିଯିବ । ଡମ୍ପର ଆସି ସେସବୁ ନେଇଯାଏ । ପବନ ଗୁପ ଶବଳ ଖାଦାନ ଭୂମିକୁ ଗୁଦୁଗୁଦୁ କରି ଫୋଡ଼ିଦିଏ । ପାଣି ପମ୍ପ ନିଜ କାମ କରି ପାଣିତକ ଖାଦାନ ଭିତରୁ ନିଷ୍କାସନ କରିଯାଏ । ସ୍ଥାନେ ସ୍ଥାନେ ବିଶ୍ରାମ କୋଠରୀ ସବୁ ରହିଛି । ମଦନ ସାଙ୍ଗମାନଙ୍କ ସହିତ ବସି ତା' ଟିଫିନ କେରିଅର ଫିଟାଏ । ନିଜେ ଖାଇନିଏ ଆଣିଥିବା ବାସି ଥିର୍ ବା ସଜ ପଖାଳ ସବୁ । ସୁମାମୀ ସେସବୁ ଆଗରୁ ରଖିଦିଏ । ବାଡ଼ି ପାରେନାହିଁ । ପରିବର୍ତ୍ତନ ଭିତରେ ପାରିବାରିକ ଅସଂଘାତ ଯେ ଅନୁଭବ କରେ । ଦିନରେ ସୁମାମୀ ସହିତ ଏକାଠି ପିଢ଼ା ପକାଇ ବସି ଖାଇବା ଆଉ ହୁଏନାହିଁ ।

ବେଶ୍ ନିଜରେ ସୁମାନ୍ତ ଗ୍ରମିକାମାନଙ୍କ ଶିଶୁମାନଙ୍କର ଯତ୍ନ ନିଏ । ଗ୍ରେଷ୍ଟ ଛୁଆଙ୍କୁ ସେ ଖେଳାଏ, ନାକ କାନ ସଫା କରେ । ଦୋଳାରେ ବସାଇ ଗୀତ ଗାଇଦିଏ । ଗୁହ ମୁତ ସଫା କରେ । କ୍ଷୀର, ପାଉଁରୁଟି ଦିଏ । କେବେ କେମିତ କମ୍ପାନି ଡାକ୍ତର ମହାଶୟମାନଙ୍କ ପରାମର୍ଶକ୍ରମେ ରୋଗୀଣା ଶିଶୁଙ୍କୁ ଅନୁପାନ ଔଷଧ ଦିଏ । ଏକରକମ ସେବିକା ଜୀବନ ସେ ବାଛି ନେଇଛି ।

ପ୍ରଜ୍ଞା ବାବୁ ଏବେ ସେମାନଙ୍କ ଅଫିସର । ସେଦିନ ଏମାନେ ଅତଥି ଥିଲେ । କିନ୍ତୁ ଶ୍ରମିକ ଓ ଅଫିସ ଭିତରେ ଥିବା କର୍ତ୍ତବ୍ୟ ସେସ୍ଥା ଭୁଲନ୍ତି । ବେଶି କେହି କାହାର ଘରକୁ ଯାଆନ୍ତି ନାହିଁ । ପଟ ପୂନେଇଁ କିନ୍ତୁ ବାଦ ପଡେନାହିଁ । ଭୁବନ ଓ ମଦନଙ୍କ ପିତୃସୁଲଭ ହୃଦୟ ସବୁବେଳେ ସୁମନ୍ତ ପ୍ରତି ଥାଏ । ଭୁବନ ବାବୁଙ୍କୁ ଅନେକ ଦିନ ଡବ. ବଙ୍ଗଳାରେ ଭେଟେ । ସେଠି ବିଶେଷ କଥା ହୁଏନାହିଁ । ଅଫିସର ଗହଣରେ କମ୍ପାନି ବ୍ୟାପାର କଥାବାର୍ତ୍ତା ଚାଲେ । ତଥାପି ପ୍ରଜ୍ଞା ବାବୁ ଭୁବନ ପ୍ରତି ହାତ ଉଠାଇ ଦିଅନ୍ତି ଭକ୍ତିରେ । ଯାହା ଅନ୍ୟ ଅଫିସର ମାନଙ୍କ ଦୃଷ୍ଟି ଆକର୍ଷଣ କରେ ଓ ସେ ସାଧାରଣ ମାଳିର ସମ୍ମାନକୁ ବା ଶ୍ରମିକ ମର୍ଯ୍ୟାଦାକୁ ନିଜକୁ ଟିକିଏ ଊର୍ଦ୍ଧ୍ୱରେ ରଖେ । ଭୁବନ ସବୁଦିନ ତୁଳସୀ ପାଇଁ ଫୁଲ ସମ୍ଭାର ନେଇ ଦିଏ । ଯାହା ପୂଜାରେ ଲାଗେ ଓ ଟେବୁଲ ଉପରେ ଫୁଲଦାନି ସଜାଯାଏ । ସେଇ ବାଟରେ ସୁମନ୍ତ ବାବୁଙ୍କ ସହିତ ଘୋଡ଼ାଦୌଡ଼, ଫୁଟବଲ, କ୍ରିକେଟ୍ ଘଡିଏ କଟିଯାଏ । ତୁଳସୀ ହାତରୁ 'ଚା' ଖାଇ ପୁଣି ଫେରି-ଆସେ ବଙ୍ଗଳାକୁ । ସେଠି ବିଭିନ୍ନ ପ୍ରତିଷ୍ଠାନର ବ୍ୟାପାର ଜଡ଼ିତ ବାବୁମାନଙ୍କ ଆଗମନ ଥାଏ । ଏହି ଡାଇରେକ୍ଟର ବଙ୍ଗଳା ଦର୍ଶକ ମାନଙ୍କପାଇଁ ଏକ ଉନ୍ନତ ଦର୍ଶନୀୟ ସ୍ଥାନ । ସାମାନ୍ୟ ରକ୍ଷଣାବେକ୍ଷଣ ରହିଥିଲେ ବହୁ ପର୍ଯ୍ୟଟକଙ୍କ ଦର୍ଶନୀୟ ସ୍ଥାନ ହୋଇ ଇତିହାସ ପୃଷ୍ଠାରେ ନାମୋଲ୍ଲେଖ ରହିବ । ଯାହା ଭୁବନ ବାବୁମାନଙ୍କ କହେଁ । କେଉଁ ବାବୁ କି ମତ ଦିଅନ୍ତି ତାହା ପ୍ରଜ୍ଞା ବାବୁଙ୍କୁ ବାହୁନ ଦିଏ । ବଙ୍ଗଳା ପ୍ରତି ଭୁବନର ମମତା ବାବୁ ବେଶ୍ ବୁଝନ୍ତି । କେବେ କମିତ ଛୁଟିଦିନ ସୁମନ୍ତଙ୍କୁ ଭୁବନ ନେଇଯାଏ ତା' ସହିତ । ଦହେଁ ଘରୁ ତିଆରି ପରୋଟା ତରକାରୀ ଆଣି ଗଛଇ ତଳେ ବସି ଖାଆନ୍ତି । ସୁମନ୍ତ ବାବୁ ଲନ୍‌ରେ ଖୁସିରେ ଗଡ଼ନ୍ତି । ପାଣି ଝରସବୁ ଦେଖି ଖବୁକ ପାଲଟି ଯାଆନ୍ତି । ପକ୍ଷୀମାନଙ୍କ କାକଳୀ ତାକୁ ଗୃହଫେରା କରେନାହିଁ । ବେଶି ସମୟ ଯାଏ ପିଠିରେ ବସାଇ ଘୋଡ଼ା ସବାର ହୋଇ ଖେଳାଏ ଭୁବନ, ସୁମନ୍ତଙ୍କୁ । ମେମ ସାହେବମାନଙ୍କ ଭିଡ଼ ସନ୍ଧ୍ୟା ସମୟରେ ବଢ଼େ । ବଗିଚାର ସୌନ୍ଦର୍ଯ୍ୟ ପ୍ରତି ଯେତେ ଆକୃଷ୍ଟ ହୁଅନ୍ତି, ଭୁବନ ସେତେ ସେମାନଙ୍କ ପ୍ରିୟପାତ୍ର ହୁଏ । ଏଠାରୁ

ଗୋଲାପ ଗୁଚ୍ଛ ଓ ଜଙ୍ଗଲୀ ଫୁଲସବୁ ବାବୁମାନଙ୍କ ଘରକୁ ନେଇ ଦିଏ । ନଲେ ଗୁମଲ ସବୁରେ ଲଗାଇ ଦିଏ । ଦିନ ପଇସା ବକ୍‌ସିସ ପାଇଥାଏ ତେଣୁ । ବଙ୍ଗଳା, ମେମ୍‌ସାହେବଗଣ ଓ ଭୂବନ ମଧ୍ୟରେ ଏକ ସୁରମ୍ୟ ଆନ୍ତରିକ ତୋରଣ ଗୁଚ୍ଛା ହୋଇ ଯାଇଥିବା ବାବୁମାନେ ଅନୁଭବ କରନ୍ତି ।

ବନମୁଣ୍ଡା ଦଫାଇ ବସା ଘରେ ମଦନ ପାଙ୍ଗରେ ସନ୍ଦକୁରେ ସାଇତା ଥିବା ଲଣ୍ଠନକୁ ଜାଳନ୍ତି । ନୂଆ ବସାଘରେ କିଛିଦିନ ବିଜୁଳି ସଂଯୋଗ ନ ଥିଲା । କେତେକ ଅଜ୍ଞାତ ସ୍ମୃତି ପଛରେ ପକାଇ ସେ ଆସିଛି । ଜମିଜମା ଘର କ୍ଷେତ ଦାନ୍ତିକୁ ଟେଙ୍ଗ୍ରୁ ହାତରେ ଜମା ଦେଇ ଦେଇଛି । ଏବେ ବିଶେଷ ଦୃଷ୍ଟି କଥା ସେ ବୁଝିପାରେ ନାହିଁ । ଭାଗ ଗୃହରୁ ଯାହା ପାଏ ନେଇଆସେ ।

ସମରୁ ସରକାରୀ ହାଇସ୍କୁଲର ଛାତ୍ର । ଦହଲୁ ବ୍ରାହ୍ମଣମେର ପଞ୍ଚାୟତ ସମିତି ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପଞ୍ଚମ ଶ୍ରେଣୀ ଛାତ୍ର । ସମରୁ ନିୟମିତ ତା' ପଢ଼ାପଢ଼ିରେ । ଦହଲୁ ସାଙ୍ଗ ଦୋଷରେ ପଡ଼ି ଯାଇଛି । ମଦନ ଓ ସୁମାନୀ ଯେ ଶ୍ରମିକ । ଘରୁ ସକାଳରୁ ବାହାରି ଯାଆନ୍ତି । ତେଣୁ ଏମାନେ ଘରେ କ'ଣ କରନ୍ତି, କେତେ ସମୟ ପଢ଼ି ବସନ୍ତି ଜଣା ପଡ଼େନାହିଁ । ସମରୁ ଦହଲୁକୁ ଯେତେ ମନା କଲେ ବି ତା' କଥା ଶୁଣେନାହିଁ । ତାହା ସମରୁ ବେଶି ବିରକ୍ତ ହୁଏ । ଦଫାଇରେ ତା' ପରି ପିଲାଙ୍କ ସଂଖ୍ୟା କମ୍ ନୁହେଁ । ସାଙ୍ଗ ଦୋଷରୁ ମୁକୁଳାଇବା ସମ୍ଭବ ହେଉନାହିଁ । ନୂଆ ହୋଇ ଆସିଛି । କେତେ ପ୍ରକାର ସାଙ୍ଗ ପାଇ ଗଲାଣି । ଘର ସାମନାରେ ଗାଳି ଖେଳେ । ଗୁରୁଟାକୁ ଗାଳି, କାଟପଡ଼ି ପକାଇଦିଏ । ତା' ପ୍ରତି ପ୍ରମାଦ ଆସି ଯାଉଥିଲା । କେବେ କେବେ ବାପାଙ୍କ ପାକେଟ ଖାଲି କରିଦେବାର ନଜିର ମିଳେ । ଯଉଥିପାଇଁ ଖାଦାନରେ ବରି ଇଟିଲିବାଲା ପାଖରେ ସେ ଅପଦସ୍ତ ହୁଏ । ଖାଇସାରି ଦେଖେ ପାକେଟରେ ପଇସା ନାହିଁରୁ ଜାଣେ ଦହଲୁ ହିଁ ହାତ ମାରି ଦେଇଛି । ଉଧାରି ରହିଯାଏ-ଉନକପାଇଁ । ଧରିବନ୍ଧା ଟିଉସନର ବ୍ୟବସ୍ଥା ମଦନ ପକ୍ଷେ ସମ୍ଭବ ନୁହେଁ । ଶ୍ରମିକ ଅଭିଭାବକଙ୍କ ପକ୍ଷେ ଯେତେଟା ସମ୍ଭବ ନ ଥିଲା ଓ ସକ୍ଷମ ନ ଥିଲା ମଧ୍ୟ ମଦନ ପାଇଁ ।

ସୁମାନୀର ଦହଲୁ ଗେହ୍ଲା ପୁଅ । ସେ ତାକୁ କିଛି କହେନାହିଁ । ବରଂ କହେ ଖରାପ କାମ, ଖରାପ ସାଙ୍ଗ ନ ହେବାକୁ । କାଲିଠୁଁ ପଢ଼ିବାକୁ ବସିବ । ନୂଆ କାମିଜ ଆଣି ଦେବ । କେତେ ଶ୍ରଦ୍ଧାରେ ଆଠ ଅଣିଟିଏ ତା' ପାଖକୁ ବଢ଼ାଇ ଦିଏ ସୁମାନୀ । ଦହଲୁ ମାଆର ବ୍ୟଥା ବୁଝେ ସିନା । ଦରଦ ନ ଥାଏ । ରାତିଟା ଶୋଇଯାଏ । ସମରୁ ଦୀର୍ଘ ରାତି ଯାଏ ତା' ପାଠ କାମ

କରେ । ଦିନେ ଦିନେ ରାତିରେ ମଦନ ଓ ସୁମାନୀ ଭିତରେ ସାହି ପଡ଼ିଶାଙ୍କ ଚାଲିଚଳଣି, ଝାଡାନରେ କ'ଣ ଦୁର୍ଘଟଣା ଘଟିଲି କଥା ପଡ଼େ । ମଦନ ଦେହରେ ରାଗିଥିଲେ ନେଇ ଘମିଦିଏ ସୁମାନୀ । ମଦନ ନିଦେଇଯାଏ କ୍ଲାନ୍ତିରେ । ଘରକଥା ବେଶି ବୁଝିପାରେ ନାହିଁ ସେ । ବୁଝେ ଯଦି ସୁମାନୀ···।

ଭୁବନ ବଢ଼ୁଥିଲ ବଙ୍ଗଳାରୁ ଫେରୁ ଫେରୁ ସାଧାରଣତଃ ଡେରି ହୁଏ । ବାବୁମାନଙ୍କ କଥା ବୁଝି ବୁଝି କମ୍ ଡେରି ହୁଏନାହିଁ । ବଙ୍ଗଳା ନିକଟରେ କ୍ଲବ । ଅଫିସର ବାବୁଆଣୀମାନେ ଚିତ୍ତ ବିନୋଦନ ପାଇଁ ଯାଆନ୍ତି । ଭୁବନ ସେମାନଙ୍କ ସେବା କରେ । ଅବଶ୍ୟ ତୁଳସୀକୁ ସେଠିକି ଚିବା ସେ କେବେ ଦେଖି-ନାହିଁ । କେବେ କେବେ ଡ୍ୟାନ୍ସ ସଙ୍ଗୀତ ଆସର ଜମେ । ଖିଆପିଆ ଖାଦ୍ୟମଦ ହୁଏ । ମଦନ ଯାହା ସୁହେଁ ପାଇଯାଏ । କିଛି ମିଳିଯାଏ ତାକୁ । ତେଣୁ ତା' ପିଠିରେ ପଡ଼ିଥିବା ଇସ୍‌ମାଇଲ ଖାଁକୁ ସେ ଖେକ୍‌ଠୋକ ମନାକରେ : ଇଧର ମତ ଆଓ ଖାଁ ସାହେବ । ଦାରୁ ହାମେ ତୁ ବାଦିଆ ହେ । ଦଫାଇ ଅନ୍ଦର କୁଛଆ କାରବାର କରିବ ନାହିଁ । ତା' ମା' ତୁଳସୀ ଘରକୁ ବୁଲି ଆସିଲେ ଏସବୁ ଦେଖି କ'ଣ କହିବ । ତେଣୁ ନିଜେ ଇସ୍‌ମାଇଲର ପରିସରରୁ ଭୁବନ ଦୁରି ରହିଛି । ନିଛକ ରାସ୍ତାର ମଣିଷ ହୋଇ ସେ ରହିବ । ବାବୁମାନଙ୍କ ସେବା କରିବ ।

ସମରୁ ସମର ଶିକ୍ଷାର୍ଥୀ ବାହିନୀରେ ଯୋଗଦିଏ । ଗ୍ରୁପ ମେଳରେ ପିକ୍‌ନିକ ଯାଇଛି । ବିଦ୍ୟାଳୟର ଆନୁସଙ୍ଗିକ କାର୍ଯ୍ୟକ୍ରମରେ ଭାଗ ନିଏ । କୃତୀ ଛାତ୍ର ଭାବେ ଶିକ୍ଷକମାନଙ୍କ ପ୍ରଶଂସା ପାଏ । ବୋର୍ଡ଼ ପରୀକ୍ଷାରେ ସେ ଯେଉଁଦିନ ପ୍ରଥମ ଶ୍ରେଣୀରେ ପାଶ୍ କଲି, ସୁମାନୀ ଓ ମଦନ ତାକୁ କେତେ ଆପଣାର କରି ନେଇଛନ୍ତି । କଲେଜ ପଢ଼ିବା ପାଇଁ ଶ୍ରମଶକ୍ତି କଲେଜ ଯିବ । ଶିକ୍ଷାର ପରିସର ତା' ପାଇଁ ବ୍ୟାପକ ରହିଛି । ସେ ବି. ଏ. ପରେ ପର୍ସୋନାଲ ମେନେଜମେଣ୍ଟ କରିବ । ଶ୍ରମିକ ମଙ୍ଗଳ ଅଫିସର ହେବାର ଲକ୍ଷ୍ୟ ନେଇଛି ସମରଙ୍କ । ନିଜକୁ ନିଜେ ନ ଗଢ଼ିଲେ ସଭ୍ୟତାର ଘୋଡ଼ା ଦୌଡ଼ରେ ସେ ପଛରେ ରହିଯିବ ।

ସମରୁ ଇତିହାସ ପୃଷ୍ଠା ବେଶ୍ ଅନୁଧ୍ୟାନ କରିଛି । ସେ ପରିବାରର ତୃତୀୟ ପୀଢ଼ି ଲୋକ । ବାପାଙ୍କୁ ଏ କଥାଟା ବୁଝାଉ ଥିଲି । ଯଦିଓ ମଦନ ଏପରି ଇତିହାସ ଜାଣେନାହିଁ । ବିଶ୍ୱାସ କରିଗଲି ସମରୁକୁ ।

ସମରୁଙ୍କ ଉପସ୍ଥାପନା ଥିଲି ଦହଲୁ ଦ୍ୱାରା ପାଠ ହେବନାହିଁ । ବୀରମିତ୍ରପୁର ପରିବେଶ ତାକୁ ନଷ୍ଟ କରିଦେବ । ଦଫାଇରେ ପ୍ରତି ଘରେ ଭିଡିଓ ଦେଖା ଯାଉଛି । ବାପ ପୁଅ ଏକାଠି ଚଣା ଖେନା ଖାଇଲେ । ମହୁଲି ଦାରୁ ଖାଇ ଦେହକୁ ଜାଳିଲେ । ମହୁଲିର ଶରବ୍ୟ ଗୋଟିଏ ପରିବାର ବାଦ୍ ଗଲେ

ନାହିଁ । ଚେତନାର ଅଭାବ ରହିଯାଉଛି ପ୍ରତ୍ୟେକଙ୍କ ଭିତରେ । ଶ୍ରମ ପରେ ବିରାଟ କ୍ଳାନ୍ତି ଆସେ । କ୍ଳାନ୍ତି ବିନୋଦନ ପାଇଁ ବିଶ୍ରାମ ଏକାନ୍ତ ଆବଶ୍ୟକ; କିନ୍ତୁ ମାଦକ ଦ୍ରବ୍ୟ ସେବନ ସନ୍ଧିତ ବିଶ୍ରାମ ସ୍ୱାସ୍ଥ୍ୟପକ୍ଷେ ସମ୍ପୂର୍ଣ୍ଣ କ୍ଷତିକାରକ । କିଏ ବୁଝୁଛି ଯେ ସ୍ୱାସ୍ଥ୍ୟ ସଚେତନ କଥା । କେତୋଟି ପରିବାର ଏ ଚକ୍ରାଧାରରେ ସଜାଗ ରହିଛନ୍ତି, ସାମିଲ ହେଉଛନ୍ତି ।

ସାତମତ ଦାରୁ ସେବନ ଆର୍ଥିକ ଦୁର୍ଗତିର କାରଣ ହୋଇ ଯାଇଛି । ଏଠି ଯେ ଭିନ୍ନ ଅପସଂସ୍କୃତି ମୁଣ୍ଡ ଟେକାଉଛି । ହିନ୍ଦୁ, ଇସ୍‌ଲାମ, ଖ୍ରୀଷ୍ଟାନ ଧର୍ମର ପ୍ରଭାବ ସମାନ୍ତରାଳରେ ରହିଛି । ଅନ୍ୟୂନ ଛଅଶ ହଜାର ଲୋକ ସଂଖ୍ୟାରୁ ସମାନ ଧର୍ମାବଲମ୍ବୀ ଶ୍ରମିକ ପରିବାର ଅଛନ୍ତି । ସୀମାନ୍ତ ଅଞ୍ଚଳ ହେତୁ ବିହାର, ବଙ୍ଗ, ତାମିଲଙ୍କ ପ୍ରଭାବ କମିନାହିଁ । ବ୍ୟବସାୟୀ ଗୋଷ୍ଠୀ ବିହାରୀ ଓ ମାରୱାଡ଼ିଙ୍କ ସଂଖ୍ୟା ସର୍ବାଧିକ । ଶ୍ରମିକ ଶୋଷଣ ବିଶେଷ ପରିଲକ୍ଷିତ ହୁଏ । ସର୍ବାଧିକ ଦଶ ପଇସା ମାସିକ ସୁଧ କାରବାର ସମଗ୍ର ଶ୍ରମିକ ପରିବାରଙ୍କୁ ନଷ୍ଟ ଓ ଧ୍ୱଂସ ମୁଖକୁ ଟାଣି ନେଉଛି । ଶ୍ରମିକ ଶୋଷିତ କିନ୍ତୁ ସଚେତନ ନୁହେଁ । ଋଣ ଗ୍ରହୀତା ଓ ଋଣ ଦାତାଙ୍କ ସମ୍ପର୍କ ଯଦିଓ ତିକ୍ତ ନୁହେଁ ତଥା ସୁଧ ଅସୁଲର ଜୁଲୁମ ସଂଗ୍ରହ ଚିନ୍ତାର ବିଷୟ । ସାପ୍ତାହିକ ପଗାର ସମୟରେ ଶ୍ରମିକ ସମସ୍ତ ପ୍ରାପ୍ୟ ଧରାଇ ଦିଏ ଋଣ ଦାତାଙ୍କୁ । ସୁଧ ସେ କାଟିରଖେ । ଯାହା ରହେ ମଦଭାଟି ଓ ରେସନ ପଛରେ ନିଅଣ୍ଟ । ଜୀବନଟା ବଞ୍ଚାଇ ଚଳିବା ବଡ଼ ମୁସ୍କିଲ ହୁଏ । ନିଅଣ୍ଟିଆ ପରିସ୍ଥିତିରେ ଉଧେଇବା ମୁସ୍କିଲ ପରିସ୍ଥିତି ଆଣେ । ଶ୍ରମିକ ସଂଗଠନ ଶ୍ରମିକ ମଙ୍ଗଳ ନିମନ୍ତେ ବୋନସ ଦାବୀ ଉପସ୍ଥାପନ ପରି ଏପରି ଚେତନା ଆଣିବାରେ କୁଣ୍ଠାବୋଧ କାହିଁକି ? ସୁଧର ଜୁଲୁମ, ମଦର ଯୁଆ, ଶିକ୍ଷା ପ୍ରତି ସଚେତନତା ଆଣିବା ଶ୍ରମିକ ସଂଗଠନର ନୈତିକ କର୍ତ୍ତବ୍ୟ ନୁହେଁ କି ? ଧ୍ୱଂସାତ୍ମକ ପନ୍ଥାରୁ ବିରତ ରହି ସଂସ୍କାର କାର୍ଯ୍ୟପନ୍ଥା ଗ୍ରହଣ କରିବାରେ କ୍ଷତି କ'ଣ ? ଶ୍ରମିକ ଏକ ସୁସ୍ଥ ଜୀବନ ବିତାଉ ଯଦି ସଂଗଠନ ନ ଚାହେଁ ତେବେ ଏକତ୍ରିତ ହେବା କ'ଣ କମ୍ପାନୀ ବିରୋଧୀ ନୁହେଁ ତ ? କମ୍ପାନୀ ଓ ଶ୍ରମିକଙ୍କ ମଧ୍ୟବର୍ତ୍ତୀ ପର୍ଯ୍ୟାୟ ଶ୍ରମିକ ସଂଗଠନ । ଯାହା ଶ୍ରମିକର ଆର୍ଥିକ, ସାମାଜିକ, ନୈତିକତା ଉନ୍ନତି ଆଣେ । ତଦ୍‌ଭିନ୍ନ ସଂଗଠନର ଭୂମିକା ନିର୍ଦ୍ଧାରଣ ଶ୍ରମିକମାନଙ୍କୁ ଦୁର୍ବଳ, ରୋଗଗ୍ରସ୍ତ କରିଦେବ ନାହିଁ ତ । ଶ୍ରମିକର ନୈତିକ ବଳ ଭାଙ୍ଗିଗଲେ ଉତ୍ପାଦନ ହ୍ରାସ ପାଏ । ତେଣୁ ସର୍ବାଗ୍ରେ ଶ୍ରମିକକୁ ନୈତିକ ରୂପ ପକାଇ ଋଣ ମୁକ୍ତିର ଦ୍ୱାର ଖୋଲୁ । ସୁଧଖୋର ବ୍ୟବସାୟୀ ଜୋର ଜବରଦସ୍ତ ବନ୍ଦ କରାଯାଉ । ଶ୍ରମିକ ମୁହଁରେ ହସ ଆସୁ, ଉତ୍ପାଦନ ବଢ଼ୁ । ପ୍ରାପ୍ୟ ପ୍ରତି ତା'ର ବିଶ୍ୱାସ ବଢ଼ୁ । ଶ୍ରମିକ ସ୍ୱାବଲମ୍ବୀ ହେଉ ଯାହା ଶ୍ରମିକ ସଂଗଠନ ଓ ଶ୍ରମମଙ୍ଗଳ ବାବୁମାନଙ୍କ କର୍ତ୍ତବ୍ୟର ଲକ୍ଷ୍ମଣରେଖା ପୃଷ୍ଠା

ହେଉ । କେବଳ ଅଭାବ, ଧାନ୍ଧା ଉପସ୍ଥାପନାର ମାଧ୍ୟମ ଫଳବତୀ ହେଉଥିଲେ ବି ସମୂହ ସ୍ୱାର୍ଥ ପ୍ରତି ଆତ୍ମସ୍ଥ ନ ହେଉ । ସାଧାରଣ ଜୀବନ ଯାପନ ବିପନ୍ନ ହୋଇ-ଗଲାଣି । ନେତୃତ୍ୱରେ ଯାହାର ସମାଧାନ ନାହିଁ ଅଛି ଜାଗରଣରେ ଚିନ୍ତନ ପ୍ରତିଷ୍ଠାରେ ବା ବ୍ୟକ୍ତି ଜୀବନର ପରିବର୍ତ୍ତନରେ । ସୁଧଖୋର ଦଲାଲମାନଙ୍କୁ ସଫା କରାଯାଉ । ମଦ ମୁଖୁର ମୋହକୁ ଗ୍ରାସ କରି ରଖିଛି, ସୁଧ ମଧ୍ୟ ସମଗ୍ର ଶାନ୍ତ ପାରିବାରିକ ଜୀବନ ଯାତାକୁ ଗ୍ରାସ କରି ଦେଉଛି । ଏହି ସ୍ୱସ୍ଥ ନେଉଳକୁ ବାରଣ କରାଯାଉ ।

ବଜାର ମଧ୍ୟରେ ଜିନିଷପତ୍ରର ଭାଉ ନାହିଁ । ପରିସ୍ଥିତି ଦେଖି ଲୁଗାପଟାର ଦର ହୁଏ । ମାତାଲ ଶ୍ରମିକ କେତେ ବେଶି ଅଧିକ ଠକେଇ ହେଲା ବ୍ୟବସାୟିକ ଗୋଷ୍ଠୀ ତାହା ପରଖି ଦେଖନ୍ତି । ଦେଶୀ ସଂଗ୍ରହ ବଡ଼ ବିଚିତ୍ର ବି । ଶ୍ରମିକଗଣ ଅବଶ୍ୟ ଅନୁଭବ କରନ୍ତି ନାହିଁ ଯେ ନିଜର କିଛି ଆତ୍ମସମ୍ମାନବୋଧ ରହିଛି । ଅଭାବ ଓ ତାଡ଼ନାର ସଙ୍ଘାତରେ ସ୍ୱାଭିମାନ ନ ଥାଏ । ବାଟେ, ରାସ୍ତାରେ ଯହିଁଠି ଋଣ ଦାତା ପଗାର ପାଉଣା ପାଇବା କଥା ପଛରେ । ପଗାର ପାଇଲେ ଦୋକାନୀଙ୍କ ଟଙ୍କା ଦେଇ ଦେବାକୁ ପୁନଃ ପ୍ରତିଶ୍ରୁତି ଦିଏ । ଏଥିପାଇଁ ସଚେତନତାହୀନ ଶ୍ରମିକ ଅପମାନବୋଧ କରେନାହିଁ । ବରଂ ବର୍ଷକୁ ସର୍ବାଧିକ ଶହେ କୋଡ଼ିଏ ଶତକଡ଼ା ସୁଧ ଦେଇ ଋଣ ବଜାରରେ ବନ୍ଦୀ ହୋଇଯାଏ । କେଉଁ କର୍ତ୍ତୃପକ୍ଷ ଏହା ସମାଧାନ କରିବେ ମଦନ ପରି ସଚେତନ ଶ୍ରମିକ ଚିନ୍ତାକରେ ସମାଧାନର ରାସ୍ତା ପାଏନାହିଁ ।

ଅପରିଷ୍କୃତର ଗନ୍ତାଘର ଖାରମିଡପୁର । ଭାଷାର ସଂଯମତା ନାହିଁ । ଓଡ଼ିଆ, ସାଦରୀ, ବଙ୍ଗାଳୀ ଭାଷାର ପ୍ରଭାବ ଯଥେଷ୍ଟ । ଜନ ସମ୍ପର୍କ ଓ ଶିକ୍ଷିତ ପରିବେଶ ଭୂଲୁଣ୍ଠିତ । କେହି କାହାରିକୁ ସମ୍ମାନ ଦେବାକୁ କୁଣ୍ଠାବୋଧ କରନ୍ତି । ସମଗ୍ର ବାୟୁମଣ୍ଡଳରେ ସମ୍ବୋଧନରେ ବ୍ୟତିକ୍ରମ ଆସିଛି । ଶ୍ରମିକ ତା'ର ଉପରିସ୍ଥ ଅଫିସର, ଛାତ୍ର ତା'ର ଶିକ୍ଷକଙ୍କ ସହିତ କେଉଁ ଏକ ଆଦିମ ସମ୍ବୋଧନର ଆଶ୍ରୟ ନିଏ, ବାକ୍ୟ ବ୍ୟବହାର କରେ ଯାହା ମୋଟେ ସହାନୁଭୂତି ଶୂନ୍ୟ ରହିଯାଏ । ସ୍ଖଳିତ ଭାଷା ପାଇଁ ଶିକ୍ଷିତ ଓ ଶ୍ରମିକ ଭିତରେ ଆଦାନ ପ୍ରଦାନ ବାକ୍ୟ ବିନିମୟ ଆତ୍ମୀୟତା ଆଣିପାରେ ନାହିଁ । ଏହା ବିଂଶ ଶତାବ୍ଦୀର ଶେଷ ଭାଗରେ ହୁଏତ ଭାଷାର ଅପଭ୍ରଂଶ କୁହାଯାଇ ନ ପାରେ । ଉଦାହରଣ ଦିଆଯାଇ ପାରେ : ଆପଣ/ତୁମେ କାହିଁ ଯାଉଥିଲ, ଆଜ୍ଞା ଡାକୁଥିଲ । ଏସବୁ କି ଭାଷା ?? ତେଣୁ ଉଭୟର ବିନିଯୋଗ ଅସମ୍ଭାବନା ଭିତରେ ଗତି କରୁଛି । କେହି କାହାରି ପାଇଁ ପ୍ରଯୁକ୍ତ ବା ପ୍ରାର୍ଥନୀୟ ନୁହେଁ । ଭାଷା ଭାବର ପ୍ରକାଶ ଭଙ୍ଗୀ ଏଠି ହୋଇନାହିଁ । ତେଣୁ ସମସ୍ତେ ବିଶେଷ ଚିନ୍ତିତ ରହେ । ନିରାକରଣ ପ୍ରତି ପ୍ରଦୂଷିତ ବ୍ୟକ୍ତି ଜୀବନ

· ପ୍ରତି ପରିବର୍ତ୍ତନ ଆଶା ପୋଷଣ କରେ ମାତ୍ର । ବ୍ୟକ୍ତି, ଧର୍ମର ସମନ୍ୱୟ ସେ ଦେଖେ ମାତ୍ର ଲୋପାର ସ୍ଖଳନ ପ୍ରତି ବିପଦ ସୃଷ୍ଟିଥାଏ ତାପାଙ୍କୁ । ସର୍ବ୍ୱୋଣୀ ସାଙ୍ଗମାନଙ୍କୁ । ସେ ଜାଣିଛି ଏଠି ଜାତି ମୁଣ୍ଡ ଟେକୁନାହିଁ । ମଣିଷ ସମାଜ ମୁଣ୍ଡ ଟେକୁଛି । ଯାହା ଏକ ଶୁଭ ସୂଚନା; ମାତ୍ର ବ୍ୟକ୍ତି ନିଜେ ନିଜ ବ୍ୟୁହରେ ଅସ୍ଥିର ଯେତେବେଳେ, ସେ ଯେ ଦଶ ପାଇଁ ଉପଯୁକ୍ତ ହେବ କେତେବେଳେ ??

ଆସିଯାଉ ପର୍ବ-ପର୍ବାଣୀ କଥା । ଚୈତପର୍ବ, ରଥଯାତ୍ରା, ନୂଆଖାଇ, ଶ୍ରାବଣ ପୂର୍ଣ୍ଣିମା, ଦଶହରା, ଭାଇଜାଉନ୍ତିଆ, ମହରମ, ବଡ଼ଦିନ ଯେତି ସମସ୍ତଙ୍କୁ ପର୍ବମୁଖର କରେ କିନ୍ତୁ ବିଚିତ୍ର ଏ ସମାବେଶ ମଧ୍ୟରେ ସଂସ୍କୃତି ନିଜକୁ ନିଜେ ଦଳି ଚକଟି ଯିବାର ଦେଖାଯାଏ । ପର୍ବ ଦିନର ପବିତ୍ର ଭାବ ଆଣେ । ଧର୍ମ ଧାରଣା ପ୍ରତି ବ୍ୟକ୍ତି ସଚେତନ ରହେ । କିନ୍ତୁ ଦେଖାମାଏ ରଥଯାତ୍ରା, ଶ୍ରାବଣ ପୂର୍ଣ୍ଣିମା, ନୂଆଖାଇ ପରି ପର୍ବରେ ମାଂସ, ମଦର ଆହାରକୁ ଅଗ୍ରାଧିକାର ଦିଆଯାଏ । ଯାହା ଓଡ଼ିଶାର ପାରମ୍ପରିକ ସଂସ୍କୃତି ନୁହେଁ । ମାଂସ ଖାଇବେ, ମଦ ପିଇବେ—ରଥ ଦାଣ୍ଡରେ ଉପସ୍ଥିତ ହେବେ । ନୂଆଖାଇ ଯଦିଓ ପଶ୍ଚିମ ଓଡ଼ିଶାର ମୁଖ୍ୟ ପର୍ବ କିନ୍ତୁ ନବାନ୍ନ ଯେତେ ଗୁରୁତ୍ୱ ନୁହେଁ—ଗୁରୁତ୍ୱ ସେ ଦିନର ମାଂସ ଭକ୍ଷଣ, ମଦ୍ୟପାନ । ନିଷିଦ୍ଧର କାରଣ ନାହିଁ, ବାରଣ ନାହିଁ । କାହାର ପ୍ରତି କାହାରର କର୍ତ୍ତୃତ୍ୱ ନାହିଁ ।

ଭାଷା ପରମ୍ପରା ଲୁଣ୍ଠିତ ହେଉଥିବାବେଳେ ଶ୍ରମିକର ଜନଜୀବନ ଉପେକ୍ଷିତ ହୋଇ ଯାଉଛି । ପ୍ରକୃତ ସ୍ଥାନୀୟ ଅଧିବାସୀ ସଂଖ୍ୟା ଚିହ୍ନଟ କରାଗଲେ ଅତି ନଗଣ୍ୟ ହେବେ । କୃଷିକାର୍ଯ୍ୟ ଯଦିଓ ମୋଟେ ନାହିଁ । ଜୁଆ, ସଟ୍ଟା, କାଟପତି ଖେଳ ଡଗରେ ଡଗରେ ଦେଖାଯାଏ । ଯାହା ଯୁବ ପ୍ରବାହକୁ ସୀମିତ ଚିନ୍ତାଧାରା ଭିତରେ ଘୂଣ ଖାଇ ଦେବାକୁ ସୁଯୋଗ ଦିଆ ଯାଉଛି । ଦଙ୍ଗାଇ ସାହି ସାହିରେ କୁସୁନା ବନ୍ଦୀ ଗୃହ ଛି । ନିବାରଣ ନାହିଁ । ଧର୍ତ୍ତବ୍ୟ ନାହିଁ । ନିବାରଣର କାରଣ ନାହିଁ ବୋଧେ ??

ଅନ୍ୟ ଏକ ଅପସଂସ୍କୃତିର ଉଦାହରଣ ନିଆଯିବା ଉଚିତ । ବିବାହର ପରମ୍ପରା ଗତାନୁଗତିକ ଜନ ଜୀବନର ନିଦ୍ରାଭଙ୍ଗ କରିଛି । ସମାଜ ବ୍ୟବସ୍ଥାରେ ଯୌତୁକ ବ୍ୟାଧି ଗ୍ରେକଛି । ମୁଣ୍ଡ ଟେକଛି ଗାନ୍ଧର୍ବ ବିବାହ ବା ଉଧୁଲିଆ ରୂକୁ, ପରି ବିବାହ ପରିସ୍ଥିତି । ଦଙ୍ଗେଇ ସବୁ ସୈନ୍ୟ ଗ୍ରୁଡ଼ଣୀ ବା ଶଙ୍ଖ୍ୟାକ କେମ୍ପରି । ବସାଘର ଯେ ଶ୍ରମିକମାନଙ୍କ ପାଇଁ ଗୋଟିଏ କୋଠରି ମାତ୍ର । ତାହାରେ ଖରାଦିନେ ଖଟପାରି ଶୋଇବାକୁ ସ୍ଥାନ ହୁଏନାହିଁ । ବହୁକୁଟୁମ୍ବୀ ପରିବାର ସବୁ

ବାହାରେ, କୋଠଘଟାରେ ଦରସିଖା ପଡ଼ି ରହନ୍ତି । କେତେଗୁଡ଼ାଏ ପରିସ୍ଥିତି ସେମାନଙ୍କୁ ବୋଧେ ବାଧ୍ୟକରେ, ଗାନ୍ଧର୍ବ ବିବାହ । ଦିଫେଇ ଦିଫେଇ ମଧ୍ୟରେ ବିବାହ ସମ୍ପର୍କ ରଖନ୍ତି । ବରଯାତ୍ରୀଙ୍କ ସଂଖ୍ୟା କମ । ଜାତି ବର୍ଣ୍ଣ ଭାବନାରେ କେବେ ଆବେଶ ନ ହୋଇ ବିବାହ କରିଯାନ୍ତି । ଯାହା ଯୌତୁକ ସମସ୍ୟାକୁ ଲାଘବ କରାଏ ।

ନିଜ ଗୋଡ଼ରେ ଛିଡ଼ା ହେବାକୁ ସକ୍ଷମ ହୁଅନ୍ତି ସତ । କିନ୍ତୁ ସମାଜ ଧର୍ମ ବର୍ଣ୍ଣ ସାମଗ୍ରିକ ଭାବେ ଲୁଣ୍ଠିତ ହେଉଥିବା ଜଣାଯାଏ । ତାହା ପରିସ୍ଥିତିକୁ ବିପଦ ଆଣୁ ନ ଥିଲେ ବି ଏବର ଯୁବ ସମାଜ ନୂତନ ସମାଜ ଗଢ଼ୁଥିବା ସ୍ୱାଗତ-ଯୋଗ୍ୟ ହେଲେ ବି ନିଜର ସ୍ଥିତି ବଜାୟ ରଖିବାରେ ସକ୍ଷମ ନୁହନ୍ତି । ଶ୍ରମିକ ଆନ୍ଦୋଳନର ଗତି ଧିମେଇ ଯାଏ । ଗୋଟିଏ ଛୋଟିଆ ପ୍ରାଦେଶିକ ମନୋଭାବ ଭିତରେ ରହି ଯାଉଛି ବୀରମିତ୍ରପୁର । ଶିକ୍ଷାର ଜାଗରଣ ନାହିଁ, ସଂସ୍କୃତିର ବିକାଶ ନାହିଁ, ଚେତନାର ପରିବର୍ତ୍ତନ ନ ଥିବା ସତ୍ତ୍ୱେ ବ୍ୟକ୍ତିତ୍ୱ ନଷ୍ଟ ହୋଇ ପଳାୟନପନ୍ଥୀ ହୋଇ ଯାଉଛି । ଯାହା ଶିକ୍ଷକ ଶିକ୍ଷିତ ପରିବେଶ ପାଇଁ ଏକ ଶକ୍ତ ଧକ୍କା ହୋଇ ରହିଛି । ଶିକ୍ଷାର ସର୍ବାଙ୍ଗୀନ ବିକାଶ ସମ୍ଭବ ହେଉନାହିଁ । ଶିକ୍ଷାର ଅଧୋଗତି ଅଭିଭାବକମାନଙ୍କ ଚେତନାଶୂନ୍ୟ କର୍ତ୍ତବ୍ୟ ପାଇଁ ସନ୍ତାନ ସନ୍ତତିଗଣ ନିଜକୁ ଅସହାୟ ମନେ କରନ୍ତି । ନିଜ ଗୋଡ଼ରେ ଛିଡ଼ା ହେବାକୁ ବଳ ପାଆନ୍ତିନାହିଁ । ବା ପାଇବେ ନାହିଁ । ତାହାର ନିରାକରଣ କେବଳ ସମରୁ ତା' ବାପାଙ୍କୁ କହୁଥାଏ ।

ସମରୁ ତା' ବାପାଙ୍କୁ ଆଜି ଇତିହାସ ପୃଷ୍ଠାରୁ କିଛି ଉଦ୍ଧାର କରୁଥିଲି । ବିଷୟ ଥିଲା ଗୋଟିଏ ପରିବାର ସାଧାରଣରେ ପଞ୍ଚମ ବା ଚତୁର୍ଥ ପୀଢ଼ିରେ ନଷ୍ଟ ହୁଏ । ସ୍ଥାନାନ୍ତର ହୁଏ, ସାମାଜିକ ସ୍ଥିତି ହରାଏ । ଯାହା ଏପରି ଆଲୋଚନା କଲି ସେ । ପ୍ରଥମେ ବାବର ଓ ହୁମାୟୁନଙ୍କୁ ଆଫଗାନ ଗୁଣ୍ଡି ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରି ଏକ ସାମ୍ରାଜ୍ୟର ପରିକଳ୍ପନା କରିଥିଲେ । ଆକବର ଯୁବକାବସ୍ଥାରେ ଦେଖିଲେ ବାପାଙ୍କ ରାଜ୍ୟଜୟ କଳ୍ପନା ଅପୂରଣୀୟ ରହିଛି । ତେଣୁ ସେ ବାପାଙ୍କ ଇଚ୍ଛା ପୂରଣ କଲେ । ସିଂହାସନ ଆରୋହଣ ପରେ ପରେ ଓ ସମଗ୍ର ମୋଗଲ ସାମ୍ରାଜ୍ୟ ଭାରତକୁ ଅଧିକୃତ କଲି । ରାଜ୍ୟ ଜୟର ପରିସମାପ୍ତି ପରେ ପ୍ରଜାମଙ୍ଗଳ କାର୍ଯ୍ୟରେ ନିଜକୁ ବିନିଯୋଗ କଲେ । ଦୀନ-ଇ-ଲାହୀର ପ୍ରଚାର, କେତେକ ରାଜ ଦରବାରର ପ୍ରତିଷ୍ଠା, ଶାସନ ପାଇଁ ସୁବା ସବୁର ଗଠନ କଲେ । ଯାହା ଯୁବକ ଜାହାଙ୍ଗୀର ଦେଖୁଥିଲେ । ସେ ରାଜତ୍ୱ ଆରମ୍ଭରେ ଦେଖିଲେ ମୋଗଲ ଖଜାନା ଭରପୂର । ରାଜ୍ୟ ଜୟ କରିବାକୁ ନାହିଁ । ରାଜସ୍ୱର ଅସୁବିଧା ନାହିଁ । ତେଣୁ

ଅସମାପ୍ତ ଦିଲ୍ଲୀ ଦରବାର ରାଜପ୍ରାସାଦ, ଆଗ୍ରାଦୁର୍ଗ ସବୁର ନିର୍ମାଣରେ ସେ ଲାଗିଲେ । ଶାସନର ଶେଷଭାଗ ସେ ସାମ୍ପ୍ରଦାୟିକ ପରିବର୍ତ୍ତନ ସହ ନିଜକୁ ସାମାନ୍ୟ ଭୋଗ ବିଳାସ ଅଭ୍ୟାସରୁ ଆଣିଲେ । ତେଣୁ ତାଙ୍କ ପୁଅ ସାହାଜାହାନଙ୍କ ଯୁବପ୍ରାଣ ଦେଖିଲା ଜୀବନଟା ଭୋଗ ବିଳାସ ବ୍ୟତୀତ ଆଉ କିଛି ନୁହେଁ । ମମତାଜ ମହଲଙ୍କ ସମ୍ପର୍କ, ତାଜମହଲର ପରିକଳ୍ପନା ଭିତରେ ମସଗୁଲ ରହି ରାଜ ଖଜାନା ଶେଷ ହୋଇଥିଲା । ବିଶେଷ ଚର୍ଚ୍ଚିତ ଆଉରଙ୍ଗଜେବ ଦେଖିଲେ ତାଙ୍କ ପାଖରେ ଉପଭୋଗ୍ୟ କିଛି ନାହିଁ । ଅଛି ଯଦି ଭ୍ରାତୃ ବିବାଦ, ଅରାଜକତା, ଧର୍ମାନ୍ତର କରଣ; କିନ୍ତୁ ଆର୍ଥିକ ସାଧନ ନ ଥିଲା । ମୋଗଲ ସାମ୍ରାଜ୍ୟ ସେଇଠି ଧ୍ୱଂସ ପାଇଲା ।

ମୁଁ ଆଜ ବାରମିତ୍ରପୁର ଶ୍ରମିକମାନଙ୍କ ପାରିବାରିକ ଇତିହାସର ଚତୁର୍ଥ ପୀଢ଼ି କଥା କହୁଛି । ଭୋଗ ବିଳାସ ଭିତରେ ଜନଜୀବନ ରହିଛି । ତେଣୁ ଆଜିର ନିମନ୍ତିତ ସଂସ୍କୃତି ଅପସଂସ୍କୃତି ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ଇତିହାସର ପୁନରାବୃତ୍ତି ଏଠି ହେବ । ଆଉରଙ୍ଗଜେବ ପରି ଏ ଯୁବ ପୀଢ଼ି ଆଘାତ ନ ପାଇଲେ ପରିବର୍ତ୍ତନ ଆଶା କ୍ଷୀଣ । ଦିନେ ଇସ୍ପାତ ଶ୍ରମିକ ଏଠିକି ଆକୃଷ୍ଟ ହୋଇଥିଲା ଖଣି ଶ୍ରମିକମାନଙ୍କ ପ୍ରତି । ବହୁ ଶ୍ରମିକ ଏଠିକି ଆସି ଯାଇଥିଲେ । ଆଜ କିନ୍ତୁ ଠିକ୍ ତା'ର ଗତି ଓଲଟା । ଶ୍ରମିକ ନିଜେ ନିଜ ପରି-ଧିରେ ନିକ୍ଷେପିତ । ନିଜେ ନିଜକୁ ଲୁଣ୍ଠନ କରୁଛି । ଧନୀକ ଗୋଷ୍ଠୀ ନୁହେଁ ବା ଋଣ ଦାତା ନୁହେଁ । ଆଲୋକ ନ ଥିବା ଲୋକର ଗତି ଯେପରି ଶ୍ରମିକମାନଙ୍କ ଗତି ତା'ଠୁଁ ବଳି ପଡ଼ୁଛି । କେବଳ ପରିବର୍ତ୍ତନ ଓ ପ୍ରଗତି ଆବଶ୍ୟକ । ଚେତନାର ପରିବର୍ତ୍ତନ ଆସୁ । ନଚେତ୍ ଏ ଅପସଂସ୍କୃତି ଜନଜୀବନ ପ୍ରତି ବିପଦ ଆଣିଦେବ ।

ମଦନ ଗଣୁଥିଲା ତା' ପରିବାର ଏମିତ ପରିସ୍ଥିତିରୁ କିପରି ମୁକ୍ତ ପାଇବ, ବଞ୍ଚି ରହିବ ? ତଥାପି ବାହାଲୁ କଥାସବୁ ବୁଝୁନାହିଁ । ଦୂଷିତ ପରିବେଶର ସେ ଶିକାର ହୋଇ ଯାଇଛି । ଷ୍ଟୃତୀୟ ଥର ମାଟ୍ରିକ ପରୀକ୍ଷା ଦେବା ସତ୍ତ୍ୱେ ପାସ୍ କଲାନାହିଁ । ମଦନ ହୁଏତ ତାକୁ କୁହାପୁଛା କରି ଖଦାନରେ ରଖିଦେଇ ପାରିଥାନ୍ତା । ସାଧାରଣରେ ଚଳିବାର ଅସୁବିଧା ହୁଅନ୍ତା ନାହିଁ ।

କାଟପତି ଖେଳିବାରେ ସେ ବ୍ୟସ୍ତ । ସମରୁ ପାଖକୁ ଅନେକ ସମୟରେ ଯାଏ । ବୁହେଁ ଜଡ଼ଯାନ୍ତ ମହୁଲିର ଧୂଆଁଧାର ପ୍ରପାତରେ । କେବେ ଗାଳି ଖାଇଲେ ଘରୁ ତଡ଼ା ଖାଇଲେ ଭୁବନ ଘରେ ରହିଯାଏ । ସକାଳକୁ ସୁମାମା ଆସି ନେହୁରା ନେହୁରା ହୁଏ । ଘରକୁ ନିଏ । ସବୁବେଳେ ଟ୍ରେକ୍, ଡାମ୍ପର ଖଲାସୀ ମେଳରେ ସେ ଦଉଡ଼େ ଖଦାନ ପରେ ଖଦାନ । ରେଜା ପଛରେ ଲୁଙ୍ଗୁଲୁଙ୍ଗୁ

ହେବ । ଏଥିପାଇଁ ବହୁଥର ମଦନ ଅପମାନ ଶୁଣିଛି । ମଦନ ପାଇଁ ଦହଲୁ ଦୁର୍ଭାଗ୍ୟ ହୋଇ ଯାଇଛି । ତା'ର ଦୁର୍ବ୍ୟବହାର ପ୍ରତି ଏତେ ଘୃଣା କରେ ଯେ ସେ ତାକୁ କାଟି ଫିଙ୍ଗି ଦଅନ୍ତା । ପିଲ ଦଇଟା ପାଠ ପଢ଼ିବେ ବୋଲି ଘର ଉହ୍ନ ଗୁଡ଼ ଶ୍ରମିକ ହେଲା । ଜଣେ ସେଲ୍‌ର ପଦସ୍ଥ ଅଫିସର ହେବା ସ୍ଥଳେ ଏଇଟା ଟ୍ରକର ଖଲାସୀ ହେବ ବା ରିକ୍ସା ଚଳେଇବ ବୋଧେ । ଅନ୍ୟ ପାର୍ଶ୍ୱରେ ମୁଣ୍ଡ ଟେକି କଥା କହି ପାରେନାହିଁ । ସମ୍ପୂର୍ଣ୍ଣ ଉଡ଼ା ବଜାଖ ପାଲଟି ଯାଇଛି । ସୁମାନୀ ତାକୁ ବେଶି ଗେହ୍ଲା କରିଗଲା । ପରିବାର ପ୍ରତି ତା'ର ଯଥେଷ୍ଟ ଅବଦାନ ପାଇଁ କିଛି କହି ପାରେନାହିଁ । ସେ ବି ତାକୁ ରାସ୍ତାକୁ ଆଣି ପାରିଲା ନାହିଁ । ଅସ୍ଥାୟୀ ବାରବୁଲା ଜୀବନରେ ଛୁଆଙ୍କୁ ଗଢ଼ିବା ମଦନ ପାଇଁ ବଡ଼ କ୍ଷତିଜନକ ହେଲା ।

ଗେହ୍ଲୀ ନେ ପ୍ରଜ୍ଞା ବାବୁ ଘରେ କାମ କରେ । ସେ ନିଜକୁ ଏକରକମ ଗଢ଼ି ନେଇଛି । ତେଲ ହଳଦୀ ମାଖୁନାହିଁ । ଆଧୁନିକର ପ୍ରଲେପ ମାଖି ନେଇଛି । ଚୂଳ ସବୁ ବବକଟ କରି ଦେଇଛି ।

ଦହଲୁ ଏବେ କାହାରି ଡାମ୍ଫରର ଖଲାସୀ ଅଛି । ତୁଳସୀ ଘର ଆଗେ ଗେଟ୍ ପାଖରେ ଗେହ୍ଲୀ ଠିଆ ହୋଇଥିଲା । ହର୍ଣ୍ଣ ଦେଇ ସୂଚେଇ ଦେଲା ନିଜର ଉପସ୍ଥିତି । ଗେହ୍ଲୀ ହାତ ହଲେଇ ଦେଲା । ଦହଲୁ ମନଟା ଭରିଯାଇଛି । ସନ୍ଧ୍ୟାରେ ପୁଣି ଡେମ୍ଫର ଯାଇଛି ବନମୁଣ୍ଡା ରାସ୍ତାରେ । ଡ୍ରାଇଭର ସହିତ ଦହଲୁ ଗଲା ତାଙ୍କ ବସା ଘରକୁ । ସୁମାନୀ ଦୁହିଁଙ୍କୁ ଚା' ଜଳଖିଆ ଦେଇଛି । ମା' ପାଖରେ ଦହଲୁ ପଚିଶ ଟଙ୍କା ଜମା ଦେଲା । ପୁଅର କାର୍ଯ୍ୟକ୍ଷମତା ସୁମାନୀ ଦେଖିଛି । ତେଣୁ ସେ ମନେ ମନେ ଭାବେ ଦହଲୁ ବେଶି ପାଠ ନ ପଢ଼ିଲେ ବି ରୋଜଗାରିଆ ହୋଇଛି । ଦିନେ ତା' ପରିବାର ଚଳେଇ ନେବ । ରିଟାୟାର୍ଡ଼ ନେବା ପରେ କମ୍ପାନୀରୁ ପାଇବାକୁ ଥିବା ଟଙ୍କା ଦେଇଦେବ ଦହଲୁକୁ । ସେ ଡାମ୍ଫରଟିଏ କିଣିବ । ଗୁଡ଼ାଏ ଡାମ୍ଫର ପରେ କରିଯିବ ନାହିଁ ?? ମାଆ ମନର ଆତ୍ମସନ୍ତୋଷ ମନ ମନରେ ଜଣାଏ ସୁମାନୀ ।

ସ୍କୁଲ ସବୁର ଶିକ୍ଷକମାନଙ୍କ ସହିତ ଯେହେତୁ ଦହଲୁର ପରିଚୟ ଅଛି । ପିକ୍‌ନିକ୍ ପାର୍ଟିରେ ତା' ଡାମ୍ଫର ନେବାକୁ ସୁପାରିଶ ଅନୁରୋଧ କରିଥାଏ । ଖଣ୍ଡାଧାର, ବିମଲାଗଡ଼, କୋଇଡ଼ା, ଟେନ୍‌ସା, ଘୋଘର, ମନ୍ଦିରାଡେମ, ପିତାମହୁଲକୁ ବହୁବାର ବଣଭୋଜି ଯାଇଛି । ସେ ନିଜେ ଗୁରୁ ଗହଣରେ ରନ୍ଧାବଢ଼ାରେ ଲାଗିଯାଏ । ଗାଇଡ଼ର ଭୂମିକା ନିଏ । ଦେଖାଇ ଆଣେ

ଦର୍ଶନୀୟ ସ୍ଥାନ ସବୁ । ଐତିହାସିକ, ସାମାଜିକ ଚିତ୍ର ସବୁ ପ୍ରତି ସ୍ଥାନର ଚମତ୍କାର ଉପସ୍ଥାପନ କରେ ।

ଗେହ୍ଲୀ ବି ଥରେ ଯାଇଥିଲା ତା' ସହିତ । ତୁଳସୀ ନାନୀଙ୍କୁ ବହୁ ଅନୁରୋଧ କଲା ପରେ ଗେହ୍ଲୀ ଯିବାକୁ ସୁବିଧା ପାଇଛି । ଏଥିପାଇଁ ତାକୁ କମ କସରତ କରିବାକୁ ପଡିନାହିଁ । ପ୍ରଥମେ ସେ ଅଫିସରମାନଙ୍କ ମେମ ସାହେବାଣୀ ମାନଙ୍କୁ ଧରିଛି । ନୂଆ ବର୍ଷର ପିକ୍‌ନିକ ପାର୍ଟି ପ୍ରବର୍ତ୍ତାଇଛି । ଯଉ ପିକ୍‌ନିକ ପାର୍ଟିରେ ତୁଳସୀ ଓ ପ୍ରଜ୍ଞା ବାବୁ ଥିଲେ । ପରେ ଦାହିଲୁ ପ୍ରତି ତୁଳସୀଙ୍କ ଭିନ୍ନ ଧାରଣା ହେଲା । ନ ହେଲେ ବଡ଼ିଲା ଝିଅ ଗେହ୍ଲୀ ପକ୍ଷେ ଯିବା ମୋଟେ ସମ୍ଭବ ନ ଥିଲା । ସ୍ତ୍ରୀମାନଙ୍କ ସହିତ ମନ୍ଦିର ଭେଟ ଯାଇଥିଲା । ମାଡ଼ାମମାନେ ଅନୁରୋଧ କଲେ, ପାନବାଲା ବାବୁ ଗୀତଟା ଥରେ ଜମିଯାଉ । ଗେହ୍ଲୀ ଅବଶ୍ୟ ନାରାଜ ଥିଲା ଗାଇବାକୁ, ନାଚିବାକୁ । ଦାହିଲୁ ଯେତେବେଳେ ତାଳି ପିଟି ବିଭଙ୍ଗୀ ନାଚ ଦେଇଛି, ବାଧ ହୋଇ ଗେହ୍ଲୀ ଗୀତରେ ତାଳ ଦେଲା ଓ ଆରମ୍ଭରୁ ଗୀତଟା ହେବାକୁ ଅନୁରୋଧ କଲା । ଆସରଟା ବେଶ୍ ଜମିଗଲା । ଅବଶ୍ୟ ଗେହ୍ଲୀ ପ୍ରତି ଦାହିଲୁର ଜମା ଆକର୍ଷଣ ଜଣା ପଡ଼ୁ ନ ଥିଲା । କେବଳ ନୂତ ପ୍ରବାହର ସୂଚନା ଉଙ୍କି ମାରୁଥିଲା ଗେହ୍ଲୀ ଓ ଦାହିଲୁ ମଧ୍ୟରେ । ଯାହା ତୁଳସୀଙ୍କ ପାଇଁ ଚିନ୍ତାର ବିଷୟ ଥିଲା ।

ତୁଳସୀ ଚାହିଁଥିଲେ ଗେହ୍ଲୀର ବାହାଘର ଖୁବ୍ ଜାକଜମକରେ କରିବେ । ଯାହା ଭୁବନ ପାଇଁ ସକ୍ଷମ ନ ଥିଲା । ତୁଳସୀଙ୍କ ସାମାଜିକ ଅବଦାନ ରହିଛି । ଭଞ୍ଜ ଭବନ ପ୍ରତିଷ୍ଠା, ଜଗନ୍ନାଥ ମନ୍ଦିର ନିର୍ମାଣ, ସାଂସ୍କୃତିକ ପରିଷଦ ଗଠନ, ବିଭିନ୍ନ ଜୟନ୍ତୀ ସମାରୋହ, ଭଞ୍ଜ ସଙ୍ଗୀତ କଳା କେନ୍ଦ୍ରରେ ସଙ୍ଗୀତ ଶିକ୍ଷା ଆଦି ପ୍ରତି ଯଥେଷ୍ଟ ପ୍ରଚେଷ୍ଟା ରହିଛି । ଭବିଷ୍ୟତରେ ଗେହ୍ଲୀର ଘର ବସେଇବ ଏଇ ଚିନ୍ତାରେ ଗେହ୍ଲୀକୁ ସେ ଘରେ ରଖିନ୍ତି । ଘରର କାମ ଦାମ କରୁଥିଲା, ସୁମନ୍ତକୁ ସ୍କୁଲ ନିଆଅଣା କରେ । ଘର କାମଦାମ କରେ । ନିଜେ ତୁଳସୀ ସହିତ ଭଞ୍ଜ ଭବନ ଡେଲି ହାଟଲି ବଜାରରୁ ଗେହ୍ଲୀ ତରକାରି ପରି କିଣିଆଣେ । ବାବୁ ଘରମାନଙ୍କୁ ତୁଳସୀ ସହିତ ଯାଇଛି । ବଡ଼ ଘରର ଆଦବ କାଇଦା ତାକୁ ଜଣାଅଛି । ବୁଢ଼ୀ ମା' ତା'ର ଚାଲିଯିବା ଦିନରୁ ଏବେ ମୋଟେ ଘରକୁ ଯାଏନାହିଁ । ଭୁବନ ବି ତିବିରେ ବିଶେଷ ଦିନ ରହିଯାଏ । ଦଶାଇ ଘରଟା ସବୁବେଳେ ବନ୍ଦ ଥାଏ । ବରଂ ଦଶାଇରେ ବାସନ୍ତୀ ଦୁର୍ଗାପୂଜା ବେଳେ ଯୁବକମାନେ ପ୍ରସାଦ ଆଦି ତିଆରି କରନ୍ତି ଓ ତା' ବସା ଘରଟି ସପ୍ତାହେ ଖଣ୍ଡେ ସାର୍ବଜନୀନ ହୋଇପଡ଼େ । କାର୍ତ୍ତିକ ପୂର୍ଣ୍ଣିମୀ ଯାତ୍ରା ସମୟରେ ପ୍ରହରଧାରୀଗଣ

ଅବସ୍ଥାନ କରନ୍ତି । ସେମାନଙ୍କ ବିଶେଷ ବ୍ୟବସ୍ଥା ମେ କରି ଦେଇଥାଏ । କାର୍ତ୍ତିକ ଯାତ୍ରା ଯେ ସର୍ବସାଧାରଣ ଯାତ୍ରା କୋଲଡଫିଲ୍ଡରେ ଅନୁଷ୍ଠିତ ହୁଏ । ଯାହା ବର୍ଣ୍ଣ ଓ ଧର୍ମ ପ୍ରତି ବିଭେଦ ଆଣିପାରେ ନାହିଁ । ଛୁଆଁ ଅଛୁଆଁ ବହୁଦିନରୁ ଏହି ସବୁ ଦଫାଇ ଉଠାଇ ଦେଇଛନ୍ତିର ପ୍ରମାଣ ଦିଅନ୍ତି ଓ ମନୀଷ ସଂସ୍କୃତିକୁ ହିଁ ଏଠି ଅହୋରାତ୍ର ଯଜ୍ଞରେ ପ୍ରଚାର କରାଇଥାଏ । ନାମ ସଂକୀର୍ତ୍ତନ ସାର୍ବଜନୀନ ନାମ କରିଣକୁ ପ୍ରଚାର କରେ । ଠାକୁରଙ୍କ ଯେ କେନ୍ଦ୍ର, ସମସ୍ତେ ପ୍ରସାଦ ଭୋଗ ଦେଇଥାନ୍ତି ଓ ଅନ୍ନ ଭୋଗ ଗ୍ରହଣ କରିଥାନ୍ତି ।

ରବିବାର ଦିନଟାଯାକ ଦିହଲୁ ପୂରା ଦମ୍‌ରେ ଜୁଆ ଖେଳେ, କାଟପତି ଖେଳେ । ହାରେ ବହୁତ ଜିତେ ବି । ସେଦିନ ସାଙ୍ଗ ମେଳରେ କାଟପତି ଖେଳୁଥିଲା । ପୁଣି କୋଠା ଉପରେ, ଘରେ । କନେଷ୍ଟବଲଙ୍କ ଟର୍ଚ୍ଚ ଆଲୁଅ ତାଙ୍କ ଉପରେ ପଡ଼ୁଛି । ସମସ୍ତେ ଛୁ ଚମ୍ପଟ । ଦଉଡ଼ିବେ କୁଆଡେ । ଡେଇଁ ପଡ଼ିଲେ କୋଠା ଉପରୁ, ଛାତ ଉପରୁ । ଅନ୍ଧକାର ଯୋଗୁଁ ପରିସ୍ଥିତି, ରାସ୍ତା ଜଣା ପଡୁନାହିଁ । କାଟପତି ମୂଠା ଧରି, ସେଣ୍ଡାଲ ପିନ୍ଧି ପିନ୍ଧି ଡେଇଁଦେଲା ଦିହଲ୍ । ସେ ଯେ ଆଉ ତଳେ ପଡି ପାରିଲା ନାହିଁ । ପଡ଼ିଲା ଟେଲିଫୋନ ତାର ଉପରେ । ସରକସ ଯୋକର ପରି ଛଟପଟ ହେଉଥାଏ । ପୋଲିସ ସହାଯ୍ୟତାରୁ ତଳକୁ ଓହ୍ଲାଇଛି । ରାତିଟାଯାକ ଥାନା ବାରଣ୍ଡାରେ ବସିଲା । ଶେଷକୁ ଶହେ ଅର କାନ ଧରି ଉଠବସ ହେଲା ପରେ ଛାଡ଼ ପାଇଲା । ଭାଗ୍ୟକୁ ଡେଇଁଲାବେଳେ ବିଜୁଳି ଲାଇନରେ ପଡ଼ୁନାହିଁ । ନ ହେଲେ ଗେହ୍ଲୀ ପାଇଁ ସ୍ୱପ୍ନଦେଖା, ଡାମ୍ପର ପାଇଁ ମୁଣ୍ଡବ୍ୟଥା ହୋଇ ନ ଥାନ୍ତା ।

ଜୁଆଡ଼ି ନିଶା କିନ୍ତୁ ତାକୁ ଛାଡ଼ୁନାହିଁ । ସେଥିପାଇଁ ସମରୁ ସହିତ ପଡ଼େନାହିଁ । ସମରୁ ବାବୁ ମନା କରନ୍ତି ଦିହଲୁ ଯେ ତା'ର ବଦଭ୍ୟାସ ନ ବଦଳାଇବା ଯାଏ ରାଉରକେଲା ସେକ୍ଟର ଘରକୁ ଯିବାକୁ ମନା ରହିଛି । ସମରୁ ବାବୁ ପଦସ୍ଥ ପର୍ସୋନାଲ ସେକ୍‌ସନରେ ଅଫିସର ଅଛନ୍ତି । ବାହାଘର ବି ତାଙ୍କର ହୋଇଯାଇଛି । ସମରୁଙ୍କ ସ୍ତ୍ରୀ ଜଣେ ସେଲ୍ କର୍ମଚାରୀ । ଛୁଟି ଦିନରେ ଦୁହେଁ ବାପା ବୋଉଙ୍କୁ ଦେଖିବାକୁ ଆସନ୍ତି । ସେଦିନ ଦିହଲୁ ଭଲ କରି ମାଂସ ତରକାରି କିଣିଆଣେ । ଭାଉଜଙ୍କୁ କେବେ ଅବମାନନା କରେନାହିଁ କମାରୁ । ତା' ଡାମ୍ପରରେ ଥରେ ଖଣି ବୁଲି ଯିବାକୁ ଅନୁରୋଧ କରେ । ଭାଉଜରାଣୀ ଥଟ୍ଟାରେ କଥା ଉଡ଼ାଇ ଦିଅନ୍ତି । ମଦନ ଦେଖୁଥାଏ ତା' ପରିବାରର ସଂଚ୍ଛନ୍ଦି । ସମସ୍ତେ ଥିଲାବେଳେ କଥାପଡେ : ଦିହଲୁ ବଦନାମୀ ପିଲା ବନି ଯାଉଛି । ଅବଶ୍ୟ ସେ ଭାଉଜଙ୍କ ପାଖେ ପ୍ରତିଜ୍ଞା କରେ, ଜୁଆ ଖେଳିବା ଯଦି ମନା ହେଉଛି

ତେବେ ଖେଳିବ ନାହିଁ । ଗାଲରେ ଘୁସୁଡ଼ାଏ ମାରନ୍ତୁ ଏ । ସମସ୍ତେ ପରିବର୍ତ୍ତନ ପ୍ରତି ଲକ୍ଷ୍ୟ କରୁଆନ୍ତି ଦହଲୁର । କିନ୍ତୁ ପରମୁହୂର୍ତ୍ତରେ ସେ ସ୍ଥାନ ପ୍ରକୃତରେ ରହିଯାଏ । ଗୋଟିଏ ପ୍ରକାରେ ପରିବାର ପାଇଁ ଦହଲୁ ଅବିଶ୍ୱାସର ପାତ୍ର ହୋଇ ସାରିଥିଲା । କିନ୍ତୁ ଉପସ୍ଥିତ ଜ୍ଞାନ ତା'ର ବେଶି । ସଂସାରଟାକୁ କିଣି ଖାଇଯିବ ।

ଦିନେ ଜୁଆ ଆଡ୍‌ଡ଼ାରୁ ଦହଲୁ ଫେରିଛି ରାତି ଶେଷ ପ୍ରହରକୁ । ସାତ ଶହ ଟଙ୍କା ଫୋପାଡ଼ି ଦେଲା ତା' ମାଆ ସାମନାରେ । କୁମ୍ଭିଟା ମାଗିଛି । ସୁମାମା ଭୟରେ କୁମ୍ଭିଟା ଦେଇଦେଲା ଦହଲୁର ରୁକ୍ଷ ପ୍ରକୃତି ଦେଖି । ଦହଲୁ ହାତରେ ଧରିଛି ନା ନାହିଁ ଜାଣି ପାରିଲା ନାହିଁ । ଉପରୁ କଚୁଡ଼ି ଦେଲା କୁମ୍ଭିଟା । ଖାଦାନର ବ୍ଲାଷ୍ଟିଂପରି କୋଠରୀଟା କମ୍ପି ଉଠିଛି । ମା'ଙ୍କୁ ଟଙ୍କା ସବୁ ଗଣିବାକୁ କହୁଛି । ମଦନର ଗ୍ରୁଇନ୍ଦ ଭିତରେ ସେ ସବୁ ଦେଖୁଥିଲା । ପୁଅର କାରାମତି ଦେଖୁଥିଲା । ମନେ ମନେ ପ୍ରମାଦ ଗଣୁଥିଲା, ଅନୁପସ୍ଥିତ ରାତିର ଅଘଟଣ ପ୍ରତି । ଦହଲୁର ଯିବ ସେ ଟଙ୍କା ସଂଗ୍ରହ କରିବ, ନୂଆ ରିକ୍ସା ଆଣିବ । ଟଙ୍କା ବି ଅଠର ଶହ ହୋଇଛି । ବେଲବଟମ ପେଣ୍ଟ ମୁଣ୍ଡାରେ ସବୁ ଟଙ୍କା ଭର୍ତ୍ତିକଲା । ଡିଆଁ ମାରିଲା ରାଉରକେଲା । ଭାଉଜଙ୍କ ପାଖକୁ ।

କବାଟରେ ରିଙ୍ଗ ଦିଅନ୍ତେ ଭାଉଜ ଦେଖିଲେ ଦହଲୁ 'ଆଜି ନୂଆ ଅବତାର ଓ ବେଶ୍ ଫୁର୍ତ୍ତି ଦିଶୁଛନ୍ତି । ଡିଉଟି ଯିବାକୁ ସମରୁ ବାବୁ ବାହାରୁଥିଲେ । ଧରିଥିବା ଟଙ୍କାତକ ଟେବୁଲରେ ଥୋଇ ଦେଇଥିଲା ଦହଲୁ ଓ ବଡ଼ ଭାଇଙ୍କୁ କହୁଛି : ଏସବୁ ଟଙ୍କା ମୋର । ମୁଁ ଜୁଆ ଖେଳେ । ମୋତେ ଘୃଣା କର ସମସ୍ତେ । ଜୁଆରୁ ପାଉଥିବା ଟଙ୍କା କିନ୍ତୁ ମୁଁ ଜମା କରୁଥିଲି ମାଙ୍କ ପାଖରେ । ବେକାର ଯୁବକକୁ କେହି ଆର୍ଥିକ ସାହାଯ୍ୟ ଦିଏନାହିଁ । କେହି ବିଶ୍ୱାସ କରେ ନାହିଁ ତା'ର କାର୍ଯ୍ୟଦକ୍ଷତା ପ୍ରତି । ତେଣୁ ଜମା କରୁଥିଲି ସବୁ ଦିନର ଲାଭାଂଶ, କୁମ୍ଭିରେ । ଅଠର ଶହ ଟଙ୍କା ଜମା କରିଛି ଦାଦା । ଏ ଟଙ୍କା ଚୋରି ଟଙ୍କା ନୁହେଁ । ଜୁଆ ଟଙ୍କା, ଜିଦ୍‌ଖୋରର ଟଙ୍କା ଓ ଖଲାସୀଗିରିର ଟଙ୍କା । ରିକ୍ସା କିଣିବି, ନୂଆ ରିକ୍ସା । ପ୍ରଥମେ ରିକ୍ସା ଚଲେଇବି, ପରେ ଡମ୍ପର, ଟ୍ରକ୍ କିଣିବି । ମୁଁ ଜଣେ ଡମ୍ପର ଡ୍ରାଇଭର ହେବି ।

ଦହଲୁ ନିଜକୁ ସଂଯତ କରି କହିଲା : ବାପା ଖାଦାନର ଶ୍ରମିକ । ଆପଣ ଶ୍ରମିକମାନଙ୍କର ଅଫିସର । ମୁଁ ହେବି ଶ୍ରମ ଉତ୍ପାଦନର ବାହକ, ଡମ୍ପର ଡ୍ରାଇଭର । ମଧ୍ୟସ୍ଥି ତୁମ ଦୁହିଁଙ୍କର । ମୋ ଚିନ୍ତାଧାରାର ବ୍ୟତିକ୍ରମ ହେବନାହିଁ । ଆପଣ ଯିମିତି ଜଣେ ପଦସ୍ଥ ଅଫିସର ଚିନ୍ତାଧାରାକୁ ପଛକୁ ଖସିଲେ ନାହିଁ ମୁଁ ବି

ନିଜେ ନିଜ ଡର୍ମ୍‌ର ଡ୍ରାଇଭରରୁ ପଛକୁ ହଟିବ ନାହିଁ । ମୋତେ ଏଥିପାଇଁ ସମସ୍ତ ଦରକାର ସମରୁ ଦାଦା । '

ସମରୁ ଦେଖିଥିଲେ ଦହଲୁ ଭିତରେ ନିର୍ଗତ ହେଉଥିବା ବେକାର ଯୁବକର ଅନୁଚିନ୍ତା ଓ ଲକ୍ଷ ସବୁ । କିଛି ଯେ କହି ନାହାନ୍ତି । ତା'ର ଅଭିବ୍ୟକ୍ତି ପାଇଁ ତାକୁ ପ୍ରଶଂସା କରିନାହାନ୍ତି । ବରଂ ଟଙ୍କା ସବୁ ଅନ୍ୟ କଉଠି ଉଠାଇ ନ ଦେଉ । ଜୁଆଡ଼ର ତାଷ୍ଟା ପ୍ରତି ସମରୁ ବାବୁଙ୍କ ଅବିଶ୍ୱାସ ଥିଲା । ଦହଲୁ ଠିଆ ଠିଆ ଗୁ' ଖାଇ ନେଇଛି । ବଡ଼ ଭାଇଙ୍କ ସ୍କୁଟର ପଛପଟେ ବସି ଯାଇଛି । ଯାହା ସମରୁ ବାବୁ ଫିକେଇ ଦେଲେ ଦହଲୁକୁ ବସିବାକୁ । ସ୍କୁଟର ଶଂ ରେଡ଼ ଦେଇ ଇସ୍ପାତ ସହରର ଗ୍ରୁଡ ଉପରେ ଅଗେଇ ଆସେ । ସେକ୍ଟର ଗ୍ରୁଡ଼ ପୁରୁଣା ବସ୍‌ଷ୍ଟାଣ୍ଡ ଅଞ୍ଚଳକୁ । ବିରସା ଛକରୁ ଭିତରକୁ ଯିବା ରାସ୍ତାରେ ସ୍କୁଟର ଛିଡ଼ା ହେଲା ସମ୍ବଲପୁର ସାଇକେଲ ସପ୍ଲାଇ ଷ୍ଟୋର ପାଖରେ । ମାଲିକକୁ ସମର ବାବୁ କହିଦେଲେ କେବଳ : ଏହାକୁ ନୂଆ ରିକ୍‌ସା ଫିଟିଂ କରିଦେବେ । କିଛି ବାକି ରହିଗଲେ ମୁଁ ପେମେଣ୍ଟ କରିବ ।

ଦହଲୁ ଦେଖୁଥିଲା ବଡ଼ ଭାଇଙ୍କ ମନୋଭାବ । ସମରୁ ବାବୁ ନିଜ ଅଫିସକୁ ଅ.ସିଲେ । ଫାଇଲ ପ୍ରତି ଧ୍ୟାନ ରହି ଯିବାରୁ ଦହଲୁ କ'ଣ ସବୁ କରିଗଲା, ମନେ ପଡ଼ିଲା ନାହିଁ ।

ବାବୁ ଦହଲୁ ଆଜି ନିଜ ଗୋଡ଼ରେ ଛିଡ଼ା ହେବାକୁ ବସିଛି ଓ ଇସ୍ପାତ ସହରର ଜଣେ ଖରିଦ୍‌ଦାର ଭାବେ ରିକ୍‌ସା ଫିଟିଙ୍ଗ କରିବାରେ ବ୍ୟସ୍ତ ରହିଛି । ଆଜି ସେ ସମ୍ପୃକ୍ତ ନା ସମ୍ପୃକ୍ତି ପଥର ନାଗରୀ ଜାଣେନା । ତଥାପି ନିଜ ଇଚ୍ଛାର ଦ୍ୱାର ଦେଶରେ କଦମ ଖୋଲ କରୁଛି । ଜୀବନର ଗତିରେ କାଦମ ଅମ ହେଉ ବା କଦମ ଗ୍ରୁଲ ହେଉ ପରୀକ୍ଷା କରିବ । ସମସ୍ତଙ୍କୁ ସେ ସାକ୍ଷ୍ୟ ଦେବାକୁ ଚାହୁଁ ନ ଥିଲା ।

ସୁମାମା ମନରେ ଛନକା ପଶି ଯାଇଥିଲା । ଏତେ ଟଙ୍କା ନେଇ ଦହଲୁ ଗଲା କୁଆଡ଼େ ? ବନମୁଣ୍ଡା ଦଫାଇର ପଶ୍ଚିମ ପଟେ ଭାଟିଘର । ସେଠି ଇସ୍‌ମାଇଲ ଖାଁ ଥାଏ । ତାକୁ ପଚାରି ନେଲା ।

ଇସ୍‌ମାଇଲ ଖାଁ ପତ୍ତା ଜାଣି ନ ଥିଲା । ତଥାପି ଦହଲୁକୁ ଖୋଜି ବାହାର କରିବ । ଦେଖିବ ଦଫାଇ ବାହାରେ କଉଠି ଗଛ ତଳେ ବା ଖୋଦାନ ଝଣି ଭିତରେ ଜୁଆ ଆଡ଼୍‌ଡ଼ା ବା କଟାପତ୍ର ଖେଳ ଚାଲୁଥିବ । ସାଧାରଣ ଧାରଣା ସମସ୍ତଙ୍କର ତା' ଉପରେ ଏଇଆ ଥିଲା ।

ହେଣ୍ଡେଲରେ ହାତ ଦେଇ ଜୁହାର କଲା । ମୁଠି ଦୁଇଟା ପାଖରେ ଦର୍ପଣ ଦୁଇଟା ଫିଟିଂ କରିଛି । ସଲାମ ଯାଥୀ : କହି ଗଡେଇ ନେଲା ଶଙ୍ଗ-ରେଡ଼କୁ । ଆଗପଛ କିଛି ନ ଦେଖି ପେଡ଼ାଲରେ ଗୋଡ଼ ଦେଲା । ଘଣ୍ଟି ଉପରେ ହାତ ମାରିଛି । ଟିଂ କରି ଯେତେବେଳେ ଘଣ୍ଟି ଆଗକୁ ବଢ଼ିବାକୁ ରାସ୍ତା ମାଗିଲା । ଦହଲ୍ ମନରେ ଉନ୍ମାଦ ସୃଷ୍ଟି କରିଛି । ବାଇପାଶ୍ ଦେଇ ସେ ଆସେ ପାନପୋଷ, ବ୍ରାହ୍ମଣୀ ବ୍ରିଜ୍ ପରେ ବେଦବ୍ୟାସ ଛକ । ଛକରେ ଭିଡ଼ ଲାଗିଛି । କାଲି ହେବ ଶିବରାତ୍ରୀ । ମେଳା ଭିତରକୁ ସେ ଆଉ ପଶିନାହିଁ । ବାହାରୁ ବାହାରୁ ସ୍ୱାଗତ କଲା । ବରଂ ଆଗେଇ ଗଲାଥିଲା ବୀରମିତ୍ରପୁର ଅଭିମୁଖେ ।

ଇସ୍ମାଇଲ ଆସିଥିଲା ଶୁଭମ ସିମେଣ୍ଟ ବସ୍ତି ପଟକୁ । କୁଚିଆମାନଙ୍କ ପାଖକୁ । ମେଳାରେ ଭିଡ଼ ଜମେଇ ଦେବାପାଇଁ । କାମ ସାରି ରାସ୍ତାରେ ଠିଆ ହୋଇଛି ବସ୍ ଅପେକ୍ଷାରେ । ଆଜି ସେ ସାଇକେଲ ଆଣି ନ ଥିଲା । ଆସିଥିଲା ତାଗଦାରେ, କୁଚିଆମାନଙ୍କ ପାଖକୁ । ଦହଲ୍ ପ୍ରତି ତା'ର ମୋଟେ ଲକ୍ଷ୍ୟ ନ ଥିଲା ।

ଦହଲ୍ ଯେତେବେଳେ ଆଗଚକ ଆଣି ଖାଁ ଗୁରୁ ପାଖେ ଠିଆକଲା ଓ ଘଣ୍ଟିର ଟିଂ ଶବ୍ଦ ଶୁଣି ଇସ୍ମାଇଲ ଚମକି ପଡ଼ିଛି, ଦହଲ୍ ବୋବାଲ ହସଟିଏ ମାରି ଦେଇଛି । ଇସ୍ମାଇଲ ସେ ଚମକ ନାହିଁ ଅଗ୍ରୁନକ ଦୁର୍ଘଟଣା ପାଇଁ ବରଂ ବେଶି ବିସ୍ମିତ ହେଲା ନୂଆ ରିକ୍ସା ଓ ଦହଲ୍କୁ ଦେଖି । ଆବେଗ ସ୍ୱରରେ ସେ କହି ପକାଇଲା : କୈସା ବେଟା, ତୁଇ ଆଜ କରିସ୍ମା କରିଦେଲୁ । ଆଗରୁ ମୁଁ ତୋତେ କହୁଥିଲି, ଦହଲ୍ ବେଟା ନାଗ ବାଘ ଆଛେ । କମାଲ ତା' ଜୀବନରେ ଲେଖା ଆଛେ । ବଢ଼ିଆ କାମ କରିଛେ ବେଟା । କମାଓ, ଖାଅ, ମେହନତ ମେ ପଛଘୁଞ୍ଚା ନାହିଁ । ସକାଳରୁ ଘରୁ ଉଭାନ, ମାଆ ତୋତେ କେତେ ଖୁଜିଛେ । ଯା, ସିଧା ଘରକୁ ଯା । ଦହଲ୍ ବେଟା ବାହାଦୂର ଆଛେ । ଆଉ ଖୁସିରେ କେତେ କହୁଥିଲା ଇସ୍ମାଇଲ ଖାଁ ।

ଦହଲ୍ କିଛି କହିବାକୁ ଚାହୁଁଥିଲା କିନ୍ତୁ କହିନାହିଁ ବରଂ ଗୁରୁଙ୍କୁ ଅନୁରୋଧ କଲା ରିକ୍ସାରେ ବସିବାପାଇଁ । ଇସ୍ମାଇଲ ଖାଁ ବହନୀ ଦଶଟଙ୍କା ଧରେଇ ଦେଲା ଦହଲ୍କୁ । ଦହଲ୍ କହିଲା : କ୍ୟା ଗୁରୁ, ଏବେଠୁଁ ବହନୀର ଆବଶ୍ୟକ ନାହିଁ । ପୂଜାପାଠ ହେବା ପରେ ବହନୀ କରିବୁ । ଗେହ୍ଲୀ ଆଗ ବସିବ, ସେ ବହନୀ କରିବ । ମନର ରାଣୀ ହାତେ ବହନୀ କରାଇବ ।

ରିକ୍ସା ଆଗେଇ ଚାଲିଲା । ଗୁଇନା ଛକରେ ଇସ୍‌ମାଇଲ ଖାଁ ଓହ୍ଲାଇ ଯାଇଛି । ସରକାରୀ ଡାକ୍ତରଖାନା, ଅରବିନ୍ଦ ସ୍କୁଲ ଦେଇ ହାଟିକୁ ଚାଲିଗଲା ଇସ୍‌ମାଇଲ ଖାଁ ଓ ରାସ୍ତାଯାକ ଦହଲୁ କଥା ଭାବୁଥାଏ ।

ଗୁଇନା ଛକରେ ସେ ଚା' ଖାଇ ନେଇଛି । ଭଞ୍ଜ ଭବନ ଦେଇ ବନମୁଣ୍ଡା ଯିବ । ମାଛ ଗୋଟେ କେଜି ଖଣ୍ଡେ ହେବ, ନେଇଛି । ଭଞ୍ଜ ସବଜି ବଜାର ଉଠାଣିରେ ରିକ୍ସା ଟାଣୁଥିଲା ଦହଲୁ ।

ଗେହ୍ଲୀ କିଛି ସବଜି କିଣୁଥିଲା । ତିନି ଚାରିଥର କିଂ କିଂ କିଂ କିଂ ଘଣ୍ଟି ମାରିଛି । ବଜାର ଗ୍ରାହକମାନେ ତା' ପଟକୁ ଦେଖିଛନ୍ତି । କିନ୍ତୁ ସେମାନଙ୍କୁ ସେ ଡାକୁ ନ ଥିଲା । ଗେହ୍ଲୀକୁ ଡାକିଲା ।

ଗେହ୍ଲୀର ଦୃଷ୍ଟି ଆଢ଼ୁଆଳରେ ଦହଲୁ ଥିଲା । ଗେହ୍ଲୀକୁ କହିଲା : ଦେଖ, ଦେଖ ନୂଆ ରିକ୍ସା ଆଜି କିଣି ଆଣିଛି । ଚାଲ ଘରକୁ ଯିବା ।

ଗେହ୍ଲୀ ମନା କରିପାରୁ ନ ଥିଲା ବରଂ କହିଲା : ତୁଇ ଆଗେ ଚାଲ କ୍ୱାଟରକୁ, ମୁଁ ପଛେ ପଛେ ଯାଉଛେ ।

ବାଃ : ଆଜିପରି ଦିନଟିରେ ଗେହ୍ଲୀ ଏପରି କହିବ ?? ତାକୁ ବରଂ କହିଲା : ତୋତେ ବାବୁ ଘରେ ଛାଡିଦେବି । ତା'ପରେ ଗେହ୍ଲୀ ରାଜିହେଲା ରିକ୍‌ସାରେ ବସିବାକୁ ।

କିଣିଥିବା ଶାଗ ସବଜି ଗେହ୍ଲୀ ଘରେ ରଖିଦେଲା । ତୁଳସୀଙ୍କୁ ଦହଲୁଟା ନୂଆ ରିକ୍‌ସା ସମ୍ପର୍କରେ ସୂଚାଇ ଦେଇଛି । ତେଣୁ ତୁଳସୀ ବାହାରି ଆସି ଦହଲୁକୁ ସାବାସ ଦେଲେ ଏବଂ କହିଲେ : ଏବେ ସୁବିଧା ହେଲା । କୁଆଡ଼େ ଗଲେ ତୋ ରିକ୍‌ସାରେ ଯିବ ।

ତୁଳସୀଙ୍କ ପ୍ରସ୍ତାବନା ପ୍ରତି ଦହଲୁ ସମର୍ଥନ କଲା । ଏଇନେ ଗେହ୍ଲୀ ତା' ସହିତ ଘରକୁ ଯିବାପାଇଁ ଅନୁରୋଧ ଜଣାଇଲା । ଅବଶ୍ୟ ତୁଳସୀ ଏ କଥାରେ ମନାକରି ନାହାନ୍ତି ଏବଂ ଘରୁ ନଡ଼ିଆଟିଏ ଆଣି ଦହଲୁ ହାତରେ ଦେଲେ ଓ ଘରେ ଭଙ୍ଗି ବାଳଭୋଗ ଦେଇ ଦେବାକୁ କହିଲେ ।

ସିଟ୍ ତଳେ ବାକ୍‌ସରେ ନଡ଼ିଆ ରଖାଗଲା । ତୁଳସୀ ପ୍ରଥମେ ପାଞ୍ଚ- ଟଙ୍କା ବହନୀ କରି କିଛି ଦୂର ବୁଲି ଆସିଛନ୍ତି ନୂଆ ରିକ୍‌ସାରେ ଓ ଦହଲୁର ଏପରି ପରିବର୍ତ୍ତନ ଓ ପ୍ରଗତି ଦେଖୁଥାନ୍ତି ।

. ବି. ଆର. ଆଇ. କ୍ଲବ ପଡ଼ିଆ ଦେଇ ରିକ୍ସା ହନୁମାନ୍ତା ଦଫାଇରେ ପହଞ୍ଚିଛି । କ୍ଲବରେ ବାବୁମାନେ ତଥା ଖେଳାଳୀମାନେ ଏ ଦୁଇ ଜଣଙ୍କୁ ଲଇଲ ମଜନୁ ପରି ଦେଖିଲେ । ସମସ୍ତଙ୍କ ସନ୍ତୁଷ୍ଟ ଦୃଷ୍ଟି ମଧ୍ୟରେ ରିକ୍ସା ଥିଲା । ସୁମାମୀଙ୍କ ପ୍ରମାଦର କିଛି ରୂପାନ୍ତର ଦେଖି ଖୁସି ହେଲେ ଦହଲୁ ପାଇଁ । ତାକୁ ଯଥାଶୀଘ୍ର ଆଗ ଖାଇବାକୁ ଦେଲା ସୁମାମୀ । ଦହଲୁ ଖାଇ ବସିଥିବାବେଳେ ସୁମାମୀ ହଳଦୀ ପାଣିରେ ରିକ୍ସାର ଚକ ଦୁଇଟା ଅଧିକ ଗଡ଼ିବା ପାଇଁ ଶୁଭ ମନାଇ ଧୋଇ-ଦେଲା । କିନ୍ତୁ ମଦନ ଏଥିପ୍ରତି ଯେତେ ଖୁସି ହେବା କଥା ସେତେ ଖୁସି ହୋଇ ନାହିଁ । ସକାଳର ନୀରବତା ପୂର୍ବଭାବ ଏଯାଏଁ କମିନାହିଁ । ବରଂ ଦୀର୍ଘଶ୍ୱାସ ମାରି କହିଲା : ଯାହା କରୁଛୁ କରୁ । ମା' ପୁଅ ଦହେଁ ବିଗିଡ଼ି ଯାଇଛନ୍ତି କେତେଦିନୁ । ସୁମାମୀ ନିଜେ କର୍ମଜୀବୀ ହେତୁ ମଦନ ପ୍ରତି ବେଖାପ ଯୁକ୍ତି କରିଯିବାରେ ପଶ୍ଚାଏ ନାହିଁ । ରିକ୍ସା ଦେଖାଇ ଦହଲୁର କରିମତ ତାଙ୍କୁ କହୁନାହିଁ । ଦୁଏତ ସ୍ୱାମୀ-ସ୍ତ୍ରୀ ଭିତରେ ତଫାତ୍ ଯୁକ୍ତ ହୋଇଯିବ । ବେଳ ଆସିବ ନିଜ ରାସ୍ତା ନିଜେ ବୁଝିବେ । ନୂଆ ରିକ୍ସା ଆଣିବା ନେଇ ମଦନ ମୋଟେ ଖୁସି ନ ଥିଲା । ସେ ଆସିଥିଲା ଖାଦାନ ଶ୍ରମିକ ହୋଇ । ପରିବାରକୁ ଗଢ଼ିବା ପାଇଁ । ଦହଲୁ ଭିତରେ ଗୋଟିଏ ଖରାପ ଯୋଗ ସେ ଦେଖୁଥିଲା । ଯାହା ତା' ମନର ପ୍ରକାଶ ଥିଲା, ଖବର ନ ଥିଲା ।

ହନଟାଯାକ ଶିବରାତ୍ରୀ କଥା ମା'କୁ ମନେ ପକାଇ ଦେଲା ଦହଲୁ । ଗେହ୍ଲୀ ବଢ଼ଯାଏ ତାଙ୍କ ଘରେ ରହିବା ଠିକ୍ ହେବନାହିଁ । ତାକୁ ଛାଡ଼ି ଆସିବାକୁ ପଡ଼ିବ । ଦୁହେଁ ବାହାରିଗଲେ । ଆଗରୁ ସିଟ୍‌ଡଲେ ସୁଏଟର, ଶାଲ୍ ଦହଲୁ ରଖି ଦେଇଥିଲା । ଯାହାର କାରଣ ସୁମାମୀ ପଚ୍ଛରି ନାହିଁ ।

ମଦନକୁ ଇସ୍‌ମାଇଲ ଖାଁ କିଛି କହି ଦେଇଥାନ୍ତା ଦହଲୁର ପରିବର୍ତ୍ତନର କାରଣ ସବୁ । କିନ୍ତୁ ମଦନ ସେ ସବୁ ଶୁଣିବାକୁ ନାରାଜ ଥିଲା । ଖଟି କାରବାର ନେଇ ଫେରି ଯାଇଥିଲା ତୁରନ୍ତ ।

ରିକ୍ସା ହେଣ୍ଡିଲରେ ଗ୍ରେଟିଆ ଚମିନି ବନ୍ଧାଟିଏ ଦହଲୁ ଜାଳିନେଲା । ସାମାନ୍ୟ ଚକ ସାମାନ୍ୟ ଆଲୁଅ ପାଇଛି । ·ରିକ୍ସାର ଚାଳକ ହଳଦାର ଦହଲୁ ଓ ଗେହ୍ଲୀ ତା' ରିକ୍ସାର ସବାରୀ । ବି. ଆର. ଆଇ. ପଡ଼ିଆ ଅତିକ୍ରାନ୍ତ ପରେ କ୍ରାଇଷ୍ଟ ଚର୍ଚ୍ଚ, ମସ୍‌ଜିଦ, ଜଗନ୍ନାଥ ମନ୍ଦିରକୁ ବେଢ଼ା ମାରି ଫେରିଥାନ୍ତା ଗେହ୍ଲୀକୁ ଛାଡ଼ି ଦେବାକୁ । ହେଲେ କିନ୍ତୁ ରାଇନା ଛକରେ ବାଇବଗା ରାସ୍ତାଧରି ନାହିଁ । ରିକ୍ସା ଆଗେଇ ଥିଲା ରାଣୀ ସତୀ ମନ୍ଦିର ପଟକୁ । ସେଠି ବି ଛାଡ଼ା କରିନାହିଁ ବରଂ ରିକ୍ସାରୁ ଜୁହାର ହୋଇଛି ରାଣୀ ସତୀଙ୍କୁ । ରିକ୍ସା ଛାଡ଼ା

ହେଲ ଦଳୀପ ପଟ୍ଟନାୟକଙ୍କ ପାନ ଦୋକାନରେ । ଅଠଖଣ୍ଡ ପାନ ଖର୍ଚ୍ଚିଛୁ । ନିଜ ପାଇଁ ଗୁଣ୍ଡଖଣ୍ଡ ଓ ଗେହ୍ଲୀ ପାଇଁ ବାକିତକ । ଗୁର୍ମିଯ ଗୋଟିଏ ପାକିଟ । ଗେହ୍ଲୀ ଭାବୁଥିଲ ଏବେ ଘରକୁ ଫେରିବ । ପଟ୍ଟନାୟକ ବାବୁ ଏମାନଙ୍କୁ ଦେଖି କିଛୁ ମନେକରି ନାହାନ୍ତି ।

ରିକ୍‌ସା ବୁଲେଇବା ହୋଇନାହିଁ । ଟିଡ଼ ତା'ର ଆଗକୁ ଥାଏ । ଗେହ୍ଲୀ ସନ୍ଦେହ ଦୂର କରିବା ପାଇଁ ପଚାରୁଛି, ଆଉ କେତେ ରାସ୍ତାଯାଏ ତାକୁ ବୁଲେଇବ । ନାନୀ ସେପଟେ ଅପେକ୍ଷା କରିଥିବ । ଡେରିରେ ଗଲେ ରାଗିଯିବ ସେ ।

ଦହଲୁ ନିରୁତ୍ତର ଥିଲ । ଗେହ୍ଲୀ ଭାବିଲ, ବୋଧହୁଏ ସେମାନେ କେଥଲିକ ଚର୍ଚ୍ଚ ଯାଏ ଯିବେ । ଦହଲୁ ସେ ତାକୁ ଆଜି ସବୁ ମନ୍ଦିରକୁ ନେଉଛି । ହୁଏତ ସେଠୁଁ ଫେରିବାକୁ ହେବ । ତେଣୁ ବସି ରହିଲ ରିକ୍‌ସାରେ, ନୀରବରେ ।

ଦହଲୁ କହିଲ : ଆଜି ଶିବରାତ୍ରୀ । ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ । ବେଦବ୍ୟାସରେ ଜାଗର ରାତି । କେତେ ଯାତ୍ରା ଭିଡ଼ । ତୋତେ ସେଠିକି ନେବି । ଜାଗର ବସାଇବ । ତୁଳସୀ ନାନୀ ଜାଣନ୍ତି ତୁଇ ଆମ ଘରେ ଅଛୁ । ମା' ଜାଣେ ମୁଁ ତତେ ନାନୀ ଘରେ ଛାଡ଼ି ଦେଇଛି । ରାତିଟାଯାକ କେହି କାହାରିକି ଖୋଜିବେ ନାହିଁ । ଆମେ ନିଜେ ନିଜଂକୁ ଖୋଜିବା । ମୋ କଥା କେହି ଆଜି ଅନ୍ତତଃ ଖିଆଲ କରିବେ ନାହିଁ ।

ଗେହ୍ଲୀ ଚମକି ପଡ଼ିଲ । କହିଲ : ନାଇଁ ନାଇଁ ଦହଲୁ, ମୁଁ ମେଳା ଦେଖି ଯିବିନାହିଁ । କାଲିକି ନାନୀ ସହିତ ଯିବି ।

ତୋ ନାନୀ ତୋ ପାଇଁ ଏତେ ବଡ଼ ହୋଇଗଲ । ନୂଆ ରିକ୍‌ସା ଅଛି । ଘଣ୍ଟାକେ ପହଞ୍ଚିଯିବା । ଜାଗର ବସିବା ।

ଆମର କି ଦରକାର ଅଛି ଯେ ଜାଗର ବସିବା ?? ମୁଁ ସେ ଅବିବାହିତ ଝିଅ । ବାହା ହୋଇନାହିଁ । ମୋର କି କାମ ଜାଗରରେ । ରିକ୍‌ସା ଫେରାଇ ନେ । ତୁଳସୀ ନାନୀ ମୋତେ ଗାଳିଦେବ ।

ତୋତେ ନାନୀ ଗାଳିଦେଲେ ମୋତେ ସେ ବାଧିବ । ତୁଇ ମୋତେ ବାଧିଲ ଭଳି କଥା କହୁଛୁ । ମେଳା ଯିବା, ବୁଲିବା, ଜାଗର ଦେଖିବା । ସହସ୍ର ଦୀପ ଆକାଶକୁ ଉଠିବେ । ତାକୁ ନିରୀକ୍ଷଣ କରିବା । ରାତିଟା କଟିଯିବ । ସକାଳକୁ ତୋତେ ଆଣି ଛାଡ଼ିଦେବି । ମୋ ପାକେଟରେ ତଥାପି ଚାରିଶହ ଟଙ୍କା

ଅଛି । ତୁ ଯାହା କହିବୁ କିଣିଦେବ । ନୂଆ ଶାଢ଼ୀ, ଲାଲ୍ ଶାଢ଼ୀ, ଜାକେଟ, ସ୍ନୋ, ପାଉଡ଼ର, ଅଉର ଯାହା ଯାହା କିଣିବୁ ସବୁ ଆଜି ତୋତେ କିଣିଦେବ । ବାକି ମେଳା ନ ଯିବା କଥା କହିଲେ ତୋତେ ନର୍ଧୂମ ପିଟିବ । ମୋତେ ବାଟେ ବଦରାଗି କରିବୁ ନାହିଁ । ଆଜି ସକାଳରୁ ମୁଁ ବଦଳି ଯାଇଛି । ତୋତେ ଅଲବତ୍ ମେଳା ଦାଣ୍ଡିକୁ ନେବ । ରିକ୍ସା ଷ୍ଟେସନ ଛକ ପରେ ମୋଡ଼ ଦେଇ ଗଡ଼ାଣିରେ ଗଡ଼ୁଥିଲା ।

ଗେହ୍ଲୀ ପ୍ରତିବାଦର ସ୍ୱର କମାଇ ଦେଉଥିଲା । ସେ ଦେଖୁଛି ଦହିଲାକୁ ପ୍ରତିବାଦ କରି ହେବନାହିଁ । ତା' ହୃଦୟରେ ଆଜି ସହସ୍ରାବଳି ରହିଛି । ନିଝୁମ ରାତିରେ ବେଦବ୍ୟାସ ମେଳା ଦେଖି ଯିବାକୁ ବାହାରିଛି । ପାଖରେ ବେଶ୍ ପଇସା ଧରିଛି । ହୁଏତ କୁଆଡ଼େ ଧାଇଁଡ଼ୀ ଧରି ଚାଲିଯିବ, ମାତାଲ ହୋଇ ବାଟରେ ରାସ୍ତାରେ ପଡ଼ିଯିବ । ଲୋକେ ଯାଏ ନିରାପଦ ନୁହେଁ । ତାକୁ ଏକୁଟିଆ ଛାଡ଼ିଦେବା ମାନେ କିଛିଟା ଅଘଟଣ ଘଟିପାରେ । ବରଂ କହିଲା : ସକାଳକୁ ଫେରି ଆସିଯିବା ତ ??

ଦହିଲା ନିଶ୍ଚିତ ଉତ୍ତର ଦେଲା : ଉଜାଗର ପରେ ଆଉ କ'ଣ କରିବା ?? ଫେରି ଆସିବା ।

ସକାଳକୁ ତ ??

ହଁ ସକାଳକୁ ।

ଏବେ ତୁ ଖୁସି ତ । ତୋ ପ୍ରସ୍ତାବ କାଟିବ ନାହିଁ । ମୋତେ ଶାଢ଼ୀ କିଣିଦେବୁ ନା, କହୁଥିଲୁ ଯେ ??

ବିଲ୍‌କୁଲ୍ କିଣିଦେବ । ବଜାର ଖୋଜ ତୁ କରିବୁ । ମୁଁ ମାତ୍ର ପଇସା ଗଣିଦେବ ।

ଶଙ୍ଖ ନଦୀର ପୋଲ ଉପରେ ରିକ୍ସା ସିଧା ଆସି ଠିଆହେଲା । ଗେହ୍ଲୀ ଉହ୍ଲାଇ ନେଲା । ଦେଖିଲା ତା'ର ପ୍ରିୟ ପରିଚିତ ଜମୁନାଢ଼ିପା । ସେଠୁଁ ଡାକେ ବାଟ ବେଦବ୍ୟାସ । ଅନ୍ଧାର ରାତି । ଗୁଡ଼ାଏ ଟ୍ରକ୍ ଅତିକ୍ରମ କରିଛନ୍ତି ତାଙ୍କୁ । ନିଜକୁ ସଙ୍କୁଚିତ କରିଦିଏ ସେ ପରିସ୍ଥିତିରେ ଗେହ୍ଲୀ । କାଳେ ତା'ର ଚହ୍ଲା ପରିଚିତ ଡ୍ରାଇଭର ବାବୁ କେହି ତାକୁ ଦେଖିନେବେ, ଚହ୍ନି ନେବେ ।

ଗେହ୍ଲୀ ମଉନ ଭାଙ୍ଗିଛି । ପାକେଟରୁ ଟଙ୍କାତକ ବାହାର କରି ଗେହ୍ଲୀ ହାତରେ ଧରାଇ ଦେଲା । ଟଙ୍କାତକ ବାନ୍ଧିନେଲା କାନିରେ । ଗୋଟିକ ଉପରେ ଆଉ ଗୋଟିଏ ଗଣ୍ଠି ଦେଇ ଗୁଡେଇ ନେଲା ପଣତ କାନିରେ । ମନେ ମନେ

ଲାଗି ବୋଧ ହେଲା । ଏବେ ତା'ର ବାହାଦୁରିଆ ଜବତ ହେବ । ପୁଣିଥରେ ଅନ୍ଧାରେ ହାତମାରି କହୁଛି ପଇସା ତା' ପାଖରେ । ଦକାଳକୁ ଆସିବାକୁ ଅସୁବିଧା ନାହିଁ । ବରଂ ବ୍ରାହ୍ମଣୀ ରାଣୀଙ୍କୁ ଜୁହାର କଲା । ସେମାନେ ନଗ୍ନପଦରେ ପହଞ୍ଚି ଯାଇଛନ୍ତି ବେଦବ୍ୟାସକୁ ।

ଗେହ୍ଲୀ ପାଖରେ ସିଟରେ ବସିଯାଇଛି ଦହଲୁ । ଅନ୍ଧାର ରାତିରେ ତଥାପି ଗେହ୍ଲୀ ଜୁଳୁଜୁଳିଆ ଆଲୁଅରେ ଆଜି କେତେ ଉଜ୍ଜଳ ଦିଶୁଛି । ତା'ର ପରିଷ୍କାର ମନଟା ତାକୁ ଦେଇ ନ ଦେଲେ କେହି ପୁଡ଼ା ଭିତରେ ବାନ୍ଧି ରଖିବ । ଏବେ ଯିମିତି ସମସ୍ତେ ଧରିବନ୍ଧା ଜୀବନ ବିତାଉଛି । ଗେହ୍ଲୀକୁ କହିଲା : ମୁଁ ରିକ୍‌ସା ନେଇ ପାରିବ ନାହିଁ । ତୁଇ ଚଲା ।

ଏତେ ଅନ୍ଧାର ରାତିରେ ରିକ୍‌ସା କଏ ଚଲେଇବ : ତୁ ଚଲେଇବୁ ନା ମୁଁ ଚଲେଇବ । ଅଲଗା କଥା । ମୁଁ ତତେ ଚଲେଇବ, ତୁ ମୋତେ ଚଲେଇ ପାରିବୁ ନାହିଁ ।

ଗେହ୍ଲୀ ଏ ସବୁର ଅର୍ଥ ବୁଝୁ ନ ଥିଲା ।

ଦହଲୁ ପୁଣି କହିଲା : ଆଜି ଶିବରାତ୍ରୀ । ମୋ ପାଇଁ ତୁ ଉଜାଗର ବସିବୁ । ମୁଁ ତୋ ପାଇଁ ବସିବ । ତୁ ମୋ ପାଇଁ ବର ମାଗିବୁ ଅଉ ମୁଁ ତୋତେ ମାଗିନେବ । ତୋ ନୌକାରେ ମୁଁ ବସିବ, ମୋତେ ବାହିନେବୁ । ଏତିକି କହିବା ପାଇଁ ଆଜି ଦିନଟାକୁ ଅପେକ୍ଷା କରିଥିଲି । ପଇସା ଯୋଗାଡ଼ କରୁଥିଲି । ଜୁଆଡ଼ ମେଳରେ ତୋତେ ଖୋଜୁଥିଲି । ତୋତେ ବାନ୍ଧି ରଖିବା ପାଇଁ । ବରଂ ତା' କାନରେ ଦହଲୁ କହିଦେଲା : ଆଜି ତୋତେ ବିହାହେବ । ଯେତେ ଟଙ୍କା ନେବୁ ଦେବ । ସାରା ଜୀବନ ଟଙ୍କା ଆଣି ତୋତେ ଦେବ । ଡାମ୍ଫର କିଣିବା । ମୁଁ ଡାମ୍ଫର ଚଲେଇବ, ତୁ ଯେ ଏପରି ବସିଥିବୁ ମୋ ପାଖରେ । ରେଜା ଦରକାର ପଡ଼ିବ ନାହିଁ । ରାସ୍ତାରେ ତୁ ଖଲାସୀ କାମ କରିବୁ । ସାଇଡ୍ ମାଗିବୁ ।

କଥା ସବୁ କେମିତି କେମିତି ଲାଗୁଥିଲା ଗେହ୍ଲୀକୁ । ପ୍ରସ୍ତାବରେ କିଛି ବିରୋଧ କରି ହେଉନାହିଁ । ଦହଲୁକୁ ସେ ପିଲାଦିନୁ ଜାଣେ । ବଡ଼ ଜିଦ୍‌ଖୋର । ବରଂ କହିଲା : ତୁଇ ଯେ ମୋତେ କେବେ ଏକଥା କହିନାହୁଁ । ଆଜି କିମିତି କହିଲୁ ।

ଆଜି ଶିବରାତ୍ରୀ ବୋଲି କହୁଛି । ଗାଲି ସେ ଯାହା ଦାଣ୍ଡକୁ । ଆମପରି କେତେ ଆସିଥିବେ । ଜୀବନରେ ଆଶାର ବର୍ଷା ନେଇ ।

ତୋର ବାପା ମା' ବାହା କଥାରେ ରାଜି ହେବେ ତ ? ତୁଳସୀ ନାନୀ 'ରାଜି ହେବେ ତ ? ଏମାନଙ୍କୁ ରାଜି କରାଇବ କିଏ ? ଆମେ ରହିବା କେଉଁଠି ? କାହା ପାଖରେ ରହିବା ? କେବଳ ବାହା ହୋଇଗଲେ ତ ହୋଇଯିବ ନାହିଁ ବହିଲୁ—ଘରସଂସାର ବସାଇବା ପାଇଁ ରାହା ଦରକାର—ଗୋଟିଏ ନିସ୍ଥମିତ ରାସ୍ତା ଦରକାର । ବାହା ଗଛର ଗୁଡ଼ ନୁହେଁ ।

ତୁ ଆଗ ବାହା ହେଇ ଯା । ରାସ୍ତା ମୁଁ ବତାଇବି । ରହିବା ପାଇଁ ଜାଗା ମିଳିବ ନାହିଁ ? ବଢ଼ାଇରେ କାହା ଘରେ ଭଡ଼ା ରହିବା । ତୁ ରାନ୍ଧି ରୋଷେଇ କରିବୁ । ମୁଁ ଖାଇବି । ଆମେ ଏକାଠି ରହିବା । ସେ ମନ୍ଦିରରେ ଜୀବନ ଦୀପ ଜାଳିବା । ଉଜାଗର ବସିବା । ଯେପରି ଅନ୍ୟମାନେ ବସୁଛନ୍ତି ।

ତେବେ ମୋତେ କେବେ ବାହାହେବୁ ??? କେଉଁଠି ବାହା-ହେବୁ ???

ଆମ ବାହାଘର ଆଜି ହେବ । ମନ୍ଦିର ଭିତରେ ହେବ । ଯଉଠି ଅନ୍ୟମାନେ ହୁଅନ୍ତି ସେଇଠି । ସାକ୍ଷୀ ଥିବେ ଶିବ ପାର୍ବତୀ । ଠାକୁରଙ୍କୁ ଦର୍ଶନ କରିବା । ତୁ ଗୋଟାଏ ନଡ଼ିଆ ଧରିବୁ ମୁଁ ଗୋଟାଏ ଧରିବି । ଦର୍ଶକଙ୍କ ଭିଡ଼ ଭିତରେ ତୁ ଥିବୁ ସ୍ତ୍ରୀ ଲୋକଙ୍କ ଧାଡ଼ିରେ । ମୁଁ ଥିବି ପୁରୁଷଙ୍କ ଧାଡ଼ିରେ । ଦୁହେଁ ଠାକୁରଙ୍କ ମୁଣ୍ଡରେ ଶ୍ରୀଫଳ ଭାଙ୍ଗିବା । ମୁଁ ତୋତେ ଗ୍ରହଣ କରିବି, ତୁ ମୋର ଅନୁଗାମୀ ହେବୁ । ଆମ ବାହାଘର ମନର ହେବ । ଦୁଇ ମନ ଏକ କରିଗଲେ କେହି ପ୍ରତିବାଦ କରି ପାରିବେ ନାହିଁ ।

ସେ କି ବାହାଘର ?? ଲୋକେ ଜାଣିବେ କିମିତି ??

ବାପ୍, ସେଇକଥା କହିବା ପାଇଁ ତୋତେ ଏଠିକି ଆଣିଛି । ଆମେ ବାହାହେବା ଠାକୁର ସାକ୍ଷୀ ରହିବେ । ସେ ଆଶୀର୍ବାଦ କରନ୍ତୁ ବା ନ କରନ୍ତୁ, ମୋ ପୌରୁଷ ତୋତେ ଗ୍ରହଣ କରିବ । ଲୋକଙ୍କୁ ଆମେ ଜଣେଇଦେବା, ଆମେ ସ୍ୱାମୀ ସ୍ତ୍ରୀ, ସ୍ତ୍ରୀ-ପୁରୁଷ । ଆମର ରାସ୍ତା ଚଲାପଥ । କଣ୍ଟା ଫୋଡ଼ିବାକୁ ନାହିଁ କାହାରି ।

ଇମିତି ବେଶରେ ମୁଁ ତୋତେ କ'ଣ ବାହାହେବି ?? ମୋତେ ବଡ଼ ଅଡୁଆରେ ପକେଇଲୁ ବହିଲୁ । ତୋ ମନକଥା ଆଗରୁ ମୋତେ କହିଥିଲେ ନାନୀଙ୍କୁ ପଚାରିଥାନ୍ତି । ତାଙ୍କଠୁଁ ଶାଢ଼ୀ ମାଗି ଆଣିଥାନ୍ତି । କନିଆଁ ବେଶରେ ଆସିଥାନ୍ତି । ତୁ କେତେ ଖୁସି ହୋଇଥାନ୍ତୁ ।

ମୋ ଉତ୍ତର ମନରେ ତୋତେ ବାହାହେବା ବ୍ୟତୀତ ଅନ୍ୟ ବାସନା ନାହିଁ । ତୋତେ ବାହାହେବି ସେଇ ମୋର ବାସନା, ଖୁସି । ତୋତେ ନେଇ

ଜୀବନର ଯାତ୍ରା କରିବ ସେଇ ଖୁସି । ମୁଁ ବଂଶ ପରମ୍ପରାରେ ବିଶ୍ୱାସ କରେ-ନାହିଁ । ମୁଁ କେବଳ ବିଶ୍ୱାସ କରେ ମୋର ପୌରୁଷରେ, ମୋ ଉଦ୍ୟୋଗ ପ୍ରତି ନିଷ୍ଠାପର ରହିବି, ମୁଁ ବିଶ୍ୱାସ କରେ ମୋର ବିବେକରେ । ତୋତେ ବାହା ହେବାରେ କ'ଣ ସବୁ ପ୍ରତିବନ୍ଧକ ହେବ ମୁଁ ଜାଣେ, ବେଶ୍ ଜାଣେ । ତୋ ବାପା ତୋତେ ଏ ବାହାଘରକୁ ସ୍ୱୀକୃତି ଦେବନାହିଁ । ତୁଳସୀ ନାନୀ ମନରେ ଭୀଷଣ ଆଘାତ ହେବ । କାରଣ ଧନେ ତୋ ବାହାଘର ସେ କରିଥାନ୍ତା । ବର ପିଲାକୁ ଗୁଡ଼ାଏ ଯୌତୁକ ଦେଇଥାନ୍ତା । ବରଯାତ୍ରୀ ବି.ଆର୍.ଆଇ କ୍ଲବରେ ଭୋଜି ଖାଇଥାନ୍ତେ । ଦଫାଇ ଯାକ ବାଜା ବାଜି ଶୋଭାଯାତ୍ରା ହୋଇଥାନ୍ତା । ସେଥିରେ ତୁ ବନ୍ଦୀ ହୋଇଥାନ୍ତୁ, ଧନୀଙ୍କ ପାଖରେ । ସବୁଦିନ ପର ଘରେ ବାସନ ମାଜୁଥାନ୍ତୁ । ଅନୁଗ୍ରହୀ ରହିଥାନ୍ତୁ । କିନ୍ତୁ ମୁଁ ତୋତେ ମୁକ୍ତ ଜୀବନ ଦେବି । ଆମ ବାହାଘରେ ବସ୍ତୁବାଦ ମୋଟେ ନ ଥିବ । ବାହା ବେଦୀରେ ଅନ୍ୟ କେହି ସାକ୍ଷୀ ନ ଥିବେ, ସହନାଇ ବାଜିବ ନାହିଁ । ସବୁ ପ୍ରତିବନ୍ଧକ ସତ୍ତ୍ୱେ ମୁଁ ତୋତେ ଗୋଟିଏ ଶାନ୍ତ ଜୀବନ ଦେବି । ଯାହା ପ୍ରତ୍ୟେକ ନାରୀର କାମ୍ୟ, ତା' ପୁରୁଷ ଠାରୁ ।

ଗୃଲ : ମେଳା ପଡିଆରେ ଶକ୍‌ସା ରଖିଦେବା । ତୋ ପାଇଁ ନୂଆ ଶାଢ଼ୀ କିଣିବା । କନିଆଁ ବେଶରେ ସଜେଇବି ତୋତେ । ମୁଁ ସକାଳରୁ ନୂଆ ଜାମା ପିନ୍ଧି ନେଇଛି । ତୋତେ କେବଳ କନିଆଁ ବେଶ କରିଦେବି । ଦୁହିଁଙ୍କ ଫଟୋ ନେବା । ସ୍ମୃତି ରହିବ । ପରେ ଦର୍ଶକଙ୍କ ଧାଡିରେ ଛିଡ଼ାହେବା । ଦହଲୁ କହୁଥିଲା ତା' ମରଦ ପଣିଆର କଥା ସବୁ ।

ଗେହ୍ଲୀ ଯାହା ଭାବି ନ ଥିଲା, ଦହଲୁ କେତେ ଦିନରୁ କେତେ କଥା ଭାବିଛି ଯେତେବେଳେ ତା'ର ଅରାଜି ହେବାର ନ ଥିଲା । କୌଣସି ପୁରୁଷଙ୍କ ହାତ ଧରିଥାନ୍ତା । କିନ୍ତୁ ଦହଲୁ ଭିତରେ ପରିବର୍ତ୍ତନ ଅଛି, ଉତ୍ସାହ ଅଛି । ତେଣୁ ତା' ପ୍ରତି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ । ତାକୁ ନେଇ ଗେହ୍ଲୀ ଦେଖିବ- ଜୀବନର ପ୍ରଗତି । ଜୀବନର ନୂଆ ନାବ ଦହଲୁ ପ୍ରତି ଗେହ୍ଲୀ ଅର୍ପଣ କରୁଥିଲା ।

ଦୁହେଁ ତ୍ରିବେଣୀ ସଙ୍ଗମରେ ସ୍ନାନ କଲେ । ନୂଆ ଶାଢ଼ୀ ଖଣ୍ଡିକ ପିନ୍ଧି ନେଲା ଗେହ୍ଲୀ । ନିଜକୁ ନିଜେ କନିଆଁ ବେଶରେ ସଜେଇ ନେଲା । ଉଜାଗର ରହିଥିବା ଯାତ୍ରୀ ଗହଣରେ ସେ ବି ଦୀପ ସ୍ଥାପନ କରିଛି । ରାତିର ପ୍ରଥମ ପ୍ରହର ଯାଏ ଉଜାଗର । ଆକାଶ ଦୀପ ଆକାଶକୁ ଉଠୁଥାନ୍ତି । ସମଗ୍ର ବନ ପ୍ରଦେଶ, ପାହାଡ଼ ଗୁମ୍ଫା ପ୍ରଜ୍ଜ୍ୱଳିତ ସହସ୍ରାଧିକ ଦୀପରେ । ମନ୍ଦିରର ଊର୍ଦ୍ଧ୍ୱ ଦେଶରେ ଦୀପ ଉଠୁଥିଲା ଆକାଶକୁ , ସ୍ୱର୍ଗକୁ । ସେ ଚାହୁଁଥିଲା ଏଇ ଦୀପଶିଖା ଜୀବନଯାକ

ଆଳୁଅ ତାଙ୍କୁ ଦେଉ । ଦଧଲୁର ପ୍ରଶସ୍ତ ଗ୍ରୀବାରେ ନିଜକୁ ଧରେଇ ରଖୁବ ।

ଦୁହେଁ ଦର୍ଶନଙ୍କ ଭିତରେ ଠିଆହେଲେ । ହାତରେ ଶ୍ରୀଫଳ । ଠେଲାପେଲା ଆଜି ବାଧୁନାହିଁ । ଜୀବନର ଲକ୍ଷ୍ୟ ଠାକୁରଙ୍କୁ ଜଣାଇବେ । ଦୂରରୁ ଜୟ ଶିବ ଶମ୍ଭୁ, ବୋଲବମ ଶୁଭୁଥାଏ । ଠାକୁରଙ୍କୁ ଦୁହେଁ ଶ୍ରୀଫଳ ଅର୍ପଣ କଲେ । ପୂଜକଙ୍କୁ ଶ୍ରୀଫଳ ବାଢ଼େଇବାକୁ ଦେଇନାହାନ୍ତି । ବରଂ ଖୋଗତକ ବଢ଼େଇ ଦେଲେ । ଏକା ସାଙ୍ଗେ ଶ୍ରୀଫଳ ଭାଙ୍ଗି ଠାକୁରଙ୍କ ମୁଣ୍ଡରେ ଶ୍ରୀଫଳ ଜଳ ଅର୍ପଣ କରିଛନ୍ତି । ଦଧଲୁ ଥାଳିରୁ ସିନ୍ଦୂର ନେଇ ଗେହ୍ଲୀ କପାଳରେ ଲଗାଇ ଦେଇଛି । ଯାହା ଦର୍ଶକଗଣ ଦେଖିଲେ । ଯେଝା ମନକଥା ନେଇ ବ୍ୟସ୍ତଥିଲେ ଭକ୍ତଗଣ । ଗେହ୍ଲୀ ଓଢ଼ଣା ଦେଇ ଭକ୍ତର ପ୍ରଥମ ପ୍ରଣତି ଜଣାଇ ଦେଲା ଦଧଲୁ ପ୍ରତି । ନିଜକୁ ସମର୍ପି ଦେଲା ତା' ଆଗେ । ଯାହାର ସାକ୍ଷ୍ୟ କେହି ନ ଥିଲେ । ମୂକ ଠାକୁର ବ୍ୟସ୍ତଥିଲେ ଅନ୍ୟମାନଙ୍କ କାମନା ବୁଝିବାରେ । ଦଧଲୁ କିନ୍ତୁ ବୁଝିଥିଲା କେବଳ ଗେହ୍ଲୀ ମନକଥା ।

ମନ୍ଦିରରୁ ବାହାର ଆସିଲା ପରେ ଗେହ୍ଲୀ କାହିଁକି କେଜାଣି ଲଜେଇ ଯାଇଥିଲା ତା' ବର ସାମନାରେ । ଯାହା ଦଧଲୁ ଲକ୍ଷ୍ୟ କରୁଥିଲା । କିଛି କହୁ-ନାହିଁ । ହୋଟେଲକୁ ଗଲେ ଖାଇବା ପାଇଁ । ବାଟରେ ଗେହ୍ଲୀ ଧରିଥିବା ପ୍ରସାଦ ଶ୍ରୀଫଳରୁ ଖଣ୍ଡେ ଦଧଲୁ ମୁହଁରେ ଗୁଞ୍ଜିଦେଲା । ଗେହ୍ଲୀର ଆଗ୍ରହ ପ୍ରତି ଦୃଷ୍ଟି ନିବଦ୍ଧ କଲା ଦଧଲୁ । ଅବଶ୍ୟ ହୋଟେଲରେ ଆଗ ଅନ୍ନ ଧରିଲା ଦଧଲୁ ଓ ପରେ ଗେହ୍ଲୀ । ପତିବ୍ରତାର ସୂଚନା ସେ ଦେଇ ଦେଇଛି ପ୍ରଥମ ଦିନରୁ ।

ଏପରି ମନ ପ୍ରାଣର ସ୍ୱେଚ୍ଛାକୃତ ବିବାହ କରିଥିବାରୁ ଉଭୟେ ପ୍ରଫୁଲ୍ଲ ଦେଖା ଯାଉଥାନ୍ତି । ଗେହ୍ଲୀ ଭୁଲି ଯାଇନାହିଁ ବା ଉଧୁଲିଆ ଭୁଲିଯାଇ ନାହାନ୍ତି । କୁହାମାଇ ପାରେ କେତେକଙ୍କ ମତାମତ ନେଇନାହିଁ । ତା' ପାଇଁ ସେମାନେ ବିଗିଡ଼ି ପାରନ୍ତି ।

ଷ୍ଟୁଡିଓକୁ ଫଟୋ ଆଣିବାକୁ ଗଲେ । ଦଧଲୁର ପୌରୁଷ ଓ ଗେହ୍ଲୀର ମୂରୁକ ଚେହେରା ଏକାଠି ଉଭୟେ ଦେଖି କେତେ ଖୁସି ହୋଇଛନ୍ତି ।

ଦୁହେଁ ଦୋଳାରେ ପସ୍ତୁଣ ଯେର ମାରିଛନ୍ତି । ଦୋଳା ତଳକୁ ଆସିଲା-ବେଳେ ଟଗେହ୍ଲୀ ସାମାନ୍ୟ ଡରି ଯାଉଥିଲା ଓ ଦଧଲୁ ଗ୍ରୀବାରେ ଆଉଜି ଯିବାର ପ୍ରଥମ ସୁବିଧା ନେଇଛି । ଉଭୟଙ୍କ ପ୍ରାଣରେ ଉଷ୍ମତା ଥିଲା । ପ୍ରବାହ ଥିଲା । ଆକାଶର ଊର୍ଦ୍ଧ୍ୱରେ ଉଠିବାର ସ୍ୱପ୍ନ ଆଜି ସାକାର ତାଙ୍କ ପାଇଁ ହୋଇଛି ।

ମୀନାବଜାର, କଣ୍ଢେଇ ନାଚ ଦେଖିନେଲେ । ମୁହଁରୁ ପାନଖିଲି କମୁ ନ ଥିଲା । ମେଳା ପଡ଼ିଆ ଯାକ ସିଗାରେଟ ଧୂଆଁ ଦହଲୁ ଗୁଣ୍ଡୁ ଦେଉଛି ବେପରୁଆ ଭାବେ । ଏବେ ଘରର ଆସବାବପତ୍ର କିଛି କିଣିଥାନ୍ତେ । ଦହଲୁ କିନ୍ତୁ ମନାକଲା । ସେ ମନାକଲା କି ସେସବୁ ଚଇତ ମେଳା ବାରମିନପୁରଠାରେ ହେବ । ସେତେବେଳେ ଘରକରଣା ସବୁ କିଣିବା । କିଛିଦିନ ବାରବୁଲା ଜୀବନ ବିତାଇବା । ସେଥିରେ ମଜା ମିଳିବ । ବନ୍ଧା ଜୀବନ ଏବେଠୁଁ ଶ୍ରେୟ ହେବ-ନାହିଁ । ଦହେଁ କେବଳ ମେଳାରେ ଘେର ମାରିଲେ । ସମସ୍ତଙ୍କୁ ଜଣାଇଦେଲେ ସେମାନେ କିଏ କିଏ । ହାତରେ ଭଜା ବୁଟଚଣା ଧରିଥିଲେ । ମେଳା ପଡ଼ିଆ ଯାକ ବୁଲିଗଲେ । ମୁହଁରେ ଗୋଟି ଗୋଟି ବୁଣି ବୁଣି ଗେହ୍ଲୀ ସୁଗୁଇ ଦେଲା ସକାଳ ହୋଇ ଆସୁଛି । ତାକୁ ନେଇ ଘରେ ଗୁଣ୍ଡିବାକୁ ହେବ । ତୁଳସୀ ନାନୀ ଘରେ । ଗେହ୍ଲୀର ଅଉ ମନେପଡ଼ୁ ନ ଥିଲା ସେ ଯିବ କୁଆଡ଼େ ନାନୀ ଘରକୁ ନା ନିଜ ଘରକୁ । ପୁଣି ନିଜ ଘର ?? କେଉଁଠି ?? କୁଆଡ଼େ ??

ଦହଲୁ କହିଲା : ଆମର ଯେ ଏବେ ଘର ନାହିଁ । ଯିବା ତଥାପି ବାରମିନପୁର । ପ୍ରଥମେ ତୁଳସୀ ନାନୀଙ୍କୁ ଭେଟିବା । ତାଙ୍କୁ ସବୁକଥା କହି-ଦେବା । ତାଙ୍କ ପରାମର୍ଶକ୍ରମେ ପରବର୍ତ୍ତୀ ଯାହା କରିବା କଥା କରିବା ।

ସବାରି ଗାଡ଼ିଟି ଧୀରେ ଆସୁଛି ବାରମିନପୁର ଅଭିମୁଖେ । ନିଜେ ଯେତେ ବଳୁଆ ଥିଲେ ବି ଦହଲୁ ନିଜକୁ ସାମାନ୍ୟ ହତାଶ ବୋଧ କରୁଥିଲା ଆସନ୍ନ ସ୍ୱରୋଧ ପରିସ୍ଥିତି ପାଇଁ । ଆଜି ପୁଣି ରାସ୍ତାରେ ଦହେଁ ପାନବାଲା ବାବୁ ଗୀତ ଗାଇଛନ୍ତି ମିଳିତ କଣ୍ଠରେ । ଶ୍ରୁତିମଧୁର ଥିଲା ଉଭୟଙ୍କୁ । କୁହୁଡ଼ିପୂର୍ଣ୍ଣ ପରିବେଶ ଥିବାରୁ ତାଙ୍କୁ କେହି ଦେଖୁ ନ ଥିଲେ । ଗୀତର ସ୍ୱରଭଙ୍ଗ ନ ଥିଲା, ପ୍ରତିଧ୍ୱନି ନ ଥିଲା । ଯାହା ଆଗ ଗାଇଥିଲେ ଡୁଏଟ ଭାବେ, ବଣ ଭୋଜିରେ । ଦେହରେ ଜଓ୍ୱାଳାରେ ହାଓ୍ୱା ଲାଗିଛି ଉଭୟଙ୍କୁ । ଘରକୁ ଫେରି ରହୁଁ ନ ଥିଲେ କିନ୍ତୁ ।

ତୁଳସୀ ନାନୀ ଘରେ ପହଞ୍ଚି ଦହଲୁ ନାନୀଙ୍କୁ ଡାକିଛି । କାଲିଙ୍ଗବେଲ୍ ଆଜି ନ ଦେଇ କେବଳ ଡାକିଛି । ଉଭୟଙ୍କୁ ଦେଖି ତୁଳସୀ ଆଶ୍ଚର୍ଯ୍ୟ ହେଲେ । ଗେହ୍ଲୀ ପୁଣି ନାଲି ନୂଆ ଶାଢ଼ୀ ପିନ୍ଧିଛି । ମଥାରେ ସିନ୍ଦୂର । କ'ଣ କହିବ ଏମାନଙ୍କୁ ??

ଦହଲୁ ଓ ଗେହ୍ଲୀ ବସିଗଲେ ବାରଣ୍ଡା ଧାରରେ । ପାହାଚ ଉପରେ । ତୁଳସୀ ତୁରନ୍ତ ଘରୁ କିଛି ଟଙ୍କା ଆଣି ଗୁଞ୍ଜିଦେଲା ବର କନିଆଁଙ୍କ ହାତରେ । ବଲ ବଲ ଦେଖିବାକୁ ଲାଗିଲେ ନାନୀଙ୍କୁ । ଆଖିଗୁଡ଼ା ଯେପରି କହୁଥିଲା : ଆମକୁ କ୍ଷମାକର ନାନୀ । ତୁମେ ଭରସା ନ ହେଲେ ଚଳିବୁ କିମିତି । ତୁଳସୀ କିଛି କହିଲେ :

ଯାହା କଲୁ ଠିକ୍ କଲୁନାହିଁ ଗେହ୍ଲୀ । ମୋର ଏଥିରେ କିଛି କହିବାକୁ ନାହିଁ । କାକାମାନଙ୍କୁ ତୁରନ୍ତ ଯାଇ ଭେଟ । ସେମାନେ କ'ଣ କହୁଛନ୍ତି ଆଗ ଦେଖ ।

ଦହଲୁ ଦୃଢ଼ ସ୍ୱରରେ କହିଲା : ମୁଁ ଗେହ୍ଲୀକୁ ବାହା ହୋଇଛି । ତାକୁ ନେଇ ମୁଁହି ନୂଆ ସଂସାର ଗଢ଼ିବି । ମୁଁ ଯେ କାହାରି ମତାମତ ନେଇନାହିଁ, ତା' ପାଇଁ ଲଜ୍ଜିତ । ମୋ ପାଇଁ ବୁଝିବାର ସମୟ ନ ଥିଲା । ନୂଆ ଶକ୍‌ସା କିଣିବା ପାଇଁ ସଂଗ୍ରହ କରୁଥିଲି । ସମସ୍ତେ ବୁଝିଲେ ମୁଁ କୁଆଡ଼େ କୁଆଡ଼େ ବାହାଯାଇଛି । ଶକ୍‌ସା କିଣିଲି ଆଗ ଦିନ । ବୁଝିଥାନ୍ତି କେତେବେଳେ । ଆସିଥିଲି ତୁମ ଘରକୁ ଗେହ୍ଲୀକୁ ନେବାପାଇଁ, କହିଥାନ୍ତି ସବୁକଥା । ମା'ଙ୍କ ପାଖକୁ ଗେହ୍ଲୀକୁ ନେଇଛି । ତାଙ୍କୁ କହିଥାନ୍ତି, ପ୍ରସ୍ତାବ ଦେଇଥାନ୍ତି । ବାପା ତକିଆ ତଳେ ମୋର ସ୍ୱରୂପ ଦେଖୁଥିଲେ । କେହି ଭଲରେ ପଦେ ଶୁଣିବାକୁ ନ ଥିଲେ । କୁହନ୍ତୁ କାହାକୁ—ରାଜି କରାଇଥାନ୍ତି କାହାକୁ ?? ତେଣୁ ମୋ ପାଇଁ ବୁଝିବାକୁ ସମୟ ନ ଥିଲା । ଶିବରାତ୍ରୀ ଚାଲି ଯାଇଥାନ୍ତା । ଉନ୍ମାଦ କମି ଯାଇଥାନ୍ତା । ଆସନ୍ତା ଫଗୁଣକୁ ଗେହ୍ଲୀ ରହି ନ ଥାନ୍ତା । ତେଣୁ ଏଇ ଫଗୁଣରେ ମୋ କାମ ବାଢ଼ିଦେଲି । ମୁଁ ନିଜେ ଗେହ୍ଲୀକୁ ନିଜର କରି ନେଇଛି । ଦଣ୍ଡ ଭୋଗିବାକୁ ଥିଲେ ଭୋଗିବି ।

ପ୍ରଜ୍ଞା ବାବୁ କିନ୍ତୁ ଦହଲୁକୁ ସାବାସ ଜଣାଇଲେ । ତୁଳସୀ କିଛି କହି ନାହିଁ ନ୍ତି ସେ ଯୁକ୍ତିରେ ।

ଗେହ୍ଲୀ ଓ ଦହଲୁ ସେଦିନ ଘରକୁ ଆଉ ଫେରି ନାହାନ୍ତି । ଦିହେଁ ଶକ୍‌ସାରେ ବସିଲେ । ସହରର ପରିକ୍ରମା କରିନାହାନ୍ତି । ଘର—ଛପର ଘର ଖଣ୍ଡେ ପ୍ରଥମେ କଉଠି ଯୋଗାଡ଼ କରିବେ । ଗେହ୍ଲୀକୁ ଆଶ୍ରୟ ଦେବାକୁ ପଡ଼ିବ । ତା'ର ବଧୂ ଜୀବନକୁ ସମ୍ମାନ ଦେବାକୁ ହେବ । ଖପରା ଦଫାଇ ଭିତରେ ନଡ଼ା ଛପର ଘର ଗୁଡ଼ାଏ ଅଛି । କାହାରିକୁ କହି କୋଠରୀଟିଏ ଭଡ଼ା ନେବେ । ରାତିର ସହବାସ ସେଇଠି କାଟିବେ ।

ଗେହ୍ଲୀ ନୀରବ ରହିଥିଲା । ହସର ଜୁଆର ଭିତରେ ହଠାତ୍ ଭଟ୍ଟା ପଡ଼ିଯିବା ଦହଲୁର ପୌରୁଷ ପ୍ରତି ଅପମାନ ଥିଲା । ବାରଣ୍ଡା ପାହାଚରୁ ସେ ଗେହ୍ଲୀକୁ ଉଠାଇଛି । ନବବଧୂର ସୁଆସୁଣୀ ସେ ନିଜେ ବନିଛି । ଗେହ୍ଲୀ ଧୀରେ ପ୍ରତିବାଦହୀନ ପଦଚାଳନାରେ ବାବୁଙ୍କ ଦୁଆର ଅତିକ୍ରମ କରେ । ଶକ୍‌ସାରେ ବସି ଯାଇଛି ସିନା, ମୁଣ୍ଡଟେକି କାହାରିକି ଦେଖି ପାରିଲା ନାହିଁ । ଅବଗୁଣ୍ଠନ ତଳେ ଅଶ୍ରୁମୋଚନ କରୁଥିଲା କିନ୍ତୁ ।

ରିକ୍ସା ଆଗକୁ ଗଡ଼ୁଥାଏ । କପ୍‌ଲସ ଅଭିମୁଖେ । ପୁଙ୍ଗା ପାହାଡ଼ ତଳେ ତଳେ ଚୂନା ଭଟାକୁ ।

ଚୂନା ଭଟା ବ୍ରିଟିଶ ଶାସନ କାଳର ଚୂନ ଉତ୍ପାଦନ ଚୁଲ୍ଲୀ ଅଟେ । ଏହାର ନିର୍ମାଣ ଏକୋଇଶି ମସିହା ପୂର୍ବରୁ । କମ୍ପାନୀଙ୍କର ପ୍ରଥମ ଚୂନ ଉତ୍ପାଦନ କେନ୍ଦ୍ର । ନଭସ୍ପୃର୍ଶୀ ଅଟ୍ଟାଳିକା ପ୍ରାସାଦ । ଦଶଟି ଚୁଲ୍ଲୀର ଅବସ୍ଥିତି । ସାମାନ୍ୟ ବ୍ୟବଧାନରେ ମେରୁ ଚୂନ ପଥର ପାହାଡ଼ଟି ହୁଙ୍କାର ଛାଡ଼ୁଛି । ପାହାଡ଼ ଓ ଚୂନା ଭଟା ମଧ୍ୟରେ ଲୁହାର ଓଭର ବ୍ରିଜ । ଆଜି ଭଗ୍ନସ୍ତୂପର ପ୍ରତୀକ । ଚୂନ ପଥର ଶ୍ରମିକ ବୋହି ଆଣୁଥିଲେ ଚୁଲ୍ଲୀ ଉପରକୁ । ଚୂନ, ଗେଙ୍ଗୁଟି ଜାତୀୟ ପଥର ସବୁ ପୋଡ଼ା ଯାଉଥିଲା । ଭଟାର ନିମ୍ନ ଭାଗରେ ଚୂନ ପାଉଁଶ ବାହାର କରିବା ରାସ୍ତା ରହିଛି ।

ରିକ୍ସା ଠିଆହେଲା ବହୁ ପୁରୁଣା ପ୍ଲାଟଫର୍ମରେ । ପ୍ରଟୁଟ ଗୁଳ୍ମ ଓ ବଣ ତୁଳସୀ ଗୁଳ୍ମ ଅତିକ୍ରମ କରିବାକୁ ହେବ । ତହେଁ ଯେ ଚୂନା ଭଟା ମଧ୍ୟକୁ ପ୍ରବେଶ କରିବେ ।

ରୋହିଣୀ ଦେଖିନେଲା ଥରେ ସେହି ରୁଗ୍ଣ ଭଟାର ଅବୟବକୁ । ଯାହାର ଯୌବନ ସେ ଦେଖିନାହିଁ । ଶୁଣିଛି ମାତ୍ର । ଦର୍ଶନୀୟ ସ୍ଥାନର ଅନ୍ତରାଳରେ ରହି ଯାଉଛି ଆଜି । ଅଧୁନା ଦର୍ଶନୀୟ ସ୍ଥାନ ହୋଇଥିଲେ ବହୁ ଆଡ଼ମ୍ବର ପିକ୍‌ନିକ ସ୍ପଟ ହୋଇ ଯାଆନ୍ତାଣି । ଗୋରୁ, ଛେଳି ସବୁ ଅଯତ୍ନ ଚରିବାକୁ । ଚରାଭୂମିର ଯଦିଓ ପଠା ନୁହେଁ ସେ ସ୍ଥାନ । ତଥାପି ଗୁଳ୍ମ ଉଚ୍ଛାଳରୁ ଅନାବନା ଘାସ ବାଦ ଯାଏନାହିଁ ।

ସ୍ମୃତିରେ ରିକ୍ସା ଛାଡ଼ାହେଲା । ଚୂନା ଭଟା ତା' ନିଜ ସ୍ମୃତି ଅଜାଡ଼ ଦେଲା ରିକ୍ସାଟିକୁ । ଅତୀତରେ ସେଇ ସ୍ମୃତି କେତେ ଶ୍ରମିକଙ୍କୁ ସ୍ମୃତି, କର୍ମ ସଂସ୍ଥାନ ଦେଇଛି । କମ୍ପାନୀର ସଂବୃଦ୍ଧି ଦେଇଛି । ଏହିସ୍ଥାନ ସର୍ବବୃହତ ଚୂନ ଖଣି ହୋଇ ପାରନ୍ତା । ମାତ୍ର ରକ୍ଷଣାବେକ୍ଷଣ ଅଭାବ ହେତୁ ବା ଯାନ୍ତ୍ରିକ ଉନ୍ନତି ହେତୁ ଏ ଭଟି କାର୍ଯ୍ୟକ୍ଷମ ନୁହେଁ । ଦର୍ଶନୀୟ ସ୍ଥାନର ତାଲିକାରୁ ବି ହଟି ଯାଇଛି । ଯାହା ସମ୍ଭବତଃ କମ୍ପାନୀଙ୍କ ରକ୍ଷଣା ବେକ୍ଷଣ ବ୍ୟବସ୍ଥା ହେଲେ ସ୍ମୃତିର ସୌଧ ଭାବରେ ଛିଡ଼ା ହୁଅନ୍ତା । ପରିଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରନ୍ତା । ପ୍ରାଚୀନ ଶିଳ୍ପ ସମୃଦ୍ଧିର କଥା କୁହନ୍ତା ପଦେ ପଦେ ।

ଚୂନା ଭଟା କହେ : ମୋର ବୟସ ଯାଇଛି । ଶୀର୍ଣ୍ଣ କଙ୍କାଳ ପ୍ରତି ଦୃଷ୍ଟି କେହି ଦେବେନାହିଁ । ସୌଧକୁ ଜାବୁଡ଼ି ଧରିଥିବା ବରଗଛ ଓହଳ ଭିତରେ ପେଚା ଉଡ଼ି ଯାଉଛି ଦିନରେ । ଯେହେତୁ ତା'ର ସାମନା ସ୍ମୃତି ତାକୁ

ମେଘାଚ୍ଛନ୍ନ ଗଡ଼ ପରି ଜଣାପଡ଼ୁଛି । ଉନ୍‌ଘଟା ବାଦୁଡ଼ି ଗୁଡ଼ିକ କିଚିଟା ଶବ୍ଦ ଓ କମ୍ପନ ଅନୁଭବ କରି ଉଡ଼ିଗଲେ ଗୁମ୍ଫରେ ଓ ପୁଣି ମିଳିତ ହେଲେ ସେଇ ବରଗଛ ଡାଳରେ । ଗେହ୍ଲୀ ଓଢ଼ଣା ଟେକି ଚୂନା ଭଟାର ଦୃଶ୍ୟ ଅବଲୋକନ କରୁଥିଲା । ଅର୍ଦ୍ଧଚନ୍ଦ୍ରମା ଓଢ଼ଣାରୁ ସେପରି ଦୃଶ୍ୟ ତାକୁ ମନୋରମ ଲାଗୁଥିଲା ।

ପୁଟୁଶ ଗୁଳ୍ମ ଦେଇ ସେମାନେ ଆଗକୁ ବଢ଼ିଲେ । ବଣ ତୁଳସୀର ମହକ ବାନ୍ଧୁଥିଲା ପରିବେଶରେ । ଗେହ୍ଲୀ ଶାଢ଼ୀ ଟେକି ଚାଲୁନାହିଁ । ନୂଆବୋହୂର ବେଶ ହେତୁ ତା' ଲୁଗା କାନିସାକ ପୁଟୁଶ ଫୁଲ, ଶୁଖିଲା ତୁଳସୀ ପତ୍ର ଲାଗି ଯାଉଥିଲା ।

ଚୂନା ଭଟାର ଅପରିଷ୍କାର ପରିବେଶ ଗେହ୍ଲୀକୁ ମୋଟେ ଝରପ ଲାଗିନାହିଁ । ଧସି ଯାଉଥିବା ଇଟା ଉପରେ ପାଦ ପକାଇ ଖଟି ମୁହଁ ଦେଇ ପଶିଛି । ଫକାଣ୍ଟି ପୋଲ ଭିତରେ କିଛିଦୂର ଯାଏ । ଗୋଟିକ ପରେ ଗୋଟିଏ ଭଟା ଦେଖିଲେ । କେଉଁଠି ଭଲରେ ବସିବା ହେବନାହିଁ । ସୌଧ ଉପରକୁ ଚଢ଼ିବାର ରାସ୍ତା ଅଛି ନାହିଁ । ସ୍ଲୋପିଙ୍ଗ ବ୍ରିଜଟି ଭାଙ୍ଗି ନଷ୍ଟ ହୋଇ ଯାଇଛି ।

ତଥାପି ଗୋଟିଏ ଚୁଲ୍ଲୀ ଭିତରକୁ ଦୁହେଁ ପଶିଲେ । ବାହାରୁ କେହି ଦେଖୁଥିବାର ସେମାନେ ଅନୁମାନ କରି ନାହାନ୍ତି । ଗୋଡ଼ରେ ଦହଲୁ ସମାନ କରିଗଲା ଇଟାସବୁ । ଦୁହିଁଙ୍କ ବସିବା ସାମାନ୍ୟ ସୁବିଧା ହୋଇ ଯାଇଛି ।

କିଛି ସମୟ ଦୁହେଁ ଥକ୍କା ମାରିନେଲେ । ଗେହ୍ଲୀ କାହିଁକି ସେ ଲାଜେଇ ଗଲା ଏଥରକ । ଦହଲୁ ବାହୁଡ଼ଲେ ଆଉଜି ପଡ଼ୁଛି । ଝାଉଁଳି ପଡ଼ୁଥିବା ଫୁଲଟିକୁ ସେ ସାଉଁଟି ନେଲା ଅସଜଡ଼ା ପରିଡ ପରି ।

ଆମେ ଏଠି କେତେବେଳଯାଏଁ ରହିବା : ଗେହ୍ଲୀ ପଚାରିଲା ।

ମନର ଭୋକ ମେଣ୍ଟିବା ଯାଏ ରହିବା । ଗେହ୍ଲୀ ଓଢ଼ଣା ଟେକିନେଲା । ହାତ ବଢ଼ାଇ ମାଗିଲା କିଛି । ଦହଲୁ ତା' ହାତମୁଠା ଭର୍ତ୍ତିକଲା ସ୍ନେହରେ । ଯାହା ସେ ପାଇଲା ତାକୁ ଆଉ ଦହଲୁ ଦେଖାଇ ନାହିଁ । କାନରେ ଗର୍ଣ୍ଣି ମାରିଦେଲା ।

ଗେହ୍ଲୀ ତା' ପରିଡ ଖୋଲି ବଛେଇ ଦେଲା । ଶୋଇ ରହିଲା ପ୍ରଖର ଶ୍ୱାସରେ । ଦହଲୁ କିଛି ସମୟ ତୋଳିନେଲା ଗେହ୍ଲୀକୁ । ଦୁଇଟି ଆତ୍ମା ଏକ ହେଉଥିଲେ ଏ ଅବସରରେ । ଗେହ୍ଲୀ ଅନୁଭବ କରୁଥିଲା ଦହଲୁର ପ୍ରଶସ୍ତ ଛାତିର କମ୍ପନ ଓ ପୁରୁଷର ପୌରୁଷ ପ୍ରତି ନିଜକୁ ସମର୍ପି ଦେବାର ଅନୁଭୂତି ।

ଦହଲୁ ଚବୁତରୁ ନିଜେ ଫେରି ଆସି ପଚାରିଲା : ଏଠି କ'ଣ ମୋତେ ସବୁଦିନ ରଖିବୁ ।

ଏଠି ନୁହେଁ ଗେହ୍ଲୀ ହୃଦୟରେ ତୋତେ ସବୁଦିନ ବାନ୍ଧି ରଖିବ । ଆମ ପ୍ରୀତିର ସ୍ରୋତ ବନ୍ଦ ହୋଇଯିବା ଯାଏଁ ଆମେ ଏକାଠି ରହିବା ।

ସେତେବେଳେ ଦହଲୁ ଅନୁଭବ କରୁଥିଲା ଗେହ୍ଲୀ ତାକୁ ପବିତ୍ର ବିନମ୍ର କରୁଛି । କେତେ ନମ୍ରତାର ସହିତ ସହଯୋଗ ମାଗୁଛି । ସ୍ତ୍ରୀ ହୋଇ ବଞ୍ଚି ରହିବାର ଅଧିକାର ମାଗୁଛି । ସେ ଅନୁଭବ କରୁଥିଲା ସେ ହିଁ ବିଜୟୀ । ଗେହ୍ଲୀ ଏକ ପରାଜିତ, ଶରାହତ ଆଶ୍ରିତା । ଆଶ୍ରିତା ପ୍ରତି ତା'ର ଯଥେଷ୍ଟ ଆନୁଗତ୍ୟ ପ୍ରକାଶ କରିବ ହିଁ କରିବ ।

ରାତିଟାଯାକ ଜାଗର, ମେଳା ଦେଖିଥିବାରୁ ଦହଲୁ କ୍ଳାନ୍ତଟା ଗେହ୍ଲୀ ଓଦା କରିଗଲା । ସାରା ଦିନ ଚାଲିଯିବା ପରେ ନିଦ ଭାଙ୍ଗିଛି । ଦହଲୁର ପରବର୍ତ୍ତୀ କର୍ତ୍ତବ୍ୟ ଆରମ୍ଭ କରିଦେବା ଉଚିତ । ଏ ଚୂନା ଭାଟି ଘର କ୍ଷଣିକ ପାଇଁ । ଦୁହିଁଙ୍କ ଉଷ୍ମ ଉନ୍ମାଦନା ପାଇଁ । ରାତି ଯାପନ ପାଇଁ ନୁହେଁ । ଜୀବନ ଜୀଇଁବା ପାଇଁ ନୁହେଁ । ଗେହ୍ଲୀକୁ ନିରାପଦରେ ରଖିବାକୁ ହେବ ।

ଦହଲୁ ଚୂନା ଭାଟିର ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଇଛି । ସ୍ଥାନେ ସ୍ଥାନେ ଚୁଲିରୁ ଇଟାସବୁ ଖସି ଯାଇଛନ୍ତି । ସ୍ଥାନଟି ନିରାପଦ ମଣିନାହିଁ । ନିଜେ ଚୂନା ଭାଟି ନିଜର ନିରାପତ୍ତା ନେଇ ନ ଥିବାବେଳେ, ସେ ଯେ ସେଠି ଗେହ୍ଲୀର ନିରାପତ୍ତା ନେବ ଯୁକ୍ତି କରିବା ଠିକ୍ ହେବନାହିଁ । ଲୁଚିବେ କାହିଁକି ? କାହାକୁ ଭୟ କରି ଲୁଚିବେ ? ବାପା, କାକା···ନା କାହାକୁ ?? ସମସ୍ତଙ୍କୁ ପ୍ରକାଶ୍ୟ କରିଦେବ ଘଟଣାଟିକ, ସେମାନଙ୍କ ଯୋଗସୂତ୍ର ।

ଦୁହେଁ ନିରାପତ୍ତା ଚାହୁଁଥିଲେ । ବେଶୀ ଚାହୁଁଥିଲା ଦହଲୁ ।

ଗେହ୍ଲୀକୁ ଧୀରେ ଉଠିବାକୁ ସୂଚନା ଦେଲା । ନିଜେ ଟିକିଏ ମୋଡ଼ି-ମାଡ଼ି ହେଲା ।

ଆମେ ବସ୍ତିକୁ ଚାଲିଯିବା ଗେହ୍ଲୀ । ମୁଁ ତୋତେ ବସ୍ତିରେ ନେଇ ରଖିବି । ବସ୍ତି ବାସିନ୍ଦା ହେବା । ଆମେ ଘର କରିବା । ଅମର ବ ଗ୍ରେଣ୍ଟିଆ ଘରଟିଏ ଭଡ଼ାରେ ଥିବ । ଖପରା ଦଫାଇରେ ଘର ମିଳିଯିବ । ଚାଲ୍— ତୁ ରିକ୍ସାରେ ବସି ଯା । ଏ ବେଳକୁ ହୋଟେଲରେ କିଛି ଖାଇନେବା । ମୁଁ ବେଳ ପହରୁ ବାସନକୁସନ ଠିକ୍ କରିବି । ରାତିକୁ ତୁ ରୋଷେଇ କରିବୁ ।

ଦୁହେଁ ଏକାଠି ବସି ଖାଇବା । କିଛିଦିନ ସାମାନ୍ୟ ଅସୁବିଧା ରହିବ । ଆମେ ଯେ ପର୍ଯ୍ୟନ୍ତ ସ୍ୱଚ୍ଛଳ ନୋହୁଁ ସେଯାଏ ସାମାନ୍ୟ କଷ୍ଟ କରିବା । ଘର ନ ପାଇବା ଯାଏଁ ଏଇ ରିକ୍ସା ଆମ ପାଇଁ ଘର ହୋଇ ରହିବ ।

ଗେହ୍ଲୀ ଓ ଦହଲୁ ମନର ପ୍ରତିଜ୍ଞା ଭିତରେ ରହି ଜମା ଯୁକ୍ତି କରି ନାହାନ୍ତି । ରିକ୍ସା ବାହାରୁଥିଲା ସିମଡ଼େଗା-ରାଉରକେଲା ରାସ୍ତାରେ । ଦେଢ଼ଟା ପୁଙ୍ଗା ବାଜିଛି । ଦହଲୁ ବୁଲାଇ ଦେଲା ତା' ପ୍ରିୟ ସାଥୀକୁ ଖପରା ଦଫାଇକୁ ଓ ଜୀବନସାଥୀ ଗେହ୍ଲୀକୁ ନେଇ ଖୋଜି ବୁଲିଲା ଛପର ଘରଟିଏ ।

ଛପର ଘରଟି ବଡ଼ ଆରାମ ଲାଗୁଥିଲା ଦୁହିଁଙ୍କୁ ।

ଗୋଟିଏ ପ୍ରକାର ଜୀବନ ଜୀଇଁବାକୁ ଦୁହେଁ ଆରମ୍ଭ କରିଛନ୍ତି । ରାତିର ବାହାଲିଆ ନିଦ ଘେରି ଦେଇଛି ଉଭୟଙ୍କୁ ।

ସାମାନ୍ୟ ରୋଷେଇ ସାମଗ୍ରୀ କିଣାକିଣି କଲେ । ଗେହ୍ଲୀ ନିଜ ହାତରେ ରାନ୍ଧି ଦହଲୁ ପାଇଁ ବାଢ଼ିଦେଲା ଛଅ ତୁଣ ନ ଭଜା । ବଞ୍ଚିବାର ଯୋଜନା ଦୁହେଁ ବସି ଦୀର୍ଘ ଆଲୋଚନା କଲେ । କେହି ତାଙ୍କୁ ବଧୂ ପ୍ରବେଶର ସ୍ୱାଗତ କରି ନାହାନ୍ତି କିନ୍ତୁ ।

ଆଲୋଚନାର ମଝିରେ ଗେହ୍ଲୀ କହିଲା : ତୋ ପାଇଁ ମୁଁ ମୋଟେ ବୋଝ ହେବିନାହିଁ ଦହଲୁ । ତୁଳସୀ ନାନି ମୋତେ ଦୁଇଶହ ଟଙ୍କା ଦେଇଛି । ତାକୁ ନେଇ ଭଞ୍ଜ ଭବନ ବଜାରରେ ତରକାରି, ଶାଗ ସବ୍‌ଜି ବସାଇବି । ଅନ୍ୟ କେତେଜଣ ଯେପରି କୁଚୁଣୀ କରୁଛନ୍ତି, ମୁଁ ବି ବସିବି ତାଙ୍କ ଧାଡ଼ିରେ । ସକାଳୁ ତୋତେ ଜଳଖିଆ ଦେଇ ବଜାରକୁ ଯିବି । ତୁ'ଟା ସହରରେ ରିକ୍ସା ଚଲେଇବୁ । ରାତିକୁ ଘରକୁ ଫେରିବା ବାଟରେ ଜିନିଷପତ୍ରସବୁ ରିକ୍ସାରେ ବୋଝେଇ କରି ନେଉଥିବା । ବାଟରେ ମୋହନ ସିଂଙ୍କ କିରାନା ଦୋକାନରୁ ତେଲଲୁଣ ନେଉଥିବା । ମାସଟିଏ ଚଳିବାକୁ ଅସୁବିଧା ହେବନାହିଁ । ଘରେ ଦୁହିଁଙ୍କ ଟଙ୍କା ଏକାଠି ରଖିବା । ଓଳିଟି ଖୋଜି ଖାଇବାରେ ଆପତ୍ତି କରିବୁ ନାହିଁ ।

ଦହଲୁ ସମ୍ମତି ଜଣାଇଲା । ଏପରି ବ୍ୟବସ୍ଥା ଭିତରେ ପାରିବାରିକ ଜୀବନରେ ଅବ୍ୟବସ୍ଥା ଯେହେତୁ ଆସିବ ନାହିଁ । ବରଂ ଦହଲୁ ଦୂର ଜାଗାରୁ ଶାଗ ସବ୍‌ଜି ଆଣି ଗେହ୍ଲୀକୁ ଯୋଗାଇ ଦେବ । ବଳି ଦି' ପଇସା ପାଇବେ । ମୁଠାଏ ଭଲରେ ଖାଇବେ । ସବୁ ଭବିଷ୍ୟତ ଆଗରେ ପଡ଼ିଛି ।

ଗେହ୍ଲୀ ଘରୁ ଚାଲିଯିବା ପରେ ତୁଳସୀ ବିଶେଷ ଅସୁବିଧା ଅନୁଭବ କରିଛନ୍ତି । ବୁଲିଚିବା, ବଜାର ଯିବା ସମସ୍ତରେ ଗେହ୍ଲୀ କଥା ମନେ ପଡ଼ିଯାଏ । ସୁମନ୍ତ ଅବଶ୍ୟ ବଡ଼ ହୋଇ ଯାଇଛି । ସେ ଆପେ ଯାଏ ସ୍କୁଲକୁ ସାଇକେଲରେ । ତେଣୁ ତୁଳସୀ ଏପରି ଅସୁବିଧା ପାଇଁ ଚିନ୍ତିତ ହୋଇ ପଡ଼ନ୍ତି ।

ସେଦିନ ଗୁରୁବାର, ନୂଆ ପସରା ପକାଇ ହୋଟଲ ଖୋଲିଛି ଗେହ୍ଲୀ । ଏଇ ବଜାରରେ ସେ କେବେ ଅଚିହ୍ନା ନୁହେଁ । ତଥାପି ସବ୍‌ଜିବାଲି ବନି ଯାଇଥିବାରୁ ଅନେକ ତାକୁ ଦେଖିବାକୁ ଲାଗିଥାନ୍ତି । ଦଣ୍ଡି ତରାଜୁ ଧରି ଓଜନ କଲାବେଳେ ହାତର ଚୁଡ଼ି ସବୁ ଝଁନକୁଥାଏ । କିଏ କିଏ ଦର ପଚାରିବା ବାହାନାରେ ଦେଖନ୍ତି ଏଇ ସେଇ ଗେହ୍ଲୀ । ସବ୍‌ଜି ବଜାର ମଣ୍ଡନ କରୁଛି ।

କିଣାକିଣିର ଅସୁବିଧା ହେତୁ ପ୍ରଜ୍ଞା ବାବୁ ନିଜେ ଅଫିସରୁ ଫେରିଲା ବାଟରେ କିଣିଥାନ୍ତି । ହସ୍‌ପିଟାଲ ପାଖେ ଫଳ ଦୋକାନ ପାଖେ ମାରୁତି ଠିଆ କରିଦେଲେ କିଛି ପନିପରିବା ନେବାକୁ ସେ ଅଛି ମନେକରି । ଗେହ୍ଲୀ କିନ୍ତୁ ବାବୁଙ୍କୁ ଦେଖି-ନେଲା । ପାଟିକରି ଡାକନ୍ତା କି ? ନାଁ ଠିକ୍ ହେବନାହିଁ । ବରଂ ସରମିଗଲା । ଭାବିଲା : ଡାକିବି କିମିତି, ଏତେବଡ଼ ଲୋକଙ୍କୁ । ଜଣେଇବି କିମିତି ଯେ ସେ ଏବେ ଏଇ କର୍ମପନ୍ଥା ବାଛି ନେଇଛି । ତାଠୁଁ ସବୁକିଛି କିଣିନେବେ । ନତୁବା ଘରେ ନିଜେ ଦେଇ ଆସିବି ପଚାରି ନେବ ପାଖକୁ ଯାଇ । ପ୍ରଜ୍ଞା ବାବୁଙ୍କୁ ଦେଖି ଗେହ୍ଲୀ ଠିଆ ହୋଇ ନମସ୍କାର କରିଛି ।

ପ୍ରଜ୍ଞା ବାବୁଙ୍କୁ ଚିହ୍ନିବାକୁ ଡେରି ହୋଇନାହିଁ । ବେଗ୍ ତା' ହାତକୁ ବଢ଼ାଇଦେଲେ । ସେ ଆଉ କ'ଣ ପଚାରିବ ଯେ କ'ଣ ସବୁ ଦିଆଯିବ । ଗେହ୍ଲୀ ତ ତାଙ୍କ ପରିବାରର ଖାଦ୍ୟ ରୁଚି ଜାଣେ । ତେଣୁ କିଛି ନ ପଚାରି ଶାଗ, ସବ୍‌ଜି, ଅଦା, ଧନିଆପତ୍ରରେ ଥଳିଟା ଭରିଦେଲା । ବାବୁ ଶହେ ଟଙ୍କାର ନୋଟଟିଏ ତା' ହାତକୁ ବଢ଼ାଇ ଦେଲେ । ଯାହା ଗେହ୍ଲୀ ନେବାକୁ ଚାହୁଁ ନ ଥିଲା ।

ପ୍ରଜ୍ଞା ବାବୁ କହିଲେ : ନୂଆ ହୋଟଲ୍ ଖୋଲିଛୁ । ଭଲକରି ହିସାବ କରିବୁ । ଦିଇ ପଇସା ହାତକୁ ଆସିବ ଯେପରି । ହାତରୁ ଯିବନାହିଁ ପଇସାଟିଏ । ବାବୁଙ୍କ କଥାରେ ସେ ହଁ ଭରିଛି । ଥଳିଟା ନିଜେ ବାବୁଙ୍କ ମାରୁତିରେ ରଖିଦେଲା । ବାକି ପଇସା ଫେରାଇବାକୁ ଚାହିଁଛି । ପ୍ରଜ୍ଞା ବାବୁ କହିଲେ : ଆଜି ନୂଆ ହୋଟଲ୍ ଖୋଲିଛୁ । ସେତିକି ମୋ ତରଫରୁ ଥାଉ । ଗେହ୍ଲୀ ବାବୁଙ୍କୁ କୃତଜ୍ଞତା ଜଣାଇ ଫେରିଛି ପସରା ଆଡ଼କୁ । ଅନ୍ୟ ଗ୍ରାହକମାନଙ୍କ କଥା ବୁଝିଛି । ମାରୁତି ଭିତରୁ ବାବୁ ଗେହ୍ଲୀକୁ ଦେଖି ସ୍ୱସ୍ତିର ହସ ମାରି ଆଗେଇଲେ ବସା ଘରକୁ । ତୁଳସୀକୁ ସବୁକଥା କହିଛନ୍ତି ପରେ ପରେ ।

ସୁମାନୀ ଖାଦାନରୁ ଫେରନ୍ତି ବାଟରେ ଦହଲୁର ଘର ଠାବକଲା । ତାକୁ ସେ ବେଶି ସ୍ନେହ କରେ । ତେଣୁ ଘଟିଯାଇଥିବା ଘଟଣା ନେଇ କିଛି ଭାବନାହିଁ । ବରଂ ମଦନକୁ କହି ବୁଝାଇ ଘରକୁ ଫେରାଇ ନେବ । ସେମାନଙ୍କ ଅବସର ବୟସ ସେ ହୋଇ ଯାଇଛି । କମ୍ପାନୀ ପାଖରୁ ପ୍ରଭିଡେଣ୍ଟ ଫଣ୍ଡ, ଗ୍ରାଚୁଇଟି ପାଇବେ । ମଦନ ସ୍ଥିର କରିଛି ସେଇ ଟଙ୍କାରେ ଗାଁରେ କିଛି ଅଧିକ ଜମି କିଣିବ । ଗାଁରେ ରହିବ । କୋଡ଼ିଏ ବର୍ଷର କମ୍ପାନୀ ଚାକିରିରୁ ଅବସର ସେ ନେବ । ବେଳ ପାଇଲେ ସମସ୍ତେ ପାଖେ ରହିବ !

ସୁମାନୀର ଇଚ୍ଛା କିନ୍ତୁ ଭିନ୍ନ ଥିଲା । ସେ ରହିଯିବ - ଦହଲୁ ପାଖେ । ଫଣ୍ଡ ସବୁ ନ ଉଠାଇ ଘର ଖାଲି କରିବ ନାହିଁ ପୁଅ ବୋହୂଙ୍କ ପାଖରେ ରଖିବ ; ତାଙ୍କ ଭବିଷ୍ୟତ ଦେଖିବ । ଭୁବନ ଗାଁକୁ ଫେରିବ ନାହିଁ । ସେଇ ଖାଦାନ ତଳି ଜୀବନ ତା' ପାଇଁ ଶ୍ରେୟସ୍କର ହେବ । ଗ୍ରେଚିଆ ଘରଟିଏ କରିବ । ଉପରେ ଘାସ ଦାଇବ । ସହରରେ ଅନେକ ଗାଈ ରଖିଛନ୍ତି । ଘାସ ଦେଇ ସେ ଚଳିଯିବ । ମଦନ ଦିନେ ସେଇ ଘାସ ବିକି ବଢ଼ିଛି । ସେ ଯେ ଆଉ ବଢ଼ି ପାରିବ ନାହିଁ । ଗୁଳୁଗୁଣ ମେଣ୍ଟାଇବ । ସ୍କୁଲ ପରିଦର୍ଶକ ବାବୁଙ୍କ କେବେ କମିତ ଭେଟି ଗାଈ ପାଇଁ ଘାସ ନେଇ ଦିଏ । ତୁଳସୀ ଘର ବାରଣ୍ଡାରେ ରହେ । କେତେକଙ୍କ ଜୀବନ ଯାହାର ପରିସମାପ୍ତି ଘଟୁଥିବାବେଳେ କେତେକେ ନିଜେ ନିଜ ପରିଧିରେ ସନ୍ତୁଷ୍ଟ ଥିଲେ । ଗ୍ରାଚୁଇଟି ଟଙ୍କା ସବୁ ତୁଳସୀଙ୍କୁ ଦେବ । ସେ ସବୁ ବେଙ୍କରେ ଫିକ୍ସଡ଼ ଡିପୋଜିଟ ରହିବ । ସୁଧରେ ଚଳିବା ଅସୁବିଧା ହେବନାହିଁ । ପୁଣି ହାଜିର ମଜୁରି କରି ଘାସ ବିକି ଚଳିଯିବାରେ ଅସୁବିଧା ହେବନାହିଁ । ବଳ ବୟସ ଯାଇଛି । ଯାଇ ନ ଥିଲେ ହୁଏତ ପୁଣି ବସନ୍ତ ବାବୁ ବା ଭବାନୀଶଙ୍କର ବାବୁଙ୍କ ପାଖକୁ ଫେରି ଯାଇଥାନ୍ତା । ସବୁ ସମ୍ଭବ ନୁହେଁ ।

ମଦନ କିନ୍ତୁ ଦହଲୁକୁ ଆଉ ଦିନେ ଦେଖିନାହିଁ । ପିଲାଟା ପ୍ରତି ମନଟା ତା'ର ବିଗିଡ଼ି ଗଲା । ଦହଲୁ ଠିଆ ହୋଇଥାନ୍ତା ସମସ୍ତେ ପରି । ଅଫିସର ବନିଥାନ୍ତା । କିନ୍ତୁ ରିକ୍ସା ଟାଣେ । ମୂର୍ଖଟା । ଅବଶ୍ୟ ସେ ପିଲାଟା ବଡ଼ ଜିଦ୍‌ଖୋର । କେତେବେଳେ କ'ଣ କରିଯିବ । ତେଣୁ ତା' ପ୍ରତି ମଦନ ବିଶେଷ ଖବର ରଖେନାହିଁ । ସୁମାନୀ ଯାଏ କେବେ କମିତ ପୁଅ ପାଖକୁ । ମଦନ କିନ୍ତୁ ଏପରି ଖାପଛଡ଼ା ପୁଅର ମୁହଁ ଦେଖେନାହିଁ ।

ତୁଳସୀ ମନ ବୁଝିଗଲା ପରେ ଦିନେ ବେଖର ଧରି ପ୍ରଜ୍ଞା ବାବୁଙ୍କ ସହ ଆସିଛନ୍ତି ଗେହ୍ଲୀ ଘରକୁ । ତା' ସଂସାର ପ୍ରତି ସେମାନଙ୍କ ଯଥେଷ୍ଟ ସହାନୁଭୂତି

ଥିଲି । ଦହାଲୁ ଯେତେବେଳେ ମାରୁଚି ଗାଡ଼ିରୁ ଜିନଷ ସବୁ ବାହାର କଲି ସେତେବେଳେ ସେ ଅନୁଭବ କଲି ଆଜି ଗେହ୍ଲୀ ଶାଶୁଘରକୁ ଆସିଛି । ଦଶ ଇଯାକ ଲୋକ ରୁଣ୍ଡ ହୋଇ ଦେଖୁଥିଲେ ସେ ବେଭାର ସବୁକୁ । ତୁଳସୀ ନାନୀ ଓ ପ୍ରଜ୍ଞା ବାବୁ ତାଙ୍କ ଶ୍ୱଶୁରଘର ଲୋକ । ସୁମନ୍ତ ବାବୁ ବାହାରେ ଶଳ୍ପାରେ ବସିଥିଲ । ଗେହ୍ଲୀ ବାବୁଙ୍କର ଯଥାମାନ୍ୟ ସତ୍କାରରେ ଲାଗି ପଡ଼ିଲ । ସେଥିପାଇଁ ଘର ସାମାନ୍ୟ ଅନ୍ଧାରୁଆ ଯୋଗୁଁ ବଂଶଗାଥା ଗାଉଥିବା ଲଣ୍ଠନଟି ଜାଳି ଦେଇଛି । ଦହାଲୁ ସୁମନ୍ତ ବାବୁଙ୍କୁ ନେଇ ଘୁଇନା ଛକରୁ ଦୁଇ କେଜି କୁକୁଡ଼ା କଟେଇ ମାଂସ ଧରି ଆସିଛି । ଗାନ୍ଧିରୋଡ଼ କପଡ଼ା ଦୋକାନରୁ ନାନୀ ପାଇଁ ମାନ୍ୟ ଶାଢ଼ୀ ଖଣ୍ଡେ, ବାବୁଙ୍କ ପାଇଁ ଧୋତି ଓ ସୁମନ୍ତ ବାବୁଙ୍କ ଡ୍ରେସ ସେଟଟିଏ ଖରିଦ କରିଛି । ତୁରନ୍ତ ଘରକୁ ଫେରି ହାତଯୋଡ଼ି ବାବୁଙ୍କୁ ଅନୁରୋଧ କରି କହୁଛି : ଆଜିର ଭୋଜନ ଗରିବ ଘରେ ହେବ ।

କିନ୍ତୁ ପ୍ରଜ୍ଞା ବାବୁ ଦହାଲୁର ଆଗ୍ରହ ଦେଖି ବରଂ କହିଲେ : ଭାଇ ବନ୍ଧୁ ଘରେ କୁଣିଆ ଆସି ଅଖିଆ ଫେରିବେ କିମିତି । ଗେହ୍ଲୀ ରନ୍ଧାବଢ଼ା କରୁ । ପ୍ରଜ୍ଞା ବାବୁଙ୍କ ମଣିଷପଣିଆଁ ପ୍ରତି ଦହାଲୁ ସାନୁଭୂତି ପ୍ରକାଶ କରିଛି ।

ତୁଳସୀ ଯେତେବେଳେ ସୁଟ୍‌କେଶରୁ ପେଣ୍ଟ ସାର୍ଟ ଖଣ୍ଡିକ ବାହାର କରି ଦହାଲୁ କାନ୍ଧରେ ରଖି ଦିଅନ୍ତି ଓ ପ୍ରଜ୍ଞା ବାବୁ ଶାଢ଼ୀ ଖଣ୍ଡିକ ଗେହ୍ଲୀ ହାତରେ ବଢ଼ାଇ ଦିଅନ୍ତି ଗେହ୍ଲୀ ଓ ଦହାଲୁ ନତମସ୍ତକ ହୋଇ ଆଶୀର୍ବାଦ ନେଲେ ନାନୀ ଓ ବାବୁଙ୍କ ପାଖରୁ । ନିଜକୁ ଧନ୍ୟ ମନେକଲେ ବିବାହର ସ୍ୱୀକୃତି ଆଜି ମିଳିଥିବାରୁ ଉଭୟେ । ପୁଣି ପୂଜା ଆଳରେ ଗେହ୍ଲୀ ଯେତେବେଳେ ବାବୁ ଓ ନାନୀ ଉଦ୍ଦେଶ୍ୟରେ ଧୋତି ଶାଢ଼ୀ ବଢ଼ାଇ ଦେଲେ ତୁଳସୀ ହସିଦେଇ ଚିତ୍କାର ଭିତରେ କହିଲେ : କେତେ ବଢିଆ ଉପହାର । ପ୍ରଜ୍ଞା ବାବୁ କିନ୍ତୁ ମନାକଲେ ସ୍ୱୀକୃତି କହିବାକୁ ସେ ଉପହାରକୁ । ଗେହ୍ଲୀକୁ ଡାକି କହିଲେ : ତୁ ଏଇ ଦଶହରା ବେଳେ ଭାଇ ଜାଉନ୍ତିଆ ଉପାସ କର । ସବୁ ବର୍ଷ ତୋତେ ଏପରି ନୂଆ ଶାଢ଼ୀ ଦେବ । ତୁଳସୀ ବୁଝିନେଲେ ପ୍ରଜ୍ଞା ବାବୁଙ୍କ ଗେହ୍ଲୀ ପ୍ରତି ପ୍ରାଣାଧିକ ସ୍ନେହ କଥା ଓ ସେ ଦହାଲୁକୁ ବି ନିଜ ଅନ୍ତରର ସମ୍ବେଦନା ଜଣାଇ ତା' ହାତରୁ ଜାଉନ୍ତିଆ ବେଳେ ଏପରି ଶାଢ଼ୀ ଦାବିକଲି । ତୁଳସୀ ଓ ପ୍ରଜ୍ଞା ବାବୁ ଆଉ ତାଙ୍କ ପାଇଁ ବାବୁ ହୋଇ ନ ଥିଲେ । ନାନୀ ଭାଇର ସ୍ୱର୍ଗୀୟ ବିଭୂତିର ଅର୍ଚ୍ଚନାରେ ଆବଦ୍ଧ ପିଞ୍ଜରା ଭିତରେ ଛଟପଟ ହେଲେ । ଗୋଟିଏ ପବିତ୍ର ବନ୍ଧନ ଡୋରି ସେମାନଙ୍କୁ ଏକତ୍ରିତ କଲି । ଗଙ୍ଗା, କୋଇଲ, ସରସ୍ୱତୀର ସଙ୍ଗମ ଭଳି ତୁଳସୀ, ପ୍ରଜ୍ଞା, ଦହାଲୁଙ୍କ ସଙ୍ଗମ ଯେ ବ୍ରାହ୍ମଣୀ ନଦୀ ଗେହ୍ଲୀ ବେଶରେ ଆବିର୍ଭାବର ସୂଚନା

ଦେଉଥିଲା । ଗେହ୍ଲୀ ଓ ଦହଲୁ, ତୁଳସୀ ଓ ପ୍ରଜ୍ଞା ବାବୁଙ୍କ ଆଦର ଭିତରେ ରହିବେ ତଥା ଏକ ରକ୍ତର ଡାକ ଭିତରେ ଆବଦ୍ଧ ହୋଇଯିବା ମାନବିକ ଧର୍ମ ସମ୍ମତ ଥିଲା । ଆନନ୍ଦର ବିଭୋର ମୁହୂର୍ତ୍ତ ସବୁ ସମସ୍ତଙ୍କୁ ବାକ୍‌ବାକ୍ କରି ଦେଇ-ଥିଲା । ସୁମନ୍ତ ବାବୁ ଲଣ୍ଠନ ଧରି ଘର ବାହାରେ ଛିଡ଼ା ହେଲେ । ଆକାଶର ଚନ୍ଦ୍ର ଜୋଛନା ଭିତରେ ଆହ୍ଲାଦ ଅନୁଭବ କରୁଥିଲେ । ଦହଲୁ ତାଙ୍କୁ ଆଉଥରେ ସହର ପରିଭ୍ରମଣ କରାଉ କହିବାକୁ ଚାହୁଁଥିଲା । ଖିଆପିଆ ପରେ ସେଇଠି ରାତ୍ରି ଯାପନ କରିଛନ୍ତି ବାବୁ ଓ ତୁଳସୀ, ଘରକୁ ଫେରି ନାହାନ୍ତି । ବାରଣ୍ଡାରେ ଭୁବନ ଯେ ଶୋଇଥିବ ତେଣୁ ଘର ଜଗିବାର କଥା ପଡ଼ି ନ ଥିଲା ।

ଗେହ୍ଲୀ ତା' ବାପାକୁ ନିଜ ପାଖରେ ରଖିବାକୁ ଇଚ୍ଛା କରିଛି । ଭୁବନ ଆଉ ମନା କରିନାହିଁ । ତୁଳସୀ ଓ ଗେହ୍ଲୀ ଘରେ ରହି ଦିନ କଟାଇ ଥାଏ ।

ଦହଲୁ କେତେ ଲୋକଙ୍କ କ ସେବା କାମ କରିଛିର ହିସାବ ରଖିନାହିଁ । କନଭେଣ୍ଟ ସ୍କୁଲ ଛାତ୍ରଛାତ୍ରୀ ମାନଙ୍କୁ ଠିକ୍ ସମୟରେ ନିଆଆଣା କରେ । ବାକି ସମୟ ଯାତ୍ରୀମାନଙ୍କ ପାଇଁ ସେ ରିକ୍ସା ଚଳାଏ ।

ତା' ରିକ୍ସା ଚକ୍ଷୁ ଚିକିତ୍ସାର ପ୍ରଚାର କରିଛି । ମ୍ୟୁନିସିପାଲିଟି ଇଲେକ୍-ସନରେ ପ୍ରଚାର ଭାଗ ନେଇଛି । ହେଣ୍ଡିଲରେ ଦେ ବ ପାର୍ଟି ପତାକା ଉଡ଼ାଇଛି । ସାଧାରଣ ରିକ୍ସାବାଲାର କର୍ତ୍ତବ୍ୟ ସେ କରିଛି । ବର୍ଷାଦିନେ ଝପଡ଼ି ଦଫାଇ ସାହି ପଡ଼ିଶାମାନେ ଘର ପାଇଁ କମାନି ତରଫରୁ ଅନୁଦାନ ମିଳୁଥିବା ଖପର ବୋହି ତା' ରିକ୍ସାରେ ଆଣିଛନ୍ତି । ଯାହାର ଭଡ଼ା ସେ ନେଇନାହିଁ । ମାଗଣା ରିକ୍ସା ଦେଇଦିଏ ପଡ଼ିଶା ଘରକୁ । ଦଫାଇ ଘର ସବୁରେ ବର୍ଷାଦିନେ ଚଳିବା ବଡ଼ ମୁସ୍କିଲ ହୁଏ । ପୁରୁଣା ସେସବୁ । ରକ୍ଷଣାବେକ୍ଷଣ ହୋଇପାରୁ ନ ଥିବା ମନେହୁଏ । ଗେଞ୍ଜି ହୋଇ ଘର କଣରେ ପଡ଼ିରହିବା କଥା । ତଥାପି ଗେହ୍ଲୀ କେବେ ନିଜ ବସାଘର ପ୍ରତି ଅସନ୍ତୁଷ୍ଟ ହୋଇନାହିଁ ।

ଦଫାଇରେ ସ୍ତ୍ରୀ ଲୋକମାନେ ପାଣ୍ଠି ବଢ଼ାଇବା ପାଇଁ ଚିଟ୍‌ଫଣ୍ଡ ସବୁ କରିଛନ୍ତି । ଯଉଥିରେ ସେ ଭାଗନିଏ । କୌଣସି ପରିବାର ପାଇଁ ଏହି ଜମା ଟଙ୍କାରୁ ଉଠାଯାଇପାରେ । ସାଧାରଣ ସୁଧ ଦେବାକୁ ପଡ଼େ । ଚଇତ ମେଳାରେ ଏହି ଜମା ଟଙ୍କାରେ ବେଶ୍ କିଛି ବାସନ ବର୍ତ୍ତନ ପ୍ରତ୍ୟେକ ପରିବାରର ସ୍ତ୍ରୀ ଲୋକମାନେ କିଣିବା ଦେଖାଯାଏ ।

ମଦନ ଯେ ଶ୍ରମିକ ଇଉନିୟନ ସହିତ ନ ମିଶିଥିଲା, ବୋନସ ଦାବି ନ କରିଛି, ଶ୍ରମିକ ଜୀବନର ଦୁଃଖ ସୁଖ ନ ଭୋଗ କରିଛି, ଖାଦାନରେ ପଥର

ଫଟେଇବାବେଳେ କେବେ ତା' ନାକରୁ ରକ୍ତ ନ ପଡ଼ିଛି, ତାଧୋଇ ଟାଣ ଖଣ୍ଟ ଯେ ସେ ନ ସହିଛି, ସେମିତ ସହିତ ନିଜକୁ ଦମଧରି ହାତୁଡ଼ି ନ ପିଟିଛି—ସବୁ ସ୍ମୃତ ହୋଇ ରହିଛି ଏ ଯାଏଁ । ଗୁଦଗୁଦାରେ ନ ଗାଧୋଇଛି ଏ ସବୁରେ ଯୁକ୍ତି ନାହିଁ । ଦଫାଇ ଅଞ୍ଚଳରେ ପୋଖରୀ ନାହିଁ । ଖାଦାନ ଜଳ ଭଣ୍ଡାର ସବୁ କୃତ୍ରିମ ଜଳାଶୟ ବା ଗୁଦଗୁଦା ଶ୍ରମିକମାନଙ୍କ ସ୍ନାନାଗାର । ସାଧାରଣ ଜଳ ଭଣ୍ଡାର ଓ ଜଳ ଯୋଗାଣର ବିଶେଷ ଅସୁବିଧା ଏଠି ରହିଛି । ଅଭିଭାବକଗଣ ଶିକ୍ଷା ପ୍ରତି ଯଥେଷ୍ଟ ଦୃଷ୍ଟି ଦେଉ ନାହାନ୍ତି । ଶ୍ରମିକ ଜୀବନ ଯଦିଓ ଏକ କର୍ମକ୍ଳାନ୍ତ ଜୀବନ ତଥାପି ଭବିଷ୍ୟତ ବଂଶଧରମାନଙ୍କ ପ୍ରତି ଅବହେଳା ଗ୍ରହଣୀୟ ନୁହେଁ । ଏ ସଂକ୍ରାନ୍ତରେ ସଭା ସମିତିରେ ମଦନ ବେଶ୍ ଯୁକ୍ତି କରେ । ସ୍ୱେଚ୍ଛାସେବା ଭାବ ତା' ଭିତରେ ଆଗରୁ ଥିଲା ।

ଶହ୍‌ସାର ପଛପଟେ ବଡ଼ ପୋଷ୍ଟର କାଗଜ ମରା ଯାଇଥିଲା । ସମସ୍ତେ ସାକ୍ଷରତା ଯୋଜନାରେ ସାମିଲ ହେବେ । ଗଣ ସଚେତନତା ସୃଷ୍ଟି ପାଇଁ ଆଗ୍ରହ ପ୍ରକାଶ କରିବେ । ଜଣେ ଦଶଜଣଙ୍କୁ ପଢ଼ାଇବା ପରି ପବିତ୍ର କାମ ପ୍ରତି ଦହଲୁର ଆଗ୍ରହ ଅାସିଛି । କର୍ମ ପ୍ରେରଣା ଭିତରେ ନିଜେ ଜଣେ ସାଧନ କର୍ମୀ ରହିଛି । ଏଇ ମଜ୍‌କାରେ ଗେହ୍ଲୀ ବି' ଅକ୍ଷର ପ୍ରାଠ ଘରେ ରାତିରେ ପଢ଼େ । ନିଜେ ପଢ଼ି ଅନ୍ୟମାନଙ୍କୁ ପଢ଼ିବାରେ ସେ ସାହାଯ୍ୟ କରିଛି । ସାକ୍ଷରତାର ଅଗ୍ରଗାମୀ ସୈନିକ ପରି ବାହାରି ପଡ଼ିଛି ଓ ଦଫାଇର ଯୁବ ପ୍ରବାହକୁ ମତେଇ ପାରିଛି । ନିରକ୍ଷର ଦେଶପାଇଁ ଏକ ବ୍ୟାଧି— ସେ ଠିକ୍ ବୁଝି ନେଇଛି । ସ୍ୱେଚ୍ଛାକୃତ ଭାବେ ଯୁବକମାନଙ୍କୁ ଆଗେଇ ଆସିବାକୁ ସେ ଯେ ଆହ୍ୱାନ ଦେଇପାରେ, ଯାହା ତାଙ୍କ ମୁଖ୍ୟ ସାଧନ କର୍ମୀ କହନ୍ତି । ସାକ୍ଷରତା ଅଭିଯାନ ଗଣଆନ୍ଦୋଳନରେ ପରିଣତ କରିବାରେ ଦହଲୁ ଭଳି ଯୁବକମାନଙ୍କ ତ୍ୟାଗ ସେ ସ୍ୱୀକାର କରେ । ପୁଣି ଝାଡ଼ଖଣ୍ଡୀ ସୁରକ୍ଷା ପ୍ରତି ଅନ୍ୟମାନଙ୍କୁ ସଚେତନ କରାଏ ।

ଯେତେବେଳେ ଜଣା ପଡ଼ିଲା ନବ ସାକ୍ଷରମାନେ ଦଫେଇ ସବୁରେ ପଢ଼ାପଢ଼ିର ଆଗ୍ରହ ଆଉ ନାହାନ୍ତି, ନିଜେ ଦହଲୁ ବହୁ ଶ୍ରମ କରିଛି । କେନ୍ଦ୍ର ସବୁକୁ ସକ୍ରିୟ କରିଛି । ଦଫେଇ ସବୁ ନିଜେ ସଫା ରଖିବା; ପରିବେଶ, ପରିମଳ ସ୍ୱାସ୍ଥ୍ୟପ୍ରତି ବେଶ୍ ଲୋକଙ୍କୁ ସଚେତନ କରାଇଛି । ଛଅ ଠାରୁ ବର୍ଷର ଶିଶୁମାନଙ୍କୁ ନିଜେ ସ୍କୁଲ ଯାଇ ନାମ ଲେଖାଇ ଦେଇଛି ।

ସେଦିନ ବି. ଆର. ଆଇ କ୍ଲବରେ ସାକ୍ଷରତା କର୍ମୀ ସମାବେଶ ଥିଲା । ଖୋଦ୍ ଜିଲ୍ଲାପାଳ ଉଦ୍‌ବୋଧନ ଦେଉଥାନ୍ତି । ନବ ସାକ୍ଷରମାନଙ୍କୁ ନେଇ ଏକ

ସାଂସ୍କୃତିକ କାର୍ଯ୍ୟକ୍ରମ ଥିଲା । ମଦ୍ୟପାନ ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ ବିଷୟରେ ଏକ ଅଭିନୟ ପରିବେଷଣ ହେଉଥିଲା । ଦହଲୁ ଥିଲା ତା'ର ଅଭିନେତା ଓ ଭୁବନ ଦର୍ଶକ ମହଲରେ ଥିଲା । ମଦ୍ୟପର ଦୃଶ୍ୟ ପ୍ରତି ସେ ବିଶେଷ ବିଭୋର ହୋଇ ପଡ଼ୁଛି । ଉତ୍ତେଜିତ ହୋଇ ଦର୍ଶକ ଗହଳରୁ ପଶି ଯାଉଥିଲା ଅଭିନେତା ପାଖକୁ । ଆପତ୍ତି ତା'ର ସେ ପଇସା ଖରଚ କରି ମଦ ପିଇବ । ଏମାନେ ଏଠି ଉପେକ୍ଷା କରିବାକୁ କିଏ ? ଅବଶ୍ୟ ପରିସ୍ଥିତି ସମ୍ଭାଳି ନିଆ ଯାଇଥିଲା ସେତେବେଳେ । ଭୁବନକୁ ଟାଣି ନିଆଗଲା ବାହାରକୁ । ତା' ମନର ବିଦ୍ରୋହ କିଛିଦିନ ପରେ ସେ ନିଜେ ଅନୁଭବ କରିଛି ।

କେବେ କ୍ଲାନ୍ତି ଦୂର କରିବା ପାଇଁ ଭୁବନ ବେଶୀ ଟିକିଏ ମହୁଲି ପିଇ ଦେଇଥିଲା । ମଦରେ ସହର ନ ଭସୁ ଏକଥା ତା'ପରି ବାଇମୁଣ୍ଡି ଚିନ୍ତା କରିଛି । ଇସ୍‌ମାଇଲ ଖାଁ ଭୁବନର ବିଶ୍ୱରୂପ ଦେଖି ତଟସ୍ଥ, ଡରି ଯାଇଛି । ତା' ହାତରୁ ଟଙ୍କା ଗୁଣ୍ଡା ମନା କରିଛି ବରଂ କହୁଛି ତୁଇ ଦାରୁ ବିକିବା ବନ୍ଦ କର । କୁଚିଆ କାରବାର ଛାଡ଼ିଦେ । ଦୁକାନ ବଜାର କର । କେତେଦିନରୁ ସରକାର ରନ୍ଧା ମଦ ପ୍ରତି ନିଷେଧାଦେଶ ଦେଲେଣି । ମଦ କେହି ଖାଇବା ନାହିଁ । ମହୁଲି ମଦର ପ୍ରସ୍ତୁତି ବନ୍ଦ ରଖାଯାଇଛି । ଅଥଚ ବେଟା ଖାଁ ଦଫାଇ ଭିତରେ ସ୍ୱେଚ୍ଛ କାରବାର କରୁଛି । ଦାରୁରେ ପାଣି ମିଶାଇ ଷୋହଳ ଗୁଣ ଟଙ୍କା କମାଇ ନେଉଛି ।

ଦହଲୁ ଶିଳ୍ପୀ ଠିଆକରି ଏ ବିଚାରି ଶୁଣୁଥିଲା । ଇସ୍‌ମାଇଲ ଖାଁ ଏତାଦୃଶ ଦେଖି କିଛି କହିପାରୁ ନ ଥାଏ । ଭୁବନ ଦାରୁ ପିଇବା ଯଦି ଛାଡ଼ି ପାରୁଛି ତେବେ ବିକିବା କାହିଁକି ଛାଡ଼ି ପାରିବ ନାହିଁ । ଦହଲୁ ଖାଁ ଭଉକୁ କହିଲା : ତୁଇ ଦୁକାନ କରିଯା, ଭଲ ହେବ । ତୋତେ ବଜାର ବଜାର ବୁଲେଇ ନେବି । ତୁଇ ଜିନିଷ ବିକିବୁ ।

ଇସ୍‌ମାଇଲ ଖାଁ ରାଜି ପଡ଼ୁଛି । ଦାରୁ ବିକିବ ନାହିଁ । ବରଂ ସେ ସାକ୍ଷରତା ଗଣ ଆନ୍ଦୋଳନରେ ଯୋଗଦେବ । ସେ ଏବେ ମଦ ବିରୁଦ୍ଧରେ ସ୍ୱର ଉଠାଇବ ଓ ମଦ ଯେ ଖାଦ୍ୟ, ଔଷଧ, ପାନୀୟ ନୁହେଁ ଏକଥା ସମସ୍ତଙ୍କୁ କହିବ । ପର୍ଯ୍ୟାପ୍ତ ଭାବେ ନିଜେ ବୁଝାଇ ଦେବ ସମସ୍ତଙ୍କୁ । ମଦ ମୃତ୍ୟୁର କାରଣ, ମଦ ଜଳୋଦର ରୋଗର କାରଣ । ସ୍ୱାସ୍ଥ୍ୟ ଉପରେ ମଦର ପ୍ରତିକ୍ରିୟା ସମସ୍ତଙ୍କୁ ବୁଝେଇବାକୁ ପଡ଼ିବ ।

ଜୁଆ, ସଟ୍ଟା, କାଟପଟିଠୁଁ ଯୁବକମାନଙ୍କୁ ଦୂରେଇ ରଖିବାକୁ ଦହଲୁ ପ୍ରତିଜ୍ଞା କଲା । ଯୁବ ପ୍ରବାହ ନିଜକୁ ଶ୍ରମ ଉପରେ ନିର୍ଭର କରିବାକୁ ପଡ଼ିବ ।

ଆତ୍ମନିର୍ଭରଶୀଳ ନ ହେଲେ ଉନ୍ନତ ପରିବାରର ସ୍ଥିତି ମଜବୁତ ହେବନାହିଁ । ବେକାର ଯୁବକର ଆତ୍ମନିଯୁକ୍ତି ନିଜ ପ୍ରତି ବିଶ୍ୱାସ ଆଣେ । କେବଳ ଚାକିର ମନୋବୃତ୍ତି ଉପର ଏକ ମାନସିକ ଚାପ ସୃଷ୍ଟି କରେ, ନିଜକୁ ନିଜେ ଅଯୋଗ୍ୟ ବିବେଚିତ କରେ ତା' ପ୍ରତି ଯଥେଷ୍ଟ କଟୂକ୍ତି ଦହଲୁ କରୁଥିଲା ।

ରାତି ସାତଟାକୁ ଗେହ୍ଲୀ ତା' ସବ୍‌ଜି ହୋଟେଲ ବନ୍ଦ କରେ । ଶନିବାରେ ସବୁ ଜିନିଷ ଲଦି ଖପରା ଦଫାଇକୁ ଆସେ । ତରତରରେ ରୋଷେଇ ଶେଷକରି କେବେ ଦଫାଇ ଭିତରେ ସାକ୍ଷରତା କେନ୍ଦ୍ର ସବୁ ଯାଏ । ତୁଳସୀ ନାନୀ ଘାଟକୁ ଯାଏ । ଟି.ଭି. ଟିକିଏ ଦେଖିନିଏ । ଉଲ୍ କଣ୍ଟା ଧରିବସେ ।

ଦହଲୁ ପ୍ରଜ୍ଞା ବାବୁଙ୍କୁ ତା' ଜମା ପାଶ୍ ବହି ଦେଖାଇ ଦିଏ । ବର୍ଷେ ଗଲେ ସେ ନିଶ୍ଚୟ ତାଙ୍କର କିଣି ପାରିବ କଥା କହେ । ଅନ୍ୟୂନ ତିନିଲକ୍ଷ ଟଙ୍କା ତାକୁ ଦରକାର । ଜୁଆଡ଼ି ଦହଲୁ ବା ବଦରାଗୀ ଦହଲୁ ବା ଜଣେ ଉଦ୍‌ଯୋଗୀ ସିଂହ ପାଇଁ ଏସବୁ ଅସମ୍ଭବ ନୁହେଁ । ହୁଏତ ଭୁବନର ଫିକ୍ସ ଡିପୋଜିଟ ବି ଦହଲୁକୁ ବିଶେଷ ସାହାଯ୍ୟ କରିବ । ସେ ଆହୁରି କହେ : ରିକ୍ସା କିଣି ଗଲାବେଳେ ସେ ସମରୁଙ୍କୁ ଭେଟିଥିଲା । ତାଙ୍କର କିଣିବା ଦିନ ପୁଣି ନିଶ୍ଚେ ତା' ବାପାଙ୍କୁ ଭେଟିବ । ବାପା ଯଦି ସେପରି ପରିବର୍ତ୍ତନ ପ୍ରତି ଆଗ୍ରହ ନ ଦେଖାନ୍ତି ତେବେ ତା' ପାଖରେ ଥିବା ପୁରୁଖା କାଳର ଲଣ୍ଠନଟିକୁ ଭାଙ୍ଗି ଠେସିଦେବ । ଗୋଟିଏ ଯୁଗର ପରିବାରିକ ସମ୍ପର୍କରୁ ସେ ଓହରି ଆସିବ ।

ଦହଲୁ ପରିବେଶ ପାଇଲା ନାହିଁ, ପାଠପଢ଼ାରେ ଅବହେଳା କଲା । ବାପାଙ୍କ ବିଷଦୃଷ୍ଟିର ଅନ୍ତରାଳରେ ସେ ରହିଗଲା । ପଢ଼ିଥିଲେ ବଡ଼ ଅଫିସର ହୋଇଥାନ୍ତା, ନିଯୁକ୍ତି ନେଇଥାନ୍ତା କମ୍ପାନୀରେ । କିନ୍ତୁ ସେ ଯେ ନିଜେ ନିଯୁକ୍ତିକାରୀ ହୋଇ ପାରିବ । ଛୋଟିଆ କମ୍ପାନୀରୁ ବଡ଼ କମ୍ପାନୀ କ'ଣ ହୋଇପାରିବ ନାହିଁ ?? ସେତେବେଳେ ବଡ ଭାଇଙ୍କ ଉପଦେଶ ନେବ । ଯେହେତୁ ସେ ପର୍ସୋନାଲ ଅଫିସର । ଖାଦାନ ଲିଜ୍‌ରେ ନେବ । ତାଙ୍କର ବୋହୁବ କନ୍ଧମାଳ । ଗେହ୍ଲୀ ବଙ୍ଗଳାରେ ଥିବ । ବାବୁଆଣୀ ହେବନାହିଁ ସତ କିନ୍ତୁ ମାଲିକାଣୀ ଯେ ନ ହୋଇ ପାରିବ, କିଛି ଅସମ୍ଭବ ନୁହେଁ ।

ଦହଲୁ ଯାହା କହେ ତାହା କରେ । କର୍ତ୍ତବ୍ୟ ପ୍ରତି ସଚେତନ । ଉଦ୍‌ଯୋଗ ପ୍ରତି ବିଶେଷ ବିଶ୍ୱାସ । ଜଙ୍ଗଲରୁ ରାସ୍ତା ଲମ୍ବି ଯାଇଛି ସହରକୁ । ପୁଣି ସହରର ଉତ୍ପାଦନ ଗାଁରେ ବିତରଣ ହେଉଛି । ଦହଲୁ ସବୁ ଦେଖେ ନୀରବରେ

ନିଜ ଜୀବନର ଜୀବନ ଯାତ୍ରା । ନିଜର ପ୍ରତିଛବି ନିଜେ ଦେଖି ମନରେ ବିଶ୍ୱାସ ଆସେ, ସେ ଆଗେଇଛି……।

ନିଗ୍ରହିଆ ଜୀବନ ଯନ୍ତ୍ରଣା ଭିତରେ ଦିହଲୁ ଆଗକୁ ବଢ଼ୁଥିଲା । ଗେହ୍ଲୀ ତା'ର ଅନୁଧାବନ କରୁଥିଲା । ଯୁବ ପ୍ରବାହର ସ୍ୱପ୍ନ ଅନେକ । ସାର୍ଥକ ତା'ର କର୍ମ ପ୍ରେରଣାରେ । ବଳିଷ୍ଠ ନେତୃତ୍ୱରେ । ପରିବର୍ତ୍ତନର ଦୀର୍ଘଶ୍ୱାସ ଛାଡ଼ୁଥିଲା ଦିହଲୁ । ଯାତ୍ରା ଗେହ୍ଲୀ ପାଇଁ ପ୍ରଖର ନ ଥିଲା ।



କୁମାର ପୂର୍ଣ୍ଣିମୀ, ଖାରସିଂହପୁର-୭୭୦୦୩୩

୧୯ । ୧୦ । ୯୪

# କୃତଜ୍ଞତା

ସୁଜାତା ପ୍ରକାଶନୀ : ଆପଣମାନଙ୍କ ସୌଜନ୍ୟ ଓ ବଦାନ୍ୟ ସାହାଯ୍ୟ ପାଇଁ କୃତଜ୍ଞତା ଜଣାଉଛୁ ।

ସର୍ବ ଶ୍ରୀମତୀ ବାସନ୍ତୀ ମିଶ୍ର, ଶିକ୍ଷା ମଣ୍ଡଳାଧୀଶ, ସୁନ୍ଦରଗଡ଼ । ଶ୍ରୀଯୁକ୍ତ ଅଭୟ କୁମାର ପଟ୍ଟନାୟକ, ନିରୀକ୍ଷକ, ସୁନ୍ଦରଗଡ଼, ଶିକ୍ଷା ଜିଲ୍ଲା । ଶ୍ରୀଯୁକ୍ତ ଉପେନ୍ଦ୍ର ନାଥ ଷଡ଼ଙ୍ଗୀ, ନିରୀକ୍ଷକ, ରାଉରକେଲା, ଶିକ୍ଷା ଜିଲ୍ଲା ।

ସେଲେଷ୍ଟିନ ଶାଖା ସେକ୍ରେଟେରୀ, କାଥଲିକ ଏଡ୍‌ୁକେଶନ ବୋର୍ଡ଼, ରାଉରକେଲା । ଗୁଣନିଧି ଜେନା, ପଦ୍ମଲୋଚନ ନାୟକ, କାର୍ଯ୍ୟନିର୍ବାହୀ ଅଧିକାରୀ, ରାଉରକେଲା ବିଜ୍ଞାପିତ ପରିଷଦ ।

ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ, ସର୍ବଶ୍ରୀ ବଳରାମ ସାହୁ, ଦିବାକର ଦାନ, ସାଧୁ ଚରଣ ପୁରୋହିତ, ଶ୍ରୀବତ୍ସ ପଣ୍ଡା, ଭାଗ୍ୟଲକ୍ଷ୍ମୀ ଦେବୀ, ପ୍ରଭାତୀ ବେହେରା, ରମେଶ ଚନ୍ଦ୍ର ପଟେଲ, ରବୀନ୍ଦ୍ର ନାଥ ସାହୁ, ବିକ୍ରମ କେଶରୀ ପଟେଲ, ବିଷ୍ଣୁ ପ୍ରିୟା ପଟେଲ, ଏମ୍.ଏ. ଜଓ୍ୱାହିଦ, ତଥା ସୁନ୍ଦରଗଡ଼ ଜିଲ୍ଲାର ସମସ୍ତ ଉଚ୍ଚ ବିଦ୍ୟାଳୟ । ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବିନୋଦ ବାରିକ, ଶ୍ରୀନିବାସ ରାଉତ, କାମିନୀ ଠାକୁର, ଚୈତନ୍ୟ ସାହୁ, ପାରେଶ୍ୱର ସା, ସ୍ନେହଲତା ପଟେଲ, ବୀରେନ୍ଦ୍ର ଦାସ, ଜାବର ମାର୍କି, ଗୋଲାପ ପଟେଲ, ସୁକାନ୍ତ ସାହୁ, ଶେଖ୍ ମେହେବୁବ, ବିଚିତ୍ରାନନ୍ଦ ପଲାଇ, ପି. ଟପ୍ପୋ, ଲତାରେ ସୋରେଙ୍ଗ, ଯୋସେଫ ମାର୍କି, ସଚ୍ଚିଦାନନ୍ଦ ମିଶ୍ର, ଭଗିରଥୀ ନାଏକ । ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ସର୍ବଶ୍ରୀ ସାରଙ୍ଗଧର ପଟେଲ, ନିତ୍ୟାନନ୍ଦ ସାହୁ, ବିଷ୍ଣୁ ଚରଣ ନାଏକ, ଏମିଲ ସୋରେଙ୍ଗ, ଲରେନ୍ସ ବାଗେ, ଅମିନ ବେହେରା, ରାଜ କୁମାର ମେହେର, ଚନ୍ଦ୍ରମଣି ସାହୁ, ମହେଶ୍ୱର ରାଉତ, ପୀତବାସ ମଲ୍ଲିକ, ପୁଷ୍ପାଞ୍ଜଳି କର, କମଳା ନାଗ, ପି. ଡୁଙ୍ଗଡୁଙ୍ଗ, ପ୍ରଫୁଲ୍ଲ ଆଗୁର୍ଯ୍ୟ, ଏମିଲ ଡାଙ୍ଗ, ପ୍ରତିମା କୁଜୁର, ରାମଚନ୍ଦ୍ର ବେହେରା, ସିଷ୍ଟର କାମେଲ, ସିଷ୍ଟର କାରମେଲା ।

ମଣ୍ଡଳାଧୀଶ ବରିଷ୍ଠ କର୍ମୀ ଅ.ଲେଇସ ଇନ୍ଦୁଆର, ମୀନକେତନ ନାଏକ, ମହେଶ୍ୱର ଭଡିଆ, ସୁନ୍ଦରଗଡ଼ ଶିକ୍ଷାଜିଲ୍ଲା ବରିଷ୍ଠ କର୍ମୀ ଜନ୍ କୁଲୁ, ପ୍ରଫୁଲ୍ଲ ମିଶ୍ର, ପ୍ରଫୁଲ୍ଲ ନାଏକ, ରାଉରକେଲା ଶିକ୍ଷାଜିଲ୍ଲା କର୍ମୀ କୃଷ୍ଣଚନ୍ଦ୍ର ବିଶ୍ୱାଳ, ବୈଦ୍ୟନାଥ ପଣ୍ଡା, ଅଜୟ କୁମାର ପ୍ରସାଦ, ମୁରଲୀ ଉର୍ମିଳ ବଣାଇ ଶିକ୍ଷା ଜିଲ୍ଲା ।

ଶିକ୍ଷକ ବନ୍ଧୁ ଶରତ ଚନ୍ଦ୍ର ପାଣ୍ଡେ, ବୀରେନ୍ଦ୍ର ପଟେଲ, ଭୁବନେଶ୍ୱର ରାମସ୍ୱଦବ, ବନମାଳି ସାହୁ, ବନ୍ଦନା କଣ୍ଡୋ, ମଧୁସୂଦନ ପଟେଲ, କଲ୍ୟାଣୀ ବାରିକ, ଶଚିରାଣୀ ବହିଦାର, କଲ୍ୟାଣୀ ବାରିକ, ଦ୍ରାବିଲ ଜୋଜୋ, ଚରଣୀଲ ଖେସ ।

ବନ୍ଧୁ ବେଣୁଧର ବେହେରା, ବୀରେନ୍ଦ୍ର ନାଏକ, ସଞ୍ଜୀବ କୁମାର, ନୀଳମଣି ସେଠିଙ୍କୁ ମଧ୍ୟ ଭୁଲିବାର ନୁହେଁ ।

ଧନ୍ୟବାଦ ସହିତ

**ଶ୍ରୀମତୀ ଉଷାରାଣୀ ପଟେଲ**

ପ୍ରକାଶିକା

# ରୋହିତ କୁମାର ପଟେଲଙ୍କ ସାହିତ୍ୟ କୃତିରେ ଓଡ଼ିଆ ସାହିତ୍ୟର ସମୃଦ୍ଧି

କ୍ଷେତ୍ରବର ନାଏକ (ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ୧୯୯୦) ଗ୍ରନ୍ଥାବଳୀ । ମୁକ୍ତେଶ୍ୱର ପଟେଲ (ସାହିତ୍ୟ ଏକାଡ଼େମୀ ଦ୍ୱାରା ୧୯୯୨ ସମ୍ମାନିତ) ଓ ଯାଦବାନନ୍ଦ ପଟେଲଙ୍କ କାବ୍ୟ ମନ୍ଦିର ଆମନ୍ତ୍ରଣ, ଅସରାଏ ଜଳ ଯେବେ ଧରଣୀରେ ବରଷେ, ଭିଖାରି, ଶେଷ ଧାଡ଼ିର କବିତା, ଗୀତ ଲେଖା : ୧୯୮୦ ପ୍ରକାଶିତ ତଥା ଯାଦବାନନ୍ଦ ପଟେଲଙ୍କ କାବ୍ୟ ଗ୍ରନ୍ଥାବଳୀ (୧୯୯୪ ପ୍ରକାଶିତ) ମୂଲ୍ୟ ଟ ୫୦-୦୦, ଅନ୍ୟ ପଥ (କାବ୍ୟ) ଯନ୍ତ୍ରସ୍ଥ । ପ୍ରିୟମ୍ବଦା ପଟ୍ଟନାଏକଙ୍କ କବିତା ଚନ୍ଦ୍ରିକା ଟ ୨୦-୦୦, ସୂର୍ଯ୍ୟ କନ୍ୟା (ଗଳ୍ପ ୧୯୯୪ ପ୍ରକାଶିତ) ୩୦-୦୦ ଓ ଅନେକ ମନର ବଂଶୀ ଯନ୍ତ୍ରସ୍ଥ ।

**ରୋହିତ କୁମାର ପଟେଲଙ୍କ କେତୋଟି ଗଳ୍ପ ଓ ଉପନ୍ୟାସ :**

ନୂଆ ବାବୁ (ଉପନ୍ୟାସ/୭୩ ପ୍ରକାଶିତ) ଟ ୩୫-୦୦
କାଚ ଧାର କାଟେ (ଉପନ୍ୟାସ/୮୦ ପ୍ରକାଶିତ) ଟ ୩୫-୦୦
ମନ ପକ୍ଷୀ (ଉପନ୍ୟାସ/୮୧ ପ୍ରକାଶିତ) ଟ ୩୦-୦୦
ତଳକୁ ଖସୁଥିବା ଲୋକଟିଏ (ଜୀବନ ସମୀକ୍ଷା) ଟ ୨୫-୦୦
ଷଣ୍ଢ ଲଢ଼େଇ (ଗଳ୍ପ ସଙ୍କଳନ/୭୯ ପ୍ରକାଶିତ) ଟ ୧୫-୦୦
ଶୂନ୍ୟ ଗୁହଣୀର ଅତୀତ (ଗଳ୍ପ ସଙ୍କଳନ/୯୪ ପ୍ରକାଶିତ) ଟ ୩୫-୦୦
ଝାଟି ମାଟି ଡାଙ୍ଗର (ଉପନ୍ୟାସ/୯୫ ପ୍ରକାଶିତ) ଟ ୬୦-୦୦
ବିବସ୍ତ୍ର ଦୁର୍ଯ୍ୟୋଧନ (ଗଳ୍ପ ସଙ୍କଳନ/୯୫ ଯନ୍ତ୍ରସ୍ଥ). ଟ ୩୫-୦୦

## ଅପ୍ରକାଶିତ :

ଗ୍ରାମ ସଖୀ କଦମ୍ବର ମୂଳେ ତପସ୍ୟା, ପଣବନ୍ଦୀ (ଉପନ୍ୟାସ)

## ପ୍ରକାଶ ଅପେକ୍ଷାରେ

ପୀତାମ୍ବରୀ (ଉପନ୍ୟାସ)
ଶଗଡ଼ରୁ ଡାମ୍ପର (ଉପନ୍ୟାସ)
ଫୁଲେଇ (ଉପନ୍ୟାସ)

## ଯୋଗାଯୋଗ

ରୋହିତ କୁମାର ପଟେଲ, ଶିକ୍ଷକ
ବୀରସିଂହପୁର-୭୬୦୦୩୩

---

ମୁଦ୍ରିତ : ପ୍ରକାଶ ପ୍ରିଣ୍ଟର୍ସ, ବାଲିସାହି, କଟକ-୭୫୩୦୦୯
ଫୋନ - ୦୬୭୧...୨୦୫୨୮

\

# ଶ୍ରୀପଞ୍ଚମୀ

## ୪ । ୨ । ୧୯୯୫

'ଝାଟି ମାଟି ଟାଙ୍ଗର' ପଶ୍ଚିମ ଓଡ଼ିଶାର ଜନଜୀବନ ଉପରେ ଆଧାରିତ ଉପନ୍ୟାସ ଆପଣମାନଙ୍କ ପ୍ରତିଶ୍ରୀ ପାଖରେ ଶୁଭ ପ୍ରକାଶ କରୁଛୁ । ଶୁଭ ପ୍ରକାଶର ସ୍ୱୀକୃତି ବନ୍ଦନ କରିବେ ।

ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ବି. ସତ୍ୟନାରାୟଣ ରେଡ୍ଡି ।

ଭୁବନେଶ୍ୱର—ସର୍ବଶ୍ରୀ ସାତକଡ଼ି ହୋତା, ସୌମ୍ୟରଞ୍ଜନ ପଟ୍ଟନାୟକ, ତଥାଗତ ଶତପଥୀ, ହର ପ୍ରସାଦ ଦାସ, ଜଗଦୀଶ ଚରଣ ଦାସ, ରମାକାନ୍ତ ରଥ, ଦାଶରଥୀ ପଟ୍ଟନାୟକ, ସାବିତ୍ରୀ ମିଶ୍ର, ବୀଣାପାଣି ମହାନ୍ତି, ଅର୍ଚ୍ଚନା ନାୟକ, ସ୍ୱୟଂବର ପଟ୍ଟନାୟକ, ଶାନ୍ତନୁ କୁମାର ଆଚାର୍ଯ୍ୟ, ନିତ୍ୟାନନ୍ଦ ଶତପଥୀ, ବିଭୂତି ପଟ୍ଟନାୟକ ଓ ପ୍ରଦ୍ୟୁମ୍ନ ବଳ ।

ପୁରୀ—ଜ୍ୟୋତ୍ସ୍ନା ଦାସ ।

ଖୋର୍ଦ୍ଧା—ପଙ୍କଜ ପାଲ ।

କଟକ—ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂ, ପ୍ରତିଭା ରାୟ, ରତ୍ନାକର ଚଇନି, ଅରୁଣ ପଣ୍ଡା, ସରୋଜିନୀ ଷଡ଼ଙ୍ଗୀ, ଭର୍ତ୍ତୃହରି ମହତାବ ।

କେନ୍ଦ୍ରାପଡ଼ା—ରାମଚନ୍ଦ୍ର ବେହେରା ।

ରାଉରକେଲା—ଲୋପାମୁଦ୍ରା ମହାନ୍ତି, ରଜନୀକାନ୍ତ ଦାସ, ବଂଶୀଧର ମହାପାତ୍ର, ଅଦ୍ୱୈତ ପ୍ରସାଦ ବିଶ୍ୱାଳ, ପୀତବାସ ମିଶ୍ର, ରବି କାନୁନ୍‌ଗୋ, ରାଜୀବ ପାଣି, ସଦାନନ୍ଦ ତ୍ରିପାଠୀ, ରଘୁ ମିଶ୍ର, ଗୌରାଙ୍ଗ ଦାଶ, ଶୈଳବାଳା ପୂଜାରୀ, ଉପେନ୍ଦ୍ର ନାଥ ଷଡ଼ଙ୍ଗୀ, ଭୂପେନ ମହାପାତ୍ର ।

ବ୍ରହ୍ମପୁର—ବସନ୍ତ କୁମାର ପାଣିଗ୍ରାହୀ, ବାଉରବନ୍ଧୁ କର ।

ବ୍ରଜରାଜନଗର—ଜଗଦୀଶ ମହାନ୍ତି ।

ରାୟଗଡ଼ା—ବାସୁଦେବ ପାତ୍ର ।

ବଲାଙ୍ଗୀର—ଶ୍ରୀନିବାସ ଉଦ୍‌ଗାତା ।

ଭଦ୍ରଖ—ଅପୂର୍ବ ରଞ୍ଜନ ରାୟ ।

ବାଲେଶ୍ୱର—ପ୍ରଫୁଲ୍ଲ ତ୍ରିପାଠୀ, ଲକ୍ଷ୍ମୀକାନ୍ତ ସାହୁ ।

ସମ୍ବଲପୁର—ତ୍ରିବିକ୍ରମ ତ୍ରିପାଠୀ, କୁମାର ହସନ ।

ବରଗଡ଼—ଭବାନୀଶଙ୍କର ମହାଲିଙ୍ଗ ।

ସୁନ୍ଦରଗଡ଼—ବାସନ୍ତୀ ମିଶ୍ର, ଅଭୟ କୁମାର ପଟ୍ଟନାୟକ, ଗିରି ଦଣ୍ଡସେନା ।

କରମଡ଼ିହି—ଯାଦବାନନ୍ଦ ପଟେଲ ।

ବୁର୍ଲା—ବୈରାଗୀ ଜେନା ।

ବାରିପଦା—ସତୀଶ ଚନ୍ଦ୍ର ବେହେରା ।

ବୀରମିତ୍ରପୁର—ହରିହର ମହାନ୍ତି ।

କଲିକତା—ବିଜୟ ପ୍ରସାଦ ମହାପାତ୍ର, ଅନାଦି ଚନ୍ଦ୍ର ସାହୁ ।

ଭୋପାଳ—ଯଶୋଧାରା ମିଶ୍ର ।

ବାଙ୍ଗାଲୋର—ସୁସ୍ମିତା ବାଗ୍‌ଚି ।

ଗୋଆ—ଅଳକା ନନ୍ଦ ।

ନଉଦିଲ୍ଲୀ—ଜଗନ୍ନାଥ ପ୍ରସାଦ ଦାସ ।

ମାଡ୍ରାସ—ନୃସିଂହ ତ୍ରିପାଠୀ, ଅଭୟ ସିଂ ।

ବମ୍ବେ—ଗଣେଶ ମହାପାତ୍ର ।

ପଣ୍ଡିଚେରୀ—ମନୋଜ ଦାସ । ଉତ୍ସର୍ଗୀକୃତ ଶ୍ରୀମତୀ ଆଶା ପଟେଲ ।

ପ୍ରକାଶିକା
**ଶ୍ରୀମତୀ ଶୋଭାରାଣୀ ପଟେଲ**

ସୌଜନ୍ୟ ମୁଗ୍ଧ
**ଶ୍ରୀ ଦେବବ୍ରତ କୁମାର ପଟେଲ**



ଯାଦବାନନ୍ଦ ପଟେଲ, କାବ୍ୟ ରଚନାରେ ସିଦ୍ଧହସ୍ତ । ସାଧାରଣ କୃଷକ ପରିବାରରେ ମାଘ କୃଷ୍ଣ ଦଶମୀ, ଶନିବାର ୧୫ ଜାନୁୟାରୀ ୧୯୪୫ ମସିହାରେ ସୁନ୍ଦରଗଡ଼ ଜିଲ୍ଲାର ସାରସ୍ୱତ ଗ୍ରାମ କରମଡିହିରେ ଜନ୍ମ । ଛାତ୍ର ଜୀବନରୁ କାବ୍ୟ ପ୍ରତି ରୁଚି । ସେ ଜଣେ ସମାଜସେବୀ, ରାଜନୈତିକ ନେତୃ ସ୍ଥାନୀୟ ବ୍ୟକ୍ତି । କରମଡିହି ଉଚ୍ଚ ବିଦ୍ୟାଳୟର ପ୍ରତିଷ୍ଠାତା ଓ ଅବୈତନିକ ଶିକ୍ଷକ । କବିଙ୍କ ରଚନାରେ ପ୍ରକୃତି, ଗ୍ରାମ୍ୟ ଜୀବନର ସଂଘର୍ଷମୟ ଚିନ୍ତା ଓ ଚେତନା ପ୍ରକାଶ ପାଏ । ପ୍ରକାଶିତ କାବ୍ୟ ଭିକାରୀ, ମନ୍ଦିର, ଆମଝରନ, ଶେଷ ଧାଡ଼ିର କବିତା, ଅସରାଏ ଜଳ ଯେବେ ଧରଣୀରେ ବରଷେ, ଗୀତ ଲେଖା ପାଇଁ ସେ ଚିର ସ୍ମରଣୀୟ । ତାଙ୍କର ଗ୍ରନ୍ଥାବଳୀ 'ଯାଦବାନନ୍ଦ ପଟେଲଙ୍କ କାବ୍ୟ ଗ୍ରନ୍ଥାବଳୀ' ଅକ୍ଷୟ ତୃତୀୟା ୧୯୯୪ରେ ପ୍ରକାଶିତ । ସେ ବର୍ତ୍ତମାନ 'ଅନ୍ୟ ପଥ' କାବ୍ୟ ରଚନାରେ ନିଜକୁ ଉତ୍ସର୍ଗ କରିଛନ୍ତି । ଉତ୍କଳ ଜନନୀ ତାଙ୍କର ସାରସ୍ୱତ ସାଧନା ପାଇଁ ସ୍ମରଣ କରି ରହିବ । ତାଙ୍କର କାବ୍ୟିକ ଚିନ୍ତାଧାରା ବିଶେଷ ଚର୍ଚ୍ଚିତ ହେଲେ କବି ପ୍ରତିଭା ବୁଦ୍ଧିଜୀବୀଙ୍କୁ ମୁଗ୍ଧ କରିବ । 'ଝାଟି ମାଟି ଟାଙ୍ଗର' ଉପନ୍ୟାସର ସେ ଯୁଗ୍ମ ଔପନ୍ୟାସିକ । କାବ୍ୟ ପ୍ରବେଶ ନେଇ ସମ୍ମାନର ଦ୍ୱାର ଦେଶରେ ସେ ଅଟକି ରହିଛନ୍ତି ।

—ପ୍ରକାଶିକା



ଶ୍ରୀମତୀ ଯଶୋବନ୍ତୀ ପଟେଲଙ୍କ ପ୍ରଚେଷ୍ଟାରେ ସୁଜାତା ପ୍ରକାଶନ, କରମ-ଡିହି : ସୁନ୍ଦରଗଡ଼ ପ୍ରତିଷ୍ଠିତ । ଅଦ୍ୟାବଧି ସେ ପନ୍ଦର ଖଣ୍ଡ ପୁସ୍ତକର ପ୍ରକାଶିକା । ସୁନ୍ଦରଗଡ଼ ଜିଲ୍ଲାରୁ ଓଡ଼ିଆ ଭାଷାର ପତ୍ରିକା ମଧ୍ୟ ସମ୍ପାଦନା କରିଛନ୍ତି । ତାଙ୍କ ପ୍ରକାଶନୀର ଭବିଷ୍ୟତ ନେଇ ଚଢ଼ିବା ବିଶ୍ୱାସରେ ସମସ୍ତ ବାଧାବିଘ୍ନ, ଅଭାବ, ଅସୁବିଧାକୁ ସେ ଜୀବନର ପାଥେୟ କରି-ଛନ୍ତି । ଘର ସଂସାର ଜଞ୍ଜାଳ ଭିତରେ ପ୍ରକୃତ ଆନନ୍ଦ ପାଇ ଓଡ଼ିଆ ଭାଷା ପ୍ରତି ମମତା ପ୍ରକାଶ, ବାଣୀ ସାଧନା ବ୍ୟତୀତ ଅନ୍ୟ ପ୍ରାପ୍ତି ନୁହେଁ । ତାଙ୍କ ପ୍ରକାଶନ ଦଳରେ ଦେବବ୍ରତ କୁମାର ପଟେଲ, ସାଦବାନନ୍ଦ ପଟେଲ, ପ୍ରିୟମ୍ବଦା ପଟ୍ଟନାୟକ ରହିଛନ୍ତି । ତାଙ୍କ ପ୍ରକାଶିତ କେତେକ ଗଳ୍ପ, ଉପନ୍ୟାସ ନିକଟରେ ଅନ୍ୟ ଭାରତୀୟ ଭାଷାରେ ଅନୁଦିତ ହେବାର ପ୍ରସ୍ତୁତ ଚାଲିଛି ।

---

## ପରିବେଷକ :

ଆଶା ପ୍ରକାଶନୀ : ବ୍ରହ୍ମପୁର, ୭୬୦୦୦୧

ଗ୍ରନ୍ଥାଳୟ : ଭୁବନେଶ୍ୱର, ୭୫୧୦୦୧

ଅଗ୍ରଦୂତ : ବାଙ୍କାବଜାର : କଟକ, ୭୫୩୦୦୨

ସାରସ୍ୱତ ପୁସ୍ତକ ଭଣ୍ଡାର : ସମ୍ବଲପୁର, ୭୬୮୦୦୧

ଚିତ୍ରୋତ୍ପଳା ପବ୍ଲିକେସନ୍ସ : ବଟେଶ୍ୱର, ସାଲେପୁର, କଟକ

ଦି ବେଷ୍ଟ : ରାଉରକେଲା, ୧୧

ପ୍ରଥମଖଣ୍ଡ—ଷାଠିଏ ଟଙ୍କା



ଦେବ୍ରତ କୁମାର ପଟେଲ, ନିଜେ ଜଣେ ଉତ୍ସର୍ଗୀକୃତ ଶିକ୍ଷକ । ଗଳ୍ପ ଓ ଔପନ୍ୟାସିକ ଜୀବନ ଆରମ୍ଭ ହୁଏ ଛଅଷଠି ମସିହାରୁ । ଦୀର୍ଘ ଗୁଣବର୍ଷ 'ନୂଆବାବୁ' ଉପନ୍ୟାସ 'ଶିକ୍ଷକ ଦର୍ପଣ' ପୃଷ୍ଠା ମଣ୍ଡନ କରିଥିଲା । ସେ ଥିଲେ ମାସିକ ଶିଶୁ ସାହିତ୍ୟ ପତ୍ରିକା 'ଆମେ କୁନା କୁନି'ର ସମ୍ପାଦକ । 'ଷଣ୍ଢ ଲଢ଼େଇ' ଗଳ୍ପ ପାଇଁ ୧୯୭୭ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ 'ଭରତ ଚନ୍ଦ୍ର ସ୍ମୃତି' ପୁରସ୍କାର ଦେଇଛି । ସାହିତ୍ୟ ସାଧନା ପାଇଁ ଓଡ଼ିଶା ଶିଶୁ ସାହିତ୍ୟ ପରିଷଦ, ସମ୍ବଲପୁର ଓ ଗଙ୍ଗାଧର ମେହେର ପରିଷଦ ବାରମ୍ବିନ୍ଦପୁରଙ୍କ ମାନପତ୍ର ପାଇଛନ୍ତି । ରଚିତ ଗଳ୍ପ ସବୁ ସପ୍ତର୍ଷି, ଅମୃତାୟନ, କୃଷ୍ଣଚୂଡ଼ା, ପ୍ରତିବେଶୀ, ଶିକ୍ଷକ ଦର୍ପଣ, ଏକାମ୍ର ପତ୍ରିକାଦିରେ ପ୍ରକାଶିତ । ଜନ୍ମ ୧୧-୧୦-୧୯୪୮ ବିଜୟା ଦଶମୀ ତିଥିରେ । ପ୍ରକାଶିତ ଉପନ୍ୟାସ ନୂଆବାବୁ-୭୭, କାଚଧାର କାଟେ-୮୦, ମନପକ୍ଷୀ-୮୧, ଭଲକୁ ଖସୁଥିବା ଲୋକଟିଏ ଓ ଗଳ୍ପ ସଂକଳନ ଷଣ୍ଢ ଲଢ଼େଇ-୭୯, ଶୂନ୍ୟ ଗୁଡ଼ଣୀର ଅତୀତ-୯୪ ଓ ଝାଟି ମାଟି ଟାଙ୍ଗର-୯୫ ପ୍ରକାଶିତ । ପ୍ରକାଶ ପ୍ରତୀକ୍ଷାରେ—ବିବସ୍ତ୍ର ଦୁର୍ଯୋଧନ, (ଗଳ୍ପ) ପୀତାମ୍ବର ଓ ଫୁଟୁଲେଇ ଉପନ୍ୟାସ ଚଳିତ ବର୍ଷ ପ୍ରକାଶ ପାଇବ । ସୁନ୍ଦରଗଡ଼ ଜନଜୀବନ ଉପରେ ଅନୁଭୂତିପୂର୍ଣ୍ଣ ଉପନ୍ୟାସ 'ଝାଟି ମାଟି ଟାଙ୍ଗର'ର ସେ ଯୁଗ୍ମ ଔପନ୍ୟାସିକ ଓ ଏବେ ସେ 'ଶଗଡ଼ରୁ ଡାମ୍ଫର' ଉପନ୍ୟାସ ରଚନାରେ ବ୍ୟସ୍ତ । କ୍ଷେତ୍ରବର ନାଏକ, ମୁକ୍ତେଶ୍ୱର ପଟେଲ, ଯାଦବାନନ୍ଦ ପଟେଲ, ପ୍ରିୟମ୍ବଦା ପଟ୍ଟନାୟକଙ୍କ ସାହିତ୍ୟ କୃତିକୁ ସେ ଲୋକଲୋଚନକୁ ଆଣିଛନ୍ତି ।

—ପ୍ରକାଶିକା